# ସାରଳା ମହାଭାରତ

# ଆଦି ପର୍ବ

## ୨ୟ ଖଣ୍ଡ



ମୁଖ୍ୟ ସଂକଳକ, ସଂଗ୍ରାହକ ଓ ସଂପାଦକ

ଡକ୍‌ଟର୍ ✓ ଆର୍ତ୍ତବଲ୍ଲଭ ମହାନ୍ତି

ଏମ୍. ଏ., ଡି. ଲିଟ୍., ପଦ୍ମଶ୍ରୀ

# ସୂଚୀପତ୍ର

## ଆଦିପର୍ବ

### ( ଦ୍ୱିତୀୟ ଖଣ୍ଡ )

## ଆଦିପର୍ବର ଅତିରିକ୍ତ ପାଠ



## ଆଦିପର୍ବର ପରିଶିଷ୍ଟ



———

# ସାରଳା ମହାଭାରତ

## ଆଦ୍ୟପର୍ବ

## [ ଦ୍ୱିତୀୟ ଖଣ୍ଡ ]

### ଶତ୍ରାଜିତ ବଧ

ଶୁଣ ବଇବସ୍ୱତ ମନୁ ବଦନ୍ତ ଅଗସ୍ତି
ଦ୍ୱାରକାରୁଂ ହସ୍ତିନାକୁ ଅଇଲେ ଶ୍ରୀପତି । ୧ ।
ଶତଧନୁ ଅନାଧୃଷ୍ଟ ଆବର କୃତବର୍ମା
ରାତ୍ରକାଳେ ତିନହେଂ ମେଳିଲେ ପାପ ଆତ୍ମା । ୨ ।
କୃତବର୍ମା ବୋଇଲେ ତୁମ୍ଭେ ଶତଧନୁ ଅନାଧୃଷ୍ଟ ଶୁଣ
ଶତ୍ରାଜିତ ରଜାର ଦେଖିଲଟିକି ମନ୍ଦ ପଣ । ୩ ।
ତାହାର ଦୁହିତା ଯେ ଅଟଇ ଶତ୍ରାବତୀ
ଆମ୍ଭଙ୍କୁ ଦେବ ବୋଲି କହିଥିଲା ସତ୍ୟବ୍ରତୀ । ୪ ।
ପ୍ରସନ୍ନାଜିତ ନିମନ୍ତେ ହରିଙ୍କୁ ଯହୁଂ ଅପବାଦ ହେଲା
ତରେଣ ବାସୁଦେବଙ୍କୁ ସତ୍ୟଭାମା ପ୍ରଦାନ ଯେ କଲା । ୫ ।
ସେହୁସନେକ ଅପବାଦ ଯହୁଂ କଲା ସେହୁଥେ ମୋତେ
ମୁହିଂ ସେ ଭୋଜବଂଶୀ ଅଟଇ ନା ଯୁଗତେ । ୬ ।
କୃତବର୍ମାର ବଚନେ ବୋଲଇ ଶତଧନୁ
କ୍ଷତ୍ରୀ ଲୋକ ପ୍ରମାଦ କରନ୍ତ ସେହି ଅପମାନୁଂ । ୭ ।
ମୋତେ ଦେବ ବୋଲି ବୋଇଲା ସତ୍ୟଭାମା କୁମାରୀ
ବାଳକାଳୁଂ ସେ ମୋତେ ଥିଲା ସତ୍ୟ କରି । ୮ ।
ତରେଣ ବାସୁଦେବଙ୍କୁ ପ୍ରଦାନ କଲା ବାଳୀ
ସେହୁଲେକ ଅପମାନ କଲା ଆମ୍ଭଙ୍କୁ ଶତ୍ରାଜିତ ଭଳି । ୯ ।

ତାହାର ବଚନ ଶୁଣି ବୋଲେ ଅନାଧୃଷ୍ଟ
ଶତ୍ରାଜିତଙ୍କ ଆନ କେ ଅଛଇ ପାପିଷ୍ଟ । ୧୦ ।
ବାଳ କାଳହୁଂ କୋଳେ ବସାଇଲା ମୁକୁ
ସତ୍ୟ ବାକ୍ୟେଣ ବୋଲଅଛୁ ସତ୍ୟଭାମା ଦେମି ତୁକୁ । ୧୧ ।
କାଳେଣ ହରିଙ୍କି କନ୍ୟା କଲାକ ପ୍ରଦାନ
କାହାର ବେଳେ ସହୁ ଯେତେହେଁକ ଅଭିମାନ । ୧୨ ।
ହରିଙ୍କି ପିଠିଆଇ କଲା ଯେତେହେଁକ କୃତ୍ୟ
ଯେବେଳକ ରକ୍ଷା କର ପାରିବେଟିକ ଜଗନ୍ନାଥ । ୧୩ ।
କୃତବର୍ମାଯେ ବୋଇଲେ କେ ପାରଇ ଯାଇ
ଶତ୍ରାଜିତକୁ ମାଇଲେ ସକଳ ଅଭିମାନ ସରଇ । ୧୪ ।
କରପଟ ଯୋଡଣ ବୋଲଇ ଅନାଧୃଷ୍ଟ
ତୁମ୍ଭର ଆଜ୍ଞାଂ ହୋଇଲେ ଯେହୁକ୍ଷଣି ମୁଂ କରିପାରଇ ପ୍ରାଣଭ୍ରଷ୍ଟ ।୧୫।
ଶତଧନୁ ଅନାଧୃଷ୍ଟ କୃତବର୍ମା ସମୀପେ
ଶତ୍ରାଜିତ ଶୟନ ମନ୍ଦିରେ ପ୍ରବେଶ ହୋଇଲେ ଗୋପ୍ୟେ । ୧୬ ।
ହସ୍ତେ ଖଣ୍ଡାଯେକ ଧରିଣ ଅନାଧୃଷ୍ଟ
ଶତ୍ରାଜିତ ଶୟନ ମନ୍ଦିରେ ପଶିଲା ପାପିଷ୍ଟ । ୧୭ ।
ବିଶ୍ବରୂର ପୁର ସେ ଅଭୟ ଭୁବନ ଅଟଇ
କାହାର ଘରେ ତହିଂ କବାଟଇ ନ ପଡଇ । ୧୮ ।
ଯମର କାଳଦଣ୍ଡ ନ ପଶଇ ଯେବଣ ପୁରୀ
ତୈଲୋକ୍ୟେ ଅଜୟେ ସେ ଦ୍ୱାରିକା ନଗରୀ । ୧୯ ।
ଗ୍ରହେଣ ପଶିଲା ସେ ଅନାଧୃଷ୍ଟ ବୀର
ନିଦ୍ରାଯେ ଶତ୍ରାଜିତ ଶୋଇଛୁ ପଲଙ୍କର । ୨୦ ।
କରେ ଧରିଅଛୁ ବଜ୍ରକର୍ଣ୍ଣକଠାର
ଗ୍ରିବ ଅଡାଇ ପାଦରେ ମିଳଲା ଶତ୍ରାଜିତ ପୁର । ୨୧ ।
ରତ୍ନ ପଲଙ୍କ ଉପରେ ନେତର ସୁପାତ
ସୁବର୍ଣ୍ଣ ଶିକୁଳାରେ ଜଳଇ ମାଣିକ୍ୟର ସହସ୍ରେକ ବତ । ୨୨ ।
ସମ୍ପୂର୍ଣ୍ଣ ଯୁବା ସୁନ୍ଦରୀ ସହସ୍ର ବାଳାସୁଣୀ
ପଲଙ୍କ ତଳେ ଶୋଇ ଅଛନ୍ତି ଅପଛରା ବୃନ୍ଦ ଜାଣି । ୨୩ ।

ନେତର ଚନ୍ଦ୍ରାତପ ରଞ୍ଜିଲାକ ଅଛି ଉପରେ
ମୁକୁତାର ମାଳମାନେ ଲମ୍ବନ୍ତି ନିରନ୍ତରେ । ୨୪ ।
ମରକତର ଝୁଲେ ଖଞ୍ଜିତ ସପତ ସରି
ଠାବେ ଠାବେ ଲାଗିଅଛି ମୁକୁତାର ଝରି । ୨୫ ।
ଦୁଷ୍ଟ ଅମର ସ୍ଵର୍ଗ ଜାଣି ତାହାର ଭୁବନ
ଅମର ବାରସ୍ତ୍ରୀ ତହିଁକେ ନୋହଇ ସମାନ । ୨୬ ।
ଯାହାର ଜୁଆଇଁ ଅଟନ୍ତି ଗୋବିନ୍ଦେ
ଅଭୟେ ଭୁବନ ତା'ର ପରମ ସାନନ୍ଦେ । ୨୭ ।
ଦୁଷ୍ଟ ଇନ୍ଦ୍ର ପ୍ରାୟେ ସୁନ୍ଦର ବଳିଷ୍ଠ
ନିର୍ଦ୍ଦୟୀ ତସ୍କର ରୂପେ ପଶିଲା ଅନାଧୃଷ୍ଟ । ୨୮ ।
ଉତ୍ତାନସାହୀ ହୋଇ ଶୋଇଛି ହଇହୟ ବଂଶ ନୃପମଣି
ହୃଦୟରେ ଅଛି ତାର ସ୍ୟମନ୍ତକ ମଣି । ୨୯ ।
ବଜେ କର୍ଣ୍ଣ କଠାର ଊର୍ଦ୍ଧ୍ଵ ବାହୁ କରି ଧରି
ଶତ୍ରାଜିତ ନୃପ ଉପରେ କରିଶେ ପ୍ରହାରି । ୩୦ ।
ମହା ପ୍ରତାପୀ ଅଟଇ ସେ ଅନାଧୃଷ୍ଟ ଦୁର୍ଦ୍ଦଣ୍ଡ
ଶତ୍ରାଜିତ ନୃପତି ହୋଇଲା ବେନି ଖଣ୍ଡ । ୩୧ ।
ପଲଙ୍କ ଉପରେ ତାକୁ ପକାଇଲା ହାଣି
କରେଣ ଘେନିଲା ସେ ସ୍ୟମନ୍ତକ ମଣି । ୩୨ ।
ବାହାର ହୋଇଲା ସେ ମହା ନଶାକାଳେ
ଅନାଧୃଷ୍ଟ ଶତଧନ୍ଵୁ କୃତବର୍ମା ବସିଲେ ଯେକମେଳେ । ୩୩ ।
ଅକ୍ରୂର ଯେ ତାହାଙ୍କର ଅଟଇ ବିଶ୍ଵାସୀ
ତାହାର ଗୃହମୁରେ ତିନହେଁ ମିଳିଲେକ ଆସି । ୩୪ ।
ଅକ୍ରୂର ଆଗରେ କ[illegible]ଲେ ଯେ ସମସ୍ତ ବାରତା
ଆଜ ରାତ୍ର କାଳେ ଆମ୍ଭେ ମାରିଲୁ ଶତ୍ରାଜିତ । ୩୫ ।
ଅକ୍ରୂର ବୋଇଲେ [illegible] ତୁମ୍ଭେ ମନ୍ଦ କୃତ୍ୟ କଲ
ରାଗ ସମ୍ଭା[illegible] ନ [illegible] କଥା ମୋତେ ନ କହିଲ । ୩୬ ।

---

୩.୫୮୧ ଅକ୍ରୂର--ଅଙ୍କ ୮ ।

ଅବଶ୍ୟ ଜାଣିବେ ସେହୁ ଦେବ ଜନାର୍ଦ୍ଦନ
ପାପ କଥା ଗୋଟି କେଉଁ ନୋହଇ ଗୋପ୍ୟନ । ୩୭ ।
ତନହେଁ ପଶିଲ ତୁମ୍ଭେ ନାଶ ଯିବାର ବୁଦ୍ଧି
ନଶନ୍ତ କାଳକୁ ଆସି ଆବୋରିଲା ବ୍ୟାଧି । ୩୮ ।
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ଯାହାର ଗର୍ଭଗତ
ସତ୍ୟଭାମା ବାସୁଦେବଙ୍କର ଅଟେ ପଞ୍ଚଭୂତ । ୩୯ ।
ନବତନ ଶଶୁର ଯେ ନବତନ ଭାରିଯା
ଅବଶ୍ୟ ତୁମ୍ଭଙ୍କୁ କୋପ କରିବେ ଦେବରାଜା । ୪୦ ।
ଅକ୍ରୂର ବୋଇଲା ତୁ ଶୁଣ ଅମ୍ଭ କାର ବଳା
ଦ୍ୱାରକାରେ ନ ଥା ହୋ ବନ୍ଧନ ସେଥୁଁ ଫଳା । ୪୧ ।
ସ୍ୟମନ୍ତକ ମଣି କମ୍ଭେ ଆଣିଲ ନ ବଗୃର
ପ୍ରତକ୍ଷେ ସନ୍ତକ ହୋଇଲା ହସ୍ତରେ ତୋହୋର । ୪୨ ।
ବିଶେଷେଣ ଦୋଷୀ ଆବର ସନ୍ତକ ଯେ ଥିଲେ
କେହି ରଖି ନ ପାରିବେ ବାସୁଦେବ କୋପ କଲେ । ୪୩ ।
ଅକ୍ରୂର ତହୁଁ ନରପକ୍ଷ ବଚନ ଶୁଣି
ତାହାର ହସ୍ତରେ ଦେଲା ସ୍ୟମନ୍ତକ ମଣି । ୪୪ ।
ମହାଭୟେ କରଣ ସେ ଶତଧନୁ ଅନାଧୃଷ୍ଟ
ଦୁହେଁ ଆରମ୍ଭେ ନ ରହିଲେ ଦ୍ୱାରକା ଭୁବନେ ଗରିଷ୍ଟ । ୪୫ ।
ସେଥୁ ଅନନ୍ତରେ ପ୍ରସରିଲା ରାତ୍ରି
ଚଆଁଇ ଉଠିଲେ ଶନ୍ନାଜିତର ଯୁବତୀ । ୪୬ ।
ଦେଖିଲେ ବେନି ଖଣ୍ଡ ହୋଇ ପଡି ଅଛଇ ନୃପମଣି
ମହା ଗହଳେ ସୁନ୍ଦରୀମାନେ କଲେ ଉଚ୍ଚ ସ୍ୱରେ ଧ୍ୱନି । ୪୭ ।
ହା ହା ସ୍ୱାମୀ ବୋଲି ଯେ ରୋଦନ କଲେ ସର୍ବ ବାଳୀ
ଉଚ୍ଚ ସ୍ୱରେ ଶବଦ ଯେ ଶୁଭିଲା ବୋବାଳି । ୪୮ ।

---

୩୮ { ତନହେଁ ପଶିଲ ତୁମ୍ଭେ ପାପ ବାରନିଧି
{ ବିନାଶ କାଳେ ଚଳିଲା ଏହି ମନ୍ଦ ବୁଦ୍ଧି ।

୪୫ { ମହାଭୟ କରି ଅନାଧୃଷ୍ଟ ଶତଧନୁ
{ ଦୁହେଁ ଆରତେ ଗଲେ ଦ୍ୱାରକା ଭୁବନୁ ।

ଶତ୍ରାଜିତ ଭୁବନେ ଗୋଳ ଚହଳ ଶବଦ ଶୁଣି
ଧାଇଁଲେ ଅନେକ ତହିଁ ଯଦୁ ବୀରମଣି । ୪୯ ।

ଯଦୁ ବଂଶ ଭୋଜ ବଂଶ ବୃଷ୍ଣିବଂଶ ଆଦି କରି
ଚଉବଂଶ ଯୋଜନ ଲୋକେ ସମସ୍ତେ ଆସି ପୂରି । ୫୦ ।

ପିତାର ଅଭାବ ଶୁଣିଣ ସତ୍ୟଭାମା
ଅନ୍ତେଶ୍ୱରୁ ବାହାର ସେ ନାରାୟଣଙ୍କର ବାମା । ୫୧ ।

ହା ହା ତାତ ବୋଲି କେଶ ବାସ ଅସମ୍ଭାଳେ
ଉଚ୍ଚ ସ୍ୱରେ ରୋଦନ କରି ସେ ଧାମନ୍ତି ବିକଳେ । ୫୨ ।

ପିତାର ଭୁବନେ ବିଜୟେ ମହାସତୀ
ଦେଖିଲେ ପିତାର ପ୍ରତକ୍ଷେ ଯେସନେକ ଶାସ୍ତି । ୫୩ ।

ତନୁ ଭାନୁ ତାହାଙ୍କର ବେନି ପାଠ ବଂଶୀ
କୋଳ କରି ସ୍ୱାମୀଙ୍କ ଧରିହନ୍ତି ଆନ୍ୱେଷି । ୫୪ ।

ରୁଧିରରେ ବିଲେପନ ସବୁଙ୍କର କାୟେ
ଅହିବ୍ରତେକ ଯୁବତୀ ସଭିଂୟେ ଶୋଣିତମୟେ । ୫୫ ।

ପିତାର ଅଭାବ ଦେଖିଣ ଶତ୍ରାବତୀ
ସବୁଙ୍କୁହିଁ ଗୃହିଁ ଦେବୀ ହୋଇଲେ କୋପମୂର୍ତ୍ତି । ୫୬ ।

କେବଣ ଦୋଷ କଲା ପିତା ଯେ ମୋହୋର
ଅଦୋଷେ ନାଶ କମ୍ପା ଗଲେ ନୃପବର । ୫୭ ।

ସୁଦ୍‌ଶେଣ ଚକ୍ର ଯେ ବୁଲଇ ପରଚଣ୍ଡ
ମାତ୍ରୁ ଭରିଣ ପଡ଼ିଲେ ହୋଅଇ ଶତେ ଖଣ୍ଡ । ୫୮ ।

ଯମର କାଳଦଣ୍ଡ ନ ପଶଇ ଯେବଣ ପୁରୀ
ଆନର ଦର୍ପେ କି ମୋହୋର ପିତାକୁ ନାଶ କରି । ୫୯ ।

ସଞ୍ଚିତ କରିଣ ଯେ ମାଇଲେ ମୋହୋର ତାତ
କାହାକୁ ଦୋଷ କଲା ନୃପତି ଶତ୍ରାଜିତ । ୬୦ ।

ଗୋସାମଣୀଙ୍କର ମୁଖୁଂ ଯେସନେକ ବାକ୍ୟ ଶୁଣି
ସମସ୍ତେ ହେଂ ଭୟ କଲେ ମନରେ ଶଙ୍କା ଘେନି । ୬୧ ।

ହାସେଣ କେହ୍ନ ନ ରହିଲେ ତାହାଙ୍କର କତ
ଜଗତମାତା ଠାକୁରାଣୀ କମ୍ପା ଆମ୍ଭଙ୍କୁ ଦେଉଅଛ ଅପଗ୍ରୁତ । ୬୨ ।
ଯାହାର କୁଆଇଂ ଅଛନ୍ତି ଦେବ ଜନାର୍ଦ୍ଦନ
ତାହାରେ ପ୍ରମାଦ କେ କହିବ ଦ୍ୱାରକା ଭୁବନ । ୬୩ ।
ଉଗ୍ରସେନ ସହିତେ ନନ୍ଦ ଉପନନ୍ଦ ବସୁଦେବ
ସମସ୍ତେ ରୋବନ୍ତି ଶହାଜତର ଅଭାବ । ୬୪ ।
ହସ୍ତୁଲୋକେ ଅସଖ୍ୟ ଯେବଣ ଚରିତ
କାହାର ଯେତେ ଦର୍ପ ଯେ ଭୁବନେ ପ୍ରମାଦ କରି ତ । ୬୫ ।
ବେଗେଣ ସତ୍ୟଭାମା ପୁଷ୍ପେକ ବିମାନ ଆରୋହି
ଦ୍ୱାରକା ପୁରୁଂ ଦେଖି ଆପଣେ ସଜ ହୋଇ । ୬୬ ।
ପୁଷ୍ପେକ ଆରୋହି ବାହାର ଦେଖି ଦ୍ୱାରକା ଭୁବନୁ
ପିତା ଅବା ମୋହୋର ନାଶ ଗଲ ବାସୁଦେବଙ୍କର ଗ୍ୟାନୁଂ । ୬୭ ।
ପ୍ରସନାଜିତ ନାମେ ଯେ ବାଲକ ଅପବାଦ
ସେ ରାଗ ନ ପାଶୋରି ଅବା କରାଇଲେ ପରମାଦ । ୬୮ ।
ଜାଣିମା ନା ଯେଥିର ତଦନ୍ତ ବିଧାନ
ଦ୍ୱାରକାଉଂ ବାହାର ଦେଖି ଆରୋହି ପୁଷ୍ପେକ ଯାନ । ୬୯ ।
ଶୂନ୍ୟେଣ ଗମନ କଲେ ଦେଖି ହସ୍ତିନା ଭୁବନକୁ
ଉଚ୍ଚ ସୁରେ ରୋଦନ କରି ଯାନ୍ତି ସ୍ମରି ପିତାକୁ ୭୦ ।
ସତ୍ୟଭାମାଙ୍କର ଗମନେ ପଦ୍ମୁନ ଶାମ୍ବ ଗଦ
ବିଚାରନ୍ତି ଦ୍ୱାରକାଯେ ପଡିବ ବହୁତ ପରମାଦ । ୭୧ ।
ଆଗେ ଦେଖି ଗମନ୍ତି ରୋବନ୍ତି ଉଚ୍ଚ ସ୍ୱରେ
ସାଙ୍ଗରେ ଗୋଡାଇଲେ ତିନ ଯେ କୁମାରେ । ୭୨ ।
ପଛେଣ କୁମାରେ ଗୋଡାବନ୍ତି ବରସେ
ପ୍ରବେଶ ହୋଇଲେ ଦେଖି କୁଞ୍ଜଗଳ ଦେଶେ । ୭୩ ।
ପ୍ରେତକାର୍ଯ୍ୟମାନ ଧୃତରାଷ୍ଟ୍ରଙ୍କୁ କରାଇ
ପରମାର୍ଥ କହି କଷ୍ଟ ମାନ ପାଶୋରାଇ । ୭୪ ।

---

୬୨।୨ ଅପଗ୍ରୁତ—ଅପକ୍ଷାତ ।
୬୫।୧ ଅସଖ୍ୟ—ଅଶକ୍ୟ ।

ହସ୍ତିନା ପୁରୁ ବାହାର କୃଷ୍ଣ କାମପାଳେ
ନନ୍ଦିଘୋଷ ତାଳଧ୍ୱଜ ଆରୋହି ଆସନ୍ତି ପ୍ରାତକାଳେ । ୭୫ ।
ତାଳଧ୍ୱଜ ରଥେ ବିଜୟେ ଦେବ ହଳୀ
ନନ୍ଦିଘୋଷ ରଥରେ ବିଜୟେ ବନମାଳୀ । ୭୬ ।
ଇନ୍ଦ୍ରପ୍ରସ୍ଥ ଯାଏ ଦୁର୍ଯୋଧନ ଅଇଲା ପାଛୋଟି
ବିଶାଶତେ ଯୋଜନୁଂ ବାହୁଡଇ ଧୃତରାଷ୍ଟ୍ରି । ୭୭ ।
ଗୋବିନ୍ଦେ ବୋଇଲେ ଶୋକ ନ କରନ ବାବୁ
ଆବର ପାଣ୍ଡବନ୍ତ ଲେଉଡଲେ ତୁ କାହିଂ ଯେ ପାଇବୁ । ୭୮ ।
ନାଶ ଗଲା ପ୍ରାଣୀକ ଚିନ୍ତାକଲେ ଆପଣେ ଦେହ ହାରି
ତୁ ସେ ପଞ୍ଚୁ କଣ୍ଟକରେ ଅଛୁ ଅଧିକାରୀ । ୭୯ ।
ଦୁର୍ଯୋଧନ ବୋଇଲା ହେ ବାସୁଦେବ ପାଶୋରିଲ ପାଣ୍ଡବଙ୍କୁ
ତୁ ହୋ ନାରାୟଣ ଅନୁଗ୍ରହ କରିଥିବୁ ମୁକୁ । ୮୦ ।
ଏତେ ବୋଲି ବାହୁଡଇ କୁରୁସାଇଂ
ଚଳନ୍ତି ନାରାୟଣ ସେ ରଥ ଲେଉଟାଇ । ୮୧ ।
ଚଳନ୍ତି ବାସୁଦେବ କୁଞ୍ଜିଗଲ ଦେଶେ
ଦେଖିଲେ ବିମାନେକ ଆସଇ ଆକାଶେ । ୮୨ ।
ଦାରୁକ ବୋଇଲା ଦେବ ଶୁଣିମା କାମପାଳେ
ଅମର ଭୁବନ ତେଜି କି ବିଜେ କଲେ ଆଖଣ୍ଡଳେ । ୮୩ ।
ଗୋବିନ୍ଦେ ନିରେଖନ୍ତି ପୁଷ୍ପେକ ବିମାନ ଦେଖି
ସ୍ତିରୀଲଙ୍କ ବିମାନ ପ୍ରାୟେକ ଆସଇ ଗଗନ ଉପେକ୍ଷି । ୮୪ ।
ନିରେଖିଣ ବଦନ୍ତି ଯେ ଦେବ ହଳପତି
ଏ ବିମାନ ଦିଶଇ ଦ୍ୱାରକାଉଂ ଅଇଲା ମୂରତି । ୮୫ ।
ଦୂରେଣ ଦେଖିଲେ ଦେବୀ ନନ୍ଦିଘୋଷ ତାଳଧ୍ୱଜ
ଉଞ୍ଚସ୍ୱରେ ରୋବନ୍ତି ଦେବୀ ନାମ ଧରି ପିତା ଶତ୍ରାଜିତ ରାଜ । ୮୬ ।
ଯହିଂ ସନ୍ନିଧେ ଦେବୀ ଭେଟିଲେ ବିମାନ
ଢଳି ପଡଲେ ଦେବୀ ହୋଇଣ ମୋହମାନ । ୮୭ ।
ଦାରୁକ ସାରଥି ଘୁଞ୍ଚାଇଲା ରଥ ତାଳଧ୍ୱଜ
ଆପଣେ ରଥୁଂ ଡେଇଂ ପଡଲେ ଦେବରାଜ । ୮୮ ।

ନାରପୂଣ କୋଳ କରି ଧଇଲେ·ଶନ୍ଧାବତୀ
ଦେଖିଣ ଆଶ୍ରିଜ ଦେବ ହୋଇଲେ ହଲପତି । ୮୯ ।
ଗୋବନ୍ଦେ ବୋଲନ୍ତି ଶୁଣ ଶରଦଚନ୍ଦ୍ରମୁଖୀ
କାହିଂର ନିମନ୍ତେ ସଖି ତୁ ହୋଇଲୁ ଯେଡେ ଦୁଖୀ । ୯୦ ।
ସମ୍ପୂର୍ଣ୍ଣ ଚନ୍ଦ୍ର ବଦନ ତୋର ମଳିନ କିସ ପାଇଂ
ଅମଳିନ ମୁଖ ତୋର ପରିମୁଣ୍ଡା ଯାଇ । ୯୧ ।
ପ୍ରାଣର ବଲ୍ଲଭି ମୋର ହୃଦ ପଞ୍ଚଭୂତ
ତୋହୋର କ୍ରୋଧ ଦେଖି ମୋହୋର ଶରୀର ତୁଟଇ ରେ ସଂଘାତ ।୯୨।
ଶନ୍ଧାବତୀ ବୋଇଲା ଦେବ ଯେତେହେକ କପଟ କଂପା କଲ
ଯେଣିକି ଆପଣେ ଆସି ତେଣେ ମୋର ପିତାକୁ ମରାଇଲ । ୯୩ ।
ଅଗ୍ୟାଂନେ ପିତା ମୋର ତୋତେ ଅପବାଦ ଦେଲା
ମୋତେ ସମର୍ପି ଦେଇ ତୋତେ ଶରଣ ପଶିଲା । ୯୪ ।
ବିଶ୍ୱାସଘାତକ ହୋଇଲୁ ଦେବ ହରି
ଶରଣ ଜନ ନାଶ କଲେ ରୌରବ ନର୍କରେ ଯେ ପଡି । ୯୫ ।
ଯେସନେ ନିରାଶ କରି କହିଲେ ଯହୁଂ ସୁରେଖା
ରାମକୃଷ୍ଣଙ୍କୁ ଗୋଚର ନ ଗଲା ହୋଇଲେ ତାଟକା । ୯୬ ।
ଶ୍ରୀକୃଷ୍ଣ ବୋଲନ୍ତି ସଖି କୋପ କର ଶାନ୍ତ
କେହେନେକ ସରୂପ ଗୋ କହସି ନିଭ୍ରାନ୍ତ । ୯୭ ।
ଯେସନେକ ସମୟେ ପଦ୍ମନ ଶାମ୍ବ ଗଦ
ଶତେ ସହସ୍ର ଦଣ୍ଡ ପ୍ରଲମ୍ବିତ ହୋଇଲେ ରାମକୃଷ୍ଣ ପଦ୍ମପାଦ । ୯୮ ।
ଶ୍ରୀହରି ପଚୃରନ୍ତି ବାବୁ ଶୁଣ ମୀନକେତନ
ଶନ୍ଧାଜିତ ରାଜାର ଚରିତ କେସନ । ୯୯ ।
ପ୍ରଦ୍ୟୁମ୍ନ ପ୍ରତିବାଚ ଶୁଣ ହୋ ଜଗତ ଭୂତ
ଆଜ ରାତିରେ ନାଶ ଗଲା ନୃପତି ଶନ୍ଧାଜିତ । ୧୦୦ ।
କେବଣ ମହାତମା ନିଶାୟେ ପଶିଲା ତାହାର ପୁରୀ
ଶନ୍ଧାଜିତକୁ ଛେଦିଲା ବେନି ଖଣ୍ଡ କରି । ୧୦୧ ।

---

୯୧।୨ { ଅମ୍ଳାନ ସୁନ୍ଦର ମୁଖ ଭୋହୋର ନିଉଜ୍ଜ୍ୱଳ ଯାଇ ।
ଅମ୍ଳାନ ମୁଖର ମୁଂ ଆପାଦ ଦେଖି ଯାଇ ।

ପଦ୍ମନ କହନ୍ତେ ବସରଲେ ଜଗତଭୂତ
କାହାର ଫଳୁ ଦ୍ୱାରକାଯେ ମୋହୋର ହୋଇଲା ସ୍ୟମନ୍ତ । ୧୦୨ ।
କାହାଲୁ କେବଣ ଦୋଷ କଲା ଶତ୍ରାଜିତ ନୃପତି
କେବଣ ପାତକେ ହୋଇଲା ତାକୁ ଯେତେକ ଯେ ଶାସ୍ତି । ୧୦୩ ।
କ୍ରୋଧ ନ କର ସତ୍ୟଭାମା ଗୋ ମୋହୋର ବୋଲ ଶୁଣ
ଅବଶ୍ୟ କରିବ ମୁଂ ତୋହୋର ପିତାର କାରଣ । ୧୦୪ ।
ତୋହୋର ପିତାକୁ ଯେ ମାଇଲା ଅନମିତ୍ତେ
ଦ୍ୱାରକାରେ ଥୋଇବ କି ତାହାର ବଂଶହିଂ ସହିତେ । ୧୦୫ ।
ସତ୍ୟଭାମାକୁ ସମାର୍ଜନା କଲେ ଦେବହରି
ଦ୍ୱାରକା ଭୁବନକୁ ତହୁଂ ଆସନ୍ତି ଖର କରି । ୧୦୬ ।
ଦ୍ୱାରକା ଭୁବନେ ଯେ ଭ୍ରମନ୍ତି ଦୁଷ୍ଟମାନେ
ସତ୍ୟଭାମା ଗଲେ ଯେ ହସ୍ତିନା ଭୁବନେ । ୧୦୭ ।
ଅକ୍ରୂର ବୋଇଲେ ଯେ ହକାରି ଶତଧନୁ
ଦ୍ୱାରକାରେ ନୋହଇ ସ୍ୟମନ୍ତ ବାସୁଦେବ ଗ୍ୟାନୁଂ । ୧୦୮ ।
ଅବଶ୍ୟ ବାସୁଦେବ ଲେଉଟବେ ସତ୍ୟଭାମାର ବଚନେ
ତୁ ହୋ ଶତଧନୁ ନ ଥାଅ ଦ୍ୱାରକା ଭୁବନେ । ୧୦୯ ।
ସତ୍ୟଭାମା କୋପ ଶାନ୍ତ ହୋଇବା ପର୍ଯ୍ୟନ୍ତେ
ସମସ୍ତେକେ ଜଣାଇ ପଛେ ଅଣାଇଂ ସିନା ତୋତେ । ୧୧୦ ।
ଅକ୍ରୂର ବଚନ ଶୁଣିଣ ଶତଧନୁ
ଦ୍ୱାରକାଉଂ ବାହାର ହୋଇଲା ବୃହଧ୍ୱଜର ତନୁ । ୧୧୧ ।
ଦ୍ୱାରକାଉଂ ପଳାଇଲା ସେ ମହା ନିଶାକାଳେ
ଗହଳ ଅରଣ୍ୟେ ପଶିଲା ସେ ପ୍ରାଣର ବିକଳେ । ୧୧୨ ।
ସତ୍ୟଭାମାଙ୍କୁ ଘେନି ଦେବ ଯଦୁସାଇଂ
ଦ୍ୱାରକା ଭୁବନେଣ ପ୍ରବେଶ ହେଲେ ଯାଇଂ । ୧୧୩ ।
ବିଜେ କଲେ ବାସୁଦେବ ଶତ୍ରାଜିତର ଭୁବନେ
ଦେଖିଲେ ରୋଦନ କରୁଛନ୍ତି ବେଢି ସମସ୍ତ ନାରୀଗଣେ । ୧୧୪ ।
ଜଗନ୍ନାଥଙ୍କ ମୁଖ ଗୃହିଂ ଦନ୍ତେ ଚରଣ ଧରି ପଡ଼ି
ରୋଦନ୍ତି ବାଳାସୁଣୀ ସେ ଶିରେ କର ତାଡ଼ି । ୧୧୫ ।

ଏହୁ ଭୁବନକୁ କେବଣ ଦ୍ରୋହ କଲା ଶତ୍ରାଜତେ
ଏହିଥେ ଆପାଦ ନାହିଂ ତୋହୋର ଦେଖନ୍ତେ । ୧୧୬ ।
ସମସ୍ତଙ୍କ ବିକଳ ଦେଖିଣ ମଧୁରିପୁ
ଦେଖିଲେ ବେନ ଖଣ୍ଡ ହୋଇଛି ଶତ୍ରାଜିତର ବପୁ । ୧୧୭ ।
ରାଗେଣ କାଳାନଳ ସ୍ୱାମୀ ତେଜ ଯେ ବିକାଶି
ବଳରାମେ ବୋଇଲେ ଏହୁ ପୁରକୁ କେବଣ ସେ ଦୋର୍ଷୀ । ୧୧୮ ।
ଯମଦଣ୍ଡ ନ ପଶଇ ଯେବଣ ଦ୍ୱାରିକାକୁ
କଏହୁଁ ଶତ୍ରୁ ହୋଇଲା ଏହୁ ମୋହୋର ଭୁବନକୁ । ୧୧୯ ।
ବଳରାମେ ବୋଇଲେ ସମର୍ଥଜତକୁ ଚାଇ
ପିତାଙ୍କୁ ତୋର ଯେ ଦହନ କର ନେଇ । ୧୨୦ ।
ଜାଣିମା ତଦନ୍ତ କରି କେ ଏହୁତେକ ବଇରି
ଏହୁତେବେଳେ ତାହାକୁ ପାଇବା କାହିଂ ଲୋଡ଼ି କରି । ୧୨୧ ।
ଗୋବିନ୍ଦେ ସମାର୍ଜନା କରନ୍ତି ସବୁନ୍ତି
ନାରାୟଣ ବଚନେ ସମସ୍ତେ ହୋଇଲେକ ଶାନ୍ତ । ୧୨୨ ।
ଦିବ୍ୟ ପଲଙ୍କରେ କଲେ ଆରୋପଣ
ପ୍ରେତ ପ୍ରତିଗ୍ରହ ଯେ ଘେନଣ ବ୍ରାହ୍ମଣ । ୧୨୩ ।
ପଲଙ୍କ ଉପରେ ନେଇ ଶୁଆଇଲେ ଶବ
ଶମଶାନ ଭୂମିରେ ନେଇ କଲେ ଶତ୍ରାଜିତ ରାଜଦେବ । ୧୨୪ ।
ଚିତା ଆରୋପଣ କରି ବସାଇଲେ ମୃତ୍ୟୁ କାଏ
ମୁଖା ଅଗ୍ନି ଦିଲା ଶତ୍ରାଜିତର ତନଏ । ୧୨୫ ।
ଦହନ କଲେ ନୃପତିଙ୍କ ଶମଶାନ ମଧ୍ୟେ
ପ୍ରତିଦିନ ପ୍ରେତକାର୍ଯ୍ୟ କରନ୍ତି ପ୍ରେତ ଭୂମିର ସନ୍ନିଧେ । ୧୨୬ ।
ହବି ପାକ ଶୁଦ୍ଧ ହୋଇଲେ ଏକାଦଶ ଦିନେ
ବ୍ରାହ୍ମଣେ ଶୁଦ୍ଧ କରାଇଲେ ଘୃତର ପାରଣେ । ୧୨୭—୨୧୬୭



# ଶତ୍ରାଜିତର ପୂର୍ବପୁରୁଷ ବୃତ୍ତାନ୍ତ

ଅଗସ୍ତିଙ୍କି ପୁଚ୍ଛା କଲେ ବଇବସ୍ୱତ ମନୁ
ଶତ୍ରାଜିତ ପୂର୍ବ ଜନ୍ମ ଗୋତ୍ର ଯେ କହିବା ବ୍ରହ୍ମଗ୍ୟାଂନୁ । ୧ ।
କେବଣ ବଂଶରେ ହୋ ଅଛଇ ସେହୁ ରାଜା
ଏହା ମୋତେ ସଞ୍ଚପି କହିବାକ କୁମ୍ଭ ଋଷିର ଆତ୍ମଜା । ୨ ।

ଅଗସ୍ତି ପ୍ରତିବାଚ ଶୂର ବଂଶେ ଅଛଇ ରାଜା
ଶୂରର ପୁତ୍ର ଯେ ହୋଇଲା ଶମ୍ଭୁ ରାଜା । ୩ ।
ଶମ୍ଭୁଜିତର ପୁତ୍ର ହୋଇଲା ପୁରୁଜିତ
ଏହାର ପୁତ୍ର ଯେ ହୋଇଲା ଧର୍ମକ୍ଷେତ୍ର । ୪ ।

ଧର୍ମକ୍ଷେତ୍ରର ପୁତ୍ର ହୋଇଲା ଜୟେବନ୍ତ
ଏହାର ପୁତ୍ର ହୋଇଲା ଯଗ୍ୟଂନକ । ୫ ।
ଯଗ୍ୟଂନକର ପୁତ୍ର ହୋଇଲା ନିଳାଜିତ
ନିଳାଜିତର ଏକ ପୁତ୍ର ହୋଇଲା ଭଗ୍ୟଂବନ୍ତ । ୬ ।

ସୁକାନ୍ତ ନଗ୍ର ବୋଲି ପୂର୍ବ ଦିଗ ଭାଗେଣ
ଭଗ୍ୟଂବନ୍ତ ରାଜାର ମହିମା ତୁ ଶୁଣ । ୭ ।
ବ୍ରାହ୍ମଣ ଶାସନ ଯେ ପାଞ୍ଚ ସହସ୍ର ବସଇ
ବେଦ ବିଦ୍ୟାରେ ସେ ନିର୍ଜିତ ହୁଅଇ । ୮ ।
ଶିଶିକ ବୋଲିଣ ସେ ଏକଇ ବ୍ରାହ୍ମଣ
ତାହାର ଭାରିଯାର ନାମ ଶ୍ରୀବନ୍ତୀ ଯେ ପୁଣ । ୯ ।
ସମଏକ ଶିଶିକ ବ୍ରାହ୍ମଣ ପରଲୋକ ହୋଇଲା
ତାହାର ପତ୍ନୀ ବାଳ ବିଧବା ହୋଇଲା । ୧୦ ।

କେତୁଦିନ ଅନ୍ତରେ ସେ କୁମାର୍ଗେ ଚଳିଲା
ସେ ଦେଶେ ସାଧବ ପୁତ୍ରକୁ ଦେନ ଗୁପତେ ଦୁହିତାଏ ଜାତ କଲା । ୧୧ ।
ସେ ଦୁହିତାକୁ ସେହି ରାତରେ ନେଇ ଗ୍ରାମ ବାହାରେ ପକାଇଲା
ମୁଣ୍ଡବଥା ପେଟବଥା ବୋଲି ଘରେ ପାଖେକ ଶୋଇଲା । ୧୨ ।

ରାତ୍ରି ପାହାନ୍ତରେ ଗ୍ରାମରୁ ଶୃଗାଳମାନେ ଯାନ୍ତି
ରୋଦନ କରନ୍ତେ ସେ ବାଳୀକି ଦେଖନ୍ତି । ୧୩ ।

ଅତ୍ୟନ୍ତ ସୁନ୍ଦର ସୂର୍ଯ୍ୟର କରଣ ଜାଣି
ରାଜ ପାହାଲାର କ ଉଦୟେ ଧନମଣି । ୧୪ ।
ସେ ବାଳୀ ଗୋଟିକ ଜମ୍ବୁକା ଘେନଗଲା
ଆପଣା ବନ ଭୂମିରେ ନେଇଣ ରଖିଲା । ୧୫ ।
ଅନେକ ଗଛରୁ ସେ କ୍ଷୀର ଆଣଇ ଯେ ଫେଇ
ଯେମାନ ଆଣି ଦଅଇ ବାଳକା ଭୁଞ୍ଜେଣଇ । ୧୬ ।
ଗ୍ରାମ ଭିତରେ ପଶି ରାଜକାଲେ ନଗରରେ ନଅନ୍ତ ପାଣି ପେଜ
କୁମାରୀ ତୁଣ୍ଡରେ ଦଅଇ ନେଇଣ ଅଗ୍ରାହଜ । ୧୭ ।
ଯେମନ୍ତେ କୁମାରୀକ ସେ ବରଷେକ କଲେ
ବନସ୍ତ ଭିତରୁ ଜାମୁ କରମଙ୍ଗା ବଇଂଚ କୋଳି ଦଲେ । ୧୮ ।
ଯେଉଂ ଋତୁରେ ଯେଉଂ କୋଳି ଫଳ ତୋଳଣ ଆଣନ୍ତ
ବାଳକାର ହସ୍ତେ ତାହା ଖାଇବାକୁ ଆଣି ଦ୍ୟନ୍ତ । ୧୯ ।
ଆଖୁ କାକୁଡି ପଣସ ସୁସ୍ୱାଦ ପଦାର୍ଥ
ତାହା ଆଣି ଦଅନ୍ତ ସେ ବାଳକାର ହସ୍ତ । ୨୦ ।
ଖାଇ ଭୁଞ୍ଜି ବଢଇ ସେ ନବୀନ କାମ ଜାଣି
ଦେଖି ହରଷ ହୋଅନ୍ତ ସେ ଶ୍ରିଗାଳ ଶ୍ରିଗାଳୁଣୀ । ୨୧ ।
ସପତ ବରଷ ହୋଇଲା ସେ ବାଳକା ଯହୁଂ
ଅନ୍ନ ବ୍ୟଞ୍ଜନ ବସ୍ତ୍ର ଆଣି ଦଅନ୍ତ ତହୁଂ । ୨୨ ।
ଯେମନ୍ତେଣ ପାଳଣ ଥାଇଂ ସେ ଶୃଗାଳ
ସୂର୍ଯ୍ୟ ତେଜ ଦଶଇ ସେ ଗଗନ ମଣ୍ଡଳ । ୨୩ ।
ଯେକ ଦିନକରେ ସେ ବେନ ପ୍ରାଣୀ ନାହାନ୍ତ
ବମ୍ପୁରୁ ବାହାର ସେ ହୋଇଲା ବାଳକା ରୂପବନ୍ତୀ । ୨୪ ।
ମନେଣ ବିଚାରଇ ମୁଂତ ବଢଇ ବୃଦ୍ଧ ଜମ୍ବୁକାର ଘର
ଯେହାର ଗର୍ଭରୁ ମୁଂ ନୋହଇ ବାହାର । ୨୫ ।
ପ୍ରାଣର ସଖା କରି ମୋତେ ଯେ ପାଳନ୍ତ
ସେ ବେନ ପ୍ରାଣୀ ମୋହୋର ମାତା ପିତା ଅଟନ୍ତ । ୨୬ ।
ଗଗନେ ଥାଇ ଦିନକର ସେ ରୂପ ନିରେଖନ୍ତ
ଧନ୍ୟ ତୁ ସୁନ୍ଦରୀ ରେ ନବ ଯୁବା ମୂରତି ।୨୭ ।

ଶରୀର ଢୋହୋର କୁସୁମ ପ୍ରାୟେକ ଦିଶନ୍ତ
କେଶ ଶୃମର ଭ୍ରମର ମୁରାଟ କରନ୍ତ । ୨୮ ।
କଣ୍ଠ ତଡକ କାମ କମାଣ ଜିଣି
ଉଦର ପୃଥୁଳ ନାଭି ଗମ୍ଭୀର ପଦ୍ମ ପତ୍ର ରସାଣି । ୨୯ ।
ଜାତି ପଦ୍ମିନୀ ସେ ଅଟଇ ରୂପବନ୍ତୀ
ମୁନିଜନ ମାନେ ତାକୁ ଦେଖି ମୋହ ଯାନ୍ତି । ୩୦ ।
ଦିନୁ ଦିନୁ ସୁନ୍ଦରୀ ସେ ବଢଇ ବିକରାଳ
ଭରିଯା କହଇ ସେ ଶୃଗାଳ ଆଗର । ୩୧ ।
କାହାକଇଂ ଦେବା ଆମର ଦୁହିତା ଗୋଟି
କେ ନେବ ନ ଜାଣି ଆମ୍ଭେ ପଶୁ ଜନ୍ମ ଗୋଟି । ୩୨ ।
ବୋଲଇ ଶୃଗାଳ ଶୁଣ ରେ ସଙ୍ଘାତ
ବ୍ରହ୍ମା ବିଷ୍ଣୁ ତାହାର କପାଳେ ଯାହା କରିଥିବେ ନିର୍ମିତ । ୩୩ ।
ଯେମନ୍ତେ କିଛୁ ଦିନ ଅନ୍ତରେ ବିଦର୍ଭନ୍ତ ରାଜା
ବନ ପାରିଧି ନିମନ୍ତେ ଯାଇଂ ସେ ଆପଣେ ସନ୍ୟଗଞ୍ଜା । ୩୪ ।
ଷୋହଳ ଶାୟେନ୍ତ ବାସୁରୀ ନିଯୋଗନ୍ତ ଘେନି
ବନସ୍ତେ କ୍ଷେପି ସେ ଆସଇ ରାଜଧାନୀ । ୩୫ ।
ଖଣ୍ଡେ ଦୂରେ ରାଜା ସାହାଡା ବୃକ୍ଷ ତଳେ ବାରୁ ଲଗି ହୋଇଲା
ନିଗମ ବନ ଭୂଇଂରେ କାମିନୀକି ଦେଖିଲା । ୩୬ ।
ଲୋକ ଗହଳ ଶୁଣି ଶୁଣି ବାଳୀ ବିମ୍ବରେ ପଶିଲା
ଲୋକ ଗହଳ ଶୁଣି ରାଜନ ଦେଖି ନ ଦେଖିଲା । ୩୭ ।
କାହାକୁହିଂ ଫେଡି ନ କହିଲେ ନୃପନାଥ
ଆପଣା ହୃଦରେ କଥା ରଖି ଖୋଜନ୍ତ ପରସ୍ତେ ପରସ୍ତ । ୩୮ ।
ପାରିଧି କରି ରାଜା ଲେଉଟିଣ ଗଲା
ଛ ମାସ ପରିଯନ୍ତେ ରାଜନ ସେ ଠାବରେ ଜଗିଲା । ୩୯ ।
ଯେକ ଦିନକରେ ରାଜା କଷ୍ଟା ବମନ ପରିହରଣ
ବନସ୍ତ ଭିତରେ ବୁଲଇ ରାଜା ଇତସ୍ତତ ମନ । ୪୦ ।

---

୩୫।୧   ଶାୟେନ୍ତ—ଶ୍ରାମନ୍ତ

ଦେଖଇ ରାଜା ଯାଇ ଖେପିଲେ ନ ପାଇ
ମାନୁଷ୍ୟ ଦେଖିଲ କେଣେ ଯେଠାବଇଂ ଗଲ ବୋଲି ବୋଲଇ । ୪୧ ।
ଗୋପତେ ବମ୍ବର ଭିତରେ ଯାଇଣ ପଶଇ
ମହା ଅଗମ୍ୟ ଜନ ମନୁଷ୍ୟର ଦେଖା ନାହିଂ । ୪୨ ।
ସେ ଦିନ ନୃପତି ଯେ ବାହୁଡି ଆସଇ । ୪୩ ।
ଆରଦିନ ସେ ଭେସ ନ ଧରି ବନସ୍ତକୁ ଗଲ
ଛଦ୍ମ ରୂପ ସେ ରାଜନ ଧଇଲ । ୪୪ ।
ଶ୍ୱେର ରୂପେ ଜଗି ବସିଲେ ରାଜା ଜାନ୍ତ ଗଛ ଉପର
ବମ୍ବର ଭିତରୁ ବାହାର ଯୁବତୀ ରତ୍ନ ସାର । ୪୫ ।
ନରେଖି ନରେଖେ ରାଜା ରୂପ ଯେ ଲକ୍ଷଣ
କାହାର ଦୁହିତା କି ଏ ବନ ଦେବତୀ ପୁଣ । ୪୬ ।
କ୍ଷଣକ ଉତ୍ତାରୁ ଅଇଲେ ଜମ୍ବୁକ ବେନି ପ୍ରାଣୀ
ଖାଇବାରେ ଆଣିଥିଲେ ଆଖୁ କାକୁଡି ପଣସ ପୁଣି । ୪୭ ।
ଦୁହିତାର ହସ୍ତେ ସେ ଯେ ସମସ୍ତ ଦ୍ରବ୍ୟ ଦିଲେ
ଥୋକାଏ ଖାଇ ଥୋକାଏ ବମ୍ବରକୁ ନଲେ । ୪୮ ।
କ୍ଷଣକ ଉତ୍ତାରୁ ରାଜନ ବୃକ୍ଷରୁ ଉତ୍ତୁରିଲେ
ଏହାର ପଦାର୍ଥ ବୋଲି ମନେଣ ବିଚାରିଲେ । ୪୯ ।
ଏହାକୁ ମାଗିଲେ ଯେ ହୋଇବ କାରଣ
ପଶୁ ଜନ୍ମ ଘରେ ଏ ବାଳକା ନ ଯାଇ ସଂହରଣ । ୫୦ ।
ଏତେ ବୋଲି ରାଜା ତାର କତିରେ ହୋଇଲେ
ଜମ୍ବୁକ ବେନି ପ୍ରାଣୀ ଭୟେ ବମ୍ବରେ ପଶିଲେ । ୫୧ ।
ସେ ସତ୍ୟ ଯୁଗରେ ଏ କଥା ପ୍ରମାଣ
ଚଉପାଯାଙ୍କ କଥା ମନୁଷ୍ୟ ରୂପେଣ । ୫୨ ।
ନୃପତି କହନ୍ତି ଶୁଣ ହୋ ଜମ୍ବୁକ
ଏ ତୋହୋର ଦୁହିତା ଆମ୍ଭଙ୍କୁ ଦେବୁ କି । ୫୩ ।

---

୪୪।୨ ଭେସ—ବେଶ ।
୪୫।୧ ଜାନ୍ତ ଗଛ—ଜୟନ୍ତୀ ଗଛ ।

ଜମ୍ଭୁକା ବୋଇଲା ଗୋସାଇଁ ମୋହୋର ଝିଅକୁ ତୁମ୍ଭେ କେମନ୍ତେ
ବିଭା ଯେ ହୋଇବ
ମୋହୋର ଝିଅକୁ ବିଭା ହୋଇଲେ ବହୁତ ଲାଜ ଯେ ପାଇବ । ୫୪ ।
ମାନୁଷ୍ୟର ଦୁଇ ଗୋଡ ବିଧାତାର ରଚିଆଣ
ଆମ୍ଭ ପଶୁଜନଙ୍କର କଲା ଚାରି ଯେ ଚରଣ । ୫୫ ।
ଶୁଣିଣ ରାଜନ ଯେ ଅଳପ ହସିଲେ
ତୋହୋର ଦୁହିତା ଦେବୁ ବୋଲିଣ ବୋଇଲେ । ୫୬ ।
ନୃପତି ବଚନ ସେ ନାସ୍ତି କରି ନୁଆରିଲା
ଦେବ ଦୁହିତା ବୋଲି ସନମତ କଲା । ୫୭ ।
କେବଣ ଦିନରେ ଆମ୍ଭେ ବିଭା ଯେ ହୋଇବୁଂ
ଏହା ବିଚାରିଣ କହ ବନସ୍ତରୁ ଯିବୁଂ । ୫୮ ।
ମକର ମାସ ଶୁକଳ ପକ୍ଷ ପଞ୍ଚମୀ ଭୃଗୁବାର
ସେ ଦିନରେ ବିଚାରିଲେ ବିଭା ଲଗ୍ନ ସାର । ୫୯ ।
ବୋଲନ୍ତି ରାଜନ ଶୁଣ ବଚନ ମୋହୋର
ଏ ତୋହୋର ଦୁହିତାକୁ ଦେବ ଆମ୍ଭର ନଗର ଠାର । ୬୦ ।
ଶୁଣିଣ ଜମ୍ଭୁକା ବୋଲଇ ବଚନ
ତହିଂ ଦିଲେ ହୋଇବ ମୋହୋର ବଂଶକୁ କଥା ହୀନ । ୬୧ ।
ଏଠାବରୁ ଆସି ତୁମ୍ଭେ ବିଭା ହୋଇ ଯିବ
ଏ ବଚନ ଶୁଣି ରାଜା ବୋଲଇ ସଦଭାବ । ୬୨ ।
ମୋହୋର ଅଇଲେ ସନ୍ୟବଳ ଯେ ଆସିବ
ଏତେକ ଲୋକଙ୍କୁ କାହୁଂ ଅନ୍ନ ଭୋଜନ ଯେ ଦେବ । ୬୩ ।
ଶୁଣିଣ ଜମ୍ଭୁକା ଯେ ବୋଲଇ ବଚନ
କେଉଂ ବୃତ୍ତି ମୋତେ ଦେଇଅଛ ଯେ ଶାସନ । ୬୪ ।
ଏ ବଚନ ଶୁଣି ରାଜା ବାହୁଡଣ ଗଲା
ମକର ଶୁକଳ ପଞ୍ଚମୀ କି ବିଭା ଆରମ୍ଭିଲା । ୬୫ ।
ଷୋହୋଳ ସାମନ୍ତ ବାସ୍ତୋରି ନିଯୋଗନ୍ତି ଘେନି
ପଞ୍ଚ ସୁରେ ବାଦ୍ୟ ବଜାଇ ବାହାର ରାଜା ବିପ୍ରଙ୍କୁ ଘେନି । ୬୬ ।
ରାଜାର ରାଜକର୍ମ ଏସନେକ ଜାଣ
ତତକ୍ଷଣେ ପ୍ରବେଶ ହୋଇଲେ ସେହି ଯେ ଠାବେଣ । ୬୭ ।

ବେଳ ପ୍ରହରେଣ ଭିତରେ ବିଭା ଆରମ୍ଭ କଲେ
କୁମ୍ଭ ଲଗ୍ନରେ ସେ ବିଭା ଯେ ହୋଇଲେ । ୬୮ ।
ବିଭା ହୋଇ ଯଉତୁକ ଦେବାର ବେଳେଣ
ବିପ୍ର ବୋଇଲା କ ଦକ୍ଷିଣା ଦେବୁ ଦିଅ ହୋ ବହନ । ୬୯ ।
ଜମ୍ବୁକ ବୋଇଲା ରାଜା ଶୁଣ ମୋ ବଚନ
ଯେତେ ତୋହୋର ରାଜ୍ୟ ଯେ ପଂଚଶ ସହସ୍ର ଯୋଜନ । ୭୦ ।
ଯାବତ ଉଠିଆସ୍ତେ ଭୂମିର କୋଠ ଧନ
ପଡ଼ିଆ ପୃଥୀ ଯେତେ ଅଛଇ ମୋହୋର ପୁଣ । ୭୧ ।
ତାହା ତୋତେ ଦିଲା ହୋ ସତ୍ୟ ସତ୍ୟ କରି
ଉଠାଇ[1] ଯେହ୍ନା ଭୋଗ୍ୟ କର ହୋ ଦଣ୍ଡଧାରୀ । ୭୨ ।
ହସ୍ତ ଧରି କନ୍ୟାକୁ ସମର୍ପିଣ ଦିଲା
ଯେହ୍ନାର ଦଶ ଦୋଷ କ୍ଷମା କରିବ ବୋଇଲା । ୭୩ ।
ହାଦୋଳାରେ ବସାଇ ରାଜା ରାଣୀ ରାଜ୍ୟକୁ ଗଲେ
ଚନ୍ଦ୍ର ରୋହିଣୀ ଯେସନେକ ଶୋଭା ସେ ପାଇଲେ । ୭୪ ।
ଦକ୍ଷିଣା ପୃଥିବୀ ଦେଇ ଶୃଗାଳ ବାହାର ହୋଇଲା
ସେ ଭୂମିରେ ସେ ପାଣି ଆହାର ନ କଲା । ୭୫ ।
ଅଷ୍ଟଦିନ ପରଯନ୍ତେ ସେ ରାଜା ପୃଥୀରେ ଚଳିଲା
ଉପାସ ଭୋକ ଶୋଷରେ ଜଳ ଆହାର ନ କଲା । ୭୬ ।
ତାହାର ସତ୍ୟ ଦେଖି ଇନ୍ଦ୍ର ପାଣି ବରଷିଲେ
ଭୂମିରୁ ପାଣି ନ ଖାଇ ଦେହରୁ ପାଣି ସେ ଖାଇଲେ । ୭୭ ।
ସେ ରାଜାର ସୀମାନ୍ତୁ ବାହାର ହୋଇ ଗଲେ
ଯେହ୍ନେକ ସତ୍ୟ ଅନ୍ୟ ଲୋକ ନ ମାନଲେ । ୭୮ ।
ସେ ଭଗ୍ୟଂଜିତର ପୁତ୍ର ହୋଇଲା ଗୁଣଜିତ
ଗୁଣଜିତର ପୁତ୍ର ହୋଇଲା ଶତ୍ରାଜିତ । ୭୯ ।
ଯେହ୍ନାର ପୁତ୍ର ହୋଇଲା ସେ ସମର୍ଥକ
ବାସୁଦେବର ଶଳା ସେ କହଲେ ସତ୍ୟ ନକ । ୮୦—୭୨୪୬ ।

———

[1] ଉଠାଇ—ଉଠିଯିବା କରି ।

# ମଧୁବନ ବୃତ୍ତାନ୍ତ ଓ କନ୍ଧର ଦୈତ୍ୟ ବଧ

ବଦନ୍ତ ଅଗସ୍ତି ଶୁଣ ହୋ ମନୁ ମହତ
ପ୍ରସ୍ତାବ ବାକ୍ୟେ କହିଲ ଶ୍ରୀମହାଭାରଥ ।୧।
ଅଗସ୍ତିଙ୍କି ପୁଚ୍ଛା କଲେ ବଇବସୁତ ମନୁ
ପାଣ୍ଡବେ କେବଣ କୃତ୍ୟ କଲେ ଗହନ ଅରଣ୍ୟ ।୨।
କହନ୍ତ ଅଗସ୍ତି ଶୁଣ ହୋ ଯୁଗପତି
ପାଣ୍ଡବଙ୍କୁ ଦୁର୍ଯୋଧନ ଯେ ହୋଇଲା ନିର୍ଭ୍ରାନ୍ତ ।୩।
ପାଣ୍ଡବେ ପ୍ରବେଶ ଯାଇଂ ଗହନ ଅରଣ୍ୟେ
ଗମନ୍ତ ରାତ୍ର ଦିବସେ ନିର୍ଝରଝର ବନେ ।୪।
ରଜନୀ ପ୍ରଭାତେ ଭୀମଙ୍କୁ ପୁଚ୍ଛନ୍ତ ଯୁଧିଷ୍ଠି
ନିତ୍ୟ କର୍ମ ସାରିବା ବାକୁ ଦେଖନା ପାଣିଢାଟି ।୫।
ସ୍ୱାମୀର ଆଜ୍ଞାଂଯେ ଚଳଇ ବୃକୋଦର
ଭ୍ରମଇ ମାରୁତି ଅଟବୀ ବନ ଘୋର ।୬।
ଖେଦଇ ବନ ଗହନ ଲୋଡଇ ଚଉକତି
ଲୋଡ଼ି ଜଳ ଘାଟ ଯେ ନ ପାଇଲା ମାରୁତି ।୭।
ଦେଢ଼ ପ୍ରହର ଆସି ହୋଇଲା ଦିନକର
ବିଜୟେ ପାବେମା ଯାଇଂ ସରଯୂ ନଦୀ ତୀର ।୮।
ନଦୀର ତୀରେ ଦେଖିଲା ଯେବେ ମଧୁବନ
ଭୂମିରେ ଝଡ଼ି ପଡ଼ିଛି ପକ୍ୱ ଫଳ ମାନ ।୯।
ଆମ୍ବ ପଣସ ଯେ କଦଳୀ ନଡ଼ିଆଳ
ନାନା ଫଳଭରେ ଶାଖା ଲୋଟନ୍ତି ଭୂମିର ।୧୦।
ଭୀମସେନ ପଶିଲା ଯାଇ ମଧୁବନ ଭିତରେ
ସମ୍ପୂର୍ଣ୍ଣ ଆହାର ଯେ କଲା ବୃକୋଦରେ ।୧୧।
ଫଳ ଭାର ଗୋଟିଯେକ ତୋଳିଲା ମାରୁତି
ଯୁଧିଷ୍ଠିରଙ୍କ ପାଇଂ ନେମ ବୋଲି ବଗୁରଇ ତାର ମତି ।୧୨।
ସରଯୂ ନଦୀରେ ପଶି ବୀର ସ୍ନାହାନ ଯେ କଲା
ଭୋଜନ ଆଳସେ ନିଦ୍ରା ଯେ ତାହାକୁ ଘୋଟିଲା ।୧୩।

---

୧୧।୨ ସପୋତେ ଆହାର କରଇ ବୃକୋଦର ।

ଫଳଭାର ଗୋଟି ଯାର ସୀମସ୍ଥାନେ ଦେଇ
ଅଚେତନେ ନିଦ୍ରାରେ ଯେ ଯାର ଶୃଙ୍ଖଳ ସୂକ୍ଷ୍ମ ପାଇ । ୧୪ ।
ମନୁ ପୁଚ୍ଛାକଲେ ଶୁଣିମା ଅଗସ୍ତି ମୁନିବର
ସେହି ମଧୁବନ ତୋଟା ଅଟଇ କାହାର । ୧୫ ।
ଆହେ। ବଇବସ୍ୱତ ମନୁ ପୁଚ୍ଛାକଲୁ ଯାହା
କନ୍ଦର ବୋଲି କର ଅସୁର କୁଳର ଯେ ନାହା । ୧୬ ।
କୁମ୍ଭୀର କଂନ୍ଦର ଯେଉଁ ଅଟନ୍ତି ବେନି ଭ୍ରାଥ
ସୁର ନଦୀ ଭିତରେ କୁମ୍ଭୀରକୁ ମାଇଲା ପବନର ସୁତ । ୧୭ ।
କନ୍ଦର ଦୈତ୍ୟ ଯେ ଯେଉଁହାର କନିଷ୍ଠ ଭାଇ
ମଧୁବନ ତୋଟାର ଠାକୁର ଅଟଇ ଯେ ସେହି । ୧୮ ।
ସେ ଦଇତ ଭୟେର ହାଦେ ତୋଟା ମଧୁବନ
ଅସୁର ଭୟେ ତହିଂ କେହି ନ କରନ୍ତି ଗବନ । ୧୯ ।
ସେ ତୋଟା ପୁରେଣ ଵଜପେ ମାରୁତ
ନିଶଙ୍କେ ଭୀମସେନ ଶୋଇଛି ନିଭ୍ରାନ୍ତ । ୨୦ ।
ମଣୋହିଂ ବେଳେ ଵିଜେ କଲାକ ଅସୁର
ଦେଖଇ ବୁଲି କରି ମଧୁବନ ତୋଟା ପୁର । ୨୧ ।
ମନୁଷ୍ୟ ଗନ୍ଧ ଯହିଂ ଗନ୍ଧାଇଲା ମଧୁବନେ
ଦେଖିଣ ଅସୁର ଯେ ଲୋଡ଼ଇ ତୋଷମନେ । ୨୨ ।
ଯାଇଣ ଭେଟିଲା ସେ ସରଯୂ ନଦୀ ତୀରରେ
ଅସାଷ୍ଟମ ହୋଇ ସେ ଶୋଇଅଛି ବୃକୋଦରେ । ୨୩ ।
ମକର କେତନ ଜାଣି ଦିଶଇ ତାର କାୟେ
ଦେଖିଣ ସାନନ୍ଦ ଯେ ଅସୁରେଶ୍ୱର ଗୟେ । ୨୪ ।
ବୋଇଲା ଆଜର ଦିବସ ଅଟଇ ମୋର ଧନ୍ୟ
ଇଚ୍ଛାୟେ ନରବଳ ଆଜ କରିବି ଭୋଜନ । ୨୫ ।
ନଦୀରେ ପଶି ସ୍ନାହାନ କରଇ କଉଣୋପ
ଭୀମସେନ ସନ୍ନିଧେ ଆସି ବିକାଶଇ ଗରୁତାପ । ୨୬ ।
ନିଦରେ ପାଣ୍ଡବ ଯେ ହୋଇଛି ଅସାଷ୍ଟମ
କୋପେଣ ଗର୍ଜଇ ସେ ଅସୁର ମହା ତମ । ୨୭ ।

ଭୀମସେନ ସନ୍ନିଧେ ଦେଲେକ ଉଞ୍ଚେ ରଡ
ଯେସନେକ ଗିରିବର ଭାଙ୍ଗି ପଡେ ଖଣ୍ଡ । ୨୮ ।
ନିଦ୍ରାଯେ଼ୁଣ କିଛି ନ ଜାଣଇ ମାରୁତି
ପୁଣି ଅସୁର ରଡ ଦେଲା ଭୀମସେନ କଣ୍ଠ । ୨୯ ।
ତଦ୍ୟାପି ନିଦ୍ରା ତାହାର ଭଗ୍ନ ଯେ ନୋହିଲା
ଶାଳ ବୃକ୍ଷେକ ଘେନି ଉପରେ ପ୍ରହାରିଲା । ୩୦ ।
ଭାଙ୍ଗିଣ ବୃକ୍ଷ ଯେ ହୋଇଲା ଶତେକ ଚୂର
ତଦ୍ୟାପି ନିଦ୍ରା ଭଙ୍ଗ ନୋହିଲା ବୃକୋଦର । ୩୧ ।
ପୁଣି ସେ ପର୍ବତେକ ଧରିଣ ବୁଲାଇ
ଭୀମସେନ ବାମ ଅଙ୍ଗେ ପ୍ରହାର କଲା ନେଇ । ୩୨ ।
ପର୍ବତ ଚୂର ହୋଇଲା ଭୀମସେନର ବାମ ଅଙ୍ଗେ ପଡି
ଚଆଁଇ ଉଠିଲା ଘୋରତେ ରେ କାର କରି । ୩୩ ।
ଅସୁରକଇ ସମାସ୍ୟା ଦେଅଇ ପାବନି
କାହିଂର ରେ ପାମର ମୂର୍ଖ ତୁ ଅଗ୍ୟାନି । ୩୪ ।
ପରର ନିଦ୍ରା ଭଙ୍ଗିଣ ନ ଯୋଗାଇ
ଆପଣାର ପୁବ ଶିର ଛେଦନ ଦୋଷ ପାଇ । ୩୫ ।
ଅସୁର ବୋଇଲା ଯେ଼ୁ ମୋହୋର ଅଭୟେ଼ୁ ଭୁବନ ଗୋଷ୍ଠ
ମନୁଷ୍ୟ ହୋଇ କେମନ୍ତେ ବେ ପଶିଲୁ ଯେ଼ୁ ତୋଷ୍ଠ । ୩୬ ।
ଇଷ୍ଟ ଦେବତା ତୋହୋର ସୁମର ରେ ମାନବ
ସଙ୍ଗ୍ୟେ଼ୁ ପାଞ୍ଚି ତୋର ଯୋଡ଼ିଲା ନାଶକର ଦେବ । ୩୭ ।
ତୁହି ସେ ମାନବ ରେ ଅଟୁ ମୋର ଭକ୍ଷ
ଜୀବନ ହରାଇଲୁ ଆଜ ପଡିଲୁ ପ୍ରତକ୍ଷ । ୩୮ ।
ଅସୁର ପ୍ରତଗ୍ୟାଂ ଦେଖି କୋପେଣ ପାବନି
ଗର୍ଜିଣ ଉଠିଲା ସେ ମହା ତେଜ ଘେନି । ୩୯ ।
ଅସୁରକୁ କୋଳ କରି ଧରିଲା ବାମ ଭୁଜେ
କୋପେଣ ଆଚିନ୍ଧଇ ଦୁର୍ଭାର ଦନୁଜେ । ୪୦ ।
ଭୀମସେନକଇ ଧରି ପାଡିଲା ଅସୁରାଧି
ପାଣ୍ଡବ ସୁନ୍ଦର ସେ କାଳାନ୍ତକ ମହାଯୋଧୀ । ୪୧ ।

ପ୍ରଥମେ ସମରେ ସେ ହାରଇ ଶତଶିଂଗର ଶାପେ
ପ୍ରଥମ ଘାନ୍ତ ହାରଲ୍ ବଚନ ଅନୁରୂପେ । ୪୨ ।
ଦୁଷ୍ଟାପୂ ଯୁଦ୍ଧେ ଯେ ଭୀମସେନ ତୁରତେଣ ଉଠି
ଅସୁରକଇ ବୃକୋଦର ଯେ ଫାଡଲ୍ ଲେଉଟି । ୪୩ ।
ମନ୍ଦର ମାଡ ଯେହ୍ନେ ବସଇ ହେମବନ୍ତ
ସତ୍ୟ ଯୁଗେ ଯୁଦ୍ଧେ ଯେହ୍ନେ ଶସ୍ତ୍ର ପରଶସ୍ତ୍ର । ୪୪ ।
ଭୀମସେନ ମାଡ ବସିଲ୍ ଅସୁର ବକ୍ଷସ୍ଥଳେ
ମୁଥେକ ପ୍ରହାର କଲ୍ ପବନ ଦୁଲାଲେ । ୪୫ ।
ବଜ୍ର ପଡନ୍ତେ ପର୍ବତ ଯେହ୍ନେ ପଡଇ ଭାଂଜ
ଭୀମସେନର ମୁଥଘାତେ ଅସୁର ପଡଇ ଗଲଗାଜ । ୪୬ ।
ପୁଣ ପ୍ରହାର ଯେ କଲ୍କ ବୃକୋଦର
ଅସୁର ଶିର ଭାଙ୍ଗି ହୋଇଲ୍ ଶତେ ଦୂର । ୪୭ ।
ଯହୁଂ କନ୍ଦର ଦତ୍ୟକୁ ମାଇଲ୍ ପାବନି
ଆକାଶେ ଶୁଭିଲ୍ ଯେ ସାଧୁ ସାଧୁ ଧ୍ୱନି । ୪୮ ।
ପୃଥିବୀ ଦେବୀ ମାରୁତିକୁ ଅନେକ ସ୍ତୁତି କଲ୍
ତୋହୋର ପ୍ରସାଦେ ଭାରଭର ମୋର ଉଶ୍ୱାସ ହୋଇଲ୍ । ୪୯ ।
ଶରଣ ପଞ୍ଜର ତୁ କଇକ୍ଷା ଜଗକ୍ଷେଠୀ
ପ୍ରତଗ୍ୟାଂ ସାର୍ଥକ ତୁ କ୍ଷତ୍ରୀବର ମହାଶ୍ରେଷ୍ଠୀ । ୫୦ ।
କୁମ୍ଭୀର ଦତ୍ୟକୁ ପ୍ରହାର କଲୁ ଜଳେ
ଗଙ୍ଗା ଉଶ୍ୱାସ ହୋଇଲ ତୋହୋର ବାହୁବଳେ । ୫୧ ।
କାଳେବର ଧାରଣା ତୁ ଶରଣ ପଞ୍ଜର ବୀରଧ୍ୱ
ପ୍ରତଗ୍ୟାଂ ପାଳନ ତୁ ଜୀବନ ତୋର ସାଧୁ । ୫୨ ।
ଯେସନେକ ସ୍ତୁତି ଯେ କଲ୍କ ବସୁଧା
ପୁରୁଷବର ସାଧୁ ତୁ ବଚନ ତୋର ସିଦ୍ଧା । ୫୩ ।
ହିଡମ୍ବକକୁ ବଧ କର ଯେହ୍ନ ହିଡମ୍ବକ ବନେ
ତପୋଧନେ କାରଣ ପାଆନ୍ତୁ ତୋହୋର ପ୍ରସନ୍ନେ । ୫୪ ।

---

୫୦।୨—ପ୍ରତଗ୍ୟାଂ ସାର୍ଥ ତୁ କ୍ଷତ୍ରିୟ ମହାଶ୍ରେଷ୍ଠୀ ।

ଦେବଦତାଙ୍କର ଆଗ୍ୟାଂ ଦୁମ୍ନକୁ ହୋଇଲା ଆକାଶେ
ଯେ ଗୃର ଦତ୍ୟ ବଧ ନିମନ୍ତେ ଦୁମ୍ନନ୍ତ ପେଷିଲେ ବନବାସେ । ୫୫ ।
କିମ୍ମର ଦତ୍ୟ ବଧ କରି ଭୀମସେନ
ଫଳ ଭର କାନ୍ଧେ ପାଡ ପବନର ନାନ । ୫୬ ।
ପତର ଝରି ଯେକ ସିଇଂ ପୁରୋଇଣ ପାଣି
ବାହୁଡଇ ବୃକୋଦର ପବନ ଗତି ଜାଣି । ୫୭ ।
ଯୁଧିଷ୍ଠି ବାଟ ଗୃହ୍ନିଂ ଅଛନ୍ତି ଭୀମସେନକୁ
ବାବୁ ରେ ଅରଜୁନ ଯାଅନି ଥୋକାଯେ ଦୂରକୁ । ୫୮ ।
ଭୀମ ଗଲା ଯେ ଯେତେବେଳ ପରିଯନ୍ତେ
କି ଅବା ପ୍ରମାଦ ତାକୁ ଘଡିଲା ବନସ୍ତେ । ୫୯ ।
ଯେ ମହା ଘୋର ଗହନ ବନ ଯେ ଅଟବ୍ୟା
କେଉଣ ଦାନବ ତାଙ୍କୁ ବିରୋଧିଲା ଅବା । ୬୦ ।
ସ୍ୱାମୀର ଆଗ୍ୟାଂ ନିବେଶିତ ଶିରେ ଘେନି
ଭୀମକୁ ଅନୁସରି ଚଳଇ ଫାଲଗୁନ । ୬୧ ।
କରୁଣାକର ବୋଲି ଯେକ ପର୍ବତ ଗୋଟିଯେ
ସେ ସ୍ଥାନରେ ଭେଟିଲା ଭୀମ ଧନୁର୍ଜୟେ । ୬୨ ।
ଭୀମସେନର ପାଦେ ଅର୍ଜୁନ ଶତ ସହସ୍ର ଦଣ୍ଡ ପରଣାମି
ଅପାର ବେଳତ କିମ୍ପା ବିଳମ୍ବ କଲ ସ୍ୱାମୀ । ୬୩ ।
ଭୀମସେନ ହସିଲା ଅର୍ଜୁନ ବଦନ ଗୃହ୍ନିଂ
କିମ୍ମର ବୋଲି ଦତ୍ୟେ କୁମ୍ଭୀର ଦତ୍ୟର ସାନଭାଇ । ୬୪ ।
ମଧୁବନ ତୋଟାପୁରେ ମୋତେ ସେ ବିରୋଧି
ମହା ବଳବନ୍ତା ସେ ଅସୁରେଶ୍ୱର ମହାଯୋଧୀ । ୬୫ ।
ଅନେକ ଦ୍ୱନ୍ଦ ହୋଇଲା ତାହାର ମୋହୋର
ସଂଗ୍ରାମେ ବଧିଳି ସେ ଅସୁରେଶ୍ୱର ବୀର । ୬୬ ।
ତେଣୁ କରି ବିଳମ୍ବ ହୋଇଲା ଫାଲଗୁନ
ଅପ୍ରମାଦେ ଅଇଲି ଯେ ପଙ୍କୁ ଫଳ ଭର ଘେନି । ୬୭ ।
ଭୀମ ଅର୍ଜୁନ ଦୁହେଂ ହୋଇଲେ ସମ୍ଭାଷି
ଯୁଧିଷ୍ଠି ଦେବଙ୍କ ସ୍ଥମୁରେ ହୋଇଲେକ ଆସି । ୬୮ ।

ଜଳ ଉଦକେ ସ୍ନାହାନ କରନ୍ତି ଧର୍ମସୁତ
ସ୍ମୁରେ ଅର୍ଜୁନ କହଇ ଅସୁର ବଧର ବାରତ । ୬୯ ।
ଶୁଣିଣ ଯୁଧିଷ୍ଠି ମହା ବିଷାଦ ଯେ ଚିତ୍ତେ
ଅସୁର ଭୁଲେ ଦ୍ୱନ୍ଦ ତୁ ଏକା ବାବୁ ରେ ଭିଆଇଲୁ କେମନ୍ତେ । ୭୦ ।
ସାଖା ସହୋଦର ବାବୁ ସଙ୍ଗତେ ନାହିଂ କେହି
ଆର ବେଳେ ଏତେ ସାହାଯ ତୁ ନ କରିବୁଟି ମୋର ଭାଇ । ୭୧ ।
ଭୀମସେନ ବୋଇଲା ସ୍ୱାମୀ ଯନ୍ତୁନେ ନ ଲୋଡଇ
ପାଇଲେ ନ ଛାଡଇ ଦେବ ଗ୍ରତ ମୋର ଏହି । ୭୨ ।
ସ୍ନାହାନ ତର୍ପଣ ଯେ ସାରିଲେ ଜପ ମନ୍ତ୍ର ଦେବ ପୂଜା
ଫଳ ଭୋଜନେ ବିଜୟେ ଧର୍ମର ଆତ୍ମଜା । ୭୩ ।
ଭୋଜନ ସାରି ଦେବ କଲେ ଆଚମନ
ଭୋଜନ ଆଳସ୍ୟେ ଦେବ କଲେକ ଶୟନ । ୭୪ ।
ଏକା ଫଳ ଭରକେ ଦେବ ବଞ୍ଚିଲେ ତିନି ଦିନ
ପଞ୍ଚ ଦିବସ ରହିଲେ ସେହି ବନରେଣି । ୭୫ ।
ସେ ବନରୁଂ ଚଳନ୍ତି ଦେବ ଗହନ ଘୋର ଗ୍ରାହି
ସର୍ପିଣୀ ନାମେ ନଦୀ ଗୋଟି ଯମୁନା ନଦୀରୁ ଯେ ବହି । ୭୬ ।
ସେ ନଦୀର ତୀରେ ଯାଇଂ ପ୍ରବେଶ ହୋଇଲେ
ପାରିଭୋଜ ପର୍ବତେ ଯାଇଣ ରହିଲେ । ୭୭ ।
ଖାଇବ ଫଳ ମାନ ଲୋଡ଼ି ନ ପାଇଲେ ଘୋର ବନେ
ଅଖାଇବ ଫଳ ତହିଂ ଲମ୍ବଇ ଗହନେ । ୭୮ ।
ତୁଳ ମାସ ଶୁକ୍ଳ ପକ୍ଷ ଚତୁର୍ଦଶୀ ଶନିବାର
ଅଶ୍ୱିନୀ ନକ୍ଷତ୍ର ଭୋଗ ସେ ଦିନର । ୭୯ ।
ତୈତ୍ତୁଲ୍ୟ ନାମେ କରଣ ବରୀୟାନ ନାମେ ଯୋଗ
ବିଛୁ ଅଙ୍କରନ୍ତିକ ପଚିଶି ଦିବସ ଭୋଗ । ୮୦ ।
ସେ ଦିନ ପାଣ୍ଡବେ ସେ ସର୍ପିଣୀ ନଦୀ କୂଳେ
ନିରାଶେ ବଞ୍ଚିଲେ ସେ ନ ପାଇ କନ୍ଦମୂଳେ । ୮୧ ।
ବାଘ ଭାଲୁଙ୍କ ମଦ୍ୟେମତ୍ତ ହସ୍ତୀ
ଏ ଜୀବମାନେ ତହିଂ ଅଛନ୍ତି ଅପ୍ରମିତି । ୮୨ ।

---

୭୩।୧ ସ୍ନାହାନ ତର୍ପଣ ସାରି ଅଜପା ମନ୍ତ୍ର ବଳେ ପୂଜା ।

ଅଖାଇଦ ଫଳ ଭକ୍ଷନ୍ତ ପୃଥ୍ଵୀର କାର୍ଯ୍ୟ କରି
ଧର୍ମ ଉଦ୍ଧତ କରାନ୍ତ ଆପଣେ ଦୁଃଖ ପଡି । ୮୩ ।
ଅନେକ ଦୂର ମୃଗ ଯେ ଖେଦନ୍ତି ମହା ବୀରେ
ଗଣ୍ଡା ହରିଣ ମାରି ଖାନ୍ତି ଶତ୍ରୁର ଗ୍ରନ୍ଥଣା ବଧାନରେ । ୮୪ ।
ଆକାଶକୁ ଲାଗିଛନ୍ତି ଶାଳ ବୃକ୍ଷମାନେ
ଅନେକ ଛନ୍ଦେ ଯେ ବହରନ୍ତି ଘୋର ବନେ । ୮୫ ।
ବଡ ସୁସ୍ଥ ପାଇଣ ରହିଲେ ପଞ୍ଚୁ ଛତ୍ରୀ
ଜନ ମନୁଷ୍ୟ ଆତାଗମ ନାହିଂ ନା ନଗ୍ର କତି । ୮୬ ।
ଅଗର ଚନ୍ଦନମାନ ଅଛନ୍ତି ଅପ୍ରମିତେ
ଖାଇଦ ଫଳମାନ ନ ପାଇଲେ ସେ ବନସ୍ତେ । ୮୭ ।
ମୃଗୟା ବହାରେ ମାରନ୍ତି ବନ ଜୀବ
ଶତ୍ରୁର ବଧି ଗ୍ରନ୍ଥଣାରେ ବୃତନ୍ତି ପାଣ୍ଡବ । ୮୮ ।
ନର୍ମଳ ଠାବ ଦେଖି ସେ ରହିଲେ ବନସ୍ତେ
ଦତ୍ୟ ଦାନବ ରାକ୍ଷସ ନାହିଂ ବୃତନ୍ତି ବଡ ସୁସ୍ତେ । ୮୯ ।
ପର କୁଡଯ୍ୟା ଆଶ୍ରମ କରି ବ୍ରତନ୍ତି ବନବାସ
ସେ ବନେ ରହିଲେ ପାଣ୍ଡବେ ତିନି ଯେ ଦିବସ । ୯୦—୬୩୩୪ ।

---

## ହିଡିମ୍ବକ ବଧ ଓ ଘଟୋତ୍କଚ ଜନ୍ମ ବୃତ୍ତାନ୍ତ

ବଇଶାଖ ଶୁକ୍ଳ ଯେ ପୌର୍ଣ୍ଣମୀର ତିଥି
ଅନୁରାଧା ନକ୍ଷତ୍ର ଯେ ବାର ବୃହସ୍ପତି । ୧ ।
ଆକାମାବେଁ ସ୍ନାହାନ କରିବା ନିମନ୍ତେ
ପୁନ୍ୟତୋୟା କୂଳକୁ ଚଳନ୍ତି ପଞ୍ଚୁ ଭ୍ରାଥେ । ୨ ।
ସେ ପୁନ୍ୟତୋୟା ନଦୀରେ ସ୍ନାହାନ କରି ପିଣ୍ଡ ଦାନ ଦିଲେ
ସେ ସରସ୍ଵତୀ ନଦୀ ତୀରେ ପାଞ୍ଚ ଦିବସ ରହିଲେ । ୩ ।
ତହୁଂ ଚଳନ୍ତି ସେ ଘୋର ଗହନ ବନେ
ପ୍ରବେଶ ହୋଇଲେ ସେ ହିଡମ୍ବକ ବନେ । ୪ ।

---

୮୯।୨   ଦତ୍ୟ ଦାନବ ମାରି ବଞ୍ଚନ୍ତି ବଡ ସୁସ୍ତେ ।

ହିରଣକେଶୀ ନାମେ ଯେବ୍କ ନଦୀ ଗୋଟି
ଆକାଶ ଗଙ୍ଗାଉଂ ସେ ସାଗର ସଙ୍ଗମେ ଯେ ଫୁଟି । ୫ ।
ସେ ନଦୀର କୂଳେ ବିଜେ ପଞ୍ଚୁ ଯେ ପୁରୁଷେ
ବିପାକ କର୍ମେ ସେ ଖେଦନ୍ତି ବନବାସେ । ୬ ।
ଦେଖନ୍ତି ହିତମ୍ବିକ ବନ ଅଛଅ ବୃକ୍ଷାଳ
ଅବସନ୍ତେ ବସନ୍ତ ତହିଂ ଅଛୁ ପକ୍କ ଫଳ । ୭ ।
ଆମ୍ବ ପଣସ ଯେ କଦଳୀ ନଟିକାଳ
ଜାମ୍ବୁ ଜମ୍ବିଳ ତାଳ ତମ୍ବାଳ କଣ୍ଟାହୋଳ । ୮ ।
ଅବସନ୍ତେ ବସନ୍ତ ଯେ ଲୋଡିଲେ ତହିଂ ପାଇ
ଯାହା ମନେ ଇଚ୍ଛା କରି ସମ୍ପଦ ହୋଇ ସେହି । ୯ ।
ବଡାଇ ବିସ୍ତାର ବନ ପାଞ୍ଚ ଯୋଜନ ସ୍ଥଳୀ
ନଦୀ ପ୍ରତି ନଦୀ ଜଳ ମାଡଇ ବେନି ତଳ । ୧୦ ।
ବନ ଦେଖି ସାନନ୍ଦ ଉଚ୍ଛର୍ଗ ପଞ୍ଚୁଜନ
ବିହିତନ୍ତି ଦାରିକ୍ଷ ଫଳ କରନ୍ତି ଭୋଜନ । ୧୧ ।
ଫଳ ଭକ୍ଷନ୍ତେ ଭଞ୍ଜିଲ କ୍ଷୁଧା ଖେଦ
ମଳୟ ପବନ ଲାଗି ମାଡିଲା ଘୋର ନିଦ । ୧୨ ।
ଯୁଧିଷ୍ଠିର ବୋଇଲେ ବାବୁ ଶୁଣ ଭୀମସେନ
ନିଦ୍ରା ଯିବି ଦଣ୍ଡେ ବାବୁ ଜାନୁ ଦିଅ ସୀମଥାନ । ୧୩ ।
ଭୀମସେନ ଜାନୁରେ ସୀମଥାନ ଦେଇ
କାଶୀ ନଦୀ ତୀରେ ଶୁତିଲେ ଚାରିଭାଇ । ୧୪ ।
ନିଦ୍ରାର ଆଳସେ ଶୋଇଲେ କୋଇନ୍ତୀ ଦେବୀ ଆସି
ମହା ଶ୍ରମେ ନିଦ୍ରା ମାଡିଲା ଆହାର ପୁଷ୍ଟି ପାଇ । ୧୫ ।
ବହୁତ ଆହାରେ ସେ ବହୁତ ଯେ ନିଦ୍ରା
ଆମ୍ଭା ନ ଅଗୋଚର ଭଞ୍ଜିଲ ପଞ୍ଚୁ ମୁଦ୍ରା । ୧୬ ।
ଶୁତିଲେ ପାଣ୍ଡୁର ନନ୍ଦନେ ହୋଇଲେ ଅସାକ୍ଷମ
କୁଶ ଶେଯ୍ୟାପ୍ରେ ଶାଳ ପତ୍ର ପାଡି ଶୁତିଲେ ଦେବ ଧର୍ମ । ୧୭ ।
ଭୀମସେନ ଜଗିଅଛୁ ସୀମଥାନେ ବସି
ଆନନ୍ଦଙ୍କ ଅସ୍ତକାଳ ହୋଇଲାକ ଆସି । ୧୮ ।

ଦେଖିଣ କ୍ରୋଧ ଯେ କରଇ ମାରୁତି
ଆମ୍ଭନ୍ତ ଉପୁଜାଇ କୋଇନ୍ତା ପାଇଲୁ ପୁତ୍ରେ ଶାସ୍ତି । ୧୯ ।
କୋନ୍ତଧ୍ୱଜ ରାଜାର ଗୋ ଅଟୁ କୁଳର ମଣ୍ଡଣୀ
ସୋମବଂଶ ଠାକୁରାଣୀ ଗୋ ଅଟୁ ପଣ୍ଡୁରାଜାର ପାଟରାଣୀ । ୨୦ ।
ନିରଞ୍ଜନ ଦେବତା, ପବନ ଦେବତା, ବାସବ ତୋହୋର ପତି
ଆମ୍ଭନ୍ତ ଜୀବନ ଥାଉଂ ମାତା ଗୋ ତୋହୋର ପୁତ୍ରେକ ଯେ ଶାସ୍ତି । ୨୧ ।
ଧିକ ଧିକ ଆମ୍ଭର ଜୀବନ ଯେ କ୍ଷତ୍ରୀୟ କୁଳର
ବଳ ଦର୍ପ ଥାଉଂ ଯେ ହୋଇଲୁଂ ହୀନ ଗୁର । ୨୨ ।
ଭୋ ସ୍ୱାମୀ ଯୁଧିଷ୍ଠି ତୁ ପ୍ରତକ୍ଷେ ନିରଞ୍ଜନ
ଯାହାର ପାଦେ ନାରାୟଣେ କରନ୍ତି ବନ୍ଦନ । ୨୩ ।
ଅଜାତଶତ୍ରୁ ଦେବ ଧର୍ମ ନୃପ ଯୁଧିଷ୍ଠି
କର ଲେଉଟାନ୍ତେ ଯାର ଲେଉଟଇ ନବସୃଷ୍ଟି । ୨୪ ।
ଦିବ୍ୟ ସୁପାତି ଦେବ ଶେଯ୍ୟା ଯୁଗତେ
ସେଥେ ନିଦ୍ରା ସ୍ୱାମୀ ତୋତେ ମାଡିଲା କେମନ୍ତେ । ୨୫ ।
ଅର୍ଜୁନ ବଦନ ଗୃହ୍ନଂ ନିରେଖଇ ଭୀମସେନ
ବାବୁ ବାସବର ପୁତ୍ର ତୋତେ ବାସୁଦେବେ ଅଭିନ୍ନ । ୨୬ ।
କୋଳରେ ବସାଇ ତୋତେ ଶ୍ରୀ ପୁରୁଷୋତ୍ତମ
ନାରାୟଣ ଦିଲେ ତୋତେ ଦୁଷ୍ଟକୃଷ୍ଣ ନାମ । ୨୭ ।
ସେ ମହୀମଣ୍ଡଳେ ତୋତେ ନାହିଂ ଛତ୍ରୀ ବଳବନ୍ତା
ସୁରବର ସୁନ୍ଦର ତୁ ତ୍ରୈଲୋକ୍ୟ ଜିଣନ୍ତା । ୨୮ ।
କାହାର ଭୟେଣ ବାବୁ ତୋହୋର ପୁତ୍ରେକ ଯେ ଶାସ୍ତି
ଯୁଧିଷ୍ଠିଙ୍କ କଲା କୃତ୍ୟ ଆମ୍ଭଙ୍କୁ ପୁତ୍ରେକ ଦୁର୍ଗତି । ୨୯ ।
ନକୁଳ ବଦନ ଗୃହ୍ନଂ ଭୀମସେନ ପରଶଂସି
ବାବୁ ଶରଦ ପୌର୍ଣ୍ଣମୀ ଚନ୍ଦ୍ର ଜାଣି ତୋହୋର ବଦନ ପ୍ରକାଶି । ୩୦ ।
ଅତି ସୁକୁମାର ରେ ଅଟୁ ମୋହୋର ବାପ
ଅଶ୍ୱିନୀ ନନ୍ଦନ ତୋତେ ଜାଣନ୍ତି ବୃନ୍ଦାଅର୍କ । ୩୧ ।
ଆକାଶେ ପାଟ ତୋତେ ଅଛି କୁମାର ମୁଖେ
କେବଣ ପାତକେ ରେ ବାବୁ ତୋହୋର ପୁତ୍ରେ ଦୁଃଖେ । ୩୨ ।

ମାଛି ଗୋଷ୍ଠିଏ ଯେବେ ଶଯ୍ୟାରେ ତୋହୋର ବସି
ଶତେ ପଳ ଚନ୍ଦନ ଶଯ୍ୟରେ ଚୋର ଘଷି । ୩୩ ।
ବେଲୁଣ୍ଟ ତୁଳୀ ଉପରେ ନେତର ସୁପାତ
ତହିଂ ତୋତେ ନିଦ୍ରା ନ ମାଡଇ ନିଶାରାତ । ୩୪ ।
ନେତର ଶେଯ୍ୟା ଉପରେ ବାବୁ ପୁଷ୍ପର ପାଖଡ
ତାହାଂର ଉପରେ ଯେ କର୍ପୂର ଗୁଣ୍ଡି ସିଞ୍ଚାଡ । ୩୫ ।
ତହିଂ ତୋତେ ନିଦ୍ରା ନ ମାଡଇ ରେ ଭାଇ
ଏବେ ଶାଳ ପତ୍ର ଶେଯ୍ୟାଏ କେସନେ ଶୁତିଲୁ ସୁସ୍ଥ ହୋଇ । ୩୬ ।
ବାବୁ ସହଦେବ ରେ ମନ୍ତ୍ରୀ ଚୂଡାମଣି
ଆରେ କରକୁ ବ୍ରହ୍ମାଂଣ୍ଡେଣ ତୋତେ ଚତୁର୍ଦ୍ଦଶ ଭୁବନ ବାରତା ଜାଣି
ଭୂତ ଭବିଷ ବର୍ତ୍ତମାନ ତୋତେ ଦିଶଇ ଗତ ଯେ ଆଗତ
ଆମ୍ଭର ଭୁଲେ ବାବୁ ରେ ପାଇଲୁ ଏତେ ଦୁଖ ଭ୍ରାଥ । ୩୮ ।
ଏ ତୋହୋର ଅବସ୍ଥା ବାବୁ କଷ୍ଟମାନ ଦେଖି
ଜଳି କର୍ମେ ନ ଯାଇ ଏ ମୋହୋର ବେନି ଆଖି । ୩୯ ।
କାହାକୁ ଭଏ ଆମ୍ଭନ୍ତ ଅଛଇଂ ଶିଏଲେକେ
କୁରୁବଳ ଯାକ ସବୁନ୍ତ ମାରି ପାରଇ ମୁଂ ଏକେ । ୪୦ ।
ବଚନ ଦରିଦ୍ର ହୋଇ ତୁ ନାଶଗଲୁ ସ୍ୱାମୀ
ସମ୍ପଦ ଥାଉଂ କର୍ମେ ବିପଦେଣ ଭ୍ରମି । ୪୧ ।
ଏଯନେକ ବଗ୍ଭର ସେ କ୍ରୋଧ କରଇ ବୃକୋଦର
ହିରଣ୍ୟ ପର୍ବତେ ଥାଇ ଶୁଣିଲା ହିଡମ୍ବକ ଅସୁର ମହାବୀର । ୪୨ ।
ହିଡମ୍ବିକା ନାମେଣ ତାହାର କନିଷ୍ଠ ଭଗ୍ନେଣୀ
ତାହାକୁ ଗଇ ବୋଇଲା ଅସୁର ମୂଢ ଯେ ଅଗ୍ୟାନୀ । ୪୩ ।
ଆସି ଜିଭ୍ର ସ୍ରବଣ କଲା ସୁଲ୍ଲତ ମୋହୋର
ନରବଳ ପ୍ରବେଶ ହୋଇଲା ଆଜ ଏହି ବନସ୍ତର । ୪୪ ।
ଯାଅନି ତଳେଣ ଗୋ ବେଗ ଏହିକ୍ଷଣ
ମାନୁଷ୍ୟ ଭକ୍ଷ ମିଳିଲା ଘେନୁକୁ ମୋର ଆଣ । ୪୫ ।
ଭ୍ରାଥାର ବଚନେ ଚଳଇ ହିଡମ୍ବିକା
ନର୍ଦ୍ଦର ଘୋର ବନସ୍ତେ ଯାଇଣ ସେ ଦେଖି । ୪୬ ।

ଦେଖିଲାକ ବସି ଅଛଇ ପବନର ତନୟେ
ହସଇ ମାରୁତି ଯେ ଅନଙ୍ଗ ରୂପ ପ୍ରାୟେ । ୪୭ ।
ଦେଖିଣ ଦାନବୀ ଯେ ମଦନ ଶରେ ଘାରି
ଅସାମ୍ଭାଳ ହୋଇଲା ଧର୍ମି ଧର୍ମି ସୁମରି । ୪୮ ।
ଅସୁରୀ ରୂପ ଛାଡିଲା ଯେ ମଦନେ ଅସାମ୍ଭି
କାମସେଣା ପ୍ରାୟେ ହୋଇଲା ରୂପ ଗୋଷ୍ଠି । ୪୯ ।
ଅଙ୍ଗ ସୁକୁମାରୀ ମାନନୀ ମାନରୂପୀ
ମଦନ ଶର ଶରୀରେ ତାହାର ଯେ ବ୍ୟାପି । ୫୦ ।
ଭୀମସେନର ପାଦ ତଳରେ ହୋଇଲା ପରଣାମି
ବୋଇଲା କାମଜଳ ସାଗରୁ ମୋତେ ଉଦ୍ଧାରି ଧର ଦେବ ସ୍ୱାମୀ । ୫୧ ।
ଭୀମସେନ ଆଶ୍ଚର୍ଯ୍ୟ ହୋଇଲା ତାହାର ବଚନେ
ଦେବ ସ୍ତ୍ରୀ ପ୍ରାୟେ ଦିଶୁ ମା ଗୋ ଥିଲୁ କେଉଣ ଭୁବନେ । ୫୨ ।
ଅନେକ ଆଭରଣ ଭୂଷଣ ତୋହୋର ଯେ କାୟେ
ପ୍ରତକ୍ଷେ ଦିଶୁ ତୁ ଯେ ଆକାଶ ରମ୍ଭା ପ୍ରାୟେ । ୫୩ ।
ସଦାଶିବର ଘରଣୀ ତୁ ଗୋ ଅଟୁ କି ପାର୍ବତୀ
ପଦ୍ମ ବନ ତେଜି କି କମଳା ଉତପତ୍ତି । ୫୪ ।
ମୁହିଁ ମାନବ ଅଟଇ ମହାଦୁଃଖୀ
ତୁ କମ୍ପାଇ ଇଚ୍ଛା କରୁ ଗୋ ଶରଦ ଚନ୍ଦ୍ରମୁଖୀ । ୫୫ ।
ତୁକୁହିଁ ବର ଗୋ ଯୋଗାଇ ଅନଙ୍ଗ ସୁନ୍ଦର
ସେ ମୋହୋର ଅବସ୍ଥା କାଳେ କସ ଶୃଙ୍ଗାର ତୋହୋର । ୫୬ ।
ତୁ ଯେବେ ଶୃଙ୍ଗାର ଇଚ୍ଛିଲୁ ମହାମାୟି
ଅଳକା ନାଥ ତୋତେ ବର ପଣରେ ଯୋଗାଇ । ୫୭ ।
ଗୁଡଣ ମେଲ ଗୋ ମୋହୋର ମନାଷା
ସେ ଦୁଖ କାଳେ ତୁ କମ୍ପା ବଢାଇଲୁ ଆଶା । ୫୮ ।
ଭୀମସେନ ହିଡମ୍ବିକା କଥା ଶୁଣନ୍ତେଣ ତହିଁ
ହିଡମ୍ବକ ବମୁଖ ହୋଇ ହିଡମ୍ବିକା ବାଟ ଗୁହିଁ । ୫୯ ।
ଭୀମସେନ ପଚାରଇ ଗୋ ତୁ ଅଛୁ କାହାର କତି
କେ ତୋହୋର ସ୍ୱାମୀ ତୁ କାହାର ଯୁବତୀ । ୬୦ ।

ନିଷ୍ଫଳ ଜୀବନ ତୋର ହୋଇଲା କସ ଅର୍ଥେ
ନିଜ ସ୍ୱାମୀ ଛାଡ଼ି କମ୍ପା ପରଦାରା ଇଚ୍ଛୁ ମୋତେ । ୬୧ ।
ହିଡ଼ମ୍ବିକା ବୋଇଲା ତୁ ଶୁଣ ପ୍ରାଣ ପତି
ହିରଣ୍ୟ ଦୈତ୍ୟ ବୋଲି ନିଦାଘ କୁଳେ ଉତପତ୍ତି । ୬୨ ।
ତାହାର ପୁତ୍ର ଯେ ଦାନବ ଜପାସୁର
ଜପାସୁର ନନ୍ଦନ ହାଦେ ଅସୁର ମହାଘୋର । ୬୩ ।
ଘୋରମୁଖର ନନ୍ଦନ ଦାନବ ରୁଦ୍ରମାଳୀ
ତାହାର ନନ୍ଦନ ଯେ ଅସୁର ବଂଶମାଳୀ । ୬୪ ।
ଯେହୁ ଦାନବର ପୁତ୍ର ଯେ ଭାସ୍କର ଅସୁର
ଯେହାର ନନ୍ଦନ ଯେ କେତୁମାଳୀ ବୀର । ୬୫ ।
କେତୁମାଳୀର ପୁତ୍ର ଅସୁର ପ୍ରଳମ୍ବା
ପ୍ରଳମ୍ବାର ନନ୍ଦନ ଦୈତ୍ୟ ବୀର ଅମ୍ବା । ୬୬ ।
ଅମ୍ବାର ନନ୍ଦନ ଯେ ନିବାତ କପଟ
ନିବାତର ନନ୍ଦନ ବଜ୍ର ଯେ କପଟ । ୬୭ ।
ବଜ୍ର କପଟର ଚାରି ପୁତ୍ର ଉପୁଜିଲା
କୁମ୍ଭୀର କନ୍ଦର ବକ ହିଡ଼ମ୍ବକ ନାମ ହେଲା । ୬୮ ।
ସେ କୁମ୍ଭୀର ଦୈତ୍ୟ ଅଛି ସୁର ନଦୀ ଭିତରେ
ସେ କନ୍ଦର ଦାନବ ଥାଇ ଯେ ମଧୁବନ ତୋଟାରେ । ୬୯ ।
ହିଡ଼ମ୍ବକ ଦୈତ୍ୟ ଅଛଇ ଯେହ୍ନେ ହିଡ଼ମ୍ବକ ବନେ
ବକ ରାକ୍ଷସ ଅଛି ଯେକଚକ୍ରା ନଗ୍ର ଭୁବନେ । ୭୦ ।
ଯେହୁ ଚାରି ଭାଇଙ୍କର ମଧ୍ୟେ ମୁଂ ଅଟଇ ଯେକ ହିଂ ବହେଣୀ
ହିଡ଼ମ୍ବିକା ନାମ ମୋହୋର ଶୁଣ ହୋ ବୀରମଣି । ୭୧ ।
ମୁକୁ କାହାକୁ ହିଂ ପ୍ରଦାନ ନ କଲା ଦଇବା
ଯୁବା ବୟେସ ହୋଇଲା ମୁଂ ଅପ୍ରତିଷ୍ଠା ବରହିତା । ୭୨ ।
ଯେତେବେଳେ ସ୍ୱାମୀ ପାଇଲି ମୁହିଂ ତୋତେ
ଯେହୁ ଅସୁର ଭୋଗ ଭୂମି ଯେ ପଶିଲ କେମନ୍ତେ । ୭୩ ।
ହିଡ଼ମ୍ବକ ଦୈତ୍ୟ ପେଷିଲାକ ରାଇ ମୋତେ
ମୁହିଂ ଅଇଲି ତୁମ୍ଭନ୍ତ ଧରି ନେମାର ନିମନ୍ତେ । ୭୪ ।

ନର ମାନୁଷ୍ୟ ତୁମ୍ଭେ ଆମ୍ଭର ଭକ୍ଷ ଯିନା ସ୍ୱାମୀ
ମୁହିଂ ଅଇଲ ତୁମ୍ଭନ୍ତ ଅନ୍ତଃକ୍ଷେ ଧରି ନେମି । ୭୫ ।
ତୋହୋର ରୂପ ଦେଖି ମଦନେ ଆରତ୍ତ
ଗୁଞ୍ଜଲ ଲଜ୍ଜା ମୁଂ ସୋଦରରେ ନ କଲଇଂ ଖ୍ୟାତ । ୭୬ ।
ସୋଦରନ୍ତ ଗୁଡ ମୁଇଂ କଲ କାମ ଇଚ୍ଛା
ତୁମ୍ଭକୁ ହିଂ ମାଗଇ ପ୍ରସନ୍ନ ହୋଇ ପୂରାଅ ମନବାଞ୍ଛା । ୭୭ ।
ସେହୁନେକ ସମୟେ ହିଡମ୍ବକ ହିଡମ୍ବିକାର ବଳମ୍ବ ଦେଖି
ଧାମଇ ହିଡମ୍ବକ ଧର୍ମିକୁ ଉପେଖି । ୭୮ ।
କାଳାନ୍ତେକ ଅସୁର ସେ ପ୍ରତଗ୍ୟାଂ ସାମରଥା
ଆକାଶ ମଣ୍ଡଳେ ଯାଇ ଲାଗିଛି ତାହାର ମଥା । ୭୯ ।
ବାମ କରେ ପର୍ବତ ଡାହାଣ କରେ ବୃକ୍ଷ
ଅନ୍ତୟେ ମନ୍ଦର ଗିରି କି ଉଡି ଆସଇ ପ୍ରତ୍ୟକ୍ଷ । ୮୦ ।
ଖାଂକର କେଶ ଦିଶଇ ଭଇରୋବ ରୂପ ଜାଣି
ଦିଗ ଶୂନ୍ୟ ମଣ୍ଡଳ ଦିଶଇ ଯେନ ପାଣି । ୮୧ ।
ତମ୍ବାରନ୍ଧ୍ର ପ୍ରାୟେକ ଦିଶଇ ଯେନ ଆଖି
ଦୂରର ଥାଇଣ ତାହା ଦେଖିଲ ହିଡମ୍ବିକା । ୮୨ ।
ଲହ ଲହ ଜିହ୍ୱା ଦଶନ ବିକଟ
ରେ ରେ କାର ଶବଦେ ଖଂକାଳ କାକଂଲ ପେଟ । ୮୩ ।
ଆରେ ଆରେ ବୋଲି ଅସୁର ଆସଇ ଧାମି
ହିଡମ୍ବିକା ବୋଇଲ ବଦନ ପଲା ସ୍ୱାମୀ । ୮୪ ।
ଆସୁଅଛି ହିଡମ୍ବକ ମହା ବଳିଷ୍ଠ
ଯାହାର ଭୟରେ ଆସନ ଗୁଡଇ ସୁରଶ୍ରେଷ୍ଠ । ୮୫ ।
ପାଞ୍ଚବେଳ ଧାଡ ଦିଲ ଅମର ସ୍ୱର୍ଗକୁ
ବଜ୍ର ଯେନ ବାସବ ପିଟିଲ ସେହାର ବୁକୁ । ୮୬ ।
କୋଟିଏ ରଶ୍ମିର ତେଜ ଯେବଣ ବଜ୍ରଶକତ
ସେ ଶକ୍ତ ବଞ୍ଚାଇଲ ଅସୁର ମହାକ୍ଷେତ୍ରୀ । ୮୭ ।
ତାହାକୁ ସଂଗ୍ରାମେ ସମାନ ନାହିଂ କେହି
ବଜ୍ରେଣ ନବାଣ ସେ ଅସୁରର ଦେହି । ୮୮ ।

---

୮୧ । ' — ଦିଶିଲ ମୁର୍ଦ୍ଧନ, ଗଗନେ ଆଚ୍ଛେଦଇ ଯେନ ପାଣି ।

ସ୍ତେ ମୋହୋର ବଚନ ସ୍ୱାମୀ ଶୁଣିମା କରୁଡାନ୍ତେ
ଅସୁର ମୁଖୁଂ ପଳାଇବେ ବାଟ ନାହିଂ ତୋତେ । ୮୯ ।
ସ୍ଥେକା ପଦାଣ୍ଡକେ କୋଶେ ଯାଇ ଖେପି
ପୃଥୀ ଡେଇଂତେ ପାରେ ସେ ଅସୁର କାମରୂପୀ । ୯୦ ।
ଅସୁର ନିକଟ ହୋଇଲା ଆସି ପାଞ୍ଚ ଯୋଜନ
ନୁଆରିବ ପଳାଇ ତୁମ୍ଭେ ଛଅ ଜଣ । ୯୧ ।
ମୋହୋର କାନ୍ଧରେ ତୁମ୍ଭେ ସମସ୍ତେହିଂ ବସ
ଅନ୍ତରୀକ୍ଷେ ତୁମ୍ଭନ୍ତ ମୁଂ ଘେନି ଯାଇଂ ଅବଶ୍ୟ । ୯୨ ।
ଭୀମସେନ ବୋଇଲା ଗୋ ଜାଣିଲି ତୋର ମନ
କାନ୍ଧରେ ବସାଇ ତୁ ସବୁନ୍ତ ଗିଳବୁ ବହନ । ୯୩ ।
ହିଡମ୍ବିକା ବୋଇଲା ଯେବେ ଅପ୍ରତେ କଲୁ ମୋତେ
ଅଲଙ୍ଘିତ ନିୟମ ମୁଂ କଲି ହିବାର ସତ୍ୟ ସତ୍ୟେ । ୯୪ ।
ଯେବେ ସ୍ୱାମୀ ତୋହୋର ହୋ ଅଛଇ ପରାକ୍ରମ
ଅସୁରର ତୁଲେ ତୁ କରସି ସାଂଗ୍ରାମ । ୯୫ ।
ଯଦ୍ୟପି ହିଡମ୍ବକ ଅଟଇ ମୋର ଭାଇ
ତାହାର ଭୟେ ମୋତେ ବର ନାହିଂ କେହି । ୯୬ ।
ତୁ ମୋହୋର ବଲ୍ଲଭ ବଢିଲା କାମ ଖେଦ
ତୋହୋର ମୋହୋର ତ ସ୍ନେହକଲ୍ପ ଅଭେଦ । ୯୭ ।
ତାହାର ମୃତ୍ୟୁ ଭେଦ କହଇ ତୋତେ ସାଧ
ଯେବଣଠାରେ ମାଇଲେ ଅସୁର ହେବ ବଧ । ୯୮ ।
ଭୀମସେନ ବୋଇଲା ମୋତେ କହସି ପ୍ରିୟବାକ୍ୟ
ହୋଇଲୁ ଭାରିଯା ମୋହୋର ହିବାର ସତ୍ୟ ସତ୍ୟ । ୯୯ ।
ସ୍ୱାମୀ ବିଶ୍ୱନାଥ ତପେ ତୋଷିଲା ନବ ସହସ୍ର ବରଷ ପରଯନ୍ତେ
ବୋଇଲା ତ୍ରୈଲୋକ୍ୟ ଯୋଡିବ ମୁଇଂ ବିଶ୍ୱରୂପେ ବିଶ୍ୱନାଥେ ।୧୦୦ ।
ଦେବ ଦାନବ ମାନବ ଆଦି କରି
ସପତ ବ୍ରହ୍ମାଣ୍ଡେ ମୋତେ ନୋହିବ କେହି ସମସରି । ୧୦୧ ।

---

୧୦୦।୨ ବୋଇଲା ତ୍ରୈଲୋକ୍ୟ ଯୋଡିବ ଭୀମ୍ଭ ସ୍ୱରୂପ ।

ଯେବେ ପ୍ରସନ୍ନ ମୋତେ ହୋଇଲୁ ବିଶ୍ୱରୂପ
କାଯ୍ଯା ମୋହୋର ହୋଉ ବଜ୍ର ଛଡ଼ର ବଜ୍ର ମୋତେ ଖେପ ।୧୦୨।
ହୋଇଲେଣ ବଜ୍ର ଯେ ଖେପିଲେ ବିଶ୍ୱଭୂତେ
ତାଜିଲେ ମହାରସ ସେହୁ ହିଡ଼ମ୍ବକର ଗାତେ । ୧୦୩ ।
ଲଭି ଗଣ୍ଡିର ତହିଂରେ ମାତ୍ର ନ ପଡ଼ିଲା
ଶରୀର ଯାକ ତାହାର ବଜ୍ର ଯେ ହୋଇଲା । ୧୦୪ ।
ଜାଣିଥିବୁ ସ୍ୱାମୀ ସାଂଗ୍ରାମର କାଳେ
ଗଣ୍ଡିର ନାଭିରେ ଯେ ମାରିବୁ ନେଇ ଶୂଳେ । ୧୦୫ ।
ତେବେଶେ ନାଶ ଯିବଟି ଦଇତ ତୋ ଅରି
ଆନ ଯୁଦ୍ଧେ ତୈଲୋକେ କେ ତାକୁ ନାହିଂ ସମସରି । ୧୦୬ ।
ଆହୋ ହିରଣ୍ୟକ ପରବତେ ଅଛଇଟି ଶକତ
ଆକାଶକୁ ଧାଡ଼ି ହେଲେ ତା ଦେନଇଂ ଦଇତ୍ୟ ପତି । ୧୦୭ ।
ଭୀମସେନ ବୋଇଲା ତୁ ଶକତି ମୋତେ ଆଣ
ତୋହୋର ଭାବ ମୁଂ ଜାଣିମି ଯେହ୍ନେ କ୍ଷଣ । ୧୦୮ ।
ଯେତେକ ବଚନେ ସେ ଖେପିଲା ଅସୂରୀ
ଯେକା ହାଥକ ତହିଂକ ହଲାକ ବିସ୍ତାରି । ୧୦୯ ।
ତାଙ୍କ ଯୋଜନେକେ ଅଛି ଯେ ହିରଣ୍ୟକ ଗିରି
ହିଡ଼ମ୍ବିକାର ଭୂଜ ପାଇଲା ତହିଂକ ବୋଲି କରି । ୧୧୦ ।
ଭୀମସେନ ଦେଖିଲା ସେ ଶକତି ଆଣିଲା ବାମ କରେ
ଶକତ ସମର୍ପିଲା ଭୀମସେନର ହାଥରେ । ୧୧୧ ।
ଭୀମସେନ ବୋଇଲା ତୁ ହସ୍ତେ ଦେନଥିବୁ
ସାଂଗ୍ରାମେ କଠାଳ ପଡ଼ିଲେ ନେଇ ମୋତେ ଦେବୁ । ୧୧୨ ।
ନିଦ୍ରାଯେ ଅସାଷ୍ଟମ ମୋହୋର ଭ୍ରାଥ ମାଯେ
ନିଦ୍ରା ଭଙ୍ଗ କଲେ ଯେ ଅପ୍ରମିତ ଦୋଷ ହୋଯେ । ୧୧୩ ।
ତୋତେ ଲାଗଇଟି ଯେ ପାଷଣ୍ଡର କଥା
ମୁହିଂ ଯେହ୍ନେକ୍ଷଣି ସାଂଗ୍ରାମେ ମ.ରିଇଂ ଦଇତା । ୧୧୪ ।
ଆରେକ କଥାଯେ ତୋତେ ମାଗଇ ହିଡ଼ମ୍ବିକା
ନ ପୁଣ ମୋତେ କୋପ କରୁ ଭାଇ କଷ୍ଟ ଦେଖି । ୧୧୫ ।

ହିଡମ୍ବିକା ବୋଇଲା ଯେ ତୋହୋର ବଇର
ସେ ମୋହୋର ଶତ୍ରୁ ହାତେ ବେଗେ ପକାଅ ଯେ ମାର । ୧୧୬ ।
ଥିର କର କାଢିଲା ସେ ଭୀମସ୍ଥାଙ୍କୁ ଜାନୁ
ଗର୍ଜିଣ ଉଠିଲା ଯେ ପବନର ତନୁ । ୧୧୭ ।
ଅସୁର କାଛୁ ବନ୍ଧାଣି ଅଛି ଯେତେ
ଭୀମସେନ କାଛୁ ବନ୍ଧାଣିଲା ତେତେ । ୧୧୮ ।
ହସ୍ତେ ଉପାଡି ଧଇଲା ବେନି ବୃକ୍ଷ
ରାହୁ ଆକର୍ଷଣ ପ୍ରାୟେ ପବନର ବଛ । ୧୧୯ ।
ହିଡମ୍ବକ ଭୀମସେନ ଦୁହେଁ ହୋଇଲେ ଏକତର
ଦାନବ କୁଲଉତ୍ତୁ ଦକ୍ଷିଣ କରେ ପର୍ବତେକ ଧର । ୧୨୦ ।
କୁଲଇଂ ପିଟିଲା ନେଇ ସେ ଭୀମସେନ ଉପରେ
ପର୍ବତ ପଡଲା ଆସି ଭୀମସେନ ମଥାରେ । ୧୨୧ ।
ଦେଖଣ ଗିରିବର ଶତେ ଖଣ୍ଡ ହୋଇଲା
ଭୀମସେନ ଶରୀରେ ପଡ ଧୂଳ ଯେ ହୋଇଲା । ୧୨୨ ।
ଆରେ ସାଧୁ ସାଧୁ ପ୍ରତଗ୍ୟାଂ ମାନବ ରେ ଦଇତ ଯେ ବୋଲ
କୋପେଣ ଭୀମସେନକୁ ହିଡମ୍ବକ ଦେଲା ପେଲ । ୧୨୩ ।
ଅସୁର ଡାକ ଦଅଇ ଆଲୋ ହିଡମ୍ବିକା
ସୋଦର ଛାଡଲୁ ତୁ ଯେ ପର ପୁରୁଷକୁ ଦେଖି । ୧୨୪ ।
ଏହାର ରକତ ପାନେ କରଇଂ ଆଜ ବେଳ
ତୋହୋର ମୁଣ୍ଡ କାଟି ଦେବଇଂ ବଡାବଳୀ । ୧୨୫ ।
ଅନେକ ପ୍ରତଗ୍ୟାଂ ଯହୁଂ କଲାକ ଅସୁର
ହିଡମ୍ବିକା ବୋଇଲା ଭାଇ ଆଗେ ଏହୁଂ ହୋଅ ପାର । ୧୨୬ ।
ରାଗେ ଭୀଷ୍ମ ମୂର୍ତ୍ତି ଧଇଲା ଦଇତେ
ବେନି ଭୁଜ ବଢାଇଲା ବେନି ଯୋଜନ ପର୍ଯ୍ୟନ୍ତେ । ୧୨୭ ।
ଧାଡିକାରେ ସେ ଉପାଡଲା ବେନି ଯେ ପର୍ବତ
ପୁଣି ପ୍ରହାର କଲା ନେଇ ଭୀମସେନର ମାଥ । ୧୨୮ ।

---

୧୧୮।୨ ଭୀମସେନ କାଛୁ ଉତ୍ସର୍ଗ କଲା ତେତେ ।

ବାମ ଅଙ୍ଗ ପାଡିଲ ପବନର ସୁତ
ପଡି ଚୂର ହୋଇଗଲା ସେ ବେନି ପରବତ । ୧୨୯ ।
ପୁଣି ଭୀମସେନ ପିଟିଲ୍ ନେଇ ବେନି ଶାଳ ବୃକ୍ଷ
ଅସୁର ଶରୀରେ ପଡି ଚୂର ହୋଇଲ ପ୍ରତକ୍ଷ । ୧୩୦ ।
ହିଡମ୍ବକ ବୋଇଲା ତୁ ମୋହୋର ନରବଳ
କେମନ୍ତେ ଯେତେ ଦର୍ପ ବହିଲୁ ରେ ତୋହୋ ଗୁର ଭଲ । ୧୩୧ ।
ଭୀମସେନ ବୋଇଲା ତୁ ରେ ନ ଜାଣିଲୁ ତତ୍ତ୍ୱ
ମୋହୋର ହାଥେ ଯେ ତୋହୋର ନିଜ ମୃତ୍ୟୁ । ୧୩୨ ।
ଯେସନେକ ବଚନ ଶୁଣି ଦୁର୍ଦ୍ଧର ଦଇତ
କୋପେଣ ଭୀମସେନକୁ ମାଇଲା ବଜ୍ର ମୁଥ । ୧୩୩ ।
ରାଗେଣ ବେନି ମୁଥ ମାଇଲା ଯେ ଭୀମ
ଜିପଣ୍ଡ ଗଳିତ ଶରୀରେ ବହଇ ଯେ ଘର୍ମ । ୧୩୪ ।
ରାଗଗଣ ଭୀମସେନକୁ ଧଇଲା ଦଇତ୍ୟରାଜ
ଆବେଷଣ କରି ଯେ ଭିଡି ବେନି ଭୁଜ । ୧୩୫ ।
ପାଦେଣ ପାଦକୁ ଛନ୍ଦିଲା ଅସୁର ମହାଦକ୍ଷ
ଅସୁରକୁ ପେଲି ପକାଇଲା ପବନର ବକ୍ଷ । ୧୩୬ ।
ଅସୁର ବକ୍ଷସ୍ଥଳେ ଭୀମ ବସିଲାକ ମାଡି
ବେନି ମୁଥ ପ୍ରହାର କଲା କୋପେଣ ଅଧର କାମୋଡି । ୧୩୭ ।
ହୁଙ୍କାର ଶବଦ କଲାକ କଉଣୋପେ
ଭୀମସେନକୁ ଲେଉଟାଇ ପାଡିଲ୍ ନିଜ ଭୁଜ ଦର୍ପେ । ୧୩୮ ।
ଭୀମସେନକୁ ମାଡି ହିଡମ୍ବକ ବସଇ ହୃଦେ
ବଜ୍ର ମୁଥେକ ମାଇଲ୍ ଯେ ଭୀମସେନର ମାଥେ । ୧୩୯ ।
ଯେସନେ ଆକାଶୁଂ ପଡଇ କ ବଜ୍ର ଘାତ୍ତ
ପ୍ରତଶ୍ୟାଂ କରି ଭୀମସେନ ଉଠିଲ୍ ଗଳଗାଜ । ୧୪୦ ।

---

୧୪୦ ପଦ ପରେ କେବଳ ଗୋଟିଏ ପୋଥିରେ ଅଧିକା ପାଠ—

ଯେସନେକ ଆକାଶରୁ ପଡଇ ବଜ୍ର ସୂତ
ପବନ ନନ୍ଦନ ତାହା ଆବୋରିଲ୍ ଆମର୍ଷ ।

ପୁଣ ଅସୁରକୁ ଲେଉଟାଇ ପାଡଲା ବୀର ଭୀମ
ଅସୁର ବକ୍ଷସ୍ଥଳେ ବସିଲା ଶରୀରୁ ବହଇ ଘର୍ମ । ୧୪୧ ।
ପୁଣ ପୁଣ ଅସୁର ପାଡଇ ଲେଉଟାଇ
ଭୀମସେନର ହୃଦେ ବସିଲା ନଠାଇ । ୧୪୨ ।
ଭୀମସେନଙ୍କୁ ହିଡମ୍ବକ କରୁଣ୍ଡଲା ଟେକା
ତାଙ୍କର ଗିରି ପର୍ବତ ଭଙ୍ଗ ହୋଇଲାକ ଧୂଳା । ୧୪୩ ।
ଭୀମସେନ ଆବେଷି ଧଇଲା ଅସୁରକୁ
ବେନି ଭୁଜେ ଭଞ୍ଜି ଚୁପିଲା ତାର ବୁକୁ । ୧୪୪ ।
ଧରନ୍ତ ପଡନ୍ତ ଗଡନ୍ତ ମାଲ୍ଲବନ୍ଧେ
କେହି କାହାକୁ ଊଛ ନୋହନ୍ତ ନା ଯୁଦ୍ଧେ । ୧୪୫ ।
ହିଡମ୍ବକ ଭୀମସେନର ବଢିଲା ସମର
ଦଶ ଯୋଜନ ପରିଯନ୍ତେ ବନସ୍ତ ହୋଇଗଲା ଚୂର । ୧୪୬ ।
ରୋଧିର ବଲେପନ ହୋଇଲା ବେନି ଅଙ୍ଗ
ବେନି ସର୍ପେ ଯେସନେ ଲଗନ୍ତ ଅଙ୍ଗ ସଙ୍ଗ । ୧୪୭ ।
ବାରଣ ନ ଯାଇ ଯେହ୍ନେ ଯାମଳା ବେନି ବୃକ୍ଷ
ରୋମେ ରୋମେ ରୋଧିର ଗଳଇ ପ୍ରତକ୍ଷ । ୧୪୮ ।
ଜଡତ ହୋଇଲେନ ଦୁହିଙ୍କର କାୟେ
ପ୍ରତକ୍ଷେ ଦିଶନ୍ତ ସେ ଯେକ ଶରୀରର ପ୍ରାୟେ । ୧୪୯ ।
ବ୍ରହ୍ମାଣ୍ଡ କମ୍ପୁଅଛି ସାଂଗ୍ରାମେ ଘୋରମୁଦ୍ରା
ତଦ୍ୟାପି ନ ଭାଙ୍ଗିଲା ଯେ ପାଣ୍ଡବଙ୍କର ନିଦ୍ରା । ୧୫୦ ।
ଗଡ ଗଡ ଗଲେ ଯହୁଂ ଯୋଜନ ପଞ୍ଚଦଶ
ଦେଖଇ ହିଡମ୍ବିକା ହୋଇଲା ଅଦୃଶ୍ୟ । ୧୫୧ ।
ହିଡମ୍ବିକା ବୋଇଲା ଗୋ ଉଠ କନା ମାୟେ
ପୁତ୍ରକୁ ପଡଲା ତୋର ଦୁସହ ଅପଚୟେ । ୧୫୨ ।

---

ପ୍ରତଗ୍ୟାଂ କରି ଭୀମ ଉଠିଲା ଗଲଗାଜି
ମେରୁ ମନ୍ଦର ପର୍ବତ କ ପଡିଲାକ ଭାଜି ।
ଦୁହେଂ ନଖହସ୍ତ ଭୁଜ ଭଡାଭଡ଼ି
ପଡନ୍ତ ଭୂମିରେ ଯାଆନ୍ତ ଗଡାଗଡ଼ି ।

ଝାଟକାରେ ଉଠିଲେ ଯେ ଯୁଧିଷ୍ଠିର ରାଜ ଦେବ
ଭୀମସେନକୁ ନ ଦେଖି ରୋଦନ୍ତି ନକୁଳ ସହଦେବ । ୧୫୩ ।
ବୋଲଇ ହିଡମ୍ବିକା ଗୋ ନଦ୍ରା ଗଲ ଯେମନ୍ତ ଯେ ହୋଇ
ତୋହୋର ପୁଅଙ୍କୁ ଧରି ନିଲ ହିଡମ୍ବକ ମୋହୋର ଭାଇ । ୧୫୪ ।
ଧାମନ୍ତି ପାଣ୍ଡବେ ଯେ ଯୁଧିଷ୍ଠିର ଅରଜୁନ
କାନ୍ଦି କାନ୍ଦି ହିଡମ୍ବିକା ଧାମଇଂ ବହନ । ୧୫୫ ।
ଅନ୍ତରୀଛେ ହିଡମ୍ବିକା ଧାମଇ କୋପମୂର୍ତ୍ତି
କରେ ଘେନ ଅଛି ଶୂଳ ଯେ ଶକତି । ୧୫୬ ।
ଦେଖି ହିଡମ୍ବକ ସାନନ୍ଦ ହୋଇଲା
ଆଣ ଗୋ ଶକତି ବୋଲି ଭୁଜ ଯେ ପାତିଲା । ୧୫୭ ।
ଭୀମସେନ ପ୍ରତଗ୍ୟାଂ କଲା ଅସୁରକୁ ଦେଖି
ଭୀମସେନ ହସ୍ତେ ଦେଲା ଶକତି ହିଡମ୍ବିକା । ୧୫୮ ।
ଭୀମସେନର ହାଥେ ଯହୁଂ ଶକତି ପଡିଲା
ଦେଖିଣ ଦାନବର ଆତ୍ମା ଉଛୁରିଲା । ୧୫୯ ।
ଯହୁଂ ଦାନବ ହୋଇଲା ବିରସ ଭାବ
ଅସୁର ବକ୍ଷସ୍ଥଳ ମାଡି ବସିଲା ପାଣ୍ଡବ । ୧୬୦ ।
ବାମ ଭୁଜେ ବକ୍ଷସ୍ଥଳ ମାଡି ବସିଲା ପାବନ
ନାଭିମଣ୍ଡଳେ ପ୍ରହାର କଲା ଶୂଳ ଘେନ । ୧୬୧ ।
ନାଭି ମଣ୍ଡଳେ ପଡି ଫୁଟିଲା ତାହାର ଯେ ପିଠି
ପୃଥୀରେ ପଶିଲା ସେ ଯୋଜନେକ କଣ୍ଟି । ୧୬୨ ।
ଶୂଳ ମାରି ଭୀମ ମାଡି ବସିଲା ବକ୍ଷସ୍ଥଳେ
ଯେସନେ ନରସିଂହ ହିରଣ୍ୟ ବିଦାରଣ କାଳେ । ୧୬୩ ।
ଯୁଧିଷ୍ଠିର ଦେଖି ହାସିଲେ ଭୀମସେନର ମୂର୍ତ୍ତି
ଭୟେଣ କେହୁ ଆସି ନୁଆରନ୍ତି କତି । ୧୬୪ ।

---

୧୬୪। "ଭୟେଣ କେହୁ ଆସି ନୁଆରନ୍ତି କତି"—ପାଦ ପରେ ଅଧିକା ପାଠ—
ଭୟ କଲେ ଦେଖି ସେହୁ କାଳାନ୍ତକ ମୂର୍ତ୍ତି
ଭୀମ ଦେଖି ଭୀତ ହେଲେ ମାତା ଦେବୀ କୁନ୍ତୀ ।

ହିଡମ୍ବିକା ବୋଇଲା ମାତା ଶୁଣ ନ ଭଲ କିଛି ମନ
ହିଡମ୍ବକ ବଧ କଲା ତୋହୋର ନନ୍ଦନ । ୧୬୫ ।
ଦନୁଜର ପ୍ରାଣତ୍ୟାଜେ ଭୀମସେନ ପରମ ଶାନ୍ତ ମୂର୍ତ୍ତି
ସନ୍ନିଧେ ପ୍ରବେଶ ହୋଇଲେ ପାଣ୍ଡବ ଗୁଣ ମୂର୍ତ୍ତି । ୧୬୬ ।
ଭୀମସେନ ପ୍ରଣିପତ୍ୟ ମାତାଙ୍କର ପାଏ
କୋଳେ ଧରି ମୁଖେ ଚୁମ୍ବନ ଦେଲେ ଧର୍ମର ତନଏ । ୧୬୭ ।
ବାବୁ ମୁହିଂ ତୋହୋର ଯେନ ଯାଇ ରେ ଅପାଦ
ମୋତେ ନ କହି କେମନ୍ତେ ପଶିଲୁ ଯେଉଁକ ପରମାଦ । ୧୬୮ ।
ଭୀମସେନ ବୋଇଲେ ତୁମ୍ଭେ ନିଦ୍ରାଗଲ ସ୍ୱାମୀ
କେହି ନ ଜାଣିଲେ ଯେ ଅସୁର ଭୋଗଭୂମି । ୧୬୯ ।
କୋଇନ୍ତାଙ୍କ ପାଦ ତଳେ ପ୍ରଣିପତ୍ୟ ହିଡମ୍ବିକା
ବୃକୋଦର ବହୁତ ପ୍ରଶଂସଇ ତାହା ଦେଖି । ୧୭୦ ।
ଦାନବୀ ହୋଇ ତୋର ଯେତେ ମହତ ବାଣୀ
ସୋଦର ଛାଡିଣ ଆମ୍ଭନ୍ତ ରଖିଆଣି । ୧୭୧ ।
କୋଇନ୍ତାଏ ବୋଇଲେ ମାଗୋ ହୋଇଲା କି ପୁଚ୍ଛି
ଯେ ମନେ ବାଞ୍ଛା ଗୋ ଦେବଇ ସତ୍ୟ ସତ୍ୟ । ୧୭୨ ।
ହିଡମ୍ବିକା ବୋଇଲା ଗୋ ଯେ ତୋହୋର ପୁତ୍ରଗୋଟି
ଯେହାଙ୍କୁ ଦେଖିଣ ମୁହିଂ ମଦନେ ଅସାଷ୍ଟି । ୧୭୩ ।
ସୋଦର ଛାଡିଲି ମୁଂ ଯେହାଙ୍କର ନମନ୍ତେ
ମଦନ ଶର ଯେ ପୀଡିତ କଲା ମୋତେ । ୧୭୪ ।
ସ୍ତ୍ରୀଙ୍କ ଲିଙ୍ଗ ଜନ୍ମ ଗୋଟି ଅଟଇ ଦୁଲଭ
ଆଗ୍ୟାଂ ଦିଅ ତୋହୋର ଯେ ପୁତ୍ରଗୋଟି ମୋର ହୋଇବ ବଲ୍ଲଭ ।୧୭୫

---

ବ୍ୟାକୁଳ ହୋଇ ବୋଇଲେ ପୁଣି ମହାସତୀ
ଭୋ ଧର୍ମ ଦେବତା ଆସୁ ଆମ୍ଭ ମୋର ପୁତ୍ର ବର୍ତ୍ତି ।
ହିଡିମ୍ବୀ ବୋଇଲା ତୁମ୍ଭେ କିଛି ହିଂ ନ ଭାଳ
ହିଡମ୍ବ ଦୈତ୍ୟକୁ ବଧ କଲେ ମହାବଳ ।
୧୭୧।୧ ଦାନବୀ ହୋଇଣ ଯେତେ ମହତ ପରଣୀ ।
୧୭୨।୧ ଯେ ତୋହୋ ଇଚ୍ଛା ବର ମାଗ ଯେ ମୋହୋର ସ୍ୱଧୀ ।
୧୭୩।୨ ଯେହାକୁ ଦେଖି ମୁକୁ ମଦନ ଶର ଘୋଟି ।

କୋଇନ୍ତାଏ ବୋଇଲେ ମାଗୋ ଜ୍ୟେଷ୍ଠ ପୁତ୍ର ମୋର ଅଛି
ତାହାଙ୍କୁ କର୍ମେ ତୁ ହାଦେ ମନରେ ନ ବାଞ୍ଛି । ୧୭୬ ।
ହିଡମ୍ବିକା ବୋଇଲା ଯାହାର ଯାହାକୁ ଭାବ
ପ୍ରଜାପତି ଭିଆଣ ଗୋ ନୋହଇ ଆନ ଠାବ । ୧୭୭ ।
ଦେବ ଦଇତ୍ୟ ଯେସନେ ସୋମୋଦ୍ର ମନ୍ଥିଲେ ସତ୍ୟଯୁଗେ
କମଳା ଉପୁଜିଲେ କୃଷ୍ଣର ଉଦ୍ଦଯୋଗେ । ୧୭୮ ।
ଇଚ୍ଛାଏ ବର ଯେ ବରିଲେ ଆଦିନାରୀ
ବ୍ରହ୍ମା ରୁଦ୍ର ଇନ୍ଦ୍ର ଥାଉଂଣ ସେ ନାରାୟେଣଙ୍କୁ ବରି । ୧୭୯ ।
ଆମ୍ଭେ କାମବନ୍ତି ଆମ୍ଭର ଯେତେକେ ଇଚ୍ଛା
ବରିବ ମାଳା ଦେଉଂ ଗୋ ଯାହାକୁ ମନବାଞ୍ଛା । ୧୮୦ ।
ହିଡମ୍ବିକା ବୋଇଲା ଆହୋ ଭୀମ ବରିରୁ କେମନ୍ତ
ମୁହିଂ ତୋହୋର ବଲ୍ଲଭୀ ତୁହି ମୋହୋର ନିଜ କାନ୍ତ । ୧୮୧ ।
ଯୁଦିଷ୍ଠି ବୋଇଲେ ବାବୁ ନ ଭଲ ଆନ ଚିତ୍ତେ
ଆଦ୍ୟହିଂ ହିଡିମ୍ବୀ ଭାବଅଛି ତୋତେ । ୧୮୨ ।
ଏ ମହା ଚଞ୍ଚଳା ତୁ ହାଦେ ମହା ବଳିଷ୍ଠ
ଏହାର ତୋହୋର ସେ ମିଳଇ ସଙ୍ଘଟ । ୧୮୩ ।
ଆୟୁରବେଦୀ ଯେ ଅଟନ୍ତି ସୋମବଂଶୀ
ଆଦ୍ୟହିଂ ବ୍ରହ୍ମଗୋତ୍ରୀ ଏ ଉତପତ୍ତି ପାଠ ଋଷି । ୧୮୪ ।
ଆୟୁରବେଦେ ଏ ଅଟନ୍ତି ନିରଞ୍ଜିତା
ଅଜପା ଗାୟତ୍ରୀ ଏ ଜପନ୍ତି ଅଟନ୍ତି ସିଦ୍ଧି ବନ୍ତା । ୧୮୫ ।
ଗନ୍ଧର୍ବ ଯୋଗେ ଗୃପତେଣ ଅଛି ବିଭା
ଭୀମଙ୍କୁ ହିଡମ୍ବିକା ପ୍ରଦାନ କରନ୍ତି ଆଦିଦେବା । ୧୮୬ ।
ପବନ ଦେବତା ଯେ କରନ୍ତି ବେଦ ଧ୍ୱନି
ବିଭାଯୋଗ କରାଇଲେ ହିଡମ୍ବିକା କାମେଣୀ । ୧୮୭ ।
ହୋମ କର୍ମଣ କଲେ ଦୋହୋରି ଆଗେ ପଣ
ଘୃତ ପାରଣା ତହିଂ କଲେ ବେନି ଜନ । ୧୮୮ ।
ଯଉତୁକ ପାଇଲେ ସେ ହିଡମ୍ବକ ବନ
ଲଭଇ କୁମାରୀ ଯେ ପାଣ୍ଡବ ଭୀମସେନ । ୧୮୯ ।

କୁମ୍ଭମାସ ଶୁକଳ ପକ୍ଷ ଦଶମୀ ତିଥି ଅର୍କବାର
ପୁଷ୍ୟା ନକ୍ଷତ୍ରକୁ ଯେ ଭୋଗ୍ୟ ସେ ଦିନର । ୧୯୦ ।
ଶୁଭ ନାମେ ଯୋଗ ଯେ ଗର ନାମରେ କରଣ
କୁମ୍ଭ ସଙ୍କ୍ରାନ୍ତିକ ପଞ୍ଚଶ ଦିନ ଭୋଗ ଜାଣ । ୧୯୧ ।
ଭୀମସେନ ଶୃଙ୍ଗାର ହିଡମ୍ବି ଙ୍କର ଭୁଲେ
ହିରଣ୍ୟ ଗିରି ଉପରେ ପୁଣ୍ୟତୋୟା ନଦୀ କୂଳେ । ୧୯୨ ।
ସୁସଞ୍ଚ ପର୍ବତ ଯେ ଅଟଇ ନିର୍ମଳ
ଆମ୍ବ ପଣସ କଦଳୀ କଣ୍ଟାହୋଳ ନଡ଼ୀକାଳ । ୧୯୩ ।
କେନ୍ଦୁ କଇଂଥ ବେଲ ବଇଂଚ ବୃନ୍ଦାହୋଳ
ଅବସନ୍ତେ ବସନ୍ତ ତହିଂ ଫଳନ୍ତି ପାଚନ୍ତି ସର୍ବକାଳ । ୧୯୪ ।
ଯାହା ମନେ ବାଞ୍ଛା ତହିଂ ତାହା ପାଇ
ସଦା ବସନ୍ତ ପବନରେ ପ୍ରଚେତା ସିଦ୍ଧ ଭୂଇଂ । ୧୯୫ ।
କଣସ୍ତୁ ଗିରି ପର୍ବତ ତଳେ ବହଇ ପୁନ୍ୟତୋୟା ସରସ୍ୱତୀ
ହିରଣେଶ୍ୱର ଲିଙ୍ଗ ସେ ଜଳେ ଉତପତ୍ତି । ୧୯୬ ।
ଯେସନେକ ବନ ସେ ପବିତ୍ର ପର୍ବତ ଶୁଦ୍ଧ ସ୍ଥାନ
ଜନ ଜନ୍ତୁ ଆତଯାତ ନାହିଂ ଦଶ ସହସ୍ର ଯୋଜନ । ୧୯୭ ।
ହିଡମ୍ବକ ଧାଡ ପଡଇ ଦଶ ସହସ୍ର ଯୋଜନେ
ତାର ଭୟେ ଆତାଗମ ନାହିଂ ତହିଂ ଜନେ । ୧୯୮ ।
ଶତଶିଂଗଙ୍କ ଉଶ୍ୱାସ ନିର୍ମଳ ଥାନ ଭୂମି
କ୍ରୀଡା କୁତୋହୋଳେ ରହିଲେ ଦେବସ୍ୱାମୀ । ୧୯୯ ।
ଗଣ୍ଡା ଗୟେଳ ହରିଣ ବାହୁଟିଯୁ ଜୀବମାନେ
ରାମ ପାରଧି ବେଣ୍ଟ ଧରନ୍ତି ତୋଷମନେ । ୨୦୦ ।
ରହିଲେ ପଣ୍ଡୁର ନନ୍ଦନେ ହିଡମ୍ବକର ବନସ୍ତେ
ମହାସୁସ୍ତେ ରହିଲେ ତହିଂ ସାତ ବରଷ ପରିଯନ୍ତେ । ୨୦୧ ।
ଭୀମ ହିଡମ୍ବି ଙ୍କର ବହୁତ ପୀରତି
ସୁରସ ସାନନ୍ଦେ କୁତୋହୋଳ ମତି । ୨୦୨

---

୧୯୪।୧ କେନ୍ଦୁ କଇଂଥ ବେଲ ବସ୍ୟେଂଚ ହାନ୍ଦୋଳ ।
୧୯୫।୨ ସଦା ବସନ୍ତ ପର୍ବତ ଶିବସିଦ୍ଧ ଭୂଇଂ ।

କନ୍ୟା ଶୁକଳ ଯେ ପୌର୍ଣ୍ଣମୀର ଦିନ
ପଣ୍ଡିତବାର ଅଶ୍ୱିନୀ ଦିଜା ସନ୍ଧିସ୍ଥାନ । ୨୦୩ ।
ଗ୍ରାସ ହୋଇଅଛି ଅଢାଇ ପ୍ରହର
ହିଡମ୍ବିଙ୍କର ସଙ୍ଗେ ଶୃଙ୍ଗାର ବୃକୋଦର । ୨୦୪ ।
ସାତ ବରଷ ପର୍ଯ୍ୟନ୍ତେ ନିତ୍ୟେହେଁ କରଇ କେଳି
ସାଧନ ପୁରୁଷର ବୀର୍ଯ୍ୟ ଯେ ନ ଢଳି । ୨୦୫ ।
ଚନ୍ଦ୍ର ପବନ ଯେ ଯେକତ୍ର କରି ବୁଡାଇ ଥାଇ ମନ
କାମ ବୁଡାଇଲା ନେଇ ଗଣ୍ଡ ସୁଷୁମ୍ନ । ୨୦୬ ।
ମାରଇ ବୀର୍ଯ୍ୟ ଯେ ତାରଇ ଚଞ୍ଚଳା
ସୂର୍ଯ୍ୟର ଭୁଲେଣ କାମକୁ କରଇ ମେଳା । ୨୦୭ ।
ପବନ ଉଜାଣି ଯେ ଆକାଶ ଦ୍ୱାରେ ଭେଦ
ଅଶାନ୍ତ ଭଜଲା ଗ୍ରାଡଇ କାମ ବ୍ୟାଧି । ୨୦୮ ।
ଆନ ଠେଇଁ ଥୋଇଲା ପଞ୍ଚ ଭୂତ ଆତ୍ମା
କାମଜିତା ପୁରୁଷ ସେ ଧାରଣେ ମହାତମା । ୨୦୯ ।
ଯେତେ ବାଗେଣ ସେ ଯେ ଶୃଙ୍ଗାର ରଣ ଇଚ୍ଛା
ସାତ ବରଷରେ ବୀର୍ଯ୍ୟ ନ ଢାଳଲା ତାହାର କାମ ବାଞ୍ଛା । ୨୧୦ ।
ସେ ଦିନ ଅଟେ ଶରଦ ଋତୁ ଯେ ପୌର୍ଣ୍ଣମୀ
କାମ ଅଂଶ ଗ୍ରହଣ ଚନ୍ଦ୍ରମା ଅଷ୍ଟମୀ । ୨୧୧ ।
ଶୃଙ୍ଗାରେ ମତ୍ତ ଯେ ବିକାଶିଲା ତେଜ
କାମ ସଙ୍ଘରଣ କଲା ପକାଇ ମହା ବୀର୍ଯ୍ୟ । ୨୧୨ ।
ହିଡମ୍ବିଙ୍କର ଗର୍ଭେ ପକାଇଲା ମହାରେତ
ସମ୍ଭାଳ ନୁଆରଲା ବାଳୀ ତାହାର ଗର୍ଭଗତ । ୨୧୩ ।
ଅସମ୍ଭାଳ ବୀର୍ଯ୍ୟ ସେ ଅସାଷ୍ଟମ ବାଳୀ
ସମ୍ଭାଳ ନୁଆରି ଗର୍ଭୁଂ ବୀର୍ଯ୍ୟ ଯେ ପଡୁଅଛି ଢଳି । ୨୧୪ ।
ନାଶ ନ ଗଲା ସେ ଅମୋହ ମହାରେତ
ସଇନ୍ଦୁ ପୁଷେକ ହୋଇଲା ସମ୍ଭୂତ । ୨୧୫ ।
ଗର୍ଭୁଁ ବୀର୍ଯ୍ୟ ପଡନ୍ତେ କଣସୁ ପର୍ବତେ
ଘଟ ଘଟ ଶବଦ ଶୁଭିଲା ଜଗତେ । ୨୧୬ ।

ଆକାଶୁଂ ବସୁନ୍ଧରାରେ ଯେହ୍ନେ ଜଳଧାର ପଡ଼ଇ ଗଗନୁଂ
ତେସନ ଶବଦ ଶୁଭିଲା ମଧ୍ୟ ଯେ ଭୁବନୁଂ । ୨୧୭ ।
ସେହି ଶବଦ ଯେ ଝଙ୍କାରିଲା ବାଣୀ
ସଇନ୍ଦୁ ପୁତ୍ରେକ ଉପୁଜିଲା କେଶୁର ତେଜ ଜାଣି । ୨୧୮ ।
ରବେଣ କମ୍ପିଲେ ଆକାଶେ ଦିଗପାଳେ
ଅନ୍ତର ଭୀମସେନ କଣପୁ ପର୍ବତର ତଳେ । ୨୧୯ ।
କୋଇନ୍ତାପୁ ଯାଇଂ ଧଇଲେ ନନ୍ଦନ
ମହାବଳବନ୍ତା ସେ ପର୍ବତର ସମାନ । ୨୨୦ ।
କୋଳରେ ପୁତ୍ରକୁ ଦେଖି ନ ପାରିଲେ ସମ୍ଭାଳି
ହିରଣ୍ୟ ଗିରି ଉପରେ ପଡ଼ିଲାକ ଢଳି । ୨୨୧ ।
ଯେ ଏକାଦଶ ଯୋଜନ ଆୟତନ ପର୍ବତ
କୋଇନ୍ତାଙ୍କ କୋଳୁଂ ପଡ଼ନ୍ତେ ପର୍ବତ ହୋଇଲା ଚୂର୍ଣ୍ଣାଂଗତ । ୨୨୨ ।
ଆପଣେ କୋଳ କରି ଧଇଲେ ମାରୁତ
ଘଟଉତ୍କଚ ନାମ ଦିଲେ ଦେଖି କୋନ୍ତୀ । ୨୨୩ ।
ଲୋଭ ମୋହ ବସିଲା ଯେ ହିଡ଼ମ୍ବିକ ବନେ
କିଛି ଦିନେ ରହିଲେ ତହିଂ ପଣ୍ଡୁର ନନ୍ଦନେ । ୨୨୪ ।
ପଞ୍ଚ କୁଡ଼ିଆ ଆଶ୍ରମ ସିରଜିଲେ ସେହୁ ବନେ
କରନ୍ତି କୁତୋହୋଳ ଯେ ପଣ୍ଡୁର ନନ୍ଦନେ । ୨୨୫—୭୫୬୧ ।



## ଅର୍ଜୁନ କର୍ତ୍ତୃକ କପିଳା ବଧ ଓ ତାହାଙ୍କର ପାପ ଖଣ୍ଡନ

ଯେ ଏଥୁ ଅନନ୍ତରେ ଶୁଣ ହୋ ଯୁଗପତି
କୁମ୍ଭମାସ ଶୁକଳ ପକ୍ଷ ଦ୍ୱାଦଶୀର ତିଥି । ୧ ।
ଶତଭିଷା ନକ୍ଷତ୍ର ଅଟଇ ସେ ଦିନର
ସେ ଦିନ ଅଟଇ ଯେ ଅର୍କ ନାମେ ବାର । ୨ ।
ଗର ନାମେ କରଣ ଶୁଭ ନାମେ ଯୋଗ
କୁମ୍ଭ ସଂକ୍ରାନ୍ତିକ ସାତ ଦିନ ଭୋଗ । ୩ ।

ସେଦିନ ଶାଳ ବୃକ୍ଷ ତଳେ ବସିଣ ଯୁଧିଷ୍ଠିଙ୍କ
ଅର୍ଜୁନଙ୍କୁ ବସାଇ ବଚନ ପ୍ରକାଶନ୍ତି । ୪ ।
ଆହୋ ପିତୃ କାର୍ଯ୍ୟ ଆବର ପିତୃ ପୁଣ୍ୟ ଜାତ
କାମ୍ୟ ଶ୍ରାଦ୍ଧ କରିବା ଗୋ ଆମ୍ଭର ସଙ୍ଘାତ । ୫ ।
ଯୁଧିଷ୍ଠିଙ୍କ ବଚନେ ବୀର ଧନର୍ଜୟେ
କାନ୍ଧେଣ ଗାଣ୍ଡିମ ପାଣ୍ଡୁ ବନସ୍ତକୁ ଯାୟେ । ୬ ।
କରେଣ ଶୋଭିତ ତାର ଗାଣ୍ଡିମ ଶର ଧନୁ
ସଧୀରେ ଗମନ କରଇ ବାସବର ତନୁ । ୭ ।
ହିରଣ୍ୟ ଗିରି ନାମେ ଯେକଇ ପର୍ବତ
ତହିଁ ଯାଇ ପ୍ରବେଶ ବାସବର ସୁତ । ୮ ।
କରେ ଶୂଳଇ ନିରେଖଇ ଚଉକତି
ଦେଖି ଜୀବେ ପଳାଇଲେ ପ୍ରାଣକୁ କରି ଭୀତ । ୯ ।
ଗଣ୍ଡା ନ ଦେଖିଣ ବୀର ଯେ ଫାଲ୍‌ଗୁନ
କୃଷ୍ଣବେଣୀ ପର୍ବତେ ଉଠିଲା ଧନୁ ଘେନ । ୧୦ ।
ଗଣ୍ଡା ନ ପାଇଣ ବୁଲଇ ବନ ଘନ
ଖରତର ହୋଇ ବୁଲଇ ବୀର ଅରଜୁନ । ୧୧ ।
ବିସ୍ମୟ ହୋଇଣ ଅରଜୁନ ତହୁଁ ଚଳି
ମହେନ୍ଦ୍ର ତନୟା ନଦୀରେ ଯାଇଁ ମିଳି । ୧୨ ।
ଦକ୍ଷିଣ ବାହିନୀ ପବନ ମହାନଦୀ
ତହିଁ ବସି ମନ୍ତ୍ରସିଦ୍ଧ କରି ସାଧି । ୧୩ ।
ମହାପରବତ ସେ ଅଟଇ ସିଦ୍ଧ ବନ
ସରସ୍ୱତୀ ନଦୀ ଦକ୍ଷିଣ କଣ୍ଠରେ ଭେଦନ । ୧୪ ।
ସେ ନଦୀ ତୀରେ ପାଣି ପିଅଇ ସର୍ବସାଚୀ
ମୁଖରେ ପାଣି ପକାଇ କରେ ଧନୁ ଆମଞ୍ଛି । ୧୫ ।
ମହେନ୍ଦ୍ର ନାମେଣ ଯେକଇ ପରବତ
ତହିଁ ଉପରେ ଯାଇଁ ଉଠିଲା ବୀର ପାର୍ଥ । ୧୬ ।
ପୂର୍ବ ମୁଖ କରି ନିରେଖଇ ବୀରମଣି
ଦେଖଇ ମଉଦଧୀରେ ମହାନଦୀ ଆଣି । ୧୭ ।

ମହା ପର୍ବତ ସଙ୍ଗମ ତୀର୍ଥ ଦେଖି
ଦକ୍ଷିଣ ତଟକୁ ବୀର ଗୃହାଂଇ ନରେଖି । ୧୮ ।
କପିଳା ଗୋମାତା ଚରୁଅଛି ତହିଂ
ଦେଖିଣ ବୀରମଣି ହରଷ ଚିତ୍ତ ହୋଇ । ୧୯ ।
ସେହି ସେ ଗଣ୍ଡାଜୀବ ହୋଇବ ଯୁଗତେ
ଆନ ଜୀବ ନୋହଇ ବୋଲି ବୀର ଭାଳଇ ହୃଦଗତେ । ୨୦ ।
ଖୁପ ଶରେକ ବୀର ବାଛିଣି କାଢ଼ଇ
ଧନୁରେ ବସାଇ ଡାଆରଇ ବାସବ ତନୟି । ୨୧ ।
ସେ ଜୀବକୁ ମାର ବୋଲିଣ ଆଗ୍ୟାଂ ଦେଇ
ଆଗ୍ୟାଂ ପ୍ରମାଣେ ବାଣ ଅନ୍ତରୀକ୍ଷେ ଚଳଇ । ୨୨ ।
ଚଳଇ ବାଣ ଯେ ଆଗ୍ୟାଂ ପରମାଣେ
କପିଳାର ସନ୍ନିଧେ ଭେଟଇ ତତକ୍ଷଣେ । ୨୩ ।
ଦେଖିଣ ବାଣ ବିଚାରଇ ହୃଦଗତେ
କପିଳାର ପ୍ରାଣ ମୁଂ ଦହିବି କେମନ୍ତେ । ୨୪ ।
ଗୋହତ୍ୟା ସ୍ତ୍ରିୀ ହତ୍ୟା କଲେ ପାର ନାହିଂ
ସେହି ମୁଂ ମାଇଲେ ମୋର କିଛି ଜଣା ନାହିଂ । ୨୫ ।
କେତେ କୋପ କରନ୍ତି ବୀର ପାର୍ଥ
ଅକାରଣେ କେମନ୍ତେ କରିବି ସେହି ଘାତ । ୨୬ ।
ଅନ୍ତର ହୋଇ ସେ ଠାବରେ ବାଣ ବସିଲା
ତିନ ବ୍ରହ୍ମାଣ୍ଡ ବସି ସେ ସୁର ବାଣ ହୋଇଲା । ୨୭ ।
ବାଣ ନ ଯାନ୍ତେ ବିଚାରଇ ଫାଲଗୁନ
ମହା ପ୍ରକୋପିତ ହୋଇଲା କରେ ଧନୁ ଘେନ । ୨୮ ।
ପୁଣି ଧନୁରେ ବସାଇଲା ଦିବ୍ୟ ଶର
ତୁ ଯାଇ ସେ ଜୀବକୁ ବେଗେ ପ୍ରହାର ଯେ କର । ୨୯ ।
ପାର୍ଥର ବଚନେ ଚଳଇ ଦିବ୍ୟ ଶର
ତୁରିତେ ପଡ଼ିଲାକ କପିଳା ଉପର । ୩୦ ।
ପଡ଼ନ୍ତେ କପିଳା ହୋଇଲା ବେନି ଖଣ୍ଡ
ଶବଦ ଶୁଭିଲା ସପତ ବ୍ରହ୍ମାଣ୍ଡ । ୩୧ ।

ପ୍ରାଣ ଘେନ ଈଶ୍ୱରଇ ଦିବ୍ୟ ଶର
କପିଳା ବଧ କରି ପାର ନାହିଂ ତିନ ପୁର । ୩୨ ।
ଈଶ୍ୱର ଦେବତାଙ୍କୁ ପୂର୍ବେ ଗୋହତ୍ୟା କଲେ
ସେ ମହାଦେବଙ୍କୁ ପାର ନ ଗଲା ତ ଭଲେ । ୩୩ ।
ବାରାଣସୀ ମଣିକର୍ଣ୍ଣିକାରେ ହର ପଶି
କାହିଂରେ ଈଶ୍ୱରେ ପାର ନାହିଂ ହୋଇଲେକ ଧ୍ୱଂସି । ୩୪ ।
ଭଇରବେ ରୂପ ଯେ ଧଇଲେ ଈଶ୍ୱରେ
ମୋତେ ତ ପାର ନୋହିବ ତିନ ପୁରେ । ୩୫ ।
ଏମନ୍ତେ ବୋଲ ବାଣ ଭୂମିରେ ବସିଲା
ହତ୍ୟା ଦୋଷେ ବାଣ ବିସ୍ମୟେ ହୋଇଲା । ୩୬ ।
ବାଣ ଲେଉଟି ନ ଯାନ୍ତେ ବୀର ପାଥ
ବାବଲ ଶର ବୀର ଧରଲ୍ଲକ ହାଥ । ୩୭ ।
ବାଣକୁ ତିଆରଇ ବୀର ସବ୍ୟସାଚୀ
ମୋହୋର ବୋଲ କର ନ ଆସିବୁ ଘୁଞ୍ଚି । ୩୮ ।
ସେ ଜୀବକୁ ତୁ ବେଗେ ଘେନ ଆସ
ଧନୁରେ ବସାଇ ସେ କହଇ ବିଶ୍ୱାସ । ୩୯ ।
ନମିଷେକେ ଆଣି କରିବ ମୋର କାଜ
ବେଗେ ନଇଲେ ତୋତେ ଅନଳେ ଦେବି ଶାସ୍ତି । ୪୦ ।
ଏତେକ୍ଷଣ ଚଳଇ ସେ ଅତି ଖରତରେ
ଗର୍ଜିଣ ପଡିଲା ଯାଇ କପିଳା ଉପରେ । ୪୧ ।
ଅନ୍ତ ଅନ୍ତ କରିଣ ଆଣଇ ଗୋମୁଣ୍ଡ
ଘେନଣ ବାଣ ଯେ ଚଳିଲା ପରଚଣ୍ଡ । ୪୨ ।
ଆସନ୍ତେଣ ଅନ୍ତରୁ ଫୁଟି ଖସି ପଡିଲା
ପଦ୍ମେଶ୍ୱର ବୋଲି ମହା ଲିଙ୍ଗେକ ହୋଇଲା । ୪୩ ।
ରକତ ବୃଷ୍ଟି ହୋଇଲା ଯେତେ ଦୂର
ମହାକେ ଲିଙ୍ଗେକ ହୋଇ ଉପୁଜିଲା ପୃଥୀର । ୪୪ ।
ଶବ ଘେନ ପାଥର କଟରେ ପ୍ରବେଶ
ନରେଖି ଦେଖି ପାଥ ହୋଇଲା ହରଷ । ୪୫ ।

କପିଳାର ମୁଣ୍ଡ ଯେଗୋଟି ଯେନ ଖାରମଣି
ହୃଦଗତେ ପାଥ ବିଚାରଇ ପୁଣ ପୁଣି । ୪୬ ।
କପିଳା ଦ୍ରୋହ ମୁଂ କଲଇଂ ଅଦ୍ୟାପି
ମାଳଶ୍ଚ ଲଛାର ଉପରେ ତାହା ଥାପି । ୪୭ ।
ପଞ୍ଚୁ ଆମ୍ଭାରେ ବସି ଭାଳଇ ଖାର ପାଥ
ଅନମିତ୍ତେ ଗୋବଧ ମୁଂ କଲ ଯେତ୍ତେ କୃତ୍ୟ । ୪୮ ।
କ ବୋଲି ବୋଲିବେ ମୋତେ ଦେବ ପୁରନ୍ଦର
ମୋହୋର ମୁଖ ନ ଗୃହ୍ନିଂବେ ଦେବ ଚକ୍ରଧର । ୪୯ ।
ଦେବଗଣ ମାନେ କସ ବୋଲିବେଟି ମୋତେ
କାହାର ମୁଖ ମୁଂ ଗୃହ୍ନିଂ ନ ପାରିବି ଯୁଗତେ । ୫୦ ।
ଯୁଧିଷ୍ଠିଙ୍କର ମୁଖ ମୁଂ କେମନ୍ତେ ଗୃହ୍ନିଂବି
ମନେ ମନେ ବସି ଭାଳଇ ବାସେବି । ୫୧ ।
ପୁଣ ମନେ ବିଚାର କରଇ ଅରଜୁନ
ଆସି ପ୍ରବେଶ ହୋଇଲେ ଯୁଧିଷ୍ଠିଙ୍କ ସନ୍ନିଧାନ । ୫୨ ।
ମଥା ପୋତି ବୃକ୍ଷ ଉହାଡେଣ ହୋଇ
ତୁମ୍ଭର ମୁଖ କେମନ୍ତେଂ ଗୃହ୍ନିଂବଇଂ ମୁହିଂ । ୫୩ ।
ଯୁଧିଷ୍ଠି ଦେବ ବୋଇଲେ କସ କଲୁ ।
କ ନିମନ୍ତେ ମୋର ମୁଖ ନ ଗୃହ୍ନିଂଲୁ । ୫୪ ।
ସହଦେବ ବଦନ ଗୃହ୍ନିଂଲେ ଯୁଧିଷ୍ଠି
କସ ଦୋଷ କଲି ବନସ୍ତେ ମୋହୋର ଭାଇଗୋଟି । ୫୫ ।
ଗଣ୍ଡା ଆଣି ପଶିଲୁଡଂ ଆମ୍ଭେ
ତୋହୋର ବଚନ କସ ବିଚାରୁ ସହଦେବେ । ୫୬ ।
ପ୍ରାଣର ସଖା ମୋହୋର ଅଟଇ ଫାଲଗୁନ
ଯେହାରେ ଉଶ୍ୱାସ ହୋଇବ ମେଦ୍ଦନୀ । ୫୭ ।
କ ନିମନ୍ତେ ମୋହୋର ମୁଖ ନ ଗୃହ୍ନିଂଇ ତୋଳ
ବିଚାର ସହଦେବ ପାଣ୍ଡବ କୁଣ୍ଡଳୀ । ୫୮ ।
କରପଦ ଯୋଡଣ କହଇ ସହଦେବ
ଶୁଣ ତୁମ୍ଭେ ଯେକମନେ ଯୁଧିଷ୍ଠି ରାଜଦେବ । ୫୯ ।

ତୁମ୍ଭ ଆଜ୍ଞାଏ ଗଣ୍ଡା ଆଣି ଗଲେ ଫାଲଗୁନ
ଅରଣ୍ୟେ ବୁଲନ୍ତେଣ ଦିବା ଯେ ରଯ୍ୟେଣୀ । ୬୦ ।
ଦେଖି ଗଣ୍ଡା ଜବେ ପଳାଇଲେ ବହୁତ ଦୂର
ଡରେ ଲୁଚିଲେ ଯାଇ ବନ ଗିରି କନ୍ଦର । ୬୧ ।
ଗଣ୍ଡା ନ ପାଇ ସେ ବୁଲନ୍ତି ଘୋର ବନେ
ଗଣ୍ଡା ଜୀବମାନ ନ ଦେଖିଲେ ନୟନେ । ୬୨ ।
କ୍ଷୁଧାରେ ଆରତ ହୋଇଣ ଯାଇଂ ପର୍ବତେଣ ଉଠି
ପୂର୍ବ ମୁଖ ହୋଇଣ ଦିଲେ ଯେକଦୃଷ୍ଟି । ୬୩ ।
ଦେଖିଲେ ଗୋମାତା କପିଳା ତହିଂ ଚରୁଅଛି
ଗଣ୍ଡା ଜବ ବୋଲି ବିଗୃଚିଲେ ବିବଚ୍ଛି । ୬୪ ।
ଯେହ୍ନେ ସେ ଗଣ୍ଡା ଜବ ବୋଲି ବୋଇଲା ଦିବ୍ୟ ଶର
ବାଣ ଚଳିଲା ଯାଇଂ କପିଳା ଉପର । ୬୫ ।
କପିଳାର ମୁଣ୍ଡ ଦେଖି ଚକିତ ବୀର ପାର୍ଥ
ମନେ ବିରସ ହୋଇ ସୁମରେ ଜଗନ୍ନାଥ । ୬୬ ।
ଲଜ୍ଜା କରି ତୁମର ମୁଖ ନ ଗୃହିଂ
ଗୋହତ୍ୟା କଲେ ଦେବ ବସିଲି ଠାବ ନାହିଂ । ୬୭ ।
ସହଦେବଙ୍କୁ ବୋଇଲେ କରିବା କିସ ବୁଦ୍ଧି
କେମନ୍ତେ ଖଣ୍ଡଣ ହୋଇବ ପାପ ବ୍ୟାଧି । ୬୮ ।
ସହଦେବ ବୋଇଲେ ଦେବତାଏ ହୋଇଲେ ଗୋଟି
ତେବେ ସେ ଖଣ୍ଡିବା ହୋଇବ କି ପାପ ଦୋଷ ସେଠି । ୬୯ ।
ଯୁଧିଷ୍ଠିର ବୋଇଲେ ପାର୍ଥ ହରିଙ୍କି ଧ୍ୟାଏ କର
ସେହି ସେ ଅପାଦ ଖଣ୍ଡିବେ ତୁମ୍ଭର । ୭୦ ।
ଯୁଧିଷ୍ଠିରଙ୍କର ବଚନେ ବୀର ଧନଞ୍ଜୟେ
ଏକମନେ କୃଷ୍ଣଙ୍କୁ ବସି କଲି ଧ୍ୟାଏ । ୭୧ ।
ଚନ୍ଦ୍ରଶିଳା ପରେ ବିଜେ କରିଥିଲେ ଚକ୍ରଧର
ସତ୍ୟଭାମା ଦେବୀ ବସିଛନ୍ତି କଡର । ୭୨ ।
ଆସନ କଂପିଲି ଯେ ଜାଣିଲେ ଦେବବର
ଗରୁଡଙ୍କୁ ଧ୍ୟାଏ କଲେ ଯେ ମୁରାରି । ୭୩ ।

ସତ୍ୟଭାମାଙ୍କୁ ବୋଇଲେ ମୋତେ ତେଜ୍ୟା କଲୁ ହରି
କସ ବନ୍ଦିପ୍ୟା ମୋର ପାଇଲୁ ଦେବ ଦଇତାରି । ୭୪ ।

ବୋଲନ୍ତି କେଶବ ଶୁଣ ଗୋ ପ୍ରାଣ ସହି
ମୋତେ ସୁମରଣା କଲେ ପାଣ୍ଡବ ବବଛଇଂ । ୭୫ ।
ସତ୍ୟଭାମା ବୋଇଲା ପାଣ୍ଡବେ ଜଦୁର ଘରେ ମଲେ
ପୁଣ ସେ କେମନ୍ତେ ନାଥ ବ୍ରହ୍ମଣ ଅଇଲେ । ୭୬ ।
ଦ୍ଧବସେ ସ୍ୱପ୍ନ କ ଦେଖିଲୁ ଯଦୁସାଇଂ
ପାଣ୍ଡବଙ୍କର ମଲାର ଆଜକୁ ଷଷ୍ଟ ବରଷ ହୋଇ । ୭୭ ।
କାହିଂ ହୋଇଲ ବାଇ କାହିଂ କଲ କେମନ୍ତ
ଯେତ୍ୱର ଚରିତ ମୋତେ କହିବ ଜଗତଭୂତ । ୭୮ ।

ବୋଲନ୍ତି ମାଧବ ଶୁଣ ଗୋ ପ୍ରାଣସହି
ମୋହୋର ଥିଲେ ପାଣ୍ଡବେ ପାରି ନୋହି କାହିଂ ? । ୭୯ ।
ଶୁଣ ପ୍ରାଣ ସହି କହଇ ମୁଂ ତୋତେ
ପାଣ୍ଡବେ ମଲେ ତୁ କାହିଂ ଦେଖିବୁ ଯେ ମୋତେ । ୮୦ ।
ସେ ଯେ ପାଣ୍ଡବେ ପ୍ରତକ୍ଷେ ଦେବ ହରି
ମହାଭାର ନବାରି ଭାରତେ ଅବତରି । ୮୧ ।

ଗୋବନ୍ଦ ଜଗମୋହନ ପୁଣ ଶନାବଣ୍ଟ
ଯେତ୍ୱ କଥା କାହିଂ ଫୁଟ ନୋହିବ ପ୍ରିୟବର୍ଣ୍ଣ । ୮୨ ।
ରମ୍ୟେକ ଦ୍ୱୀପେ ଯେ ଥିଲ ପକ୍ଷୀବର
କୃଷ୍ଣର ସୁମରନ୍ତେ ଅଇଲ ଖରତର । ୮୩ ।
ପକ୍ଷୀର ବାତ ଘାତେ ଗିରିବର କମ୍ପିଲେ
ଗିରି କନ୍ଦର ଅରଣ୍ୟ ସମସ୍ତ ଚୂରି ଗଲେ । ୮୪ ।
ଦ୍ୱାରକାପୁରେ ପ୍ରବେଶ ଖଗେଶ୍ୱର
ଶତେ ସହସ୍ର ପ୍ରଣପତ୍ୟ କୃଷ୍ଣର ପୟରି । ୮୫ ।

କସ ଅର୍ଥେ ସୁମରଣା କଲ ଦେବ ହରି
କେତ୍ହ ଅସଖ୍ୟ ମୋତେ ଆଗ୍ୟାଂ ଦେବା ଦଇତାରି । ୮୬ ।
ଶ୍ରୀକୃଷ୍ଣେ ବୋଇଲେ ହୋ ଯୁଧେଷ୍ଠିଙ୍କି ଦେଖି ଯିବା
ନର୍ଜ୍ଜର ଘୋର ଅରଣ୍ୟେ ଯାଇଣ ପଶିବା । ୮୭ ।

ଗରୁଡ଼ ପିଠିରେ ବିଜେ କଲେ ଦେବ ହରି
ଘଡ଼କେ ମିଳିଲେ ଯାଇ ହସ୍ତିନାକ ନାମେ ପୁରୀ । ୮୮ ।
ଯେତେ ଦୂରେ ଯୁଧିଷ୍ଠିରଙ୍କର ଦିଶିଲା ଆସନ
ଗରୁଡ଼ ପୃଷ୍ଠରୁ ଉତ୍ତରି ଭଗବାନ । ୮୯ ।
ଯୁଧିଷ୍ଠିରଙ୍କ ପଦ୍ମରେ ପ୍ରଣିପତ୍ୟ ଦେବ ହରି
ଉଠିଣ ଜଗନ୍ନାଥଙ୍କୁ ଯୁଧିଷ୍ଠିର କୋଳ କରି । ୯୦ ।
ଯୁଧିଷ୍ଠିର ବୋଇଲେ ଶୁଣିମା ଜଗତଭୂତ
ସ୍ୱାମୀ ଗଣ୍ଡା ଆଣି ଯାଇ କପିଳା ବଧ କଲା ବୀର ପାର୍ଥ । ୯୧ ।
ଶୁଣିଣ ନାରାୟଣ ବିରସ ହୋଇଲେ
ଅର୍ଜୁନର ମୁଖ ଗୃହ୍ନିଂ ଦେବ ସମାସ୍ୟା ହେଲେ । ୯୨ ।
ନ ଜାଣି ଦୋଷ କଲୁ ପ୍ରାଣର ସଂଘାତ
ମୋତେହେଂ ଅଗୋଚର କଲୁ ଯେ ଉତକୃତ । ୯୩ ।
ବ୍ରହ୍ମାଙ୍କୁ ଧ୍ୟାୟେ କଲେ ଦେବ ହରି
ଜାଣିଣ ଧାତା ମରାଳ ପିଠିରେ ବିଜେ କରି । ୯୪ ।
ଚଳିଲେଣ ଅଛନ୍ତି ବ୍ରହ୍ମଋଷିମାନେ
ଷାଠିଯେ ସହସ୍ର ଶିଷ ଯେନ ଚତୁର ବଦନେ । ୯୫ ।
କନ୍ଧରେ ପଇତା ହସ୍ତରେ କୁଶ ବଟୁ
ଛତା ଧୋତି ପୋଥି ଅନ୍ତରୀକ୍ଷ ଭୁବନ ଘଟୁ । ୯୬ ।
ଯହିଂରେ ବିଜେ କରିଛନ୍ତି ଦେବ ହରି
ନାରାୟଣ ସନ୍ନିଧାନେ ଯାଇ ଧାତା ବିଜେ କରି । ୯୭ ।
ଦେଖିଣ କୃତ କୃତ ଦେବ ଚକ୍ରଧର
ଯୁଧିଷ୍ଠିର ଦେବେ ଯାଇ ନମନ୍ତି ପଦ୍ମର । ୯୮ ।
ବସିତେ ଆସନ ହେଲେ ଦେବ ଧାତା
ସମାର୍ଜନା ବଚନେ କହନ୍ତି ଧର୍ମସୁତା । ୯୯ ।
ଅର୍ଜୁନର କଥା କହନ୍ତି ସଞ୍ଜପି
ଅଛନ୍ତି କି କାରଣ ଦେବ କହିବା ଅଦ୍ୟାପି । ୧୦୦ ।
ବ୍ରହ୍ମାୟେ ବୋଇଲେ ଦେବତାନ୍ତ ସୁମର
ପାପ ଦୋଷ ଖଣ୍ଡଣ କରିବେ ଚକ୍ରଧର । ୧୦୧ ।

୯୩।୨–ଉତକୃତ—ଅଧର୍ମ କାର୍ଯ୍ୟ

ଧାତାର ବଚନେ ଦେବ ଦଇତାରି
ସଉରଭ ପାଶେ ଜଳ ଭରି ଦେବତାଙ୍କୁ ସୁମରି । ୧୦୨ ।
ନାରଦପୂଣଙ୍କ ଶବଦନେ ଜାଣିଲେ ଦେବ ହର
ବିଜେ କଲେ ଦେବ ବୃଷଭ ଉପର । ୧୦୩ ।
କରେଣ ତ୍ରିଶୂଳ ଲଲାଟେ ଗନ୍ଧ ଘଟି ·
କଟିରେ ବ୍ୟାଘ୍ର ଚର୍ମ ଭୂଷଣ ଲାଙ୍ଗଟି । ୧୦୪ ।
ସୁଦ୍ଧ ସଫଟିକ ବିରାଜଇ ନିଜ ଗାଏ
ଡମ୍ବରୁ ବଜାଇ ବିଜେ କରନ୍ତି ତ୍ରିଅନେଏ । ୧୦୫ ।
ଶିବଗଣ ଭୁଲେ ଚଉଦ କୋଟି
ନନ୍ଦିକେଶ୍ୱର ଭୁଲେ ବିଜୟେ ଧୂର୍ଜଟି । ୧୦୬ ।
ବିଘ୍ନରାଜେ ବିଜୟେ ଇନ୍ଦୁର ବାହନେ
କାର୍ତ୍ତିକେଶ୍ୱର ବିଜେ କଲେ ମୟୂର ଆରୋହଣେ । ୧୦୭ ।
ଈଶ୍ୱରେ ବିଜେ କଲେ ହିଡମ୍ବିକ ବନେ
ଦେଖି ପୂଜା କଲେ ଧର୍ମର ନନ୍ଦନେ । ୧୦୮ ।
ଜଗନ୍ନାଥେ ପ୍ରଣପତ୍ୟ ବିଶ୍ୱନାଥ ପାଦତଳେ
ଅର୍ଜୁନ କଥା ମାନ କହନ୍ତି ଯୋଡ଼ଲେ । ୧୦୯ ।
ପୂଜା ପାଇ କରି ରହିଲେ ଦେବ ହର
ଗଜାନନ ସହିତେ କାର୍ତ୍ତିକ କୁମାର । ୧୧୦ ।
କାର୍ତ୍ତିକ ପଯୂରେ ନମନ୍ତି ଯୁଧିଷ୍ଠି
ଦୁର୍ଗା ବିଜେ କଲେ ସିଂହର ପେ ପିଠି । ୧୧୧ ।
ମାହେଶ୍ୱରୀ ବିଜେ କଲେ ହିଡମ୍ବିକ ବନର
କରେ ଶୋଭିବନ ଦେଖାଇ କାତି ଯେ ଖପର । ୧୧୨ ।
ହିଡମ୍ବିକ ବନେ ବିଜୟେ ଶାକାମ୍ଭରୀ
ଦେଖିଣ ଯୁଧିଷ୍ଠି ଦେବ ପ୍ରଣପତ୍ୟ କରି । ୧୧୩ ।
ଅସୁକାର ବଚନ ଉଚ୍ଚାରନ୍ତି ଭଦ୍ରକାଳୀ
ମଙ୍କେଣ ରାଜା ତୁ ହୁଅ ସତ୍ୟ ପ୍ରତିପାଳ । ୧୧୪ ।

---

୧୦୪।୧ ଘଟି—ଚୂର୍ଣ୍ଣ
୧୦୬।୨ ଧୂଜଟି—ଧୂର୍ଜଟୀ—ମହାଦେବ ।
୧୧୩।୧ ଶାକାମ୍ଭେରୀ—ଶାକମ୍ଭରୀ—ଦୁର୍ଗା

ଯୁଧିଷ୍ଠି ବୋଇଲେ ଦେବି ଦୋଷ କ୍ଷମା କର
ସ୍ତ୍ରୀ ହତ୍ୟା ଦୋଷ ମା ଗୋ ତୁମ୍ଭର ହୋଉ ପାର । ୧୧୫ ।
ଦୁର୍ଗେ ବୋଇଲେ ତୋର ପୂରିବ ଆଶ
ସ୍ତ୍ରୀ ମଞ୍ଚ ମଣ୍ଡଳେ ତୁ ଅଟୁ ସାଧୁ ପୁରୁଷ । ୧୧୬ ।
ରହିଲେ ଶାକାମ୍ବେଶ୍ୱ ହରିତମ୍ବକ ବନେ
ମୃଗ ବାହନେ ବିଜେ କଲେ ସେ ପବନେ । ୧୧୭ ।
ଭୁଲେଣ ଅଇଲେ ଅଣଂଗୃଣ ପବନ ଘେନ
ବିଜେ କଲେ ଯହିଂ ଅଛନ୍ତି ପଦ୍ମଯୋନ । ୧୧୮ ।
ସପତ ରତ୍ନ ଘେନ କୁବେର ମହାତମା
ପ୍ରବେଶ ହୋଇଲେ ଯହିଂ ଅଛନ୍ତି ବେଦ ବ୍ରହ୍ମା ୧୧୯ ।
ଅଇରାବତ କାନ୍ଧରେ ଦେବ ଇନ୍ଦ୍ର
ଚଉଷଠୀ କୋଟି ଭୁଲେ ବିଦ୍ୟାଧର ଦେବ ବୃନ୍ଦ । ୧୨୦ ।
ପୁରନ୍ଦର ଅଶୀ ଲକ୍ଷ ସ୍ୱାର ମାନ
ସେ ଯାହାର ଯାନ ବାହାନେ କରନ୍ତି ଗବନ । ୧୨୧ ।
ଜୟେମୃନ ଚିତ୍ରସେନ ଆବର ସବୁ ବ୍ରାହ୍ମଣ
ସ୍ତେମାନେ ହୋଇଛନ୍ତି ସଇନ ଆଗେଣ । ୧୨୨ ।
ଦେବ ପୁରୁଷ ସଂଗରେ ବିଜେ ନବଗ୍ରହେ
ରାହୁ କେତୁ ଆଦିକରି ବିଜୟେ ସଭିଟୟେଂ । ୧୨୩ ।
ବାୟୁ ବରୁଣ ଦଶ ଦିଗ ପାଳେ
ସେ ଯାହାର ଯାନ ବାହାନେ ଅଇଲେ ସକଳେ । ୧୨୪ ।
ସତାଇଶ ଲକ୍ଷ ଚନ୍ଦ୍ର ଦେବତା ଆଦିକରି
ବିଜେ କଲେ ଯାଇ ହରିତମ୍ବିକ ନାମେ ପୁରୀ । ୧୨୫ ।
ରବି ଶୁକ୍ର ବୃଧ ଶନୈଶ୍ଚର ମୂଳେ
ପ୍ରବେଶ ହୋଇଲେ ଯାଇଂ ଦେବତାଙ୍କ ମଣ୍ଡଳେ । ୧୨୬ ।
ସନକ ସନାତନ ଖ୍ରିଷ୍ଣୁ ମହାଦେବ
ପ୍ରବେଶ ହୋଇଲେ ଯହିଂ ଅଛନ୍ତି କେଶବ । ୧୨୭ ।

---

୧୨୭।୨ ଖ୍ରିଷ୍ଣୁ—ଉଗ୍ର

କୋଟିଏ ଋଷି ଘେନି ଭଜଯେ ବେଦବ୍ୟାସ
ପ୍ରବେଶ ହୋଇଲେ ଯାଇଂ ଯୁଦ୍ଧେଷ୍ଟି ବେଦଙ୍କର ପାଶ । ୧୨୮ ।
ଘଉଲକ୍ଷି ଅଇଲେ ଲକ୍ଷେ ଚେଲା ଘେନି
କୋଟିଏ ଚେଲା ଘେନି ଭଜଯେ ମାରକଣ୍ଡ ମହାମୁନି । ୧୨୯ ।
ଦେବ ଋଷି, ବ୍ରହ୍ମ ଋଷି, ରାଜ ଋଷି ମୂଳେ
ଯମଦ ଅଗ୍ନିର ମୂଳେ ବସିଲେ ସକଳେ । ୧୩୦ ।
କୃଷ୍ଣ ବୋଇଲେ ବାସବର ମୁଖ ଚୃହିଂ
ସୁଧର୍ମା ସଭା ଅଣାଅ ସୁରସାଇଂ । ୧୩୧ ।
ଜଗନ୍ନାଥ ଆଗ୍ୟାଂ ପାଇ ଦେବ ଦଇବତ
ଦେବ ସଭା ବସାଇଲେ ଭୁରିତ । ୧୩୨ ।
ସମସ୍ତେ ହେଂ ଭଜେ ଅମର ଆସ୍ଥାନେ
ଉପରେ ପୁଷ୍ପ ବୃଷ୍ଟି କଲେ ମଘବାନେ । ୦୩୩ ।
ଭର ହରଷ ରଂଗେ ନୃତ୍ୟ କରନ୍ତି ବିଳାସୁଣୀ
ଗାନ୍ଧାରେ ନୃତ୍ୟ କରନ୍ତି ରଙ୍ଗ ଖଟଣୀ । ୧୩୪ ।
ବ୍ରହ୍ମବୀଣା ଧଇଲେ ଯେ ବ୍ରହ୍ମାର ନନ୍ଦନ
ନୃତ୍ୟ ରସେ ମତ୍ତ ହେଲେ ଦେବ ଗଣ । ୧୩୫ ।
ଯେମନ୍ତର ସମଯେ ସଭାରେ ଉଭା ହୋଇଲେ ଯୁଦ୍ଧେଷ୍ଟି
ପ୍ରଣିପତ୍ୟ ହୋଇ ଦେବ ସଭାରେ ଯାଇଂ ଉଠି । ୧୩୬ ।

ଉଠ ଉଠ ବୋଲନ୍ତେ ଦେବ ହର
ଯେମନ୍ତେ ବାଞ୍ଛା ପୂରେଉଂ ତୋହୋର । ୧୩୭ ।
ଯୁଦ୍ଧେଷ୍ଟି ବୋଇଲେ ପିତା ଅର୍ଜୁନ କପିଳା ବଧ କଲା
ତେଣୁ କରି ମୋତେ ଶଙ୍କା ଲାଗିଲା । ୧୩୮ ।

ଇନ୍ଦ୍ର ଗୋବିନ୍ଦ ଧାତା ଯେ ଆପଣ
ହରିହର ବରିତ ବୁଝିଲ କେସନ । ୧୩୯ ।
କୃଷ୍ଣ ବୋଇଲେ ଧାତା ଭାରାଭର ଅର୍ଥେ
ପୃଥୀରେ ଜାତ ଆମ୍ଭେ ହୋଇଲୁ କୃଷ୍ଣ ପାର୍ଥେ । ୧୪୦ ।
ସେ ଯେବେ ପାପୀ ମୁଂ କସ ଅପାପୀ
କୃଷ୍ଣ ଅର୍ଜୁନ ଶପ୍ତେଲେ ବୋଲନ୍ତି ଅଦ୍ୟାପି । ୧୪୧ ।

ତୁ ଯେବେ ଧାତା ବହିଲୁ ପାପ ଦୋଷେ
ଆମ୍ଭେ ଦୁହେଁ କଂପା ଥିବୁ ମଞ୍ଚ ଦେଶେ । ୧୪୨ ।
ପୃଥୀର ଭାରଭର ଉଶ୍ୱାସ ନିମନ୍ତେ
ଆମ୍ଭେ ଦୁହେଁ ଜାତ ହୋଇଛୁଂ କୃଷ୍ଣ ପାଥେ । ୧୪୩ ।
ସାଂଗ୍ରାମ ଭୂମିରେ ଗୋ ବ୍ରାହ୍ମଣ ସମସ୍ତେ ପଡ଼ି
ତହିଂର ଦୋଷ ଯେବେ ମୋତେ ବଗୁରବ ବେଦଗୃର । ୧୪୪ ।
ସ୍ୱେ ତ ନୟନେ ନ ଦେଖିଲି କଲି ଜୀବ ଘାତ
ସ୍ୱେ କଷଣୁଂ ଯେବେ ପାର ନ କରବୁ ବଧାତ । ୧୪୫ ।
କୃଷ୍ଣ ବୋଇଲେ ଅର୍ଜୁନଙ୍କୁ ପାପଦଶା ବହିଲେ
ଭାର କେମନ୍ତେ ଉଶ୍ୱାସ ହୋଇବ ବୋଇଲେ । ୧୪୬ ।
ଇନ୍ଦ୍ର ବୋଇଲେ କୃଷ୍ଣ ଅର୍ଜୁନ ସ୍ୱେକ ଆତ୍ମା
ତୋହୋର ଦେହରୁ ଜାତ ଅଟନ୍ତି ସ୍ୱେକ ଆତ୍ମା ବେଦବ୍ରହ୍ମା । ୧୪୭ ।
ବ୍ରହ୍ମାଙ୍କର ରୋଧର ଈଶ୍ୱର ବଭୂତି
ବିଷ୍ଣୁର ଦେହ ସ୍ୱେ ଇନ୍ଦ୍ରର ଆଗତି । ୧୪୮ ।
ଇନ୍ଦ୍ର ବୋଇଲେ ସ୍ୱେ ମୋହୋର କୁମର
ସ୍ୱେହାକୁ ମୁକତ କରବା ବେଦବର । ୧୪୯ ।
ବିଷ୍ଣୁ ଇନ୍ଦ୍ର ସହୁଂ ହୋଇଲେ ବନୋଇ
ସ୍ୱେହାକୁ ହତ୍ୟା ଦୋଷ ଅଛି ଦେବ କାହିଂ । ୧୫୦ ।
ଧାତା ଆଗ୍ୟାଂ ଦିଲେ ନାରଦକଇଂ ରାଇ
ଯଗ୍ୟଂକୁ ଆରମ୍ଭ କର ବ୍ୟାସଙ୍କୁ ବସାଇ । ୧୫୧ ।
ନାରଦ କହିଲେ ନାରାୟଣଙ୍କ ଅଗ୍ରତେ
ଯାଗକୁ ଆରମ୍ଭ ହୋ କର ନରପତ୍ୟେ । ୧୫୨ ।
କୃଷ୍ଣଙ୍କୁ ଅନେକ ବନୋଇ ଯୁଦ୍ଧେଷ୍ଟି
ତୋହୋରେ ସକଳ ନାଥ ଖଣ୍ଡଇ ଅରିଷ୍ଟି । ୧୫୩ ।
ଯାଗକୁ ସମ୍ଭାର ନାଥ ପାଇବୁ ଆର କାହିଂ
ତୋ ତହୁଂ ଆନ ତ ସଖା ନାଥ ନାହିଂ । ୧୫୪ ।

---

୧୪୭।୨ ତାହାଙ୍କର ଦୋଷ କାହୁଂ ଅଛି ହୋ ମହାତମା ।

ନାରଦଙ୍କୁ ଚାହିଁ ବୋଇଲେ ଦେବହରି
ରତ୍ନାକର ଭୁବନକୁଂ ସମ୍ଭାର ଆଣ ଶକ୍ୟ ଯେତେ ତୁମ୍ଭରି । ୧୫୫ ।
ମାୟାଧର ନାଥ ସେ ମାୟା ସୃଷ୍ଟି କଲା
ରତ୍ନାକର ଭୁବନେ ମୁନି ସମସ୍ତ ପାଇଲା । ୧୫୬ ।
ବିଶ୍ୱକର୍ମାଙ୍କୁ ଚାହିଁ ଆଜ୍ଞାଂ ଦେଲେ ଦେବ ହରି
ଯଜ୍ଞଂ ଶାଳ ଭୁବନ ତିଆଅ ଯତ୍ନ କରି । ୧୫୭ ।
ଜଗନ୍ନାଥଙ୍କର ଆଜ୍ଞାଂୟେ ଶିଳ୍ପୀ ବେଗେ ଗଲା
କ୍ଷଣକର ମଧ୍ୟେ ଯଜ୍ଞଂ ଶାଳା ତିଆରିଲା । ୧୫୮ ।
ଦେବର୍ଷି, ବ୍ରହ୍ମର୍ଷି ବସିଲେ ଯଜ୍ଞଂ ଶାଳେ
ଦାବାନଳ ଅଗ୍ନି ଥାପିଲେ ମହାନଳେ । ୧୫୯ ।
ଗୁଆଘୃତ ସେ ଜଳ ତିଳ ଧେନୁ
ଆହୁତିରେ ବରଣ ହୋଇଲେ ବିଶ୍ୱାମିତ୍ର ମୁନି । ୧୬୦ ।
ମୁକୁତି ଘଟ ନେଇ ଯଜ୍ଞେଂ ଆରୋପିଲେ
ଈଶ୍ୱର ଦେବତା ସନ୍ଧ୍ୟେ ବିଜେ କଲେ । ୧୬୧ ।
ପବନ ଦେବତା ମୁନି ବେଦବ୍ୟାସ
ପାପ ଶାନ୍ତି ମନ୍ତ୍ର ପଢନ୍ତି ଭରଦ୍ୱାଜଶ । ୧୬୨ ।
ଅଗସ୍ତି ପଢନ୍ତି ମୁକତି ଗାୟତ୍ରୀ
ଅଜପା ପଢନ୍ତି ଦେବ ବଶିଷ୍ଠ ତପସ୍ୱୀ । ୧୬୩ ।
ଅର୍ଜୁନ କଇଂ ଆଣି ଯାଗ କଣ୍ଡରେ ବସାଇଲେ
ମୁକତି ମନ୍ତ୍ର ତୀର୍ଥ ଜଳ ସ୍ନାନ କରାଇଲେ । ୧୬୪ ।
ଅଜପା ଗାୟତ୍ରୀ ପଢନ୍ତି ସମସ୍ତ ଋଷି
ଆପଣେ ବେଦବର ବୋଲନ୍ତି ନ ଲାଗୁ ଗୋହତ୍ୟା ଦୋଷି । ୧୬୫ ।
ସକଳ ଦେବତାୟେ ଜୟେ ଜୟେ ଧ୍ୱନି କଲେ
ପାର୍ଥର ଶିରେ ପଞ୍ଚାମୃତ ସିଞ୍ଚିଲେ । ୧୬୬ ।
କୋଟିୟେ ତୀର୍ଥ ଧେନୁ ଅଇଲେ ପୁଷ୍କର
ଅଭିଷେକ କଲା ନେଇ ଅର୍ଜୁନର ଶିର । ୧୬୭ ।
ଅପସରାମାନେ କରନ୍ତି ମଙ୍ଗଳ ଧ୍ୱନି
ହୁଳହୁଳି ନାଦ କରନ୍ତି କାମିନୀ । ୧୬୮ ।

ସୁସ୍ୱରେ କାମିନୀମାନେ କରନ୍ତି ନୃତ୍ୟଗୀତ
ମଙ୍ଗଳ ପଢନ୍ତି ଚଣ୍ଡମୂନି ପୁନ । ୧୬୯ ।
ଗୋମତୀରେ ସ୍ନାହାନ କରାଇଲେ ଝୀନବାସ ପିନ୍ଧାଇ
ଦେବ ସଭାରେ ପାର୍ଥଙ୍କୁ ବସାଇଲେ ନେଇ । ୧୭୦ ।
ଯେଉମନ୍ତେ ମତେ ପାର୍ଥଙ୍କୁ ମୁକତ ହୋଇଲା
ମର୍କଣ୍ଡେଶ୍ୱର ଲିଙ୍ଗ ପୃଥିରେ ରହିଲା । ୧୭୧ ।
ମାଳତୀ ଲିଙ୍ଗେକ ଯେ ଧୋଡାଇଲା ମୁଣ୍ଡର
ଗୋକର୍ଣ୍ଣେଶ୍ୱର ସେ ହୋଇଲା ପୃଥିଵୀର । ୧୭୨ ।
ଋଷିଗଣମାନେ ଅନେକ କଲ୍ୟାଣ ଭଷି
ଅସ୍ତୁ କରାଇଲେ ପାତେକ ହୋଯେ ଧଂସି । ୧୭୩ ।
କୃଷ୍ଣ ଆଗ୍ୟାଂ ଦିଲେ ଯୁଧେଷ୍ଠିଙ୍କି ଶୃଣ୍ହଂ
ତୁମ୍ଭର ପାପମାନ ଶରୀରେ ହୋଉ ନାହିଂ । ୧୭୪ ।
ପାପ ପୁଣ୍ୟ ଜନ୍ମ ତୁମ୍ଭେ ଯେଉଥେ ଯାଅ ପାଞ୍ଚଭାଇ
ଶରୀର ନିର୍ମଳ ହୋଉ ତୁମ୍ଭର ଦେବତାଗଣ ଶୃଣ୍ହଂ । ୧୭୫ ।
ନାରାୟଣ ବଚନେ ଗଲେ ପଣ୍ଡୁର ନନ୍ଦନ
ନାରାୟଣ ପ୍ରସନ୍ନେ ପାପ କଲେ ଦହନ । ୧୭୬ ।
ଜଗନ୍ନାଥେ ବୋଇଲେ ପାପ ଶରୀରେ ଯେବେ ଥାନ୍ତା
ତୁମ୍ଭର ଦୁଇଭାଗେ ଦୁଇ ଦ୍ୱାର ଲାଗନ୍ତା । ୧୭୭ ।
ଯେବେ ନିକଳଙ୍କ ହୋଇବ ତୁମ୍ଭର ଦେହି
ନାରାୟଣ ହରଷ ହୋଇଲେ ପାଣ୍ଡବଙ୍କ ଶୃଣ୍ହଂ । ୧୭୮ ।
ଯେବେ ସେ ନିର୍ମଳ ହୋଇଲେ ପାଣ୍ଡବ ଧର୍ମରାଯେ
ଯେ ପାର୍ଥଙ୍କୁ ଢେକା ଭରା ହରିବ ଥୋକାଯେ । ୧୭୯ ।
ତୁ ଧର୍ମରାଯେ ସ୍ୱାମୀ ଦୟାକରି ଥିବା
ତୋହୋର ଚରଣେ ଥାଉ ମୋହୋର ସେବା । ୧୮୦ ।
ଯୁଧେଷ୍ଠି ବୋଇଲେ ସ୍ୱାମି ତୋହୋର ଆଶ୍ରିତେ
ସତ୍ୟେ ବ୍ରତୁ ଆମ୍ଭେ ପଣ୍ଡୁର ପଞ୍ଚ ପୁତ୍ରେ । ୧୮୧ ।

---

୧୭୧।୨ ମୁକତେଶ୍ୱର ବୋଲଣ ଲିଙ୍ଗେକ ହୋଇଲା ।

ସ୍ୱାମି ସେବଣ କୂଟ କଲେକ କଉରବେ
ଦୁସ୍ତରୁ ତରିଲୁ ତୋହୋ ଯୋଗୁଂ ବାସୁଦେବେ । ୧୮୨ ।
ହର କୂଟେ ନେଇ ଖାମକୁ ବିଷ ଲଡ଼ୁ ଦିଲେ
ନାଗେଣୀ ଖାଉ ବୋଲି ଜଳେ ପକାଇଲେ । ୧୮୩ ।
ବାରୁଣାବନ୍ତେ ନେଇ କଲେ ଯେଉଂ କୂଟେ
ପୁରେକ ଭିଆଇଲେ ଗୁଆଘୃତ ଛଣ ପଟେ । ୧୮୪ ।
ତରିଲୁ ତହୁଂ ହର ତୋହୋର ପରସାଦେ
ଦ୍ୱାପର ଯୁଗେ ଶରଣ ତୋର ପାଦେ । ୧୮୫ ।
ଗୋହତ୍ୟା ବ୍ରହ୍ମହତ୍ୟା ଦୋଷମାନ
ତୋହୋର ଶରଣେ ଖଣ୍ଡୁ ପାତକମାନ । ୧୮୬ ।
ସଦସ୍ଥା ଦସ୍ଥା ହୋଇବୁ ଦେବ କାଶି
ଅବଛିନ୍ନେ ବଜସ୍ୱେ ବିଶ୍ୱବାସୀ । ୧୮୭ ।
ଯେ ତୋତେ ସ୍ୱେକାବେଳେ ନୟନେ ଦେଖିବ
କୋଟିସ୍ୱେ ଜନ୍ମର ପାପ ଯେ ହରିବ । ୧୮୮ ।
ଦେଖିଲେ କଂଚତ ପାପ ନ ଥିବ ଶରୀରେ
ତୋର ମୁଖ ଦେଖନ୍ତେ ବସିବ ସ୍ୱର୍ଗପୁରେ । ୧୮୯ ।
ସଦାଶିବ ନାଥ ପ୍ରତକ୍ଷେ ଉଭା ହୋଇ
ଇନ୍ଦ୍ର ନନ୍ଦ ବରଷା କରିବ ତୋର ତହିଂ । ୧୯୦ ।
ନନ୍ଦହିଂ ବରଷା କର୍‌ବ ସୁରପତ
ମୋହୋର କଥା ରହିଥିବ ପୃଥ୍ୱି । ୧୯୧ ।
ଇନ୍ଦ୍ର ଗୋବିନ୍ଦ ଧାତା ଯୁଦ୍ଧେଷ୍ଟି ପାଞ୍ଚଭାଇ
ଧାତା ବୋଇଲେ ତୁମ୍ଭେ ସ୍ୱେଥେ ଲିଙ୍ଗେ ଲିଙ୍ଗେ ଥୋଇ । ୧୯୨ ।
ତେତିଶ କୋଟି ଦେବତା ପାଣ୍ଡବ ପାଞ୍ଚଭାଇ
ଲିଙ୍ଗ ପୂଜନ୍ତ ଯେ ମନ୍ତ୍ର ପଢ଼ାଇ । ୧୯୩ ।
ବାଲୁକା ଲିଙ୍ଗେକ ପୂଜ ଉପରେ ବେଲପତ୍ର ଢାଳି
ଲିଙ୍ଗେ ବଦାର ବଜେ କଲେ ଦେବ ଶୂଳୀ । ୧୯୪ ।
ଇନ୍ଦ୍ରେ ଯାହା ପୂଜିଲେ ଇନ୍ଦ୍ରେଶ୍ୱର ବୋଲି ହୋଉ
ଯମେ ଯାହା ପୂଜିଲେ ଯମେଶ୍ୱର ବୋଲାଉ । ୧୯୫ ।

ବ୍ରହ୍ମା ଯାହାଙ୍କୁ ପୂଜିଲେ ବ୍ରହ୍ମେଶ୍ୱର ଜାଣ
ଚନ୍ଦ୍ର ଯାହା ପୂଜିଲେ ଚନ୍ଦ୍ରେଶ୍ୱର ପୁଣ । ୧୯୬ ।
ବରୁଣ ଯାହା ପୂଜିଲେ ବରୁଣେଶ୍ୱର ନାମ ହୋଇ
କୁବେର ଯାହା ପୂଜିଲେ କୁବେରଶ୍ୱର ନାମ ବହି । ୧୯୭ ।
ତେତିଶ କୋଟି ଦେବେ ପୂଜିଲେ ତେତିଶ ନାମ ବହିହୋଇ
ଠିକ ଠିକ ନାମ ମୁଂ ଯେ କହିଲି ବଖାଇ । ୧୯୮ ।

ପଞ୍ଚ ପାଣ୍ଡବ ଯେ ଲିଙ୍ଗେ ଲିଙ୍ଗେ ପୂଜି
ଧର୍ମେଶ୍ୱର, ଭୀମେଶ୍ୱର, ଅର୍ଜୁନେଶ୍ୱର, ନକୁଳେଶ୍ୱର, ସହଦେବେଶ୍ୱର
ପୃଥୀରେ ଉପୁଜି । ୧୯୯ ।

କୋଇନ୍ଦ୍ରା ଯାହା ପୂଜିଲେ କୋନ୍ଦ୍ରେଶ୍ୱର ନାମ ହୋଇ
ବ୍ରହ୍ମାଙ୍କୁ ଆଜ୍ଞାଂ ଦେଲେ କୋଇନ୍ଦ୍ରାଙ୍କର ଠନଇ । ୨୦୦ ।

ବ୍ୟାସେ ବୋଇଲେ·ପ୍ରାଚେକ ମୁକତ ଯେ ତୀର୍ଥ
ସ୍ୱର୍ଗୁଂ ପୁଷ୍ପ ବୃଷ୍ଟି କରୁଥିବ ସୁରନାଥ । ୨୦୧ ।
ନିତ ଇନ୍ଦ୍ର ଦେବତା ଯେଣୁ ବରଷିବ
ତେବେ ସେ ହରନାଥ ଦେହ ଶୀତଳ ହୋଇବ । ୨୦୨ ।

ବ୍ରହ୍ମା ଆଜ୍ଞାଂ ଦେଲେ ବ୍ୟାସଙ୍କୁ ଯେ ଗୃହିଂ
ପୂଜା ଯେଣୁରେ କେ କରୁଥିବ ରହି । ୨୦୩ ।
ସହଦେବ ବଦନ ଗୃହିଂଲେ ବ୍ୟାସ ମହାଋଷି
ଚଉକଣ୍ଡ ବୁଲି ବାବୁ ରେ ଦେଖ ଉପଲେସି । ୨୦୪ ।

ବ୍ୟାସଙ୍କର ବଚନେ ଚଳଇ ସହଦେବ ମନ୍ତ୍ରୀବର
ଟୁଙ୍ଗା କରବା ଖୋଳନ୍ତେ ଦେଖିଲି ଶବର । ୨୦୫ ।
ଶବରଙ୍କୁ ଘେନି ଚଳିଲି ମନ୍ତ୍ରୀ ବେଗେ
ଧାଡିକାରେ କଲି ନେଇ ବ୍ୟାସଙ୍କର ଆଗେ । ୨୦୬ ।
କୃଷ୍ଣ ବୋଇଲେ ଶୁଣ ହୋ ଶବର
ପାଣି ପତ୍ର ନେଇ ପୂଜା କର ହର । ୨୦୭ ।

---

୨୦୪।୨ ଉପଲେସି—ଉପନେସି ॥

ତତକ୍ଷଣେ ମାଛ ବାହାରି ଗଲା
ଗେଣ୍ଡା ମାଂସ ଭକ୍ଷନ୍ତି ଜାତିରେ ତପସ୍ୱିଙ୍ଗଲା । ୨୦୮ ।
ତାହାଙ୍କୁ ଦେଖି ଘୋର ସଭାରେ ପରବେଶ
ଦେଖିଣ ଯୁଧିଷ୍ଠି ଦେବ କଲେ ଉପହାସ । ୨୦୯ ।
ବ୍ୟାସେ ବୋଇଲେ ତୁ ସର୍ବଭୂତେ ନାଥ
ସେ ଯେବେ ଅମାତ୍ୟ, ଅଛଇ କେ ନାଥ । ୨୧୦ ।
ଛପନ କୋଟି ଜୀବ ଜନ୍ତୁ ସଭିଏଁ ସେକ ପ୍ରାଣ
ତୈବେ ନାରାୟଣ କେହ୍ନେ କଲୁ ଭିଆଣ । ୨୧୧ ।
ସହଦେବ ବୋଇଲା ନାଥ ଜନ୍ମରେ ବାଉରୀ
ଗେଣ୍ଡା ଶାମୁକେ ବ୍ରତନ୍ତି ସେ ଆହାର । ୨୧୨ ।
କୃଷ୍ଣ ବୋଇଲେ, ସେ ଶବର ଭାବକୁ ବହିଲା
ସେହାର ଦେହରୁ ପାପ ସକଳ ଧ୍ୱଂସ ଗଲା । ୨୧୩ ।
ନର ନାରାୟଣ ମଙ୍ଗେ ଅବତାର
ଷଏ ଜୀବନ୍ତ ତୋଷିବ ସବୁ ସେକକାର । ୨୧୪ ।
ବ୍ରହ୍ମାଏ ସେହାକୁ ଦିଅ ପଇତା
ଯୁଗେ ଯୁଗେ ସେହାର ପୁରାଣେ ଥାଉ କଥା । ୨୧୫ ।
ଆପଣେ ବେଦ ବ୍ୟାସେ କୋଇଲା ସୂତା ଦେଖ
ତପସ୍ୱିଙ୍ଗଲା ଗଳାରେ ପକାଇଲେ ମହାମୁନି । ୨୧୬ ।
ତୀର୍ଥ ଜଳ ପୁଣି ସେ ସିଞ୍ଚିଲେ ମୁନିବର
ଆଜନ୍ମ ହୋଇଲୁ ତୁ କାଳିନ୍ଦୀ ବିପ୍ରବର । ୨୧୭ ।
ବାଉରୀ ଶାସନ ବୋଲି ସେହାର ନାମ ହୋଉ
ସେ ଆମ୍ଭର କଥା ଯୁଗେ ଯୁଗେ ଥାଉ । ୨୧୮ ।
ବାଉରୀ ଆଣି କରି ଯେ ବସାଇଲା ଗ୍ରାମ
ତେଣୁ କରି ହୋଇଲା ବାଉରୀ ଶାସନ ନାମ । ୨୧୯ ।
ଦେବତାଏ ଥାଇ ତମ୍ବା ପଟା ଲେଖନ କରାଇ
ଯେ ସେହା ହରଇ ସେ ସେ ଦୋଷ ଅପହରଇ । ୨୨୦ ।
ଯୁଗେ ଯୁଗେ ହୋଇ ପୁରାଣରେ ଥାଉ କଥା
କଥା ରହିବ ଦୋଷ ହରିବେ ସର୍ବଥା । ୨୨୧ ।

ଯେସନେକ ତାମ୍ରପଟ୍ଟା ମହାଜନଙ୍କୁ ଦେଇ
ଦେବତା ଗଣମାନେ ଗଲେ ଯେ ଯାହାର ଠାବଂ । ୨୨୨ ।
ରହିଲେ ପାଣ୍ଡବେ ହରଣକ ବନେ
ଆଉ ଦିନ ମହାନ୍ଦ୍ର ପର୍ବତକୁ କରନ୍ତି ଗମନେ । ୨୨୩ ।
କୋଇଲ୍ୟା ଆଦିକରି ପଞ୍ଚୁ ପାଣ୍ଡବେ
ଗୋକର୍ଣ୍ଣେଶ୍ୱରଙ୍କୁ ଦେଖନ୍ତି ଯୁଧିଷ୍ଠି ରାଜଦେବେ । ୨୨୪ ।
ମଚ୍ଛକୁଣ୍ଡେ ପଶି ସ୍ନାହାନ ଦେବ କରି
ଦେଖନ୍ତି ସଦାନନ୍ଦ ମାହେନ୍ଦ୍ର ନାମେ ଗିରି । ୨୨୫ ।
ନିଜ ସ୍ୱରୂପ ଧରଣ ବିଶ୍ୱନାଥ ତହିଂ ଉଭା
କି ଜାଣି ହିଣଇ ସେ ଚନ୍ଦ୍ର କିରଣ ଆଭା । ୨୨୬ ।
ପଞ୍ଚ ରତ୍ନ ଦେଇ ପୂଜା କଲେ ପାଣ୍ଡୁର ଆତ୍ମଜ
ସ୍ୱର୍ଗେଣ ପୁଷ୍ପ ବୃଷ୍ଟି କଲେ ଦେବରାଜ । ୨୨୭ ।
ପୂଜନ୍ତି ଯେତେକମନେ ଦେବ ବିଶ୍ୱବାସୀ
ଯୋଗ ଲୟେ କରି ଦେବ ତୁଷ୍ଟି ଅଭ୍ୟାସି । ୨୨୮ ।
ଜୟ ତ୍ରିଅମ୍ବକ ଆଦି ଶୂଳ ହସ୍ତା
ଜୟ ତୁ ସଦାଶିବ ଅଭୟେ ବରଦାତା । ୨୨୯ ।
ଜୟ ତୁ ସଦାଶିବ କପିଳ ସ୍ୱର୍ଗବାସୀ
ଜୟ ତୁ ସଦାନନ୍ଦ ତ୍ରିପୁର ଦର୍ପ ଧ୍ୱଂସି । ୨୩୦ ।
ଜୟ ତୁ ସଦାନନ୍ଦେ ମତ୍ତ ଭୋଳା
ଜୟ ତୁ ସଦାନନ୍ଦ ଆନନ୍ଦ ମତ୍ତ ମୁକୁଳା । ୨୩୧ ।
ଜୟ ତୁ ସଦାନନ୍ଦ ଦକ୍ଷର ଯଜ୍ଞଂ ଦର୍ପଭଞ୍ଜୁ
ଜୟ ତୁ ସଦାନନ୍ଦ ଯୋଗୀ ଜନ ମନ ରଂଜୁ । ୨୩୨ ।
ଜୟ ତୁ ସଦାନନ୍ଦ କପିଳାସ ବାସୀ
ଜୟ ତୁ ସଦାନନ୍ଦ ଅନ୍ଧକଦର୍ପ ଧ୍ୱଂସି । ୨୩୩ ।
ଜୟ ତୁ ସଦାନନ୍ଦ ଆଦି ନିରଞ୍ଜନ
ଜୟ ତୁ ସଦାନନ୍ଦ ଆଦି ଈଶାନ । ୨୩୪ ।
ଜୟ ତୁ ସଦାନନ୍ଦ ରାବଣ ବର ଦାୟନ୍ତା
ଜୟ ତୁ ସଦାନନ୍ଦ ପଞ୍ଚମ ବକ୍ତ୍ର ଧାତା । ୨୩୫ ।

ଜୟ ତୁ ସଦାନନ୍ଦ ଅନାଦ୍ଧ ପଞ୍ଚମୁଖ
ଜୟ ତୁ ସଦାନନ୍ଦ ଜୟ ଶଶିରେଖ । ୨୩୬ ।
ଜୟ ତୁ ସଦାନନ୍ଦ ଭଗତ ମଞ୍ଚଳା
ଜୟ ତୁ ସଦାନନ୍ଦ ଭଗତକୁ ଭୋଳା । ୨୩୭ ।
ଜୟ ତୁ ସଦାନନ୍ଦ ସଞ୍ଜା ରଞ୍ଜା
ଜୟ ତୁ ସଦାନନ୍ଦ ଅଭୟେ କାଳ ବଞ୍ଚା । ୨୩୮ ।
ଜୟ ତୁ ସଦାନନ୍ଦ ପାର୍ବତୀ ପ୍ରାଣନାଥା
ଜୟ ତୁ ସଦାନନ୍ଦ ଶଶିଗଙ୍ଗା ମଥା । ୨୩୯ ।
ଜୟ ତୁ ସଦାନନ୍ଦ ସୃଷ୍ଟି ଉଦ୍ଧାରଣ
ଜୟ ତୁ ସଦାନନ୍ଦ ପାପମାନ ଖଣ୍ଡଣ । ୨୪୦ ।
ଜୟ ତୁ ସଦାନନ୍ଦ ଦେବଙ୍କର ରାଜ
ସର୍ବଭୂତ ନାଥ ତୁହି ଅନାଦ୍ଧ ଆତ୍ମଜ । ୨୪୧ ।
ଜୟ ତୁ ସଦାନନ୍ଦ ରେଖ ଅରେଖ
ଜୟ ତୁ ସଦାନନ୍ଦ କାଳ ଗରଳଭକ୍ଷ । ୨୪୨ ।
ଜୟ ତୁ ସଦାନନ୍ଦ କରୁଣା କର ଇଚ୍ଛା
ଜୟ ତୁ ସଦାନନ୍ଦ ଜଗତ ଜନ ମୋଚ୍ଛା । ୨୪୩ ।
ଜୟ ତୁ ସଦାନନ୍ଦ ଅନାଦ୍ଧ ଶ୍ମଶାନବାସୀ
ଜୟ ତୁ ସଦାନନ୍ଦ ଅଭୟେ ବ୍ରହ୍ମରାଶି । ୨୪୪ ।
ଜୟ ତୁ ସଦାନନ୍ଦ କାଳ ଗରଳ ଭକ୍ଷନ୍ତା
ଜୟ ତୁ ସଦାନନ୍ଦ ସଂସାର ଜୀବ ଦାତା । ୨୪୫ ।
ଜୟ ତୁ ସଦାନନ୍ଦ ଲୋହିତ ପିଙ୍ଗଳ ଦେବ
ଜୟ ତୁ ସଦାନନ୍ଦ ଲଙ୍ଗଠ ନାମ ବହିବ । ୨୪୬ ।
ଜୟ ତୁ ସଦାନନ୍ଦ ସମ ସୁଖ ଦୁଖ
ଜୟ ତୁ ସଦାନନ୍ଦ ଉଦ୍ଧାରଣ ମମ ଦୁଖ । ୨୪୭ ।
ଜୟ ତୁ ସଦାନନ୍ଦ ଭଗତ ଅନୁମତେ
ଜୟ ତୁ ସଦାନନ୍ଦ ଦୁଦୁରା ଧେନୁ ଚତ୍ତେ । ୨୪୮ ।
ଜୟ ତୁ ସଦାନନ୍ଦ ଅନାଦ୍ଧ ଶୂଳ ପାଣି
ଜୟ ତୁ ସଦାନନ୍ଦ ଅଭୟେ ବ୍ରହ୍ମ ଗ୍ୟାନୀ । ୨୪୯ ।

---

୨୪୩।୨ ମୋଚ୍ଛା—ମୋକ୍ଷ

ଜୟ ଜୟ ମହାଦେବ ଉମା ପ୍ରାଣନାଥ
ଶୂଦ୍ରମୁନି ସାରଳା ଦାସ ତବ ଭକ୍ତ । ୨୫୦ ।
ଯେମନ୍ତେ ଅନେକ ସ୍ତୁତି କଲେକ ଯୁଟେଶ୍ୱରି
ନିଜ ରୂପ ଧରି ଉଭା ପ୍ରସନ୍ନ ଧୂର୍ଜଟି । ୨୫୧ ।
ଯୁଟେଶ୍ୱରି ଦେବ ଶତବାର ଯେ ପ୍ରଣମି
ଚୋର ପ୍ରସନ୍ନେ ମୁକତ ହେଲ ଦେବସ୍ୱାମୀ । ୨୫୨ ।
ହର ବୋଇଲେ ସମସ୍ତ ଜନ୍ମ ପାତକ ଚୋର କ୍ଷୟେ ଯାଉ
ସମସ୍ତ ଅରିଷ୍ଟି ଖଣ୍ଡି ରାଜ୍ୟ ପ୍ରାପତ ହୋଉ । ୨୫୩ ।
ବର ଦେଇ ଅନ୍ତରୀକ୍ଷେ ଗମିଲେ ତ୍ରିପୁରାନ୍ତ
ରହିଲେ ମହୀନ୍ଦ୍ରଗିରି ଶିଖେ ପଣ୍ଡୁଙ୍କର ସୁତ । ୨୫୪—୬୮୧୫ ।



## ଦୁର୍ଯ୍ୟୋଧନର ଅଭିଷେକ ଓ କର୍ଣ୍ଣ ମହିମା ବର୍ଣ୍ଣନ

ଯେଥୁ ଅନନ୍ତରେ ଶୁଣ ହୋ ଯୁଗପତି
ଇତି ଶ୍ରୀ ମହାଭାରଥ ଏ ଆଦିପର୍ବ ରୀତି । ୧ ।
ପାଣ୍ଡବଙ୍କର ନିଧନେ ନୃପତି ଧୃତରାଷ୍ଟ୍ର
ବରଷ ବେନି ପରିଯନ୍ତେ ହୋଇଲା କଷ୍ଟେ କଷ୍ଟି । ୨ ।
ପାସୋରିଲା ପୁଅନ୍ତ ଉପେକ୍ଷିଲା ସର୍ବଭ୍ରାନ୍ତ
ଭୀଷ୍ମ ଭୂରିଶର୍ବାନ୍ତ ଘେନି ଭାଳଇ କୁରୁପତି । ୩ ।
ଦ୍ରୋଣ କର୍ଣ୍ଣ ଶଲ୍ୟ ମନ୍ତ୍ରୀ ଶକୁନି
ଭାଳଇ ଧୃତରାଷ୍ଟ୍ର ସବୁନ୍ତ ହିଂ ଘେନି । ୪ ।
ଧୃତରାଷ୍ଟ୍ର ବସିଣ ଭାଳଇ ସଭାର
ସମସ୍ତ କୁଟୁମ୍ବ ସୋଦର ବାନ୍ଧବ ମୋହୋର । ୫ ।
ମୁହିଂ ଚକ୍ଷୁହୀନ ରାଜକୁ ନୋହଇ ଯୋଗି
ତୁମ୍ଭର ବଚନରେ କହ ମୁଂ ଦୁର୍ଯ୍ୟୋଧନକୁ ରାଜ୍ୟ ଦେବ । ୬ ।
ଭୀଷ୍ମେ ବୋଇଲେ ସେହି ସେ ଭାଗ୍ୟବନ୍ତା
ଶ୍ରୀବନ୍ତ ଶୂରବନ୍ତ ଅଭୟ ବଳବନ୍ତା । ୭ ।

ହସ୍ତେ ପଦ୍ମ ପାଦ୍ରେ ପଦ୍ମ ଯାହାର ସେ ଅଛି
ଅନୁବ୍ରତେ କନ୍ଧରୁ ନ ଗ୍ଲଡଇ ଲଛୀ । ୮ ।
ଗୁଣ ଦେବ ନାମେଣ ଯେ ଯେ୍ନକଇ ଗ୍ରହପୁନ
ତାଙ୍କୁ ଗଇ ପୃଚ୍ଛା କଲେ ଅମ୍ବିକାର ସୁତ । ୯ ।
ଗୁଣ ଦେବ ପଣ୍ଡିତ ଶୁଭ ଅନକୂଳ କହିଲେ
ଶ୍ରୀ ରାମଚନ୍ଦ୍ର ଯେବଣ ଦିନ ଅଯୋଧ୍ୟାପୁେ ଅଭିଷେକ ହୋଇଲେ ।୧୦।
ଧନୁ ଶୁକ୍ଳ ଯେ ପୌର୍ଣ୍ଣମୀର ତିଥି
ପୁଷ୍ୟା ନକ୍ଷତ୍ର ଯେ ବାର ବୃହସ୍ପତି । ୧୧ ।
ତୈତିଳ ନାମେ କରଣ ଆୟୁଷ୍ମାନ ନାମେ ଯୋଗ
କର୍କଟା ଘରେ ଚନ୍ଦ୍ର ଅଟଇ ଯେ ଭୋଗ । ୧୨ ।
ଶ୍ରୀରାମ ଅଭିଷେକ ତହିଁକ ନର୍ଦ୍ଦୋଷ ବାଛି
ସେ ଦିନକୁ ଅବଗୁଣ ଦୋଷ ନାହିଁ କଛି । ୧୩ ।
ଧଇଲେ ଅନକୂଳ ଶୁଭ ଯୋଗ ଲଗ୍ନେ
ଗୁରୁ ପୁଷ୍ୟା ଅନକୂଳ ଅମୃତ ଯୋଗ ମାନେ । ୧୪ ।
ଅଭିଷେକ ଯୋଗାଡ ଯେ କରାଇଲେ ସମସ୍ତ
ରାଜ୍ୟେଣ ଉଚ୍ଛବ କରାନ୍ତ ନରନାଥ । ୧୫ ।
ବ୍ରାହ୍ମଣନ୍ତ ବର ଅନେକ ଦାନ ଦେଇ
ଅପାଦ ଶାନ୍ତ ନମନ୍ତେ ଚଣ୍ଡିକା ସ୍ତୋତ୍ର ପଢାଇ । ୧୬ ।
ପଞ୍ଚଶାଖା ତାଳ କଲେ କନେକ ଦଣ୍ଡଗୋଟି
ଦେବବରଣ ପ୍ରତିମାମାନ ହରକରେ ଘଟି । ୧୭ ।
ସମସ୍ତ ସମ୍ପାଦିଲ ଶଙ୍କୁନ ମହାମନ୍ତ୍ରୀ
ଶୀତଳ ଯୋଗାଡମାନନ୍ତ ଦେଇ ଦେବତାନ୍ତ ନିପୁତ । ୧୮ ।
ଶ୍ୱେତ ହସ୍ତୀ ଏକ ସାଜିଲେ ଅନେକ ସନ୍ତରେ
ପାଞ୍ଚ ଅଶ୍ୱ ସାଜିଲେ ଦେବାଙ୍ଗ ବସନରେ । ୧୯ ।
ବଶିଷ୍ଠ ବିଶ୍ୱାମିତ୍ର ବାମଦେବ ପୁରୋହିତ
ମାରକଣ୍ଡ ବାଲମିକ ବ୍ୟାସଦେବ ସହିତ । ୨୦ ।

---

୧୭।୨ ହରକରେ ଘଟି—ହାତରେ ନର୍ମାଣ କରାଇ

ଅଗସ୍ତି ଜନକ ସନକ ତପସ୍ବୀ
ସମସ୍ତ ଋଷିମାନେ ପ୍ରବେଶ ହସ୍ତିନା ରାଜ୍ୟ ପୁରୀ । ୨୧ ।
ପଞ୍ଚ କଣ୍ଠକେ ଦୁର୍ଯୋଧନ ଆରମ୍ଭ ଅବଧାରି
ସମସ୍ତ ବୁଧମାନେ ଅଭିଷେକ ରାଜ୍ୟେ କରି । ୨୨ ।
କୋଟିଏ ତୀର୍ଥର ଆଦିପତି ଯେ ପୁଷ୍କର
ଅଭିଷେକ କଲ ନେଇ ଦୁର୍ଯୋଧନ ଶିର । ୨୩ ।
ହବିକ ଆହୁତି ଦିଲେ ଘୃତ ଯୋଗେ
ଭାନୁମତୀକ କୋଳେ ଯେହ୍ନ ରାଜ୍ୟେ ବିଜେ କଲେ ବେଗେ । ୨୪ ।
କୋଳେ ଶୋଭିବନ ଭାନୁମତୀ ପାଟରାଣୀ
ପଞ୍ଚାମୃତ ପଦାର୍ଥ ପୁରୋହିତେ ଦିଲେ ଆଣି । ୨୫ ।
ଡାହାଣ ପାଖାଦ୍ୟେ କନେକ ଦଣ୍ଡଧରି
ଶକୁନ ମହାମନ୍ତ୍ରୀ ମଙ୍ଗଳ ସୀତ୍କାର କରି । ୨୬ ।
ବାମ ପାଖାଦ୍ୟେଣ ଯେ କର୍ଣ୍ଣ ଅଶ୍ୱତ୍ଥମା
ଦ୍ରୋଣ ଗୁରୁ, ଶଲ୍ୟ, ବାହ୍ଲିକ, କୃପବ୍ରହ୍ମା । ୨୭ ।
ଭୂରିଶ୍ରବାଦ୍ୟେ ଆଗରେ ଗ୍ରମରେକ ଢାଳ
ମଙ୍ଗଳ ହୁଳହୁଳି କଲେ ସର୍ବବାଳୀ । ୨୮ ।
ଲକ୍ଷେକ ପାଟ ଛତ୍ର ଧରନ୍ତି ଚଉକତି
ଆଲମ୍ବ ଦ୍ୟେକ ଲକ୍ଷି ଉଦ୍ଦଣ୍ଡ ପଞ୍ଚଲକ୍ଷି ବରାଜନ୍ତି । ୨୯ ।
ବାଜଇ ଖରତୂରି ସାଜଇ ସମଦଣ୍ଡ
ହୁଳହୁଳି ନାଦେ କମ୍ପଇ ଭୂଅଖଣ୍ଡ । ୩୦ ।
ସୁବର୍ଣ୍ଣ ବନ୍ଧା କୋଟିଏ ଶଙ୍ଖ ଆଗେ ପୂରି
ଲକ୍ଷେକ ବଳାସୁଣୀ ମଙ୍ଗଳ ସୀତ୍କାରି । ୩୧ ।
ରାଜ୍ୟେଣ ଅଭିଷେକ ହୋଇଲେ କୁରୁପତି
ପଞ୍ଚ କଣ୍ଠକେ ସେ ଭ୍ରମଇ ମାନ ଚକ୍ରବର୍ତ୍ତୀ । ୩୨ ।
ଶଚୀକ ଯେହ୍ନେଣ ଯେହ୍ନେ ବିଜୟେ ମଘବା
ଅମର ବୃନ୍ଦ ପ୍ରାଦ୍ୟେ ସମସ୍ତ ଦିଶଇ ଶୋଭା । ୩୩ ।

---

୩୨।୨ ପଞ୍ଚ କଣ୍ଠକେ ଭ୍ରମଇ ଯେହ୍ନ ଭାନୁମତୀ (ଛପା ବନ୍ଧ)

ଅନେକ ରାଜ୍ୟରୁ ଯେ ମିଳିଲେ ସର୍ବରାଯ୍ୱେ
ଅନେକ ଗହଳ ସେ ରାଜାଙ୍କର ସନ୍ୟ ଧାଯ୍ୱେ । ୩୪ ।
ଅନେକ ଭଣ୍ଡାର ଯେ ବଧ୍ୱଂସିଲ୍ଲ ଅଧିକାରୀ
ପଂଚ ଅମାନାତ୍ୟ ଯୋଦ୍ଧା ସବୁକୁହିଂ ଶାଢ଼ୀ । ୩୫ ।
ଅନେକ ଅଳଂକାର ଯେ ଆଭରଣ ସର୍ବକାଯ୍ୱେ
ଦଶଇ କୁରୁପତି ଅଳକାନାଥ ପ୍ରାଯ୍ୱେ । ୩୬ ।
ଆସ୍ତାନେ ବଜେ କଲେ ଦୁର୍ଯୋଧନ ନରପତ୍ୱେ
ନିଯୋଗ ଅଧିକାରୀମାନେ ଭିଆଇଲେ ସମସ୍ତେ । ୩୭ ।
ପାରଦଣ୍ଡ ସମଦଣ୍ଡ ସମସ୍ତ ଭିଆଣ
ଅମାନାତ୍ୟମାନଙ୍କ ମୂଳେ ଦଲ୍ଲ ତତକ୍ଷଣ । ୩୮ ।
ପୃଥିବୀରେ ଯେତେ ଶସ୍ୟ ଉପୁଜାନ୍ତି ପ୍ରଜା
ବାଟିକେ ଗୃହ ହାର୍ଦ୍ଦ ଦେଉଥିବ ସଜ୍ଜା । ୩୯ ।
ବାଟିକେ ଶ୍ରୀରାମ ମୁଦ୍ରା ଯେ ଚଳାଯ୍ୱେ ବାଟ ବାସ୍ତୁ ଭୂମି
ଯେ୍ୱସନେକ ଆଗ୍ୟାଂ ଦଲେ ଦୁର୍ଯୋଧନ ସ୍ୱାମୀ । ୪୦ ।
ଆପଣାର ବେନ କରସ୍ଥଳ କର୍ଣ୍ଣ
ପଞ୍ଚବଂଶ ହାଥେ ଭିଆଇଲେ ନଲ କାଠି । ୪୧ ।
ଯେ୍ୱଥିକୁ ଦଣ୍ଡା ଗୋପନ୍ତ ମାତ୍ରକ ମାଣେ
ଯେ୍ୱସନେକ କର ଭିଆଇଲେ କୁରୁରାଣେ । ୪୨ ।
ବେନମାଣ ମାତ୍ରକେ ବରତନ ପରଜାଙ୍କୁ
ବହନ ଭିଆଣ କଲେ ଭଣ୍ଡାରୁ ଦେବାକୁ । ୪୩ ।
ବାରବାସ୍ତୁ ସେ ଯେ ଛତିଶ ମଣ୍ଡଳେ
ଦେବତା ପୂଜା ଯେ୍ୱଥି ଯେନନ୍ତ ସର୍ବକାଳେ । ୪୪ ।
ନିଯୋଗ ଭୂମି ଫେଡ଼ି ଦଲେ ଦେବତାଙ୍କୁ
ଯଯାତିଙ୍କ ପାଞ୍ଜି ପ୍ରମାଣେ ଦଲେ ସମସ୍ତଙ୍କୁ । ୪୫ ।
ତହୁଂ ବଜେ କଲେ ସେ ନିଜ ଭୁବନେ
ଶିରେ ଅର୍ଘ ଦଲେ ଋଷିଙ୍କର ଭାର୍ଯ୍ୟାମାନେ । ୪୬ ।

---

୩୯।୨ { ବାଟିକେ ଗୃହ ଭରଣ ଭିଆଇଲେ ସଜ୍ଜା
ବାଟିକେ ପଉଟିଯ୍ୱେ ଭିଆଇଲେ ସଜ୍ଜା ।

ଯେ ବିଧି ସ୍ନାହାନ ସାରିଣ ମୋଣୋହରେ ବିଜେ
ଦେବ ଦୋହୋରାଙ୍କୁ ଭୁଞ୍ଜେଣ ବଳି ଦ୍ଵିଜେ । ୪୭ ।
ଆପଣା ପିତୃ ଲୋକନ୍ତ ଦେଇ ଅନ୍ନ
ପାଣି ଘୃତ ନୃପତି କଲେକ ଭୋଜନ । ୪୮ ।
ଅମୃତ ରସପାକ ପରସନ୍ତ ସୂପକାରେ
ମୁଣୋହ୍ର ସାର ରାଜା ଆଞ୍ଚୋବନ ମନ୍ଦରେ । ୪୯ ।
ଛତ୍ରଶାଳେ ଭୋଜନ ପାନ୍ତ ଅମାନାତ୍ୟମାନେ
ଯେ ଯେତେବେଳେ ଇଛନ୍ତି ସୁଖେଣ ଭୁଞ୍ଜନ୍ତି ଅନ୍ନେ । ୫୦ ।
କର୍ଣ୍ଣକଇ ଶାନ୍ତି ହଲେ ଆପଣେ କୁରୁରାଜେ
ଦୁଷ୍ଟ ନବାରିବା ମୈତ୍ର ତୁ କରିବୁ ହରିବଜେ । ୫୧ ।
ମୁହିଂ ପାଟେ ଠାକୁର ତୁ ଥାଟେଣ ଅଧିପତି
ତୋତେ ସମର୍ପିଲି ଯେ ସଚରାଚର ପୃଥୀ । ୫୨ ।
ରାଜାର ଆଗ୍ୟାଂଯେ ସେ କର୍ଣ୍ଣ ମହାବୀର
ମହାବଳବନ୍ତା ସେ ପୃଥୀକି ମହାଭାର । ୫୩ ।
ଦାରୁଣାବନ୍ତେ ଉଠି ସେ ବିକ୍ରମଇ ପାଦେକ
ପାଞ୍ଚ ପହଣ୍ଡେ ଡେଇଂ ଯାଅଇ ପଞ୍ଚ କ୍ରୋଶକ । ୫୪ ।
ଯେବଣ ଠାବେ ବିକ୍ରମି ଡେଇଂ ପଡଇ ଭୂମିରେ
ବସୁଧା ମୁଖୁଂ ରୁଧିର ବହଇ ଝର ଝରେ । ୫୫ ।
କର୍ଣ୍ଣକୁ ଅନେକ କଲି ଦେବୀ ସ୍ତୁତି
ଧୀର ହୋଇ ବିକ୍ରମିବୁ ବାବୁ ରେ ବୋଲେ ବସୁମତି । ୫୬ ।
କର୍ଣ୍ଣ ବୋଇଲି ବିକ୍ରମ ନ କରିବି ପାଦଘାତେ
ପ୍ରତିଦିନ ଦେଉଥିବୁ ସୁବର୍ଣ୍ଣ ଭାର ଶତେ । ୫୭ ।
ଭୟେଣ ସନମତ କଲି ଦେବୀ ପୃଥୀ
ତୁ ଥିର ହୋଇ ଗମିବୁ ମୁଂ ଶତେ ଭାର ସୁବର୍ଣ୍ଣ ଦେଉଥିବି ନିତି ।୫୮।
ବସୁଧା ଦେବୀ ଯହୁଂ କଲାକ ସନମତ
ସଧୀରେ ଗମଇ ସେ କର୍ଣ୍ଣ ମହାମତ୍ତ । ୫୯ ।

---

୪୭।୨ ଦେବ ଦୋହୋରାଙ୍କୁ ଭୁଞ୍ଜବଳି ଭୋଜନ ଦିଅନ୍ତି ଦ୍ଵିଜେ ।

ବସୁଧାର ମୁଖେ ଯେ ଅଛଇ ମହାରସ
ତାହା ନେଇ ଢାଳଇ ପାଷାଣ ପରଶ । ୬୦ ।
ସେ ପରଶ ପାଷାଣ ଲଗାନ୍ତେ ପଥରେ
ଶତେ ଭାର ସୁବର୍ଣ୍ଣ ଝରଇ ସେ ବାରୁଣାବନ୍ତ ପର୍ବତରେ । ୬୧ ।
ଜଜାଣ ବଣିକ ବଗତ ଅଛଇ ଅଜପତି
ଶତେ ଭାର ସୁବର୍ଣ୍ଣ ସେ ବହଣ ନଅଇ ନିତି । ୬୨ ।
ମିଥିଳା ଭୁବନ ଯେ କର୍ଣ୍ଣର ନିଜ ବାସ
ସ୍ନେହେ ଦୁର୍ଯୋଧନ ଦେଲା ତାହାରେ ଅଙ୍ଗଦେଶ । ୬୩ ।
ତହିଂ ଯାଇ ନିତ୍ୟେ ପ୍ରବେଶ ହୋଇ ଶତେ ଭାର ସୁବର୍ଣ୍ଣ
ରାଜାଙ୍କୁ ପଞ୍ଚବିଂଶ ଭାର ଦଅଇ ବୀର କର୍ଣ୍ଣ । ୬୪ ।
ଧୃତରାଷ୍ଟ୍ରଙ୍କୁ ଭାରେ ଗାନ୍ଧାରୀଙ୍କ ଭାରେ
ସଞ୍ଜୟଙ୍କୁ ଭାରେ ଭୂରିସର୍ବାକଇ ଭାରେ । ୬୫ ।
ଭୀଷ୍ମଙ୍କୁ ଭାରେ ଦ୍ରୋଣଙ୍କୁ ଭାର ବେନି
ଅନ୍ତେଶ୍ୱରେ ଭାନୁମତୀ ତହିଂକ ଦଅଇ ଭାର ତିନି । ୬୬ ।
ଅଶ୍ୱତ୍ଥମାଙ୍କୁ ଭାରେ କୃପଙ୍କଇଂ ସେହିକ ଭାର
ଦୁଇ ଭାର ନିତ୍ୟପତି ପାବନ୍ତି ବିଦୁର । ୬୭ ।
ଶତେକ କନେଷ୍ଟ ଯେ ରାଜାଙ୍କର ଭ୍ରାଥ
ସେହାଙ୍କୁ ସବୁଙ୍କୁହିଂ ଦଅଇ ପଞ୍ଚବିଂଶ ଭାର ନିତ୍ୟ । ୬୮ ।
ରାଜାଙ୍କର ଭଉଣୀ ଯେ ଅଛଇ ଦୁଃଶିଳା
ତାହାକୁ ଭାରେ ଦଅଇ କର୍ଣ୍ଣ ମହାବୀର । ୬୯ ।
ଦୁର୍ଯୋଧନ ରାଜାର ଯେତେକ ସେବକ ପ୍ରକୃତି
ସବୁଙ୍କୁଇଂ କର ପାଞ୍ଚ ଭାର ଦଅଇ ନିତି । ୭୦ ।
ଯେବଣ କରାତମାନେ ନିତ୍ୟେ ହୋଇଂ ଆଶନ୍ତି ବହି
ତାହାଙ୍କଇଂ ଭାରେ ଦଅଇ ସବୁଙ୍କୁହିଂ । ୭୧ ।
ନିତ୍ୟ କର୍ମ ସ୍ନାହାନ ବେଳେ ଯେ କର୍ଣ୍ଣ ମହାବଳୀ
ଗଙ୍ଗାକୁ କନକ ପକାଇ ତିନି ଯେ ଆଞ୍ଜୋଳି । ୭୨ ।
ଆଉ ଅଙ୍ଗାକ ଆକାଶକୁ କରଇ ବୃଷ୍ଟି
ଯେ ଯେତେ ପାରଇ ସୁଖେଣ ସାଉଣ୍ଟି । ୭୩ ।

ପୃଥ୍ୱୀ ଉପରକୁ ବେନି ଘର ବାଞ୍ଛି
କୁନ୍ତୀମ୍ୱି ମାଗନ୍ତାଙ୍କୁ ବେନି ଘର କାହାକୁହିଂ ନ ବାଞ୍ଛି । ୭୪ ।
ବଡ଼େ଼ ଯାଇଂ ରହିଲା ଚଉବନ ଘର
ଘରେକ ନିତି ପେଷଇ ଆପଣା ଭଣ୍ଡାର । ୭୫ ।
ତେପନ ଘର ଧେନ ବସଇ କର୍ଣ୍ଣ ମହାଛଳୀ
ସାତ ଘଡି ପର୍ଯ୍ୟନ୍ତେ ଦାନ ଦିଅଇ ନିତି । ୭୬ ।
ବଦିଯନ୍ତି ଅଗସ୍ତି ବଇବସ୍ୱତ ମନୁଙ୍କ ଆଗେ
କର୍ଣ୍ଣର ମହିମା ଉଦିତ ତ୍ରୈର ଯୁଗେ । ୭୭ ।
କର୍ଣ୍ଣର ମହିମା ଯହୁଂ ଜଗତେ ବିଖ୍ୟାତି
କଞ୍ଚନ ଦେଶର ରାଜା ଅନଙ୍ଗସେନ ଚକ୍ରବର୍ତ୍ତୀ । ୭୮ ।
ତାହାର ଭାରିଯା ନାମ ଅଛଇ ତୁଳସୀ
ପତିଭକ୍ତା ସ୍ତିରୀ ସେ ପତିବ୍ରତା ହିଂ ମନୀଷୀ । ୭୯ ।
ତାହାର ଦୁହିତା ନାମ ଅଟେ ଶତ୍ରୁବନ୍ତୀ
କର୍ଣ୍ଣଙ୍କୁ ପ୍ରଦାନ କଲା ଅନଙ୍ଗସେନ ନୃପତି । ୮୦ ।
ଶତ୍ରୁବନ୍ତୀର ପତି ସେ ଅଙ୍ଗ ଦେଶ ରାଜା
ଜଗତେ ବନ୍ଦନ ସେ କୋଇନ୍ତାଙ୍କର ଆତ୍ମଜା । ୮୧—୬୮୯୬ ।



## ଦୁଃଶାସନ ପ୍ରଭୃତି ଭାଇମାନଙ୍କର ବିବାହ

ଅଗସ୍ତି ପୁଚ୍ଛା କଲେ ବଇବସ୍ୱତ ମନୁ
ଭାନୁମତୀ ପ୍ରଦାନ ହୋଇଲା ଦୁର୍ଯୋଧନୁ । ୧ ।
ଆବର ଶତେ ଭାଇଙ୍କର ବିଭା
ସଞ୍ଚପି ମହାତ୍ମା ମୋତେ ତାହା କହିବା । ୨ ।
ବୃନ୍ଦାଅର୍କ ଦେଶର ବୀରବାହୁ ଦଣ୍ଡଧାରୀ
ଧୁଶାସନଙ୍କୁ ପ୍ରଦାନ କଲାକ କୁମାରୀ । ୩ ।
ତାହାର ନାମ ଯେ ଅଛଇ ହଂସାବଳୀ
ହଇହଯ଼ ବଂଶିକ ପବନ ଶୁଦ୍ଧଶାଳୀ । ୪ ।

କୃପାଣ ଦେଶର ରାଜା ଅଟେ ସୂର୍ଯ୍ୟସେନ
ସୂର୍ଯ୍ୟାବତୀ କନ୍ୟାକୁ ଦୁର୍ଜୟେ ପ୍ରଦାନ । ୫ ।
କର୍ଣ୍ଣାଟ ଦେଶର ରାଜା ଯେ ଅନନ୍ତ
ଦୁର୍ବିନ୍ଦକୁ ଦେଲ ଅନନ୍ତାବତୀ ଦୁହିତ । ୬ ।
ମାନଭଙ୍ଗ ଦେଶର ଯେ କେଶବ ନୃପମଣି
ଦୁକର୍ଣ୍ଣ କଇ ଦେଲ କମଳା ନାମେ ଦୁଲଣୀ । ୭ ।
ଉଜାଣ ଦେଶର ଯେ କର୍ଣ୍ଣ କେଶର ରାଜା
ଦୁରାକର୍ଣ୍ଣକୁ ଦେଲ ଚନ୍ଦ୍ରାବତୀ ନାମେ ତନୁଜା । ୮ ।
ପଦ୍ମଦଳ ଦେଶର ରାଜା ଯେ ପଦ୍ମକେଶରୀ
ଦୁର୍ନାମକୁ ଦେଲ ପଦ୍ମାବତୀ କୁମାରୀ । ୯ ।
ମାଧବ ଦେଶର ରାଜା ନୃପତି ସତ୍ତ୍ଵଭରୀ
ଦୁର୍ଭାନୁକୁ ଦେଲ ସତ୍ୟା ନାମେ କୁମାରୀ । ୧୦ ।
ମଳୟ ଦେଶର ବସନ୍ତସେନ ରାୟେ
ଦୁରାନ୍ତେକକଇ ଦେଲ ତାହାର ବସନ୍ତାବତୀ କନ୍ୟାଏ । ୧୧ ।
ଅନୁହର ଦେଶର ରାଜା ପଦ୍ମସେନ ନୃପତି
ଦୁରାଷ୍ଟକୁ ଦେଲ ତାର ମାଳା ନାମେ ଦୁହିତୀ । ୧୨ ।
ବଜ୍ରଗିର ଦେଶର ବାମଦେବ ରାୟେ
ଦୁର୍ବାଳକୁ ଦେଲ ଯେ ମୋହିନୀ ନାମେ କନ୍ୟାଏ । ୧୩ ।
ଚଣ୍ଡୀହର ଦେଶର ରାଜା କୃତକେଶୀ
ଦୁକାଳକୁ ଦେଲ ତାର ଦୁହିତା ସୌଦାମିନୀ । ୧୪ ।
ମଗଧ ଦେଶର ରାଜା ଯେ ଦୁନ୍ଦୁଭିସେନ ରାୟେ
ଦୁଷ୍ଟକୁ ଦେଲ ଯେ ଜାନକୀ ନାମେ କନ୍ୟାଏ । ୧୫ ।
ତରଙ୍ଗ ଦେଶର ରାଜା ଯେ ଅତମିତ
ଦୁର୍ମନକୁ ଦେଲ ଯେ ସନ୍ଧ୍ୟା ନାମେ ଦୁହିତ । ୧୬ ।
ଅନୁଭବ ଦେଶର ଯେ ଦରଦସେନ ରାୟେ ।
ଦୁର୍ବୀରକୁ ଦେଲ ଯେ ଜରତା ନାମେ କନ୍ୟାଏ । ୧୭ ।
ସୁରସିଦ୍ଧ ଦେଶର ରାଜା ସୁରପତି
ଦୁର୍ଦାସକୁ ତାହାର ଦୁହିତା ହାରାବତୀ । ୧୮ ।

ମଧୁବନ ଦେଶର ଯେ କୈଟଭସେନ ରାଜା
ଦୃଢ଼କେଶକୁ ଦେଲା ଯେ ଜନନୀ ନାମେ ତନୁଜା । ୧୯ ।
ନିର୍ଝର ଦେଶର ରାଜା ଗଣପତି
ଦୃଢ଼ହସ୍ତକୁ ଦେଲା ଯେ ଦୋହିତ୍ରୀ ଚନ୍ଦ୍ରକାନ୍ତି । ୨୦ ।
ବିନ୍ଧ୍ୟଗିରି ଦେଶର ନୃପତି ବିନ୍ଧ୍ୟମାଳୀ
ଦୃଢ଼ସେକକୁ ଦେଲା ଯେ ଦୁହିତା ରତ୍ନାବଳୀ । ୨୧ ।
ମଣ୍ଡଳ ଦେଶର ରାଜା ମଣ୍ଡଳ ଚକ୍ରବର୍ତ୍ତୀ
ଦୁଃସାମକଇଂ ଦେଲା ଯେ ତାହାର ଦୁହିତା ତାରାବତୀ । ୨୨ ।
ବେଲାଉଳ ଦେଶର ରାଜା ବେଲାଲକେଶରୀ
ଦୁଇନ୍ଦ୍ରକୁ ଦେଲା ତାହାର ଦୁହିତା ବେଲ୍ଲବଲ୍ଲୀ । ୨୩ ।
ଭୋଟ ଦେଶର ରାଜା ଉଦେଭାନୁ
ମାନିନୀ ନାମେ କନ୍ୟା ଦୁରାଷ୍ଟକୁ କଲା ପ୍ରଦାନୁ । ୨୪ ।
ମାଳତୀ ଦେଶର ରାଜା ମାନକେତୁ
ଦୁଷ୍ପ୍ରୟକୁ ଦେଲା ମାଳତୀ ଦୋହିତୁ । ୨୫ ।
ଅରଣି ଦେଶର ରାଜା ପ୍ରଚଣ୍ଡ ମଲ୍ଲ
ଦୁସନକୁ ଦେଲା ତାର ଦୁହିତା ଅବାହୁଲ । ୨୬ ।
ତାରଣ ଦେଶର ରାଜା ତାରଣ ନୃପତି
ଦୁର୍ଦ୍ଧର୍ଷକୁ ଦେଲା ତାର କନ୍ୟା ଇଚ୍ଛାବତୀ । ୨୭ ।
ମହ୍ଲାର ଦେଶର ମହ୍ଲାର ସେନ ରାଜା
ଦୁର୍ଦ୍ଧଣ୍ଡକୁ ଦେଲା ତା'ର ସାରମତୀ ତନୁଜା । ୨୮ ।
ମେରୁ ଦେଶର ରାଜା ମେରୁଶୂଳ
ଚଞ୍ଚଳା କନ୍ୟାକୁ ପ୍ରଦାନ କଲା ଯେ ଦୁର୍ବାଳ । ୨୯ ।
ବୈଶ୍ୱାନର ଦେଶର ଅନଳସେନ ଦେବା
ଦୁର୍ଜନକୁ ଦେଲା ତା'ର ଦୁହିତା ବଲ୍ଲଭା । ୩୦ ।
ମାଳବ ଦେଶର ଯେ ରାଜା କୃତବର୍ମା
ଦୁରାପଦକୁ ଦେଲା ଦୁହିତା ନାମେ ବାମା । ୩୧ ।
ମାଲ ଦେଶର ରାଜା ମାଲସେନ
ଦୁସମ କଇ କନ୍ୟା ଦେଲା ମାଳାବତୀ ନାମ । ୩୨ ।

ଚକୋର ଦେଶ ରାଜାର କନ୍ୟା ଚନ୍ଦ୍ରକାନ୍ତ
ଦୁର୍ଦ୍ଧାନ୍ତକଇ ପ୍ରଦାନ କଲା ଦୁହିତା ଚନ୍ଦ୍ରାବତୀ । ୩୩ ।
ନୈଋତ ନୃପତି ମରୁତସେନ ରାୟେ
ଦୃଢକେଶକୁ ଦେଲା ତାହାର ମାଧବୀ ନାମେ ଦୁହିତାୟେ । ୩୪ ।
ଡାହାଲ ଦେଶର ରାଜା ଅଟଇ କୃତକେଶୀ
ଦୁତନ୍ନକୁ ଦେଲା ଦୁହିତା ଶୁଭ୍ରକେଶୀ । ୩୫ ।
କାଉଂରୀ ଦେଶର ରାଜା ଅଟେ କାମପାଳା
ଦୁର୍ଧଂସକୁ ଦେଲା ବାଳାବତୀ ବାଳା । ୩୬ ।
ଅସ୍କନ୍ଦ ଦେଶର ଯେ ରାଜା ନିଗର୍ତ୍ତି
ନିବଞ୍ଚା କନ୍ୟାକୁ ଦେଲା ଯେ ଦୁର୍ଦ୍ଧନ୍ତ । ୩୭ ।
କନୋଜଜ ଦେଶର ରାଜା ବନମାଳୀ
ଦୁରାଧକୁ ଦେଲା ପୁଷ୍ପମାଳୀ । ୩୮ ।
ବଙ୍ଗାଳ ଦେଶର ରାଜା ଅଟେ ସଦାଶିବ
ମଦନାବତୀ କନ୍ୟା ଦେଲା ଯେ ଦୁଶିବ (ଦୁଷ୍ପ୍ରଭ) । ୩୯ ।
ଶାକଲ୍ୟ ଦେଶର ଯେ ଶାଲୁନାମେ ନୃପତି
ଦୁବ୍ରହ୍ମକୁ ଦେଲା ଯେ କନ୍ୟା ଶାଲୁବତୀ । ୪୦ ।
ଖିମାଉର ଦେଶର ରାଜା ଯେ ମାନ ଅରଜୁନ
ଦୁର୍ମହାକୁ ଅନୁପମା କନ୍ୟା କଲାକ ପ୍ରଦାନ । ୪୧ ।
ଖାଞ୍ଜଣ ଦେଶର ରାଜା ଉର୍ଦ୍ଧବାହୁ
ସୁମତି କନ୍ୟାକୁ ପ୍ରଦାନ କଲା ଯେ ଦୁର୍ବାହୁ । ୪୨ ।
ନିହୃତ ଦେଶର ରାଜା ଅଟଇ ବୈଡୁର୍ଯ୍ୟସେନ
ଚନ୍ଦ୍ରଶାଖା ନାମେ କନ୍ୟାକୁ ଦେଲା ଦୁରାନନ । ୪୩ ।
ମାନ ଦେଶର ରାଜା ମାନଚକ୍ରବର୍ତ୍ତୀ
ଦୁକେତୁକୁ ଦେଲା ତାହାର ଦୁହିତା ମାଳାବତୀ । ୪୪ ।

---

୩୩।୧ ଗଣପତି ରାଜାର କନ୍ୟା ନାମ ଚନ୍ଦ୍ରକାନ୍ତ ।— ପୋଥି ବିଶେଷରେ ପାଠ ।
୪୧।୨ ଦୁର୍ମହା ସ୍ଥାନରେ ଦୁରହ୍ଣ ପାଠ ଅଛି ।
୪୩।୨ ଦୁରାଉନ, ଦୁରାନନ ଦୁଇ ପାଠ ଅଛି ।

ଶରଦ ଦେଶର ରାଜା ଶରଦଞ୍ଜନ
ଦୁଷ୍ଟକୁ ଦେଲା ତାର ଦୁହିତା କାଞ୍ଚନ । ୪୫ ।
ମହାରାଷ୍ଟ୍ରର ରାଜା ଅଟଇ ସୁମନ୍ତ୍ର
ସୁମନ୍ତ୍ରା କନ୍ୟା ଦେଲା ଯେ ଦୁର୍ବାକ । ୪୬ ।
ବୀର ଦେଶର ରାଜା ଅଟଇ ବୀରବାହୁ
ବୀରବତୀ କନ୍ୟାକୁ ପ୍ରଦାନ କଲାକ ଦୁସହୁ । ୪୭ ।
ମହାଚୀର ଦେଶର ରାଜା ଅଟଇ ମାନଧାତା
ଦୁର୍ମର୍ଷକୁ ଦେଲା କନ୍ୟା ଅଲକା ନାମେ ଦୁହିତା । ୪୮ ।
ସମର୍ଦ୍ଧ ଦେଶର ରାଜା ଯେ ଶତମନ୍ୟୁ
ଶ୍ରୀବତ୍ସା ନାମ କୁମାରୀ ଦେଲାକ ଦୁଦାନୁ । ୪୯ ।
କ୍ଷୀର ଦେଶର ରାଜା ଅଟଇ ସୋମଦତ୍ତ
ଦୁର୍ଲ୍ଲଭକୁ ଦେଲା ଗୋପାବାଳୀ ନାମେ ଦୋହିତ । ୫୦ ।
ସୌରାଷ୍ଟ୍ର ଦେଶର ରାଜା ନାମ ତା ଶଙ୍କର
ଦୁକର୍ଣ୍ଣକଇ ଦେଲା ଯେ କନ୍ୟା ଶାକାମ୍ବେଶ୍ୱରୀ । ୫୧ ।
କାଶୀଦେଶର ଯେ କାଶୀଶ୍ୱର ରାଜା
ଦୁର୍ହରକୁ ଦେଲା କାମାକ୍ଷୀ ନାମେ ତନୁଜା । ୫୨ ।
କୌଶିକ ଦେଶର ରାଜା ଅଟଇ କାକୁତ୍ସ୍ଥ
କୌଶିକା କନ୍ୟାକୁ ଦେଲା ଯେ ଦୁରାଗତ । ୫୩ ।
ଛନ୍ଦ ଦେଶର ରାଜା ଅଟଇ ବୀରଭଙ୍ଗ
ଛନ୍ଦାବତୀ କନ୍ୟାକୁ ଦେଲା ଯେ ଦୁରାଙ୍ଗ । ୫୪ ।

---

୪୭।୨ ଦୁସହୁ, ଦୁରହୁ ଦୁଇଟି ପାଠ ଅଛି ।
୪୮।୨ ଅଲକା, ଅମ୍ବିକା ।
୫୪।୨ ଛନ୍ଦାବତୀ କନ୍ୟାକୁ ଦେଲା ଯେ ଦୁରାଙ୍ଗ । ଏହି—ପାଦ ପରେ ଛପା ବହିର ଅଧିକା ପାଠ:—
ସମସ୍ତେ ଏ ଦୁଷ୍ଟଜନ ସର୍ବେ ଗିବେ କ୍ଷୟ
ଦୁର୍ଦକ୍ଷକୁ ରଖିବେ ଯେ ଯୁଧିଷ୍ଠିର ରାୟ ।
ମହାଜ୍ଞାନବନ୍ତ ଅଟେ କୁମର ଦୁର୍ଦ୍ଧକ୍ଷ
ଦୁର୍ବାସା ମୁନି ଅଟନ୍ତି ମୁନିଙ୍କର ମୁଖ୍ୟ ।

ଅସଂଖ୍ୟେକ ମହାଭାରଥ ଅକଳନ୍ତ ସାଗର
ତାହା ଗଣିବାକୁ ଶକ୍ୟ ଅଛଇ କାହାର । ୫୫ ।
ଖଣ୍ଡରେ ଲେଖନ କେ କରି ପାରିବ ଗଙ୍ଗାର ବାଲି
ଅକଳନ୍ତ ସାଗର କେ ପାରିବାକ କଳି । ୫୬ ।
ମାର୍କଣ୍ଡ ଲେଖନ କରି ନ ପାରିଲେ କଳ୍ପ ମୁଖେ
ଅଗାଧ ସାଗରେ ନେଇ ମେଲିଲେ ବିମୁଖେ । ୫୭ ।
ଧର୍ମ ଅର୍ଥ କାମ ମୋକ୍ଷ ବହଇ ଯେବଣ ନଦୀ
ଉତପତ୍ତି ପ୍ରଳୟକୁ ସେ ପାରିବ ସମ୍ବାଦି । ୫୮ ।
ମାନବେ ଜନମିଲି ମୁଂ ପୂର୍ବର ଦୁଷ୍କୃତେ
ମୁନିମାନଙ୍କର ସଙ୍ଗ ମୁଂ ଯେ ନୋହିଲି ଯୁଗତେ । ୫୯ ।
ଅମାନ୍ତ ସଂସାର ମୁଂ ନୁଆରିଲି କଳି
ଅନ୍ତ କରି କେତେ ମୁଂ କହିବି ମନର ହିଆଳି । ୬୦ ।
ଜଙ୍ଘେରପୁର ବାସିନୀ ନର୍ମଦା ସରସ୍ୱତୀ
ଅଭୟେ ହିଙ୍ଗୁଳା ନାମ ସାରଳା ଚଣ୍ଡୀ ମୂର୍ତ୍ତି । ୬୧ ।
କଳିକାଳ ବର୍ତ୍ତୁଳି ଶରୀର କଲି ଗୋପ୍ୟ
ସେ ଦେବୀ ଖଣ୍ଡିଲି ମୋର ଗତ ଦୋଷ ପାପ । ୬୨ ।
ସରୂପ ଦେଖାଇଲି ସେ ମୋଲ ସୁନ୍ଦରେ
ସିଦ୍ଧ ପୋଥି ଦେଇଣ ଆଜ୍ଞାଂ ଦିଲେକ ମୋହୋରେ । ୬୩ ।
ତାହାର ଆଜ୍ଞାଂୟେ ମୁଂ କହିଲି ୟେତେ କଥା
ଶ୍ରୀଚଣ୍ଡୀ ସାରଳା ପ୍ରସନ୍ନେ ମୁଂ ଅଭୟେ ବକତା । ୬୪ ।

---

ସନ୍ତୋଷ ମନେ ଏ ନାମ ଦେଲେ ମହାମୁନି
ତେଣୁ ସେ କୁମାର ଗୋଟି ଅଟେ ମହାଜ୍ଞାନୀ ।

୫୪।୨ ମୁଦ୍ରିତ ପୁସ୍ତକରେ ୪୭ଟି କନ୍ୟାମାନଙ୍କର ନାମ ଓ ୪୭ଟି ପୁତ୍ରଙ୍କର ନାମ ଉଲ୍ଲେଖ ଅଛି । ତାଳପତ୍ର ପୋଥିମାନଙ୍କରେ ୫୧ଟି କନ୍ୟା ଓ ପୁତ୍ରମାନଙ୍କର ନାମ ଅଛି । ପରେ କିଏ କେଉଁ ଦେଶ ରାଜାର କନ୍ୟାକୁ ବିବାହ କଲା ତାହା କୌଣସି ତାଳପତ୍ର ପୋଥିରେ ଉଲ୍ଲେଖ ନାହିଁ ।

୫୯।୨ ଦୁରନ୍ତ, ଦୁର୍ଭିକ୍ଷ

ସଂସାର ଜନ ହିତେ ପ୍ରକାଶିଲ ଗ୍ରନ୍ଥ ମୁହିଂ
ଶୂଦ୍ରମୁନି ସାରଳ ଦାସ ମୁକତି ଗତି ପାଇଂ । ୬୫—୬୯୬୧ ।



## ଦ୍ରୁପଦର ବରଲାଭ

ସେଥୁଂ ଅନନ୍ତରେ ବଇବସ୍ୱତ ମନୁ ରାଜା
ଅଗସ୍ତିଙ୍କ ପାଦ ପଦ୍ମେ କଲା ଦିବ୍ୟ ପୂଜା । ୧ ।
ବ୍ରହ୍ମପଦ ସାଧକ କୁମ୍ଭ ଋଷିର ତନୁ
କଥାଏ ପୃଚ୍ଛା କରିବ କହିବା ବ୍ରହ୍ମ ଗ୍ୟାଂନୁ । ୨ ।
ଦ୍ରୋଣଙ୍କର ଅପମାନେ ଯେ ଦ୍ରୋପଦେଶ୍ୱର ଗଲା
ବୋଇଲ ସେ ଈଶ୍ୱର ଦେବତାଙ୍କୁ ତପକଲା । ୩ ।
ପ୍ରସନ୍ନ ହୋଇଲେ ଠିକ ଦେବ ଉମାପତି
କିସ କାମନା କଲା ସେ ପଞ୍ଚାଳ ଚକ୍ରବ୍ରତୀ । ୪ ।
ଭୂ ମହାପଣ୍ଡିତ ଯେ ଅଟୁ ଭଗ୍ୟଂ ଋଷି
ସେ କଥା ଅଗସ୍ତି ମୋତେ କହିବା ବିଶେଷି । ୫ ।
ବଦନ୍ତି ଅଗସ୍ତି ଯେ ପଣ୍ଡିତ ମହାବ୍ରହ୍ମ
ଭବିଷ୍ୟ କଥାମାନ କହନ୍ତି ମହାତମ । ୬ ।
ଶୁଣିମା ସାବଧାନେ ବଲଙ୍କ ଆଧିପତି
ରୁଦ୍ରକୁ ତପସ୍ୟେ କଲା ଦ୍ରୋପଦେଶ୍ୱର ନୃପତି । ୭ ।
ଅଠର ବରଷ ତପ କଲା ସେ ନିରାଶେ
ପବନ ହିଂ ମାଇଲା ଯେ ନିରାଶ ଉପବାସେ । ୮ ।
ବୁଡିଲା କାୟା ଯେ ଶରୀର ପଡଇ ଲୋଟି
କଠୋର ଦେଖିଣ ବିଜେ କଲେକ ଧୂର୍ଜଟି । ୯ ।
ଦେଖିଲେ ଦ୍ରୋପଦ ଯେ ଅତି ଅଶକତ
ତାରଣ ମନ୍ତ୍ରେଣ ଜଳ ଯେ ସିଞ୍ଚିଲେ ବିଶ୍ୱନାଥ । ୧୦ ।

---

୮।୨ ପଞ୍ଚ ମନ ମାଇଲା ସେ ନିରାଶ ଉପବାସେ ॥

ଚେତନା ପାଇଣ ସେ ଯେ ବସିଲ ରାଜ ଦେବା
ଧୂର୍ଜଟୀ ପୁରୁଷ ଦେଖି ହୋଇଲେ ସ୍ୱୟେ ଉଭା ।୧୧।
ସ୍ୱେକା ମହାତ୍ମା ଯେ ଉଭା ପରମ ମହାଯୋଗୀ
ହୋଇଲ ପ୍ରସନ୍ନ ବର ମାଗ ହୋ ବେଗି ବେଗି ।୧୨।
ଦ୍ରୋପଦ ବୋଇଲ ତୁ କାହିଂର ମହାତମା
ଦୁଖେ ଅର୍ଜିଲ ତପକୁ କଷଣ କରୁ ଅନୁକର୍ମା ।୧୩।
ବିଶ୍ୱନାଥେ ବୋଇଲେ ତୁ କାହାକୁ କରୁ ତପ
ଦ୍ରୋପଦ ବୋଇଲ ମୁଂ ସେବଇ ବିଶ୍ୱରୂପ ।୧୪।
ତୁମ୍ଭେ ଯେବେ ଅଟ ଦେବ ଅନାଦି ଈଶାନ
ଦେଖିବି ତୋହୋର ନାଥ ମୁହିଂ ଯେ ବର୍ଣ୍ଣ ଚିହ୍ନ ।୧୫।
ଦ୍ରୋପଦର ବଚନେ ସ୍ୱାମୀ ସେହିଠାରେ କଲେ ମାୟା
ଝାଡିକାରେ ଦ୍ରୋପଦକୁ ଦେବ ଦେଖାଇଲେ ନିଜ କାୟା ।୧୬।

ଶୁକ୍ଳାମ୍ବର ଶରୀର ଧବଳ କୁସୁମ ଜାଣି
ବକ୍ଷସ୍ଥଳେ ବିରାଜଇ ତିମିର ବିଦାରଣ ମଣି ।୧୭।
ଦେଖିଣ ସାନନ୍ଦ ଯେ ଦ୍ରୋପଦଶ୍ୱର ସ୍ୱୟେ
ରହି ଦିଶିଲ ଯୁଗଟେ ଦିବସ ପରାୟେ ।୧୮।
ସିଦ୍ଧଧ୍ୟାନ ବୋଧନ ସାଧନ ଅଧ୍ୟାନ
ସର୍ବଗ୍ୟାଂନ ନାଥ ବିକାଶିଲେ ପଞ୍ଚୁ ଯେ ବଦନ ।୧୯।
ଭସ୍ମଲେପନ ପିଙ୍ଗଳ ନିଖିଳ ପବନ କେଶୁ
ବିସ୍ତାର ବକ୍ଷସ୍ଥଳ ପ୍ରଲମ୍ବିତ ଶୀତାଂଶୁ ।୨୦।

ଶରୀର ଧବଳ ଚନ୍ଦ୍ରଧବଳ ମଣ୍ଡଳ
ମହାରସ ଯେନଣ ଷଡରତ୍ତୁ ଗଳ ।୨୧।
ସୋମ ସୂର୍ଯ୍ୟ ଅନଳ ଦଳିତ ପଞ୍ଚଦଶ ଡୋଳେ
ବଇରାଗ ଭରଣ ଯେ ଦୃଶ କପାଳେ ।୨୨।
ଅର୍କ ଇନ୍ଦୁ ଅନଳ ରୂପ ବିଧାରଣ ପଣ୍ଡିତ
ଜୟ ତୁ ଅନଙ୍ଗ ଅନ୍ଧକ ବିଦାରଣ ଅକାରଣ ଅନମିତ ।୨୩।

ଅସମ୍ଭବ ଗଙ୍ଗା ଯମୁନା ସରସ୍ୱତୀ ପୂନ୍ୟ ତୋୟା
ଶିର ପଞ୍ଚଜଟାନ୍ତୁ ଅଦଭୁତେ ବହନ୍ତି ମହାମାୟା ।୨୪।

ଧବଳ ପିଙ୍ଗଳ ଲୋହିତ ବର୍ଣ୍ଣ କଳା
ନୀଳ ଆରକତ ଯେ ଶରୀର ପିଙ୍ଗଳା । ୨୫ ।
ଉତ୍ତଙ୍ଗ ଶିଖର ମଉଳ ଛଡ଼ କୁଣ୍ଡଳୀ
ରୁଦ୍ର ସ୍ୱରୂପ ସୂର୍ଯ୍ୟହୁଂ ତେଜ ବଳୀ । ୨୬ ।
ବୈଶ୍ୱାନର କାଳାନଳ ପ୍ରାଣତ୍ୟାଜ ପିଙ୍ଗଳା
ଜାତ ଅନଳ ଲଇ ଯେ ପାଞ୍ଚ ପିଙ୍ଗଳା । ୨୭ ।
ପଞ୍ଚ ଲକ୍ଷଣେ ପଞ୍ଚଦଶ ଅନଳ ଫୁଟି
କଞ୍ଚନ ଦୋଷେ ଦହିଲ ବସ୍ତୁର ପୁଣ ଗୋଟି । ୨୮ ।
ସଚରାଚର ରସାଂଗତ ତାଣ୍ଡବେ ଚଞ୍ଚଳା
କୁତୋହୋଳ ଖେଡ଼ ଯୁଦ୍ଧ ସ୍ୱାମୀ ଆରମ୍ଭ ମହାଖଳା । ୨୯ ।
ମାତଙ୍ଗ ଲୋଟେ ଯାହାର ଶରୀର ଦୃଢଦଣ୍ଡ
ଦଶ ଲହ ହିଶଇ ଜାଣି ମାରତଣ୍ଡ । ୩୦ ।
ହିଖଟ୍ୱାଙ୍ଗ ଦଣ୍ଡ ମଣ୍ଡଳ ଦେବ ମଉଳ
ଭୂଷଣ କୋଦଣ୍ଡ ଉଦ୍ଦଣ୍ଡ କପାଳୀ । ୩୧ ।
ମାୟା ଆରୋପଣ ଶରୀରେ ହିରଣ୍ୟ ଚରକୁଟି
ହୃଦେ ଭୁଜଙ୍ଗ ମାଳ ଅନନ୍ତ କାଛେଟି । ୩୨ ।
ଉତ୍ତରାୟଣ ଦକ୍ଷିଣାୟନ ପୁରୁଷ ବେନି
ବାମେ ଦକ୍ଷିଣେ ଲାଗି ଅଛନ୍ତି ଶୂଳେ ଶୂଳେ ଘେନି । ୩୩ ।
ବସ୍ତୀର୍ଣ୍ଣ ଘର୍ଘର ଗଗନେ ବନମାଳ
ବାରିନିଧିର ନାୟକ ପ୍ରସନ୍ନ ସୁଚଳ । ୩୪ ।
ଡାକ ଡମ୍ବରୁ ବୀଣା କଣ୍ଠୀରେ ସ୍ୱର ନାଦେ
ଚଳନ୍ତି ଭ୍ରୂକୁଟିଗଣ ମତ୍ତ ରସଖାଦ୍ୟେ । ୩୫ ।
ପରିହରଣ ବାସ ଅଞ୍ଚଳ ହିଗବସନ
ହଇଲୋକେ ଏକ କାୟା ବଇଲ ବାହାନ । ୩୬ ।
ମନୁଷ୍ୟ ଶିର ମାଳୀ ବକ୍ଷସ୍ଥଳେ ମାତାଙ୍ଗୀ
ହରବ୍ରହ୍ମା କ୍ଷୟେ ଯାନ୍ତେ ଧାରଣ ପରମଯୋଗୀ । ୩୭ ।

---

୩୦।୧ ମତ୍ତରସ ପାନେ ଯାର ଶରୀର ଦୁର୍ଦ୍ଦଣ୍ଡ
୩୨।୧ ମସ୍ତାଣ ଆଗେ ପସ୍ତାଣ ସୁନା ଚଉକୁଟି ।

କନ୍ଧେଣ ବିରାଜଇ ଅନନ୍ତ ନାଗ ନାମେଣ ପବନା
କଣ୍ଠେଯୁ ଗିରି କୁଣ୍ଡଳ ସ୍ୱାମୀ ଗନ୍ଧ ମଳୟୁ ଚିତା । ୩୮ ।
ଅନଙ୍ଗ ଦହନ କରି ଲେପନ ଦେହେ ପାଂଶୁ
କାମଦେବ ତହୁଂ ସୁନ୍ଦର ଯେବଣ ଦେହ ବଶୁ । ୩୯ ।
ଯେହେନେକ ସ୍ୱରୂପେ ସ୍ୱାମି ବିଜୟେ କାପାଳୀ
ପାଞ୍ଚାଳକଇ ଦୃଶ ହୋଇଲେ ଆକାଶ ମଣ୍ଡଳୀ । ୪୦ ।
ସ୍ୱରୂପ ବର୍ଣ୍ଣ ଦେଖାଇଲେ ବାମଦେବ ସ୍ୱାମୀ
ଦ୍ରୋପଦେଶ୍ୱର ଶତ ସହସ୍ର ଦଣ୍ଡ ପରଣାମି । ୪୧ ।
ଭଗତି ଦେଖି ବିଶ୍ୱନାଥ କଲେ ଅନୁରାଗ
ବଦନ୍ତି କାଶୀ ଆରେ ଦ୍ରୋପଦ ବର ମାଗ । ୪୨ ।
ଦ୍ରୋପଦ ବୋଇଲା ସ୍ୱାମୀ ସାବଧାନେ ଶୁଣ
ମୁଇଂ ସଂଗ୍ରାମେ ଜିଣିମି ଗୁରୁ ଦ୍ରୋଣ । ୪୩ ।
ତହିଂକ ପ୍ରସନ୍ନ ହୋଇ ମୋତେ ବର ଦେବା
ଅନ୍ଧକ ବିଦାରଣ ସ୍ୱାମି ଅନାଦି ଗୁରୁଦେବା । ୪୪ ।
ଈଶ୍ୱର ହସ୍ତେ ଯେବଣ ଧନୁ ଦେଖି
ଭଗତି ଭାବେ ଦ୍ରୋପଦ ମାଗିଲା ପିନାକୀ । ୪୫ ।
କୋଟିଏ ସହସ୍ର ବଳ ଯେବଣ ଧନୁ
ସେ ଧନୁ ବହନ୍ତା ନାହିଂ ଜନ ଯେ ତ୍ରିଭୁବନୁ । ୪୬ ।
ଅନନ୍ତ ପିନାକୀ ସେ ଶତ ସହସ୍ର ବଳ
ଦ୍ରୋପଦ ରାଜା ହାତରେ ଦିଲେକ ସୁଡଳ । ୪୭ ।
ରୁଦ୍ର ଶହସ୍ର ପଶୁପତ ଖାକ୍ଷମୂନୀ
ଖଟ୍ୱାଙ୍ଗ ତ୍ରିଶୂଳ ଅଭୟେ ବଜ୍ରସେହ୍ଣା । ୪୮ ।
ଦ୍ରୋଣନ୍ତ ଜିଣ ବୋଲି ଦିଲେ ପଶୁପତି
ଦ୍ରୋପଦ ବୋଇଲେ ଦେବ ଭୀଷ୍ମ, ଭୂରିସବା, ଅଶସ୍ତମା
ଦ୍ରୋଣଙ୍କୁ ଆବୋରନ୍ତି । ୪୯ ।
ଯେହାନ୍ତ ଜିଣିଲେ ସେ ଦ୍ରୋଣଙ୍କୁ ହୋଏ କାଶୀ
ଯେ ବର ପ୍ରାପତ ମୋତେ କରିବା ଦେବ କାଶୀ । ୫୦ ।

---

୪୬।୧ ପିନାକୀ—ପିନାକ ଅର୍ଥରେ ବ୍ୟବହୃତ ହୋଇଅଛି ।
୪୮।୧ ପଶୁପତ—ପାଶୁପତ ଅସ୍ତ୍ର

କର୍ଣ୍ଣ କୃପ ଶଲ୍ୟ ଶକୁନି କୁରୁପତି
ଅଦୋଷେ ଯେ ମାନେ ମୋତେ କଲେ ସାତବେଣ୍ଟି ଶାସ୍ତି । ୫୧ ।
ଯେହ୍ନାନ୍ତ ସହିତେ ଜିଣିମି ମୁହିଂ ରଣେ
ଯେ ମାନଙ୍କର ଗୁରୁ ଅଛନ୍ତି ନାଦେ ଦ୍ରୋଣେ । ୫୨ ।
ଈଶ୍ୱରେ ବୋଇଲେ ଅଶସ୍ତମା ଖ୍ୟାତ୍ତ
ମୋହୋରେ ଜପୁ ଯେ ନୁହନ୍ତ ସତ୍ୟଧର୍ମ । ୫୩ ।
ଶ୍ରୋଲେ ତୋତେ ମୁଂ ବର ଦେବଇଂ ନଷ୍ଟେ ଅବା
ପଛେ ସିଦ୍ଧି ନୋହିଲେ ସମସ୍ତେ ନାଶଯିବା । ୫୪ ।
ଆରେ ଯେହ୍ନାନ୍ତ ଦ୍ରୋପଦ ନ ଜିଣିମୁ କଦାଶ୍ଚିତେ
ଅର୍ଜୁନର ସୋଦର ଯେ ଅଛନ୍ତି ଯୁଗତେ । ୫୫ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ଯେ ଗୃର ଦିଗପାଳେ
ଯେ କା ଅର୍ଜୁନ ଉତପତ୍ତି ଯେ ମୃତ୍ୟୁ ମଣ୍ଡଳେ । ୫୬ ।
ଆମ୍ଭେ ଯେ କେ ଯେ କେ ଯୁଦ୍ଧେ ଅର୍ଜୁନକୁ ନୋହୁ ସର
ତୁ ତାହାନ୍ତ କେମନ୍ତେ ଜିଣିମୁ ଅର୍ଜୁନ ଯେ ଆବୋର । ୫୭ ।
ଦ୍ରୋପଦ ବୋଇଲା ସ୍ୱାମୀ ଶୁଣିମା ଦେବରାୟେ
ମୋତେ ଦେବ ଦେବା ଦୁହିତା ଗୋଟିଏ । ୫୮ ।
ସେ ଦୁହିତା ଗୋଟିକ ଅର୍ଜୁନକୁ ପ୍ରଦାନ କରିବି
ଦୁହିତା ଦେଇ ତାକୁ ସମର୍ପି ହୋଇବି । ୫୯ ।
ସେ ମୋହୋର ଜାମାତା ଯେ ହୋଇବ ଯୁଗତେ
କଉରବେକନ୍ତ ମରିଇବେ ମୁଂ ଅର୍ଜୁନର ହସ୍ତେ । ୬୦ ।
ଈଶ୍ୱର ବୋଇଲେ ସାଧୁ ସାଧୁ ହୋ ଦ୍ରୋପଦ
ଯେ ବଚନ ଗୋଟି ତୋର ହୋଇବ କରୁଛାନ୍ତ । ୬୧ ।
ଯାଅ ଯା ଦ୍ରୋପଦ ତୋତେ କନ୍ୟସେନୀ ହୋଉ ପରାପତ
ତାହାରେ ଭାରତର ହୋଉ ନା ସମାପତ । ୬୨ ।
ଇନ୍ଦ୍ର ଯେ ନାଶ ଗଲା ତ୍ୱଷ୍ଟା ଋଷିର କୋପେ
ସ୍ୱାମୀର ଅଭାବେ ଶଚୀ ଯେ ବସିଲା ଘୋର ତପେ । ୬୩ ।

---

୫୫ ତୋର ଯୁଦ୍ଧକଲେ ତାଙ୍କୁ ଅର୍ଜୁନ ଆବୋରବ ।
ମୋହୋର ନରମାନନ୍ତ ସମସ୍ତ ନାଶ ଯିବ ॥ ପୁସ୍ତକ ବିଶେଷରେ ପାଠ ॥
୬୨।୧ କନ୍ୟସେନୀ—ଯାଜ୍ଞସେନୀ

ଆମ୍ଭେ ପ୍ରସନ୍ନ ହୋଇଲୁ ହର ଯେ ପାର୍ବତୀ
ପତିଂ ଦେହ୍ମ ପତିଂ ଦେହ୍ମ ବୋଲି ସେ ବୋଇଲା ପଞ୍ଚ ଧାନ୍ତି । ୭୪ ।
ଆମ୍ଭେ ବୋଇଲୁ ଯାହା ଇଚ୍ଛିଲୁ ବନିତା
ଆରେ ସୁନ୍ଦରୀ ତୋର ହୋଉ ପଞ୍ଚ ଭର୍ତ୍ତା । ୭୫ ।
ଇନ୍ଦ୍ର ଦେବତା ଯେତୁକା ଜନ୍ମିଲା ପାଞ୍ଚ ମୂର୍ତ୍ତି
ସେ ପାଣ୍ଡବଙ୍କୁ ହୋଉ ଯେତୁକା ସତୀ । ୭୬ ।
ଈଶ୍ୱରେ ବୋଇଲେ ଦୁର୍ବାସା ବଶିଷ୍ଠ
ଦ୍ରୋପଦ ଭୁବନେ ଯାଗ ଆରୋପଣ କର ମନ୍ତ୍ର ଜଳ ଘଟ । ୭୭ ।
ଯାଗରୁ ଜାତ କର ଦୁହିତା ଗୋଟିଏ
ଦ୍ରୋପଦ ପ୍ରଦାନ କରୁ ପାଣ୍ଡବ ଧନୁର୍ଜୟେ । ୭୮ ।
ସେହୁ ତାର ମନବାଞ୍ଛା ହୋଉ ଯେ ପ୍ରାପତ
ଅନେକ କଷ୍ଟେ ଯେ ଆମ୍ଭଙ୍କୁ ହୋଇଲା ଭଗତ । ୭୯ ।
ବର ଦେଇ ବିଜେ କଲେ ସଦାଶିବ
ପୁତ୍ରୈକ ବିମାନ ଦ୍ରୋପଦକୁ ଦେଲେ ଆଦିଦେବ । ୮୦ ।
ରୁଦ୍ରଙ୍କ ଶସ୍ତ୍ରମାନ ଘେନିଅଛି ନିଜ ହସ୍ତେ
ଅନେକ ଅଳଙ୍କାର ଆଭରଣ ତାହାର ଯେ ଗାତ୍ରେ । ୮୧ ।
ଈଶ୍ୱର ସେବାରେ ଯେତେହେନେକ ଫଳ ଶ୍ରୁତି
ଅମର ବିଳାସୁଣୀମାନେ ଚାମର ଢାଳନ୍ତି । ୮୨ ।
ଯେତେବେଳେ ଅର୍ଜୁନ ଦ୍ରୋପଦକୁ ଧରି ନେଲା
କଉତ ରାଜା ତେଣେ ତାର ରାଜ୍ୟ ମାଡିଣ ବସିଲା । ୮୩ ।
ଦ୍ରୋପଦର ସନ୍ୟମାନ ମାଇଲା ସବୁ ଖେଦି
ପୁତ୍ର ଦୁହିତା ତାର ଯେ ନ ଥିଲା ସମ୍ବାଦି । ୮୪ ।
ଦ୍ରୋପଦ ରାଜାର ଭାରଯା ନାମ ପଦ୍ମାବତୀ
ପଦ୍ମକେଶର ରାଜାର ସେ ଅଟଇ ଦୋହିତ୍ରୀ । ୮୫ ।
ରାତ୍ରକାଳେ ମହାଦେଈ ପଳାଇଣ ଗଲା
ବିନ୍ଧ୍ୟାଧର ଶବରର ଘରେଣ ରହିଲା । ୮୬ ।
ସେ କଉତ ତଦ୍ରୂଂ ତାହାକୁ ଘେନିଗଲା ରାତ୍ରେ
ପଦ୍ମଦଳ ଦେଶେ ନେଇ ଦେଲା ରାଜାର ଅଗ୍ରତେ । ୮୭ ।

ଦୁହିତାକୁ ସମ୍ଭାଳିଲା ପଦ୍ମଦଳ କେଶରୀ
ଭିନ୍ନ ନବରେ ଥୋଇଲା ଅତି ଯତ୍ନ କରି । ୭୮ ।
ବିଶ୍ୱନାଥ ପ୍ରସନ୍ନେ ନୃପତି ଦ୍ରୋପତି
ପାଞ୍ଚାଳ ଦେଶେ ଆସି ବିଜୟେ ନରନାଥ । ୭୯ ।
ଆକାଶ ମଣ୍ଡଳେ ରାଜା ପୁଷ୍ପକ ବିମାନ ଉଡ଼ାଇ
ଜଗତି ଉପରେ ରାଜା ବିଜେ କଲା ଯାଇଂ । ୮୦ ।
ରାଜାର ଅଗ୍ରତେ ଯାଇଂ କହିଲେ ମୁନେହିଂ
କୋପେଣ କରାତ କରେ ଖଡଗ ଘେନି ଧାଇଂ । ୮୧ ।
ଧାମଇଂ କରାତେଶ୍ୱର ଜଗଣ୍ଟି ଉପରକୁ
ଯୋଧା ଅମାନାଙ୍କ କେହି ଗୋଡ଼ାଇ ନ ପାରିଲେ ତାକୁ । ୮୨ ।
ଜଗଣ୍ଟି ଉପରେ ବିଜୟେ ଦ୍ରୋପଦ ନୃପତ୍ତେ
ଈଶ୍ୱର ଦୂଷ୍ଟି ପିନାକ ଧରିଅଛୁ ହସ୍ତେ । ୮୩ ।
କରାତ ଉଠି ଆସନ୍ତେ ବିନ୍ଧିଲା ଯେକ ଶର
ରୁଦ୍ରଶର ପଡ଼ିଲା ଯାଇଂ କରାତ ଉପର । ୮୪ ।
ଶହସ୍ତ୍ରର ତେଜେ ଦହିଜ ହୋଇଲା ତାହାର କାୟେ
ପ୍ରତକ୍ଷେ ଦିଶିଲା ସେ କାମଦେବ ଦହନ ପରାୟେ । ୮୫ ।
କରାତ ଧାମନ୍ତେ ଯେ ଆସୁଥିଲେ ଅମନାଙ୍କେ
ସେ ଦହିଜ ହୋଇଲେ ଦ୍ରୋପଦର ଶରଘାତେ । ୮୬ ।
ପଳାଇଲେ ସଇନ ଯେ ସମସ୍ତ ଆଶା ତେଜ
ବିନ୍ଧଇ ନାରାଜ ଦ୍ରୋପଦ ଶଳରାଜ । ୮୭ ।
ଅବିଛିନେ ବାଣ ବିନ୍ଧଇ ପଶୁପତ
ନାରାଜ ପଡ଼ି ଭସ୍ମ ହୋଅନ୍ତି ସମସ୍ତ । ୮୮ ।
ରଥ ଗଜ ଅଶ୍ୱ ସମସ୍ତ ଗୁଡ଼ି ପଳାଇଲେ
ଗୋଡ଼ାଇ ଅନେକ ସଇନ ମାଇଲେ । ୮୯ ।
ଈଶ୍ୱରଙ୍କ ଶହସ୍ତ୍ରମାନ ତହିଂ ପରୀକ୍ଷ କରନ୍ତେ
କରାତର ସନ୍ୟ ନାଶ ଗଲେକ ସମସ୍ତେ । ୯୦ ।
ଦଶ ପଦ୍ମ ରଥ କୋଡ଼ିୟେ ପଦ୍ମ ହସ୍ତୀ
ତରଣ ପଦ୍ମ ଅଶ୍ୱ ଯେ ଅଗଣିତ ପାଦାନ୍ତି । ୯୧ ।

ମହା ସମ୍ପଦେ କରାଇ ରାଜ୍ୟ କରୁଥିଲା
ସେହି ସମ୍ପଦ ଦ୍ରୋପଦ ମାଡ଼ିଣ ବସିଲା । ୯୨ ।
ପାରଦଣ୍ଡ ରାଜାମାନେ ପଳାଇଣ ଥିଲେ
ଦ୍ରୋପଦ ରାଜାକୁ ଯେ ଦ୍ରଶନ ଆସି କଲେ । ୯୩ ।
ବାରତା ପାଇଣ ରାଜା ପଦ୍ମ ଦଳ କେଶରୀ
ପଦ୍ମାବଖାଳ ଘେନ ଅଇଲା ବଜେ କରି । ୯୪ ।
ଭୁଲେଣ ଅଇଲେ ତାର ସାଙ୍ଗେ ଷେଉଣୀ ସନ୍ୟ
ଅନେକ ରଥ ଗଜ ଅଶ୍ୱ ଯେ ଆଣିଲା ବହୁତ ଧନ । ୯୫ ।
ଦ୍ରୋପଦ ନୃପତ୍ତଙ୍କ କଲା ଦରଶନ
ମହାଦେଈ ବଜେ କଲେ ଅନ୍ତେଶ୍ୱର ଭୁବନ । ୯୬ ।
ଅନେକ ଦେଶର ଯେ ରାଜାଗଣମାନେ
ଦ୍ରଶନ କଲେ ଆସି ଦ୍ରୋପଦର ସନ୍ନିଧାନେ । ୯୭ ।
ଅନେକ ସମ୍ପଦ ଅରଜଲା ଦ୍ରୋପଦ ଈଶ୍ୱର ପରସନ୍ନେ
ଅଳକାପୁର ଜାଣି ତାହାର ଭୁବନେ । ୯୮ ।
ତିନ ଯୋଜନ ମାଡ଼ି କଟକ ତାହାର
ଅନ୍ୟ ଜାତି ଲୋକଙ୍କର ସହିତେ ସୁବର୍ଣ୍ଣର ଘର । ୯୯ ।
ଦେଖିଣ ପ୍ରଶଂସା ଯେ କରନ୍ତି ଦେବତାସ୍ତେ
ହରଷେ ବରଷନ୍ତି କଣସ୍ୱ ରତ୍ନମସ୍ତେ । ୧୦୦ ।
ଯହିଂ ଆନନ୍ଦ ତହିଂ ସମସ୍ତେ ହୋଂ ଭଜ
ପୁଣ୍ୟବନ୍ତ ଲୋକ କଇଂ ସମସ୍ତେ ହୋଂ ପୂଜ । ୧୦୧ ।
ପୁଣ୍ୟ ସ୍ଥାନକୁ ସେ ପୁଣ୍ୟବନ୍ତ ଲୋକେ ଯାନ୍ତି
ଉଛବ ଭୁବନେ ସେ ଯେ ଉଛବ କରନ୍ତି । ୧୦୨ ।
ପୁଣ୍ୟକୁ ପୁଣ୍ୟ ସେ ହୋଅଇ ଘଟଣ
ପାପକୁ ପାପ ସେ ହୁଅଇ ବନ୍ଧୁପଣ । ୧୦୩ ।
ଯେବଣ ରାଜା ରାଜ୍ୟ ପାଳଇ ସୁବଧାନେ
ତହିଂ ସେ ପାଳନ୍ତି ଦିଗପାଳମାନେ । ୧୦୪ ।
ପୁଣ୍ୟ ଭୁବନେ ସେ ବସନ୍ତି ଦଇବତେ
ପାପ ଆଚାର ସ୍ଥାନକୁ ନଯାନ୍ତି କଦାଚିତେ । ୧୦୫ ।

ଧର୍ମ ଦେଖିଣ ଯତ୍ନଂ ଦେବତାଯେ କରନ୍ତି ବଳେ
ପୃଥ୍ୱୀ ଫଳ ଦାୟକ ହୋଇ ପାଳନ୍ତି ଦେବରାଜେ । ୧୦୬ ।
ଈଶ୍ୱର ସେବା ଯତ୍ନଂ କଲ୍କ ଦ୍ରୋପଦ
ସମସ୍ତେ ଧାର୍ମିକ ଯେ ପାଳନ୍ତି ଧର୍ମ ଅର୍ଥ । ୧୦୭ ।
ଘରେ ଘରେ ପୁରାଣ ଅର୍ଥ ଯେ ବଖାଣି
ଯିସ ଅବା ପାତେକ ଥାଇ ଗୁଡଇ ତାହା ଶୁଣି । ୧୦୮ ।
ପୁଣ୍ୟପୁର ଭୁବନ ଦେଖି ପାପ ପୁରୁଷେ
ଭୟେ ଆଡେ ହୋଇ ପଳାନ୍ତି ପଶି ନ ପାରନ୍ତି ପାଶେ । ୧୦୯ ।
ଅମାତ୍ତ ସଂସାର ଯେ ମାୟା ପଟଳ ବାବା
ପାପ ଆଗ୍ରର ଲୋକଙ୍କ ସଙ୍ଗେ ପ୍ରସଙ୍ଗ ନୋହିବା । ୧୧୦ ।
ପାପ ଆଗ୍ରର ଗୁଡ ଧର୍ମ କର ଇଚ୍ଛା
ଯାହା ହୁଦେ ଚନ୍ଦ୍ରବ ପ୍ରାପତ ହୋଯେ ବାଞ୍ଛା । ୧୧୧ ।
ଧର୍ମ ଆଗ୍ରର ଯେବେ ନାଶ ଯିବ ପ୍ରାଣୀ
ସ୍ୱର୍ଗେ ବସଇଛି ଅମର ଲୋକ ଜାଣି । ୧୧୨ ।
ଯମ ଛିଦ୍ର ନ ପାଇଛି ଧର୍ମ ଅର୍ଥ ଲୋକଙ୍କୁ
ନିରାଧାର ଆଗ୍ୟାଂ ଦେଇ ଥାଇ ଯେ ଚନ୍ଦ୍ରଗୁପତଙ୍କୁ । ୧୧୩ ।
ପାପ ଆଗ୍ରର ନ କରାଇଛି ପୁଣ୍ୟବନ୍ତ ପ୍ରାଣୀଙ୍କି
ଯୁଗତେ କହିବ ତୁମ୍ଭେ ଯାହାର ଯେହ୍ନେ ଦେଖି । ୧୧୪ ।
ଯମ ବୋଲି କରି ଯେବଣ ପୁରୁଷଇ
ଧର୍ମ ଦେବତା ଶରୀରେ ତାହାର ବସଇ । ୧୧୫ ।
ପାପକୁ ଅପରାଧ ପୁଣ୍ୟକୁ ଦଅଇ ଗତି
ସେହା ବରୁର ନାରାୟଣଙ୍କୁ ହୋଇ ଭଗତି । ୧୧୬ ।
ପାପ ନ ପଶଇଛି ଶରୀରେ ଗ୍ୟାଂନ ଥିଲେ
ଶ୍ରୀଦ୍ରମୁନ ସାରଳା ଦାସେ ସେହା ବରୁର ବୋଇଲେ । ୧୧୭-୮୦୭୮ ।



୧୧୩ । ୧ ଛିଦ୍ର—ଛିଦ୍ର ।

## ଦ୍ରୁପଦର ସନ୍ତତ ଯଜ୍ଞ ଓ ଶ୍ରୀଖଣ୍ଡି ଜନ୍ମ

ବଦନ୍ତି ଅଗସ୍ତି ବଇବସ୍ୱତ ମନୁ
ଦ୍ରୋପଦ ରାଜାର କଥା ଶୁଣିଲୁ ଅବଧାନୁଂ । ୧ ।
ଦ୍ରୋପଦ ରାଜାର ଯଜ୍ଞଂ ଦେଖିଲେ ଧର୍ମକଥା
ସୁବଧାନେ ପାଳଲେ ଧର୍ମ ଯେ ଦେବତା । ୨ ।
ହବସେଣ ଖର କରଇ ରକ୍ଷେଣ କରଇ ବୃଷ୍ଟି
ହଗୁଣ ଫଳ ଦାୟେକ ହୋଅଇ ତାର ସୃଷ୍ଟି । ୩ ।
ଦ୍ରୋପଦ ରାଜାର ଧର୍ମ ଶୁଣିଣ ଧାର୍ମିକେ
ଆକାଶୁଂ ଆସନ୍ତି ବଶିଷ୍ଠ ଦୁର୍ବାସା ବାଲମିକେ । ୪ ।
ବ୍ୟାସ ବଇଶମ୍ପାୟନ ମାରକଣ୍ଡ ଶୁକବ୍ରହ୍ମା
ଜୟେମୁନ ବଶ୍ୱାମିତ୍ର ଗଉତମ ମହାତ୍ମା । ୫ ।
ମହାମନ୍ତ ପବନ ଉତ୍ତରୀ ପାର୍ଶ୍ୱୀ କରେ ଧେନ
ଦ୍ରୋପଦ ରାଜ୍ୟେ ଯାଇଂ ବଜୟେ ସର୍ବ ମୁନି । ୬ ।
ଆସ୍ତାନେ ବଜୟେ କର ଅଚ୍ଛଇଂ ଦ୍ରୋପଦେ
ଋଷିମାନେ ଆସି ପ୍ରବେଶ ହୋଇଲେ ସମସ୍ତେ । ୭ ।
ଋଷିମାନଙ୍କୁ ଦେଖି ଉଠିଲେ ମହାରାଜା
ଚରଣ ପଖାଳଣ କଲ ପାଦ ପୂଜା । ୮ ।
ସୁବର୍ଣ୍ଣ ପୀଢାରେ କୃଷ୍ଣାଜିନ ଛଉରୀ ପାଡ
ପୂଜା ପାଇ ବସିଲେ ସମସ୍ତ ତପଗୃହୀ । ୯ ।
ବେଦ ଆଧାନ ଯେ କରନ୍ତି ସର୍ବ ଋଷି
ସହସ୍ରେ ଆର୍ଘ୍ୟ ଭର୍ଜନ ତୁ କୋଟି କଳ୍ପ ହୋଅସି । ୧୦ ।
ସବୁଙ୍କର ପାଦ ଯେ ଦ୍ରୋପଦ ପଖାଳିଲେ
ଭାରିଯା ସହିତେ ଉଷତେ ପାଦ ଉଦେକ ଧେନଲେ । ୧୧ ।
ଶତେ ସହସ୍ର ଦଣ୍ଡ ପ୍ରଲମ୍ବିତ କର
ଗଡଧାଳି ଶୁଭିଲ ପଞ୍ଚାଳ ଦେଶର ଦଣ୍ଡଧାରୀ । ୧୨ ।
ସମସ୍ତ ଋଷିମାନେ କଲ୍ୟାଣ ଯେ କଲେ
ଚିର ଆଇଷ ହୋଅ ବୋଲି ସାନନ୍ଦେ ବୋଇଲେ । ୧୩ ।

---

୫।୨ ଜୟେମୁନ—ଜୈମିନ ।

ବସ ବସ ରାଜା ହୋ ବୋଇଲେ ଋଷିମାନେ
ରାଜ୍ୟ ତୋହୋର ହୋଉଅଛି ନା ସୁବଧାନେ । ୧୪ ।
ହବିର୍ଭାଗ ପାଉ ଅଛନ୍ତି ନା ଦେବଲୋକେ
ଇନ୍ଦ୍ର ବୃଷ୍ଟି ରାଜ୍ୟେ କରେ ନା ସୁପାଳକେ । ୧୫ ।
ଦେବତା ବ୍ରାହ୍ମଣେ ହୋଉଅଛୁ ନା ଭଗତି
ସୁବଧାନେ ଫଳ ଦାୟେକ ହୋଉଅଛି ନା ପୃଥ୍ୱୀ । ୧୬ ।
ଅନ୍ନ ଜଳଛତ୍ର ଦାନ ଦେଉଅଛୁ ନା ତୁହି ଭଲେ
ପାନ୍ଥ ଅମନାତ୍ୟେ ଚଳନ୍ତି ନା ତୋର ବୋଲେ । ୧୭ ।
ପରରାଷ୍ଟ୍ର ଅପଚୟେ ନାହିଂ ନା ରାୟେ ତୁଲୁ
ଅସୁର ଭୟରୁ ରକ୍ଷା କରୁ ନା ତପିଜନଙ୍କୁ । ୧୮ ।
ଧାଡ ଦଳେ ସାବଧାନ ହୋଉଅଛୁ ନା ରାୟେ
କୃଷିକାରୀ ଲୋକଙ୍କୁ କରୁଛୁ ନା ତଳୟେ । ୧୯ ।
ଦଣ୍ଡ ମଣ୍ଡ ରାଜା ଶୁଣୁଥିକି ଗୁହାରି
ଆରୋଗ୍ୟେ ବ୍ରତନ୍ତି ନା ତୋ ପୁର ନରନାରୀ । ୨୦ ।
ଗଜ ଅଶ୍ୱଙ୍କୁ ଅନୁବ୍ରତେ କରୁଛୁ ନା ଚିନ୍ତା
ରସ ମୂଳ ପରୀକ୍ଷ ହୋଉଛୁ ନା ଭୂଗତା । ୨୧ ।
ଦଣ୍ଡ ମଣ୍ଡଳ ଯେ ସମସ୍ତ ପାରିଦଣ୍ଡ
ଭଣ୍ଡାର ରକ୍ଷା କରନ୍ତି ନା ହୋଇଣ ସେ ରୁଣ୍ଡେ । ୨୨ ।
ଅଶ୍ୱ ଗଜକୁ ଦେଉ ନା ଚରଣି ପିଉଣି
ମୁଣୋହି କରୁଅଛୁ ନା ସୂର୍ଯ୍ୟବେଳ ଜାଣି । ୨୩ ।
ଦେବାର୍ଚ୍ଚନ ନିଯୋଗ ହୋଉଛି ନା ସର୍ବ ଚିନ୍ତା
ଦେଶାନ୍ତରେ କହୁଛନ୍ତି ନା ପରରାଷ୍ଟ୍ରର ବାରତା । ୨୪ ।
ଆରୋଗ୍ୟ ହୋଇ ବ୍ରତିଅଛୁ ନା ମହାରାଜା
କୁଶଳେ ବ୍ରତନ୍ତିକି ତୋହୋର ଜନପ୍ରଜା । ୨୫ ।
କର୍ମ ତଣ୍ଡକାରେ ବ୍ରତିବୁ ନରପତି
ଅପରାଧ କଲା ଲୋକକୁ ନ ଦେବୁ ଶିର ଶାସ୍ତି । ୨୬ ।

---

୧୮।୧ ପରରାଜ୍ୟ ଉପଦର୍ପ ନାହିଂ ନା ରାଜାଙ୍କୁ ।

ପରଜାଙ୍କୁ ଚିନ୍ତା ନ ଛାଡ଼ିବୁ ତୋହୋର ହୃଦେ
କୃଷିଭାଗୀ ଲୋକଙ୍କୁ ରାଜା ନ କରିବୁ ପରମାଦେ । ୨୭ ।

ସ୍ଵଦାରାଙ୍କୁ ଭ୍ରଷ୍ଟ ଅଛୁ ନା ରାଜ୍ୟେ ମଣି
ପୁତ୍ର ପଉତ୍ରୀ କୁଶଳେ ଅଛନ୍ତି ନା ପୁଣି । ୨୮ ।

ଦ୍ରୋପଦେ ବୋଇଲେ ସମସ୍ତ ସିଦ୍ଧକଥା
ଭେ ବ୍ୟାସେ ନାହିଂ ମୋର ପୁତ୍ର ଯେ ଦୁହିତା । ୨୯ ।

ବଶିଷ୍ଠ ଦୁର୍ଭାସା ରାଇ ଋଷ୍ୟେରେ ଆଗ୍ୟାଂ ଦିଲେ
ବିପାକ କର୍ମ ମୋହୋର ତାହା ପାସୋରିଲେ । ୩୦ ।

ବଶିଷ୍ଠେ ବୋଇଲେ ରାଜା କ୍ରୋଧ କର ଶାନ୍ତ
ଆମ୍ଭେ ଆସିଅଛୁ ନା ଯେ ତହିଂର ନିମନ୍ତ । ୩୧ ।

କାଶୀ ନଦୀ ତୀରେ ପବିତ୍ର ଥାନ ଭୂମି
ସେହିଠାଂ ଯାଗଶାଳ ତୋଳାଅ ଆରମ୍ଭି । ୩୨ ।

ପୂର୍ବେ ନନ୍ଦ ଭୋପାଳ ରାଜା ସେହିଠେ ସନ୍ତତି ଯାଗ କଲା
ବୃହଦ୍ଧ୍ଵଜ ନାମେ ତାର ପୁତ୍ରେକ ଉପୁଜିଲା । ୩୩ ।

କନ୍ୟା ଶୁକଳ ତ୍ରେୟୋଦଶୀ ଚନ୍ଦ୍ର ବାର
ଉତ୍ତରଭାଦ୍ରେ ନକ୍ଷତ୍ର ଭୋଗ ସେ ଦିନର । ୩୪ ।

ତଉଳ୍ଳି ନାମେ କରଣ ହର୍ଷ ନାମେ ଯୋଗ
ତୁଳ ସଂକ୍ରାନ୍ତିକ ତିନି ଦିନ ଭୋଗ । ୩୫ ।

ଶରଦ ଋତୁ ଅନୁଭବ ନାମେଣ କାଳ
ଦଶଦଣ୍ଡ ଉତ୍ତାରେ ବୃହସ୍ପତିଙ୍କର ବେଳ । ୩୬ ।

ତାର ବାର ନକ୍ଷତ୍ର ଯୋଗ ଅନୁକୂଳେ
ଯାଗଶାଳ ଶୁଦ୍ଧ ହୋଇଲା ସର୍ବମଙ୍ଗଳେ । ୩୭ ।

ଜଟି ହଟି ବର୍ଟୀ ଯେ ଶାଖୋଟି
ସେହି ଚାରି ବୃକ୍ଷ ପ୍ରଳୟ ଉତ୍ପାତେ ନ ହେଟି । ୩୮ ।

ସେହି ଚାରି କାଠେ କଲେ ଯାଗଶାଳ ଓରା
ବରୁଣ ଦଇବତମାନେ କଲେ ଜଳଧାରା । ୩୯ ।

ଈଶାନେ ମାରକଣ୍ଡ ପଛିମେ ମୁନି ଶାନ୍ତ
ଦକ୍ଷିଣେ ଈଶ୍ୱର ମୁନି ପୂର୍ବେ ଦୁର୍ବାସା ନମନ୍ତି । ୪୦ ।
ବ୍ରହ୍ମା ବରଣ ଯେ କଲେ ମହାମନ୍ତ୍ରେ
ଯାଗେଣ ଯାଗନିକ ହୋଇଲେ ବଶିଷ୍ଠ ପୁରୋହିତେ । ୪୧ ।
ଦୁର୍ବାସା ମାରକଣ୍ଡ ବ୍ୟାସ ଗଉତମେ
ପ୍ରେ ଗୃହଦେହଂ ବରଣ ଯେ ହୋଇଲେ ହୋମକର୍ମେ । ୪୨ ।
ଅଷ୍ଟାଦଶ ସମିଧ ଦୁର୍ବାଙ୍କୁର ଧେନ
ଯବ ମକର ତିଳ କାମ୍ୟୋଦ ଅଗ୍ନି । ୪୩ ।
କୃଷ୍ଣ ଗୋମଳ ମେଦ୍ଧ ଅଗ୍ନିକ ସମିଧ
ନବ ତୀର୍ଥ ଜଳ ଅଖଣ୍ଡିତ ତଣ୍ଡୁଳ ପର୍ବଦ୍ଧ । ୪୪ ।
ପଞ୍ଚ ହୋମ ମନ୍ତ୍ର ଲକ୍ଷେକ ଶାକଲ୍ୟ ବୈଶ୍ୱାନର
ସ୍ୱାହା ସ୍ୱଧା ମନ୍ତ୍ରେ ଜପ ପ୍ରେକାକ୍ଷର । ୪୫ ।
ଶତେ ଯବ ଆନୟୂତନ ଖୋଳିଲେ ଯାଗକୁଣ୍ଡ
ଆଗେଣ ଉତ୍ତାରିଲେ ସେ ମେଦାସୁର ପିଣ୍ଡ । ୪୬ ।
ଅଗ୍ନି ଦେବତାଙ୍କୁ ତହିଂ କଲେକ ବରଣ
ଦ୍ରୋପଦେଶ୍ୱର ବନପ୍ରେ କରଇ ପ୍ରଦକ୍ଷିଣ । ୪୭ ।
ଯେବଣ ବ୍ରାହ୍ମଣ ଅଛନ୍ତି ପ୍ରତକ୍ଷେ ଦୁଶ ବ୍ରହ୍ମା
ମୁଂ କସ ସଞ୍ଚି କହିବ ତାହାଙ୍କର ମହିମା । ୪୮ ।
ଅନୁସାମଧେନୀ ମନ୍ତ୍ରେ ପ୍ରଥମ ଆହୁତି
ବାତ ପବନ ବୈଶ୍ୱାନର ମନ୍ତ୍ରେଣ ପଞ୍ଚ ସହସ୍ର ମୂରତି । ୪୯ ।
ପ୍ରଥମ ଆହୁତି ଯେ ସପତମ ଦିନେ
ଚରୁ ଫୁଟାଇଲେ ଘୃତ ରସପାନେ । ୫୦ ।

---

୪୦ { ଈଶାନେ ମାରତଣ୍ଡ ପଛିମେଣ କାଳରୁଦ୍ର
ଦକ୍ଷିଣେ ବରୁଣ ଦେବତା ଉତ୍ତରେ ଶିବାନ୍ତ (ଶିବ ବସନ୍ତ) ।

୪୨।୧ ଦୁର୍ବାସା ମାରକଣ୍ଡ ଉତଙ୍କ ଗଉତମେ ।

୪୨।୨ ବେଦମନ୍ତ୍ର ଦ୍ୱାରା ଅନାମିକା ଓ ଅଙ୍ଗୁଷ୍ଠ ଦ୍ୱାରେ ମୃତ୍ତିକା **ଉଦ୍ଧରଣ କରିବା** ।

ଚରୁ ପୂଜାଇ ଦଲେ ରାଜାର ଅଗ୍ରତେ
ପଦ୍ମାବନ୍ତୀ କ ଦଲେ ସାନନ୍ଦ ମନ ଚତ୍ତେ । ୫୧ ।
ଚରୁ ଘେନ ରାଜା ଚଳଇ ଅନ୍ତେଶ୍ୱରପୁରେ
ସ୍ନାହାନ କରଗଲେ ମହାଦେଈ ଅଇଲେ ଉଚ୍ଛୁରେ । ୫୨ ।
ଉଚ୍ଛୁର ହୋଅନ୍ତେ ଚରୁ ତେଜ ଭଗ୍ନ ଯେ ହୋଇଲା
ଋଷିଙ୍କ ଆଗ୍ୟାଂଯେ ପ୍ରାଶନ ଦେଖା କଲା । ୫୩ ।
ତୁଳା ବୃଛା ଧନୁ ମକର କୁମ୍ଭ ମୀନ ମେଷ
ବୃଷ ମିଥୁନ କକଡ଼ା ଘେନ ହୋଇଲା ଦଶମାସ । ୫୪ ।
କକଡ଼ା ମାସ ଶୁକଳ ଯେ ଦ୍ୱାଦଶୀ ତିଥି ଗୁରୁବାର
ଅନୁରାଧା ନକ୍ଷତ୍ର ବେଳ ଅଡାଇ ପହର । ୫୫ ।
ଶୁଭେଣ ପ୍ରସବ ହୋଇଲାକ ସୁତ
ଦେଖଇ ଜନନୀ ଯେତ ଅଟଇ ବିପରୀତ । ୫୬ ।
ସ୍ତ୍ରିରୀ ପୁରୁଷ ବେନ ଲକ୍ଷଣ ନାହିଂ ଚହ୍ନ
ପୁତ୍ର ହୋଇଲା ବୋଲ ଶବଦ ଉଚ୍ଛନ୍ନ । ୫୭ ।
ରାଜାକଇଂ ଗୁପତେ କହିଲେ ମୁଦୁସୁନ୍ଦୀଗଣ
ସ୍ତ୍ରୀରୀ କ ପୁରୁଷ ଅଙ୍ଗେ ନ ଦେଖିଲୁ ବର୍ଣ୍ଣ ଚହ୍ନ । ୫୮ ।
ବିସ୍ମୟେ ହୋଇଲା ରାଜା ବ୍ୟାସଙ୍କୁ ସୁମର
ଜାଣି ବେଗେ ଆସି କଲେ ଉପଗ୍ରହୀ । ୫୯ ।
ବଇକୁଲ୍ୟ ହୋଇ କର କହିଲେ ଦ୍ରୋପଦ ନୃପତ୍ୟ
ତୁମ୍ଭର ସଞ୍ଚତେ ହୋଇଲା ଅପୂର୍ବ ପୁତ୍ର ଜାତ । ୬୦ ।
ମୁହିଂ ଯାଗ କଲି ଦୁହିତାର ନିମନ୍ତେ
ଈଶ୍ୱରେ ଆଗ୍ୟାଂ ଦଲେ ଆବର ସକଳ ତପୋବନ୍ତେ । ୬୧ ।
ସ୍ତ୍ରିରୀ ପୁରୁଷ ଯେ ନୋହିଲାକ ବେନ
ନ ତ ସ୍ତ୍ରିରୀ ନ ତ ପୁରୁଷ ହୋଇଲା ଅଭାଗିମୀ । ୬୨ ।
ହସ୍ତେଣ ଖଡ଼ଗ ଘେନ ଉଠିଲା ନୃପବର
ଶିର ଛେଦ ପକାଇବ ବ୍ୟାସଙ୍କ ଆଗର । ୬୩ ।

---

୫୩।୧ ଉଚ୍ଛୁର ହୋଅନ୍ତେ ଚରୁ ତେଜ ନଉନ ହୋଇଲା ।

ବ୍ୟାସେ ବୋଇଲେ ରାଜା ଛାଡ଼ ଛାଡ଼ କୋପ
ତେଣେହେଁ କାରଣ ତୋତେ ଅଛୁ ନା ସରୂପ । ୬୪ ।
ଭୀଷ୍ମେ ନାଶଗଲେ ସେ ନଶନ୍ତି କଉରେବେ
ସେହିମାର ଧ୍ୱଂଶନେଣ ଶନ୍ଦସ୍ର ଛାଡ଼ିବେ ଗାଙ୍ଗେବେ । ୬୫ ।
ଅମ୍ଭେ ନାମେ କନ୍ୟା ସେହୁ ଅଛଇ ଜାଣ ପୂର୍ବେ
ବର ପ୍ରଦାନ ସେହିଙ୍କୁ ନୋହିଲେ ଗାଙ୍ଗେବେ । ୬୬ ।
ଭୀଷ୍ମର ଉପରେ ସେ ଅଗ୍ନି ଆରୋପିଲା
ତୋତେ ଯେହ୍ନେ ସାଧିବ ବୋଲ ଅଗ୍ନିରେ ଝାସିଲା । ୬୭ ।
ସେହିଙ୍କୁ ଦେଖିଣ ସେ ଭୀଷ୍ମ ନାଶ ଯିବେ
ତେବେ ସେ ଦ୍ରୋଣ କର୍ଣ୍ଣ ନଶିବେ କଉରେବେ । ୬୮ ।
ଶିର ଯେ ସେହିମାର ଖଣ୍ଡୁ ଥିଲୁ ସେବେ
ଶ୍ରୀଖଣ୍ଡୀ ନାମ ସେହିମାର ଦେଅଛି ରାଜଦେବେ । ୬୯ ।
ବ୍ୟାସେ ବୋଇଲେ ଯହୁଁ ସେହୁସନେକ କଥା
ଜନ୍ମ କଲା ନପୁଂସେକକୁ ଛାଡ଼ିଲା ମନ ବ୍ୟଥା । ୭୦ ।
ତୋହୋର ବଚନ ବ୍ୟାସେ ମୋତେ ହୋଉ ପରମ ହିତ
କାହାର ବେଳେ ଭର୍ଗି ହୋଅଇ ମହତଙ୍କ କୃତ୍ୟ । ୭୧ ।
ଦୁହିତା ଗୋଟିଏ ମୋତେ ଉପୁଜାଇ ଦେବୁ
ଆପଣେ ଥାଇ ଅର୍ଜୁନକୁ ପ୍ରଦାନ କରିବୁ । ୭୨ ।
ରାଜାର ବଚନେ ସେହି ଶକ୍ତିମୁନି ନାତି
ପୁଣିହିଁ ପାତିଲେ ଯାଗ୍ୟଂ ସନ୍ତାନ ଆହୁତି । ୭୩ ।
ମକର ମାସ କୃଷ୍ଣ ପକ୍ଷ ଦ୍ୱାଦଶୀ ବୁଧବାର
ମଘା ନକ୍ଷତ୍ର ଯୋଗ ଲଗ୍ନ ସାର । ୭୪ ।
ସେ ଦିନରେ ବ୍ୟାସେ ଦିଲେ ଯେ ଆହୁତି
ଯାଗେ୍ୟଂ ବିକାଶିଲା ଧୂମବର୍ଣ୍ଣ ଜ୍ୟୋତି । ୭୫ ।
ଧୂମମଧ୍ୟେ ଦେଖି ବ୍ୟାସ ଦୃଷ୍ଟିରେ ଚିହ୍ନିଲା
ଅଗ୍ନି ଦ୍ୱାର ପୁରେକ ଉପୁଜିଲା । ୭୬ ।

---

୬୯।୨ ଶ୍ରୀଖଣ୍ଡୀ—ଶିର ଖଣ୍ଡନ କରୁଥିବାରୁ ନାମ ଶ୍ରୀଖଣ୍ଡୀ—ଶିରଖଣ୍ଡି ।

 

ଦୃଷ୍ଟିରେ ଶୁଣିଂଲେ ଧୂମ ଅବଲୋକନ
ସେହି ପୁତ୍ର ନାମ ତୋର ହୋଉ ଧୃଷ୍ଟ ଯେ ଧୃମନ । ୭୭ ।
ଦ୍ରୋପଦ ବୋଇଲା ମୋର ପୁତ୍ରେ କାର୍ଯ୍ୟ କସ
ଦୁହିତା ଜାତ ହୋଇଲେ ନାଶିବ କୁରୁବଂଶ । ୭୮ ।
ଅର୍ଜୁନକୁ ପ୍ରଦାନ କରିବ କୁମାରୀ
ସେ ମୋର ଅଭିମାନନ୍ତ ସାରିବ କୌରବନ୍ତ ମାରି । ୭୯ ।
ବ୍ୟାସେ ବୋଇଲେ ସେହିହାକୁ ନ କର ଅଯତନ
ଦ୍ରୋଣର ଶିର ଛେଦିବ ସେହି ଧୃଷ୍ଟ ଯେ ଧୃମନ । ୮୦ ।
ଦ୍ରୋଣେ ନାଶ ଗଲେ ଜିଣିମୁ କୁରୁଥାଠ
ଦ୍ରୋପଦ ବୋଇଲେ ସେହି ପୁତ୍ର ମୋର ଶ୍ରେଷ୍ଠ । ୮୧ ।
ଦ୍ରୋଣେ ଯେବେ ନାଶ ଯିବେ ସେହିହାର ହସ୍ତେ
ସେହି ପୁତ୍ର ମୁଂ ଅଯତନ କରିବ କେମନ୍ତେ । ୮୨ ।
ଭୋ ବ୍ୟାସେ ତୋତେ ମୋର ଶତେ ସହସ୍ର ଦଣ୍ଡ ପ୍ରଲମ୍ବିତ
ଦୁହିତା ମୋତେ ଗୋଟିଏ କରିଦେବା ଜାତ । ୮୩ ।
ଦ୍ରୋପଦର ବଚନେ ସେ ପୁରୁଷ ଉତ୍ତମି
ପାତିଲେକ ମହାଯାଗ ସେ ବେଦବ୍ୟାସ ମହାମୁନି । ୮୪ ।
ମହାତେଜ ବୈଶ୍ୱାନର ପିଙ୍ଗଳା ଜାଳା କାଳାନଳ
ଜାତ ଅନଳ ହୋଠାନଳ ପଞ୍ଚ ଯେ ଅନଳ । ୮୫ ।
ପଞ୍ଚ ଅଗ୍ନି ସେହିକରି କରି ମୁନି ଦଲେ ଯେ ଆହୁତି
ବ୍ରହ୍ମାଣ୍ଡେ ଖେପିଲା ଯେ ବହ୍ନିର ଶିଖା ଜ୍ୟୋତି । ୮୬ ।
ଶୂନ୍ୟ ପୁରୁଷମାନେ ନୁଆଁଇଲେ ରହି
ମହାଜାଳା ବହ୍ନିରେ ସର୍ବେ ହେଲେ ଦହି । ୮୭ ।
ଦେଖ ହୋ ବଇବସୁତ ମନୁ ବ୍ରାହ୍ମଣଙ୍କର ମନ୍ତ୍ର
ସେହିଁ ଅଗ୍ନିରୁ ଉଆଉ ଅଛନ୍ତି ସମସ୍ତ । ୮୮ ।
ତାହାଣଶ୍ରେକ ହୋଇ ସେ ବୁଲଇ ବହ୍ନି
ଜୀବନ୍ୟାସ ଆହୁତି ଯେ ଦଅନ୍ତି ବ୍ୟାସ ମହାମୁନି । ୮୯ ।
ତାହାଣଶ୍ରେକ କରି ଆହୁତି ପୂର୍ଣ୍ଣ ଦଲେ
ପୁତ୍ର ସେ ଉତପତ୍ତି ହୋଇ ନିର୍ବିଭାଗ ପାଇଲେ । ୯୦ ।

ଯନ୍ତୁଂ ନ ଦେଖିଲେ ସେ ଅଗ୍ନିର ବାମ ମୂର୍ତ୍ତି
ଜଙ୍ଘାଯେକ କାଟି ପକାଇଲେ ଆହୁତି । ୯୧ ।

ତଦ୍ୟାପି ଅନଳର ତେଜ ନ ବକାଣି
କପାଳୁଂ ମାଂସ କାଟି ପକାଇଲେ ବ୍ୟାସ ମହାଋଷି । ୯୨ ।

ମହା କଠୋର ଦେଖିଣ ବୈଶ୍ୱାନରେ
ବାମାବର୍ତ୍ତ ମୂର୍ତ୍ତି ହୋଇଣ ଜ୍ୱଳିଲେ ପରଖରେ । ୯୩ ।

ବ୍ୟାସଙ୍କର ତେଜ କହିତ କ ପାର
ଅଗ୍ନି ଦେବତା ଯେ ଦେଖି ମହା ଭୟ କର । ୯୪ ।

ମକର ଶୁକ୍ଳ ସପ୍ତମୀ ତିଥି ଗୁରୁବାର
ରୋହିଣୀ ନକ୍ଷତ୍ର ଭୋଗ ପୂର୍ଣ୍ଣ ସେ ଦିନର । ୯୫ ।

ତତ୍ତୁଲ୍ୟ ନାମେ କରଣ ବଇଧୃତି ଯୋଗ
ବୃଷ ଘରେ ଚନ୍ଦ୍ର କରେ ସେହି ଦିନ ଭୋଗ । ୯୬ ।

ପଞ୍ଚ ଅଗ୍ନି ବଦାରଣ ଦିଶିଲ୍ଲ ମୂରତି
ଅଗ୍ନିରୁ କନ୍ୟାଯେ ଯେ ହୋଇଲେ ଉତପତ୍ତି । ୯୭ ।

ଲଲାଟ ମୁଖ ନାସିକା ଶ୍ରୁତି ଚରଣ ବକାଣି
କନ୍ୟାସେମାର ତେଜେ ଅଗ୍ନି ଦେବତାଯେ ମଳିଣ ଦିଶି । ୯୮ ।

ଶରୀର ମଧ୍ୟେ ଯେହ୍ନେ ଜଡଥାଇ ମଳ
ତେହ୍ନେହେନ୍ନେକ ପ୍ରାୟେ ଅଗ୍ନି ଦିଶିଲା ଉଜଳ । ୯୯ ।

ଯାଗ ସମାପତ କଲେ ବ୍ୟାସ ମହାମୁନି
ମହା ଅନଳ ଭେଦି ସମ୍ଭୂତ କନ୍ୟାସେନୀ । ୧୦୦ ।

ଶୂନ୍ୟ ଦେବତା ସେ ଅନାଦି ଅପର୍ଣ୍ଣା
ତ୍ରୈଲୋକ୍ୟମୋହିନୀ ସେ ଘୋର ବନାଶନା । ୧୦୧ ।

ଅଗ୍ନି ବଦାରଣ ଯେବଣ ଦେବୀ ସମ୍ଭବ
ଶଯୃଳ ମୋହିନୀ ସେ ଯେ ଅନାଦି ସିଦ୍ଧଦେବୀ । ୧୦୨ ।

ବ୍ୟାସେ କହିଲେ ଶୁଣ ହୋ ଦ୍ରୋପଦ
ଟେଯ ଦ୍ୱାପର ଯୁଗାନ୍ତଇ ଟେହ୍ନାର ବଚନ ସିଦ୍ଧ । ୧୦୩ ।

ଦ୍ରୋପଦକୁ ସମର୍ପି ଚଳିଲେ ବ୍ରହ୍ମଋଷି
ବିସ୍ମିର ଦ୍ରୋପଦ ପାଳଇ ଶୁଭ୍ରକେଶୀ । ୧୦୪ ।
ଦୁହିତାର ନାମ ଗୋଟି ଦିଲକ ନରପତି
ଉଚ୍ଛବ କରାଇ ବୋଇଲା ସ୍ନେହାର ନାମ ହୋଉ ଦ୍ରୋପଦୀ । ୧୦୫-୮୧୮୩



## ଜୟଦ୍ରଥ ସହିତ ଦୁଃଶୀଳାର ବିବାହ

ସିନ୍ଧୁ ଦେଶର ରାଜା ଅଛଇ ମନମଥ
ତାହାର ପୁତ୍ରର ନାମ ଅଛଇ ସୁରଥ । ୧ ।
ସୁରଥ ଦୂତ ଗଲା ପାଞ୍ଚାଳ ଦେଶକୁ
ଦ୍ରୁପଦ ଦୁହିତା ଗୋଟି ଦେବ ସେ ମମ ପୁତ୍ରକୁ । ୨ ।
ଅନେକ ସମ୍ପଦେ ସେ ବରଗିଲା ଦୂତ
ପଞ୍ଚାଳ ଦେଶେ ଯାଇଁ ପ୍ରବେଶ ଭୂରିତ । ୩ ।
ବିଜୟସେନ ବୋଲିଣ ଅଛଇ ତାର ମନ୍ତ୍ରୀ
ପାଞ୍ଚାଳ ଦେଶେ ଯାଇଁ ପ୍ରବେଶ ତତନ୍ତି । ୪ ।

---

୧୦୪।୨ "ବିସ୍ମିର ଦ୍ରୋପଦ ପାଳଇ ଶୁଭ୍ରକେଶୀ" ପାଦାନ୍ତ ପରେ ଅନ୍ୟ ପୋଥିରେ ଅଧିକା ପାଠ—

ଉଚ୍ଛବ କରଣ ଦିନେ ବୋଲଇ ନୃପତି
ଦୁହିତାର ନାମ ଦିଅ ମିଳି ବିପ୍ରପତି ।
ଅନଳ କର୍ଷଣ କରି ହେଲା ସ୍ନେହୁ ଜାତ
ବିପ୍ରେ ବୋଇଲେ ସ୍ନେ କୃଷ୍ଣା ନାମେ ଖ୍ୟାତ ।
ଦ୍ରୁପଦର ନାମାନ୍ତର ଅଟେ ଯଜ୍ଞସେନ
ସ୍ନେଣୁ ଯାଜ୍ଞସେନୀ ହେଲା ସ୍ନେ କନ୍ୟାର ନାମ ।
ଦ୍ରୁପଦ ଦୁହିତା ସ୍ନେହା ନାମ ଯେ ଦ୍ରୌପଦୀ
ଆବର ଯେତେକ ଥିଲେ ତହିଁ ସାମବେଦୀ ।
ସେ ବୋଇଲେ ସ୍ନେହା ନାମ ପାଞ୍ଚାଳୀ ହୋଇଲା
ପଞ୍ଚାଳ ଦେଶରେ ଯହିଁ ଜନମ ଲଭିଲା ।
ନାମ ଦେଇ ବିପ୍ରମାନେ ଗଲେ ଯେଝା ଘରେ
ନମଇ ସାରଳା ଦାସ ସାରଳା ପଦ୍ମରେ ।

ଦ୍ରୋପଦର ମନ୍ତ୍ରୀ ଯେ ସଦାନନ୍ଦ ନାମ
ଜୟଦ୍ରଥ ମନ୍ତ୍ରୀ ଯାଇଁ ପ୍ରବେଶ ତାହାର ଆଶ୍ରମ । ୫ ।
ସଦାନନ୍ଦ ମନ୍ତ୍ରୀ ଜୟଦ୍ର ମନ୍ତ୍ରୀକୁ ଯୋଗାଣ କରାଇ
ସ୍ନାହାନ ଭୋଜନ ଆଚ୍ଛୋଦନ ସାରଇ । ୬ ।
କର୍ପୂର ତାମ୍ବୋଳ ଯେ ଭୁଞ୍ଜନ୍ତ ବେନି ମନ୍ତ୍ରୀ
ବିନୟେ ପୁଚ୍ଛାକଲା ସଦାନନ୍ଦ କତି । ୭ ।
ସିନ୍ଧୁ ଦେଶର ରାଜା ଯେ ଅଟଇ ସୁରଥ
ତାହାର ନନ୍ଦନ ନାମ ଅଟେ ଜୟଦ୍ରଥ । ୮ ।
ରାଜାର ଅଗ୍ରତେ ବାରତା ଅବଧାରି
ଜୟଦ୍ରଥକୁ ଦେବା ଦ୍ରୋପଦ କୁମାରୀ । ୯ ।
ସଦାନନ୍ଦ ମନ୍ତ୍ରୀ ବୋଇଲା ନୋହଇ ଯେମନ୍ତ
ଦ୍ରୋପଦ ରାଜା କନ୍ୟା କରିବ ସନମତ । ୧୦ ।
ଅଗ୍ନିରୁ ଜାତ ହୋଇଲା ଯେବଣ କୁମାରୀ
ତାହାକୁ ବର ସେ ବ୍ରହ୍ମା ରୁଦ୍ର ହରି । ୧୧ ।
ଇହ ଲୋକେ ରାଜା ନାହିଁ ତାହାଙ୍କ ପ୍ରଦାନ
ମାନବେ କାହିଁ ଲୋଡ଼ୁ ବରବେଶ ବିଧାନ । ୧୨ ।
ସଦାନନ୍ଦ ବଚନେ ସେ ବୋଇଲା ଜୟଦ୍ରସେନ ମନ୍ତ୍ରୀ
ମୋତେ ଯେ ପଠିଆଇଲା ସିନ୍ଧୁ ଦେଶ ଅଧିପତି । ୧୩ ।
ରାଜାଙ୍କର ସମ୍ମୁଖରେ କଥାଏ ମୋତେ କୁହା
କସ ବଚନ ମୋତେ ଯେ ବୋଲଇ ନରନାହା । ୧୪ ।
ମନ୍ତ୍ରୀ ବୋଇଲା ମୁଁ ନୁଆରଇ ଜଣାଇ
ଆସ୍ଥାନେ ରାଜାଙ୍କୁ ବେଲେ ଦର୍ଶନ କର ଯାଇ । ୧୫ ।
ବେନି ମନ୍ତ୍ରୀ ସେ ଯେ ଯେତେକ ଯୋଗ ହୋଇଲେ
ତୁମ୍ଭେ ପୁରୋଇ କହିବଟି ମୋହୋର କଥା ପାସୋରିଲେ । ୧୬ ।
ଆଗ ହୋଇ ଦର୍ଶନ କଲା ସଦାନନ୍ଦ ମନ୍ତ୍ରୀ
ଅବକାଶ ସ୍ଥାନେ ଯେ ରାଜାଙ୍କୁ ଭୂଅପତି । ୧୭ ।
ସିନ୍ଧୁ ଦେଶର ମନ୍ତ୍ରୀ ବାରତା ଜଣାଇ
ରାଜାଙ୍କୁ ଦର୍ଶନ ସେ କଲା ବେଗେ ଯାଇଁ । ୧୮ ।

ଦ୍ରୋପଦ ପଚ୍ଚରିଲେ ପୁଣି କେଉଣ ରାଜାର କତି
ସଦାନନ୍ଦ ବୋଇଲା ପୁଣି ସିନ୍ଧୁ ଦେଶର ମନ୍ତ୍ରୀ । ୧୯ ।
ପୁଣିଥିଲୁ ଆଗତ ପୁଣି କେବଣ ବିଧାନେ
ନଉଚ୍ଛଳ କରି ମନ୍ତ୍ରୀ କହଇ ବଚନମାନେ । ୨୦ ।
ଦେବ ସିନ୍ଧୁ ଦେଶ ରାଜା ଅଟଇ ମନ୍ମଥ
ତାହାର ନନ୍ଦନ ଯେ ଅଟଇ ସୁରଥ । ୨୧ ।
ଧାର୍ମିକ ବିବେକ ସେ ପଣ୍ଡିତ ଭାଗ୍ୟବନ୍ତ
ସୋହୋଡ଼ି ବଂଶିକ ସେ ସଂଗ୍ରାମେ ଶକତା । ୨୨ ।
ତାହାର ନନ୍ଦନ ଯେ ଅଟଇ ଜୟଦ୍ରଥ
ତାହାକୁ ପ୍ରଦାନ କରିବନି ତୁମ୍ଭର ଦୋହିତ । ୨୩ ।
ଅନେକ ସମ୍ଭ୍ରେ ଯେ ପଠିଆଇଲେ ମୋତେ
ମୁହିଁ ଆସିଅଛୁ ଦେବ ତହିଁର ନିମନ୍ତେ । ୨୪ ।
ଶୁଣିଣ କୋପ କଲା ନୃପତି ଦ୍ରୋପଦ
ନଗର ବାହାରେ ନେଇ ପୁଣିହାର ଶିରଚ୍ଛେଦ । ୨୫ ।
ଉଚ୍ଚ କାଠ ଉପରେ ବସାଅ ପୁଣିହାକୁ ନେଇ
ଆଉର ବେଳେ ଦୂତ ନ ପେଷିବେ କେହି । ୨୬ ।
ଅର୍ଜୁନକଇଂ ପ୍ରଦାନ କରିବି କୁମାରୀ
ନୋହିଲେ ଦେବି ମୁଂ ଯେ ବ୍ରହ୍ମା ରୁଦ୍ର ହରି । ୨୭ ।
ରାଜାର ଆଜ୍ଞାଂରେ ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ବାଳ
ସିନ୍ଧୁ ଦେଶ ମନ୍ତ୍ରୀକି ଧରିନେଲେ କୋପାନଳ । ୨୮ ।
ନଗ୍ର ବାହାରେ ନେଇ ଛେଦିଲେ ତାହାର ଶିର
ଆଜ୍ଞାଂପୁଣି ବସାଇଲେ ନେଇ ଉଚ୍ଚକାଠ ଉପର । ୨୯ ।
ମନ୍ତ୍ରୀର ତୁଳେ ଯେ ଆସିଥିଲେ ଯେତେ ଲୋକେ
ସିନ୍ଧୁ ଦେଶକୁ ଯେ ପଳାଇ ଗଲେ ଅତି ଶୋକେ । ୩୦ ।
ବାରତା କହିଲେ ଯାଇ ସିନ୍ଧୁ ରାଜାର ଅଗ୍ରତେ
ମନ୍ତ୍ରୀକି ନାଶକଲା ଯେ ପଞ୍ଚାଳ ଦେଶର ନୃପତେ । ୩୧ ।

---

୨୬।୧ ଶୂଳୀ କାଠ ଉପରେ ବସାଅ ପୁଣିହା କଇଂ ।

ବୋଇଲ ଅର୍ଜୁନକୁ ଦେବ ମୋହୋର କୁମାରୀ
ଆନର ବେଳେ କି ମୋତେ କନ୍ୟା ପୁରସର । ୩୨ ।
ଶୁଣିଣ କୋପକଲ ଯେ ସିନ୍ଧୁଦେଶର ରାୟେ
ଦ୍ରୋପଦ ଉପରକୁ ଆପଣେ ଦଣ୍ଡ କଲେ । ୩୩ ।
ଯାନ୍ତେଣ ପଥେ ଦେଖନ୍ତି ଯେ ସୁବାହୁ ନୃପତି
ସୁରଥ ରାଜାର ତାର ଅନେକ ପୀରତି । ୩୪ ।
ଦ୍ରୋପଦର ଭୁଲେ ରାୟେ ନ କର ତୁ ଦ୍ୱନ୍ଦ
ଅନେକ ଶହସ୍ର ତାକୁ ଦେଇଛନ୍ତି ସଦାନନ୍ଦ । ୩୫ ।
ଯେବଣ କରାତ ସହସ୍ରେ ରାଜାଙ୍କୁ ଜିଣିଲା
ଦ୍ରୋପଦର ସେନା ନାଗଜକେ ନାଶଗଲା । ୩୬ ।
ମୁହିଂ ସେ କରାତ ରାଜାର ଅଟଇ ସୋହୋଦର ଭ୍ରାଥ
ଦ୍ରୋପଦର ଭୟେ ଆସିଲୁନ ଅଛୁ ସେଥ । ୩୭ ।
ମଞ୍ଚରେ ରାଜା ହୋଇ ଦ୍ରୋପଦକୁ ନାହିଂ ପ୍ରତିବାଧୀ
ତାହାର ଭୁଲେ କମେ ଲଇବୁ ପରମାଧୀ । ୩୮ ।
ଦ୍ରୋପଦ ହୋଇଲାନ ଆମ୍ଭର ବଇର
ପାଣ୍ଡବକୁ ଦେବ ଯେବେ ତାହାର କୁମାରୀ । ୩୯ ।
ଆମ୍ଭେ ବନ୍ଧୁ ହୋଇବା ଦୁଯୋଧନର ଭୁଲେ
ଦ୍ରୋପଦକୁ ନାଶ କରିବା ଦ୍ରୋଣଙ୍କର ବୋଲେ । ୪୦ ।
ସୁବାହୁ ବଚନେ ବାହୁଡଇ ସିନ୍ଧୁଦେଶ ରାୟେ
ହସ୍ତିନା ପୁରକୁ ଆପଣେ ଚଳି ଯାୟେ । ୪୧ ।
ଅନେକ ରତ୍ନ ଯୋଗାଡ଼ି ଘେନଣ ତହୁଂ ଗଲା
କର୍ଣ୍ଣର ଭୁଲେ ଜୟଦ୍ରଥକୁ ମଇତ୍ର କରାଇଲା । ୪୨ ।
ଅନେକ ବିନୋଦ ଯେ ହୋଇଲା କର୍ଣ୍ଣକୁ
ଦୁଶୀଳା କନ୍ୟାକୁ ପ୍ରଦାନ କର ଜୟଦ୍ରଥକୁ । ୪୩ ।

---

୩୯  "ପାଣ୍ଡବଙ୍କୁ ଦେବ ଯେବେ ତାହାର କୁମାରୀ ।" ପାଦାନ୍ତ ପରେ ଅନ୍ୟ ପୋଥିରେ—

ପାଣ୍ଡବମାନେ ଗଲେନ ଜତୁ ଘରେ ଜଳି
ଆବର କାହାକୁ ଦେବ ଦ୍ରୁପଦ ଦୁଲାଳୀ ।

କର୍ଣ୍ଣ ବୋଇଲେ ଯେବେ କହିଲ ଏମନ୍ତ
ଦୁଃଶୀଳାକୁ ପ୍ରଦାନ ଯେ କରଅ ଜୟଦ୍ରଥ । ୪୪ ।
ଜୟଦ୍ରଥକୁ ଘେନି କର୍ଣ୍ଣ ଚଳଗଲା ବେଗେ
କୁମାର ଘେନି ପ୍ରବେଶ ହୋଇଲା ଦୁର୍ଯ୍ୟୋଧନ ଆଗେ । ୪୫ ।
ହେ ସ୍ୱାମୀ କୁରୁନାଥ ମୋହୋର ବଚନ କରିବା
ଦୁଃଶୀଳା କନ୍ୟାକୁ ଜୟଦ୍ରଥକଇଂ ଦେବା । ୪୬ ।
କର୍ଣ୍ଣର ବଚନ ନ ଭାଞ୍ଜିଲ କୁରୁପତି
ଏହାର ଦର୍ପେ ସେ ପାଇଲ ଭାନୁମତି । ୪୭ ।
ଦୁର୍ଯ୍ୟୋଧନକୁ ସନମତ କରାଇ ଗଲା ବେଗେ
ଯାଇଂଣ ଜଣାଇଲା ସେ ଧୃତରାଷ୍ଟ୍ରଙ୍କର ଆଗେ । ୪୮ ।
ସିନ୍ଧୁ ଦେଶର ରାଜା ଅଛଇ ସୁରଥ
ତାହାର ନନ୍ଦନ ଯେ ଅଛଇ ଜୟଦ୍ରଥ । ୪୯ ।
ଧାର୍ମିକ ବିବେକ ଅଛଇ ବଳବନ୍ତା
କ୍ଷତ୍ରୀବର ସୁନ୍ଦର ବଂଶିକ ରଣ ଜିତା । ୫୦ ।
କର୍ଣ୍ଣର ବଚନେ ବଦନ୍ତି ଧୃତରାଷ୍ଟ୍ରଇ
ଜୟଦ୍ରଥ ମୋହୋର ମନକୁ ଖଟଇ । ୫୧ ।
ଗାନ୍ଧାରୀ ବିଦୁରନ୍ତ କରାଇ ସନମତ
ଭୂରିସବା ଭୀଷ୍ମ ଯେ ଦ୍ରୋଣ ଶକୁନି ସହିତ । ୫୨ ।
ବିଭାକୁ ସମ୍ଭାର ଯେ କରାଇଲେ ବିଧାନ
ଅନୁକୂଳ ଧଇଲେ ନକ୍ଷତ୍ର ଯୋଗମାନ । ୫୩ ।
ବଇଶାଖ ଶୁକଳ ପକ୍ଷ ଅଛୟେ ତୃତୀୟା
ରୋହିଣୀ ନକ୍ଷତ୍ର ସେ ଶୁଭ ଯୋଗେ ଅଛି ବିଭା । ୫୪ ।
ବାରତା ପାଇଣ ସେ ସିନ୍ଧୁ ଦେଶର ରାୟେ
ଅନେକ ସମ୍ଭରେ ସେ ସମଦଣ୍ଡ ଘେନି ଆୟେ । ୫୫ ।
ଉଦ୍ଧାଳେକ ନାମେ ଯେ ଅଟନ୍ତି ପୁରୋହିତ
ବିଭାର ସମ୍ଭାର ସେ କରନ୍ତି ସମସ୍ତ । ୫୬ ।

---

୫୪।୧ ଅଛୟେ—ଅକ୍ଷୟେ

ଗ୍ରହ୍ମା ମଣ୍ଡୋପେକ ହୋଇଲା ଅନ୍ତ କୃଷାଳ
ଅନେକ ଦେଶର ଯେ ଅଇଲେ ମହୀପାଳ । ୫୭ ।
ସୀଉକାର କରଣ କସ କରନ୍ତ ମଙ୍ଗଳଣ
ଅନେକ ଉଚ୍ଛବେଣ ବିଭର ଆରୋପଣ । ୫୮ ।
ବିବିଧ ଛନ୍ଦେ ଯେ ବାଜଇ ବାଜଣା
ବର ବେଶ କରାଇଲେ ସୁରଥ ଦୁଲଣା । ୫୯ ।
ପିତାର କୋଡରେ ଯେ ବସିଲା ଜଦ୍ୟରଥ
ଧୃତରାଷ୍ଟ୍ର କୋଡର ଯେ ଦୁଶିଳା ଦୁହିତ । ୬୦ ।
ଯଥା ବିଧି ବାକ୍ୟ କରନ୍ତ ପୁରୋହିତେ
ସିନ୍ଧୁ ରାଜାର ଯେ କଉଶିକ ନାମ ଗୋତେ । ୬୧ ।
ଜଳଦ ଗୋତ୍ର ରାଜା ଯେ ଅଟଇ କୁରୁପତି
ବେଦ କୁଳ ଗୋତ୍ର ଉଚାର ପ୍ରଦାନ କରନ୍ତ । ୬୨ ।
ଜଦ୍ୟରଥ ଦୁଶୀଳା ବେଦ କର ଗୋଣ୍ଠି
ମହା ମନ୍ତ୍ର ବାକ୍ୟେ ଯେ ପାଡିଲେ କୁଶଗଣ୍ଠି । ୬୩ ।
ଅନେକ ଯଉତୁକ ଦିଲେକ କଉରେବେ
ରଥ ଗଜ ଅଶ୍ୱ ଗୋଧନ ରତ୍ନ ଅନେକ ସମ୍ଭବେ । ୬୪ ।
ବିଭା ସାରଣ ତହୁଂ ଗଲେ ଧୃତରାଷ୍ଟ୍ରେ
ଲାଜ୍ୟା ହୋମ କରାନ୍ତ ପୁରୋହିତେ ଅନକୂଳ ଘଟେ । ୬୫ ।
ଘୃତ ପ୍ରାଶନ କଲେ ବର କନ୍ୟା ଘେନ
ଅନ୍ତପୁରେ ବିଜେ ଜଦ୍ୟରଥ ଦୁଶିଳାକୁ ଘେନ । ୬୬ ।
ଏକ ଆସନେ ଭୋଜନ କରାନ୍ତ କୁମର କୁମାରୀ
ମଙ୍ଗଳ ଗୀତ ଗାଇଲେ ହୁଳହୁଳ ଧ୍ୱନ କରି । ୬୭ ।
ରମଣ ମନ୍ଦିରେ ବିଜେ ଆଖୋବନ ସାରି
କର୍ପୂର ତାମ୍ବୋଳ ଭୁଞ୍ଜନ୍ତ ମନୋହାରୀ । ୬୮ ।
ମଧୁଶଯ୍ୟା ଯୁଗତେ ଶୁତିଲେ ଯାଇଂ ବେନି
ହରଷ ବିନୋଦେ ଯେ ପାହିଲା ରଜଣୀ । ୬୯ ।
ଚତୁର୍ଦ୍ଦିବସେ ଯେ ଚଉଠୀ ବିଧାନ
ପଞ୍ଚମ ଦିବସେ ଯେ ଉଚ୍ଛେବକ ଭିଆଣ । ୭୦ ।

ସପ୍ତମ ଦିନେ ମଙ୍ଗଳଣ ସାର
କନ୍ୟାଙ୍କୁ ଘେନ ଜଦ୍ୟରଥ ବଜପେ ସିନ୍ଧୁପୁରୀ । ୭୧—୮୨୫୪ ।

## ଶ୍ରୀଖଣ୍ଡୀ ବିବାହ

ବଇବସ୍ୱତ ମନୁ ପଚ୍ଛରିଲେ ତପୋବନ୍ତ
ପୁତ୍ର ଦୁହିତା ଉପୁଜାଇ କସ କଲା ଦ୍ରୋପଦ ନୃପତ୍ତି । ୧ ।
ବଦଯୂନ୍ତ ଅଗସ୍ତି ଶୁଣ ବଇବସ୍ୱତ ମନୁ ପୁରୁଷ
ଜ୍ୟେଷ୍ଠ ପୁତ୍ର ଦ୍ରୋପଦର ଶ୍ରୀଖଣ୍ଡୀ ନାମ ପ୍ରକାଶ । ୨ ।
ଅଶ୍ୱେକ ସାଜଣ ସେ ଅନେକ ଆୟୁଧେ
ଅନୁବ୍ରତେ ଖେଦଇ ସେ ପର୍ବତ ବନ ମଧ୍ୟେ । ୩ ।
ମାରଇ ସେ ଦୁଷ୍ଟ ଦାନବନ୍ତ ଖେଦ
ରଖଇ ତପୋବନ୍ତ ଜଗତ ପରସିଦ୍ଧି । ୪ ।
କୁମ୍ଭ ମାସ କୃଷ୍ଣପକ୍ଷ ସପ୍ତମୀ ଦିନ
ଭୃଗୁବାର ଅନୁରାଧା ନକ୍ଷତ୍ର ବିଦ୍ୟମାନ । ୫ ।
ସେଦିନ ଶ୍ରୀଖଣ୍ଡୀ ଚଳଇ ଉତ୍ତଙ୍ଗ ମଣ୍ଡଳେ
ଲକ୍ଷେକ ଯୋଦ୍ଧା ଘେନ ବଜପେ କୁତୋହଳେ । ୬ ।
ଉତ୍ତଙ୍ଗ ଦେଶର ରାଜା ମଧୁକେଶର ବୋଲି
ସେହି ଦଣ୍ଡେକ ଘେନ ଆସଇ ଥାଠ ଗୃଳ । ୭ ।
ତ୍ରିବେଣୀ କୂଳେ ହୋଇଲେ ଦେଖା ଦେଖି
ନୃପତି ପଚ୍ଛରଇ ସେ କାହାର କୁମାର ଗୋଟି । ୮ ।
ଅମାତ୍ୟେ ବୋଇଲେ ସେ ପାଞ୍ଚାଳ ଆଧିପତି
ଦ୍ରୋପଦ ରାଜାରେ ଯେ ଅଟଇ ସନ୍ତତି । ୯ ।
ଶୁଣିଣ ମଧୁକେଶର ଯେ ସାନନ୍ଦ ହୋଇଲା
ଗଉରେବ କର ଆପଣା ରାଜ୍ୟକୁ ଘେନଗଲା । ୧୦ ।
ଅନଙ୍ଗର ସାଦୃଶେ ସୁନ୍ଦର ଶ୍ରୀଖଣ୍ଡି
ସାର ବେଶ ଅଳଙ୍କାର ସବୁଙ୍କୁହିଂ ମଣ୍ଡି । ୧୧ ।

ଜଗତି ଉପରେ ଶ୍ରୀଖଣ୍ଡୀଙ୍କ ବସାଇ
ଅନେକ ସମ୍ଭବେ ଯୋଗାଡ କରାଇ । ୧୨ ।
ମଦନାବତୀ ବୋଲି ତାହାର ପାଟରାଣୀ
ଭାରିଯାକୁ ବସାଇ ଭଲଇ ନୃପମଣି । ୧୩ ।
ଆଗୋ ମହାଦେଈ ଆମ୍ଭେ କଥାଯେକ କରିବା
ମଧୁବତୀ କନ୍ୟାକୁ ଆମ୍ଭର ଶ୍ରୀଖଣ୍ଡୀକୁ ଦେବା । ୧୪ ।
ସୁସଞ୍ଜ ସୁନ୍ଦର ଦେଖି ସମସ୍ତେ ହେଂ ଗୃହେଂ
ରାଜ୍ୟଯାକ ସମସ୍ତେ ହୋଉଛନ୍ତି ମୋହେ । ୧୫ ।
ବିଶେଷେ ସ୍ତ୍ରିରି ଜନ ଆବର ପୁରୁଷ ବେଣୀ
ବିଦ୍ୟାଧର ପରାଯେକ ସୁନ୍ଦର ରୂପ ଦିଶି । ୧୬ ।
ସମସ୍ତ ସ୍ତ୍ରିରି ପୁରୁଷ ବଦଯନ୍ତି ବଚନ
ମଧୁବତୀ କ ରାଯେ କରସି ପ୍ରଦାନ । ୧୭ ।
ଜୁଆଇଂ ବନ୍ଦାପନା ଯେ ଆସୁଥିବ ଆମ୍ଭର ଭୁବନେ
ମାସ ପଖ ଦେଖୁଥିବା ନା ଆମ୍ଭର ନୟନେ । ୧୮ ।
ସମରାଜ୍ୟ ଲୋକେ କରନ୍ତି ଯେସନେକ ସାଧୁ ବାଣୀ
ଶ୍ରୀଖଣ୍ଡୀକି ବରଣ କଲେ ମଧୁକେଶର ନୃପମଣି । ୧୯ ।
ଶୁଭ ଯୋଗେଣ ରାଜା ବିଭା କରାଇଲା
ଅଶ୍ୱ ଗଜ ଭଣ୍ଡାର ଅନେକ ଯଉତୁକ ଦିଲା । ୨୦ ।
ସହସ୍ରେକ ରଥ ପାଞ୍ଚ ସହସ୍ର ହାତୀ
ଶତେ ସହସ୍ର ଶ୍ୱେତ ବାରୁ ଦିଲାକ ନୃପତି । ୨୧ ।
ଲକ୍ଷେକ ଗୋଧନ ଦିଲା ଧେନୁ ଗାଈ
ମଧୁବତୀକ ସମର୍ପିଲା ରାଜା ବିଭାଯୋଗ କରାଇ । ୨୨ ।
କାନ୍ୟାକୁ ଘେନଣ କୁମାର ଶ୍ରୀଖଣ୍ଡୀ
ସମଦଣ୍ଡ ସାଜ ଆପଣା ରଥ ମଣ୍ଡି । ୨୩ ।
ସହସ୍ରେ ପାଟଛଟ ବେନ ସହସ୍ର ଆଲମ୍ବ
ସହସ୍ରେ ସୋଆରି ଛଟ ରାଯେ କରଇ ଆରମ୍ଭ । ୨୪ ।

---

୨୨।୧ ଧେନୁ ଗାଈ—ଦୁହାଁଳ ଗାଈ

ଝମକ ନଶାଣ ବାରତୂର ବଜଘୋଷ କାହାଳ
ଲକ୍ଷେକ ବାଦ୍ୟେଣ କମ୍ପଇ ମହୀଆଳ । ୨୫ ।
ସହସ୍ରେକ ଶଙ୍ଖ ସହସ୍ରେକ ମହୁରୀ
ଘୁମୁରେ ନୃତ୍ୟ କରନ୍ତି ସହସ୍ରେ ବିଦ୍ୟାଧରୀ । ୨୬ ।
ସୁବର୍ଣ୍ଣର ରଥେ ବିଜେ କୁମାର କୁମାରୀ
କନ୍ୟା ଘେନ ଶ୍ରୀଖଣ୍ଡୀ ଚଳଇ ନିଜ ପୁରୀ । ୨୭ ।
ଯଉତୁକ ଯୋଗାଡ ମାନ ଆସୁଅଛି ପଛେ
ରଥ ଗଜ ଅଶ୍ୱ ଲଗିଅଛି କାଛେ କାଛେ । ୨୮ ।
ଅଷ୍ଟରତ୍ନ ପାଣିଦ୍ରବ୍ୟ ସୁବର୍ଣ୍ଣ ଯୋଗାଡ
ଯେତୁମାନ ଆସୁଅଛି ପାଞ୍ଚ ଅଇବ୍ରତେ ଭାର । ୨୯ ।
ମଧୁ କେଶର ପଠିଆଇଲା ଅନେକ ସମ୍ପରେ
ମଧୁବନ୍ତକ ଘେନ ଶ୍ରୀଖଣ୍ଡୀ ବିଜୟେ ନିଜପୁରେ । ୩୦ ।
ରତିକି ଘେନ ଯେହ୍ନେ ବିଜୟେ କାମଦେବ
ପାଞ୍ଚାଳ ଦେଶ ଲୋକେ ଦେଖି ଯେସନେକ ଭାବ । ୩୧ ।
ଦ୍ରୋପଦ ଦେଖିଲେ ଜଗନ୍ତି ଉପରେଣ ଥାଇଂ
ଚିତ୍ରସେନ ଗନ୍ଧର୍ବ କ ଆସଇ ଆକାଶୁଂ ଓହ୍ଲାଇ । ୩୨ ।
ମାନବ ରଥ ତ ଯେମନ୍ତ ନ ମଣ୍ଡି
ଦେଶାଉରେ ଜଣାଇଲେ ଦେବ ଆସଇ କୁମାର ଶ୍ରୀଖଣ୍ଡୀ । ୩୩ ।

ଦେଖିଣ ନରନାଥ ଅନେକ ସାନନ୍ଦ ହୋଇଲା
ଭେ ଦଇବ ସୁମର ରାଜା କପାଳେ ହସ୍ତ ଦେଲା । ୩୪ ।
ବିଭାର କାଳେ ଯେ ପାଲଟାଇଲେ ବସନ
କେହ୍ନ ନ ଦେଖିଲେ ଯେ ନପୁଂସକ ଲକ୍ଷଣ । ୩୫ ।

ଯେ ଯେ ସଂସାର ଜନଙ୍କର ଅସ୍ତୁକାର ବାଣୀ
ଧର୍ମ୍ମ ଉଦତ ହୋଇବ କ ସବୁଙ୍କର ସାଧୁବାକ୍ୟ ଶୁଣି । ୩୬ ।
ଯେତେହେନେକ ବିଚିତ୍ର ରାଜା ବଇକୁଲ୍ୟ ମତ
ମଧୁବନ୍ତ କନ୍ୟା ମୁଖ ଗୃହ୍ନଂ ଭାଳଇ ପଦ୍ମାବନ୍ତ । ୩୭ ।
ମଧୁବନ୍ତ ଶ୍ରୀଖଣ୍ଡୀକ ବନ୍ଦାନ୍ତି ଅର୍ଦ୍ଧ୍ୟ ଘେନ
ପିତା ମାତାଙ୍କୁ ନମସ୍କାର କରନ୍ତି ଯାଇ ବେନ । ୩୮ ।

ପିତା ମାତାଙ୍କୁ ସ୍ନେହଭରେ କରନ୍ତ କଇଲ୍ୟାଣ
ଧର୍ମେ ପ୍ରାପତ ହୋଉ ତୋତେ ପୁରୁଷ ଲକ୍ଷଣ । ୩୯ ।
ଅନେକ ବାଳୀ ଅର୍ଘ୍ୟ ଘେନ ଆନନ୍ଦେଣ ବନ୍ଦାଇ
ସୁଲକ୍ଷଣୀ ନାରୀମାନେ ହୁଳହୁଳୀ ଦେଇ । ୪୦ ।
ନପୁଂସେକ ହୋଇ ମାତା ଗର୍ଭୁ ଜାତ ଯେ ହୋଇଲା
ପୁତ୍ର ଜାତ ହୋଇଲା ବୋଲି ରାଜ୍ୟରେ ଘୋଷଣ ପଡିଲା । ୪୧ ।
ନସନ୍ଧେ ଜାଣିଲେ ସେ ଅଟଇ ନପୁଂସେକ
ମୃଦୁସୁଳୀ ରାଣୀ ଆଗେ ବାରତା କଲା ଗୋପ୍ୟେକ । ୪୨ ।
ବ୍ୟାସଙ୍କୁ ଘେନ ସେହୁ ଜାଣନ୍ତ ଚାରି ଜଣ
ଆନ କେହି ନ ଜାଣନ୍ତ ନପୁଂସେକ ଲକ୍ଷଣ । ୪୩ ।
ପରାକ୍ରମେ ପ୍ରତାପୀ ହୋଇଲା ଶ୍ରୀଖଣ୍ଡୀ
ଜଗମୋହନୀ କନ୍ୟା ଘେନ ଅଇଲାକ ଭଣ୍ଡି । ୪୪ ।
ଯେତେ ସ୍ତିରୀ ପୁରୁଷ ଅଇଲେ ସଙ୍ଗତରେ
ତାହାଙ୍କୁ ନୃପତ ଦିଲା ଅନେକ ସମ୍ପରେ । ୪୫ ।
ବହୁତ ଉଚ୍ଛବ ରାଜା କଲେକ ଦ୍ରୋପଦେ
ରାଜାର ସମ୍ପଦ ଦେଖି ଅନେକ ସାନନ୍ଦେ । ୪୬ ।
ଦିନ ପାଞ୍ଚ ସାତ ପାଞ୍ଚାଲ ଦେଶେ ଥିଲେ
ଆଗ୍ୟାଂ ମାଗି କରି ଉଡଙ୍ଗ ଦେଶେ ଚଳିଗଲେ । ୪୭ ।
ମଧୁକେଶର ରାଜା ଆଗେ କହିଲେ ବାରତା
ବାବୁ ଅନେକ ସମ୍ପଦ ସେ ପାଞ୍ଚାଲ ଦେଶର କଥା । ୪୮ ।
ବର ମାତାର ନାମ ଅଟଇ ଯେ ପଦ୍ମାବତୀ
ପତିବ୍ରତା ସ୍ତିରୀ ସେ ପ୍ରତକ୍ଷେ ଲକ୍ଷ୍ମୀର ମୂରତି । ୪୯ ।
ଜନଙ୍କର ମୁଖରୁ ସେସନକ ବାକ୍ୟ ଶୁଣି
ଅନେକ ହରଷ ସେ ମଧୁକେଶର ନୃପମଣି । ୫୦ ।
ବହୁତ ଅଲେଖ ସେ ହୁଅନ୍ତ ମଧୁବତୀ
ତିନ ବରଷେ ହୋଇଲା ସୁନ୍ଦରୀ ପାକାସ୍ୱତୀ । ୫୧ ।

---

୪୨।୧ ନସନ୍ଧେ—ନସନ୍ଦେହେ ।

ମଧୁବନ୍ତର ରଜ ଉଚ୍ଛବ ଦେଖିଣ ପିତାମାତା
ଭଲନ୍ତ ଭବ ଦ୍ଵବସେ ସୁମରନ୍ତ ବଧାତା । ୫୨ ।

ସପତମ ଦିନେ ସେ ହୋଇଲା ଶୁଦ୍ଧ ସ୍ନାହାନ
ଅଷ୍ଟରତ୍ନ ଖଞ୍ଜିତ ପଦ୍ମ ଫୁଲ ଲକ୍ଷେ ଦ୍ଵଲେ ଦାନ । ୫୩ ।

ଯୋଗ ଲଗ୍ନ ମଙ୍ଗଳ ଗ୍ରହ କରଣ ଶୁଭ ଅନକୂଳେ
ମଧୁବନ୍ତଙ୍କ ଶୁଆଇଲେ ଶ୍ରୀଖଣ୍ଡୀର କୋଳେ । ୫୪ ।

ଦିବ୍ୟ ପଲଙ୍କେଣ ପହୁଡଲେ ଯେ଼କଯୋଗେ
ପୁରୁଷ ଲକ୍ଷଣ ନାହିଂ କସ ହୋଇବ ସତସଙ୍ଗେ । ୫୫ ।

ବାଳୁତ କୁମାଣ୍ଡ ନ ଜାଣଇ ରତିରସ
ହରଷ ପ୍ରେମ କୁତୋହୋଳେ ଗଲା ବେନ ଯେ ବରଷ । ୫୬ ।

ପରର ଶୃଙ୍ଗାର ସହୁଂ ଶୁଣିଲା କୁମାଣ୍ଡ
ଦିନୁଂ ଦିନୁଂ କାମଶରେ ହୋଇଲା ତନୁ ଘାର । ୫୭ ।

ଲଜ୍ୟା ଉପେକ୍ଷା କର ସ୍ଵାମୀଙ୍କ ଧଇଲା କୋଳରେ
ମୁଖେ ଚୁମ୍ବନ ଦେଇ ବୋଇଲା ସ୍ଵାମୀ ମୋତେ ଦେବୁ ନା ଶୃଙ୍ଗାରେ
। ୫୮ ।

କୋଳେ ବସାଇ ଗୃହୁଁ ପଠେଲ ବୋଇଲା ଶ୍ରୀଖଣ୍ଡୀକ
ଶୃଙ୍ଗାର ନ ଦେଇ ମୋତେ ଦୁଇ ବରଷ ଭଣ୍ଡିଲୁ କାହିଂକ । ୫୯ ।

ଶ୍ରୀଖଣ୍ଡୀ ବୋଇଲା ସଖି ବାଳୁତ କାଳେ କସ କାମ ସଧ
ଆଧ୍ୟ ଷଡ଼େ ହୋଅଇ ଅଳପ ଦିନେ ଛୁଡଇ କନ୍ଧ । ୬୦ ।

ମଧୁବନ୍ତ ବୋଇଲା ତୁ ରଜାର କୁମର ଅଚୁ ସୁଖଭୋଗୀ
ଯେ଼ମାନ ବଗୃରଇ ଯେ ସେ ହୋଅଇ ଯୋଗୀ । ୬୧ ।

ଭୋଜନ ସାଧନ ଶୃଙ୍ଗାର ରସ ଭୋଗ
ବଂଶିକ କୁମାର ତୁ ସନ୍ତାନ ହୋଇବ ବେଗ । ୬୨ ।

ମୋହୋର ସଙ୍ଗତରେ ଯେତେକ କୁମାଣ୍ଡ
ତାହାଙ୍କର ହୋଇଲାନ ପୁତ୍ର ଗୃହ ଗୃହ । ୬୩ ।

---

୫୫। ପୁରୁଷ ଲକ୍ଷଣ ନାହିଂ କସ ହୋଇବ ସମ୍ଭୋଗେ ।

ଯେତେହେନେକ କର୍ମ ମୋହୋର ନଷ୍ଟଲେ ଗଲା ତପ
ରଜାର କୁମାରୀ ହୋଇ ମୋହୋର ଯେତେକ ପାପ । ୬୪ ।
କହନ୍ତି କହନ୍ତି ଶ୍ରୀଖଣ୍ଡୀ ନିଦ୍ରାଗଲା ଅସାଷ୍ଟମ ହୋଇ
କାମ କଷ୍ଟେ ସୁନ୍ଦରୀକ ନିଦ୍ରାଭାବ ନାହିଁ । ୬୫ ।
ଅସାଷ୍ଟମେ ନିଦ୍ରା ଯହୁଁ ଗଲାକ ଶ୍ରୀଖଣ୍ଡୀ
ଉଠି ମଧୁବନ୍ତୀ ପିନ୍ଧିଲା ବସ୍ତ୍ର ତାର ଫେଡି । ୬୬ ।
ବିବସନ କରି ତା ଅଙ୍ଗ ଆଉଂଶଇ ସବୁ ଠାବ
ଲୋଡି ନ ପାଇଲା ସେ ପୁରୁଷର ସମ୍ଭବ । ୬୭ ।
ଉଠିଣ ସୁନ୍ଦରୀ କରେ ଘେନିଣ ଦୀପାବଳୀ
ନିରେଖି ଚାହିଲା ନପୁଂସେକ ହୋଇଲା କଭଳ । ୬୮ ।
ସ୍ତିରୀ ପୁ ରୁଷ ଲକ୍ଷଣ ହାଦେ ନାହିଁ
ମୃଷାଗତ ହୋଇଲା ବାଳୀ ଶ୍ରୀଖଣ୍ଡୀ କ ଚାହିଁ । ୬୯ ।
ହା ହା ଦଇବ ମୋତେ ଯେହ୍ନା ସେ ଭିଆଇଲୁ
ହସ୍ତଗତ ନିଧି ତୁ ଅନ୍ତର କରାଇଲୁ । ୭୦ ।
ପୁ ରୁଷ ମଧ୍ୟରେ ଯେ ଅଛଇ ସୁଲକ୍ଷଣ
ବଂଶ ଉଦ୍ଧାରଣ ଯେ ଅଛଇ ବିଚକ୍ଷଣ । ୭୧ ।
ପୂର୍ବେ ସେବା କଲି ଯେବେ ହର ପାର୍ବତୀ
ତେବେ ସେ ସୁଲକ୍ଷଣ ଯେହ୍ନେ ପାଇଲି ପତି । ୭୨ ।
ସମୋଦ୍ର ପ୍ରାପ୍ୟେକ କରିଥିଲି ଆଶ
ମୁହିଂ ସୁନ୍ଦରୀ ସ୍ତିରୀ ଯେ ସୁନ୍ଦର ପୁରୁଷ । ୭୩ ।
ସ୍ତିରୀ ଜନମ ବୋଲି ଯେହ୍ନେ ମନ ଇଚ୍ଛା
ସୁନ୍ଦର ପୁ ରୁଷଙ୍କୁ ସେ ସ୍ତିରୀ କରଇ ମନ ବାଞ୍ଛା । ୭୪ ।
ସୁନ୍ଦର ସୁଲକ୍ଷଣ ଦେଖି ପିତା ମୋର ଦେଲା
ବିପାକ କରମ ମୋର ଯେମନ୍ତ ହୋଇଲା । ୭୫ ।
ଯେସନେକ ବଇକୁଳ୍ୟ ହୋଅନ୍ତେ ମଧୁବନ୍ତୀ
କରମକୁ ସନ୍ତାପୁଂ ପାହିଲାକ ରାତି । ୭୬ ।

---

୬୪ { ଯେସନେକ ମୋହୋର ନଷ୍ଟଲ କରମ
ରଜା କୁମାରୀ ହୋଇ ଯେ ହୋଇଲି ହୀନମାନ ।

ବେଶ ବେଶନ ମାନ ସବୁ ପକାଇଲା ଭାଙ୍ଗି
ହାର ଅଲଙ୍କାରମାନ ସମସ୍ତ ଦୂରେ ତେଜି । ୭୭ ।
ଅନ୍ନ ଆହାର ସହିତେ ସକଳ କଲା ଉପେକ୍ଷା
ଛାଡିବି ନିଜ ପ୍ରାଣ ବ୍ରତ ସ୍ତ୍ରିଶ୍ରୀ ଦୀକ୍ଷା । ୭୮ ।

ପିତାର ଘରର ଯେ ଥିଲା ମୃଦୁସୁଲି
ପିତାକୁ କହି ଯାଇଁ ଲେ ମୁଁ ନିରାଶ ହୋଇଲି । ୭୯ ।
ଯାହାକୁ ପ୍ରଦାନ କଲା ମୋତେ ମୋହୋର ତାତ
ସ୍ତ୍ରିଶ୍ରୀ ପୁରୁଷୁଁ ବାହାର ସେ ନପୁଂସେକ ଜାତ । ୮୦ ।

ମୁହିଁ ଦେହ ଛାଡ଼ୁଅଛି ଦ୍ରୋପଦର ପୁରେ
ଯାଇଁଣ କହ ଲେ ମୋର ପିତାର ଛାମୁରେ । ୮୧ ।
ଏସନେକ ବାରତା ଶୁଣିଣ ମୃଦୁସୁଲୀ
କ୍ରୋଧ ଅବସ୍ଥା ହୋଇଣ ଚଳଲେ ସମସ୍ତ ପୋଇଲି । ୮୨ ।

ପଞ୍ଚଦଶ ଦିନେ ଯାଇଁ ହୋଇଲେ ପରବେଶ
ବାରତା ଜଣାଇଲେ ଯାଇଁ ମଧୁକେଶର ରାଜା ପାଶ । ୮୩ ।
ଭବିଷ୍ୟ ବାରତା ଦେବ ଶୁଣିମା ରାଜେଶ୍ୱର
ସ୍ତ୍ରି ଶ୍ରୀ ପୁରୁଷ ଦେବ ନାହିଁ ସେ ଶ୍ରୀଖଣ୍ଡୀର । ୮୪ ।

ମଧୁବନ୍ତର କଷ୍ଟ ଦେବ କେ ସହିତେ ଯାଉ
ଅଗ୍ନି ଜାଳି ଝାସିବ ବୋଲି ବସିଲା ଦୃଢକରି । ୮୫ ।
ଶୁଣିଣ ମଧୁକେଶର କୋପେଣ ପରଚଣ୍ଡ
ସାଜରେ ପଞ୍ଚାଳ ଦେଶକୁ ମୋହୋର ସମଦଣ୍ଡ । ୮୬ ।

ଏହେନେକ ପାମର କନ୍ୟା ଦ୍ୱିଭ୍ର ଯେ ହୋଇଲା
ନପୁଂସେକ ବୋଲି ମୋତେ କନ୍ୟା ନ କହିଲା । ୮୭ ।
ଅଗ୍ନି ଜାଳି ମରିବ ଯେବେ ମୋହୋର ଦୁଲଣୀ
ସେହି ଅଗ୍ନିରେ ଶ୍ରୀଖଣ୍ଡୀକ ପକାଇବ ହାଣି । ୮୮ ।

ମୋହୋର ଦୁହିତା ଯେବେ ତାହାରେ ନାଶିବ
ସେ ନପୁଂସେକ ଛାର କର୍ମେ ବୃତ୍ତିଥିବ । ୮୯—୮୩୪୩ ।



# ମାତାଙ୍କର ଶୋକରେ ଶ୍ରୀଖଣ୍ଡୀର ପୁରୁଷତ୍ୱ ପ୍ରାପ୍ତି

ଯେତେକ ବୋଲଣ ସମସ୍ତେ କୋପେଣ ପରଚଣ୍ଡ
ଦ୍ରୋପଦ ଉପରକୁ ସାଜିଲା ସମଦଣ୍ଡ । ୧ ।
ମର୍ଭୁତେକ ରଥ ବେନି ମର୍ଭୁତେକ ହସ୍ତୀ
ଦଶ ମର୍ଭୁତେ ଅଶ୍ୱ ତେର କ୍ଷେଉଣୀ ପାଦାନ୍ତି । ୨ ।
ଅଶୀଲକ୍ଷ ମୁକୁଟବନ୍ଧା ଯୋଦ୍ଧା ଅହିବ୍ରତେକ ପାରିଦଣ୍ଡ
ଘୋର ବାଦ୍ୟ ଶବଦେ ଯେ କମ୍ପଇ ବ୍ରହ୍ମାଣ୍ଡ । ୩ ।
ଦ୍ରୋପଦର ଆସ୍ଥାନେ ଦେଶାଉର ଯେ କହିଲା
ତୋହୋର ରାଜ୍ୟକୁ ଦେବ ଉତ୍ତଙ୍ଗେଶ୍ୱର ବାହିଲା । ୪ ।
ଦଣ୍ଡ ସାଜ ସଜ ହୋଇଲା ଦ୍ରୋପଦ
ତୋହୋର ତୁଲେ ମଧୁକେଶର କରିବ ଆଜ ଦ୍ୱନ୍ଦ । ୫ ।
ଦୋହିତାର ଅଭିମାନ ନେବ ବାହିଲା ସମରସ୍ତ୍ରି
ଦ୍ରୋପଦ ବୋଇଲେ କମ୍ପ ସାଜିବ ମୋହୋର ଥାଠ । ୬ ।
ତାହାର ମୋହୋର ଯେ ଅଛଇ ବନ୍ଧୁପଣ
ଅଭିନ୍ନ ଆତ୍ମା ଆତ୍ମର କେ କରିବ ବାରଣ । ୭ ।
ହସ୍ତୀପୃଷ୍ଠେ ଆରୋହି ଯେ ଦ୍ରୋପଦ ନୃପତି
ସଙ୍ଗେ ଅଛି ତାର ଯେତିକା ସଦାନନ୍ଦ ମନ୍ତ୍ରୀ । ୮ ।
ବାମ ପାଶେ ପୁତ୍ର ତାର ଧୃଷ୍ଟ ଯେ ଦ୍ୟୁମନ
ମଧୁକେଶର ସମ୍ମୁଖକୁ ରାଜା କରଇ ଗମନ । ୯ ।
ଉତ୍ତଙ୍ଗେଶ୍ୱର ରହିଅଛି ନିପୁରାନ୍ତେକ ଘାଟେ
ପଞ୍ଚାଳେଶ୍ୱର ଯାଇଂ ଭେଟିଲା ନିକଟେ । ୧୦ ।
ମଧୁକେଶର ନିକଟେ କହିଲେ ମୁନିେନ୍ଦ୍ର
ଦ୍ରୋପଦେଶ୍ୱର ଦେବ ତୋର ସନ୍ନିଧ୍ୟେଣ ରହି । ୧୧ ।
କୋପେଣ ଆଗ୍ୟାଂ ଦିଲା ସେ ମଧୁକେଶର
ଯୋଦ୍ଧାଙ୍କୁ ବୋଇଲା ରେ ଦ୍ରୋପଦଙ୍କୁ ଧର । ୧୨ ।
ଦ୍ରୋପଦେ ବୋଇଲେ ଶୁଣ ହେ ସମ୍ମୁଧି
ମୋହୋର କସ ଦୋଷ ତୋହୋର ଯେତେହେନେକ ବୁଦ୍ଧି । ୧୩ ।

ପରୀକ୍ଷୁ ନ ବୁଝି କନ୍ୟା ତୁମ୍ଭ କଲୁ ସ୍ନେହା
ନ ଜାଣି ଧାତକାରେ କଲୁ କନା ବହା । ୧୪ ।
ଆପଣାର ଦୋଷ ଆପଣେ ନ ବିଗୃରୁଂ
ତୋହୋର କଲ କୃତ୍ୟ ମୋତେ କନ୍ୟା କୋପ କରୁ । ୧୫ ।
ମଧୁକେଶର ବୋଇଲା ମୋହୋର ଦୋଷ ନାହିଂ
ସୁନ୍ଦର ବିଚକ୍ଷଣ ବଂଶୀକ ଦେଖି ଭଜଲି ଅବା ମୁହିଂ । ୧୬ ।
ସେ କନ୍ୟା ମୋତେ ନ କହିଲା ଶ୍ରୀଖଣ୍ଡୀ
ଦୁହିତାକୁ ମୋହୋର ବିଭା ହୋଇଲା ମୋତେ ଭଣ୍ଡି । ୧୭ ।
ଯେବେ ଯେବେ ମୋହୋର ଦୁହିତା ନାଶଯିବ
ସେ ନପୁଂସେକ ଘରର ବ୍ରତ କସ ଯେ କରିବ । ୧୮ ।
ତୁ ଯେବେ ଦ୍ରୋପଦ ମୋତେ ଦିଅସି ଶ୍ରୀଖଣ୍ଡିକି
ଅଗ୍ନିର ମଧ୍ୟେ ପକାଇବି ଶ୍ରୀଖଣ୍ଡୀ, ଦୁହିଙ୍କ । ୧୯ ।
ଦ୍ରୋପଦ ରାଜାକୁ ସେ ଧରି ନିଲା ବଳେ
ଧୃଷ୍ଟଦ୍ୟୁମ୍ନ ପଳାଇଲା ପ୍ରାଣର ବିକଳେ । ୨୦ ।
ସମଦଣ୍ଡ ସାଜଣ ସେ ଧୃଷ୍ଟଦ୍ୟୁମ୍ନ
ମଧୁକେଶର ତାହାଂକ ଯେ ଖେଦାଇଲା ସଇନ । ୨୧ ।
ଓହୋବଳ ଥାଠ ହୋଇଲେ ଉଚବାଚ
ଉଭରନ୍ତ ଲକ୍ଷିଆ ଧନୁ ସହସ୍ର ଆମଞ୍ଚ । ୨୨ ।
ସେମନ୍ତର ସମଯେ ମହାଘୋର ରଯୂଣୀ
ମହାଦେଈ ପଳାଇଲେ ଶ୍ରୀଖଣ୍ଡୀକି ଘେନି । ୨୩ ।
ପୁତ୍ର ଘେନି ପଳାଇ ପଶିଲା ଗନ୍ଧମାରଦନ ପର୍ବତରେ
ପୁତ୍ର କୋଳେ ଧରି ଯେ ରୋଦଇ ଉଚ୍ଚସ୍ୱରେ । ୨୪ ।
ମହା ନିଶାକାଳେ ଯେ ନିଶବଦ ବାଣୀ
କାନ୍ଦନ୍ତେ ଶୁଭଇ ଯେ କୋକିଳସ୍ୱର ଜାଣି । ୨୫ ।
ବାଉନ କାନ୍ଦଇ ଶ୍ରୀଖଣ୍ଡୀର ରୂପ ଗୁଣ ଗୁଣି
ଦୁର୍ଗୀର ସଙ୍ଘାତ ବାବୁ ରେ ମୋର ଅନ୍ଧର ଲଉଡ ପୁଣି । ୨୬ ।

---

୧୪।୧ ପରୀକ୍ଷୁ—ପରୀକ୍ଷା କରି ।
୧୪।୨ ବହା---ବିଭା ।

ଦଶମାସ ତୋତେ ଗର୍ଭରେ ଧରିଲି ରେ ବାଳ
ସର୍ବଗୁଣେ ସୁଲକ୍ଷଣ ବାବୁ ରେ ତୋହୋର କପାଳ । ୨୭ ।
ଦାନେଣ ଶୂରବନ୍ତା ବାବୁ ସାଂଗ୍ରାମେ ଶକତା
ଯେତେକ ଲକ୍ଷଣ ବାବୁ ତୋତେ କଲକ ବିଧାତା । ୨୮ ।
କେଉଂଣ ଲିଙ୍ଗ ତୁ ଉପାଡିଲୁ ପୂର୍ବେ
ଲିଙ୍ଗ ଭଗ୍ନ ଦୋଷ ତୋତେ ହୋଇଲା ପୁଅ ଯେବେ । ୨୯ ।
ସୁଶୀତଳ ମୃଦୁବାଣୀ କୋକିଳ ଧ୍ୱନି ଭାଷି
ଅନ୍ଧାର ବନେ କରି ସେ ଯେ ଚୂଳାକର୍ଣ୍ଣ ଆସି । ୩୦ ।
ଗନ୍ଧମାର୍ଦ୍ଦନ ପର୍ବତେ ଶୁଣିଲା କ୍ରୋଧ ବାଣୀ
ଅନୁସରି ତାହା ଭଗତମଛଲ ନାଥ ଶୁଣି । ୩୧ ।
ବାଉନ କାନ୍ଦନ୍ତେ ସେ ଦୟା କଲେ ସାରମଣି
ଧ୍ୱନି ହୋଇଲାକ ସେ ଯେ ଗନ୍ଧର୍ବ ଚୂଡ଼ାମଣି । ୩୨ ।
ଚୂଳାକର୍ଣ୍ଣ ବୋଇଲା ତୁ ଅଟୁ କାହାର କନ୍ତ
ଏ ଘୋର ଅରଣ୍ୟେ କମ୍ପାଇ ରୋଦନ କରୁ ନିଶାନ୍ତ । ୩୩ ।
ରାଣୀ ବୋଇଲେ ତୁମ୍ଭେ ମହାତମା କେଉଂଣ ଦେବତା
ମୁହିଂ ମହାଦୁଖୀ ନ ପାଉନ ମୋହୋର କଥା । ୩୪ ।
ବଦୟନ୍ତି ଗନ୍ଧର୍ବ ଶୁଣ ଗୋ ଯୁବତୀ
ମୋହୋର ନାମ ଚୂଳାକର୍ଣ୍ଣ ମୁଂ ଅଳକା ଚନ୍ଦ୍ରବତୀ । ୩୫ ।
ଅମରାଧି ନାଥର ମୁଂ ଭଣ୍ଡାର ଅଧିକାରୀ
ମୋହୋର ମାତାର ନାମ ପଦ୍ମାବତୀ ଅପସରୀ । ୩୬ ।

---

୩୧।୨ "ଅନୁସରି ତାହା ଭଗତ ମଛଲ ନାଥ ଶୁଣି" ପରେ ପୋଥି ବିଶେଷରେ ଭିନ୍ନପାଠ—
ରାମ ପାରଧିରେ ଆସିଥିଲା ଚୂଳାକର୍ଣ୍ଣ
ରୋଦନ ଶବଦ ଶୁଣି କଲା ହେତୁ ଜ୍ଞାନ ।
ତାହାର ସନ୍ନିଧେ ଯାଇ ମିଳିଲା ଗନ୍ଧର୍ବ
କେବଣ କାରଣେ କାନ୍ଦୁ କହ ମୋର ଆଗ ।

୩୬।୨ "ମୋହୋର ମାତା ନାମ ପଦ୍ମାବତୀ ଅପସରୀ" ପାଦାନ୍ତ ପରେ ଭିନ୍ନ ପାଠ—
ମୋହୋର ଭାରିଯା ଯେ ବଲ୍ଲଭ ନାମେ ନାରୀ
ଋତୁ ସଂଯୋଗ ଯେ ହୋଇଲା ତାହାର ।

୩୧।୨ ଭଗତ ମଛଲ—ଭକତ ବତ୍ସଳ ।

ନଳକୁମାର ମୋହୋର ଭୁଲେ ପିରତ୍ତି ହୋଇଲେ
ମୁଂ ନ ଜାଣଇ ଆଛ ଗୋ ଭଣ୍ଡାରୁ ଅନେକ ଧନ ଗ୍ଭେରାଇଲେ । ୩୭ ।
ଅଭ୍ରଷେକ ଯୋଗାଡ଼ମାନ ନେଲେ ଗ୍ଭେରାଇ
ଅଭ୍ରଷେକ କାଳେ ଦେଖିଲ ଭଣ୍ଡାରେ ଧନ ନାହିଂ । ୩୮ ।
ବାସବ ଦେବତା ଯେ ମୋତେ କୋପ କଲ
ଦେବ ଭଣ୍ଡାରୁ ମୋତେ ବାହାର କର ଦଲ । ୩୯ ।
ପଦ୍ମାବଣ୍ଟି ବୋଇଲେ ମୁଂ ଦ୍ରୋପଦର ଭାରଯା
ମୋହୋର ପିଅର ଅଛୁ ପଦ୍ମକେଶର ରାଜା । ୪୦ ।
ମୋହୋର ନାମ ହାଦେ ଅଟଇ ପଦ୍ମାବଣ୍ଟି
ଯେତୁକା ଯେହ୍ନ ପୁଵ ଗୋଟି ମୋହୋର ହୋଇଲ ଉତପତ୍ତି । ୪୧ ।
ଅନେକ ଯେହ୍ନ ପୃବ ଅଗବନେ କତଗଲ
ମଧୁକେଶର ରାଜା ଯେହାକୁ ମଧୁବଣ୍ଟିକୁ ପ୍ରଦାନ କଲ । ୪୨ ।
ପୁରୁଷ ଲକ୍ଷଣ ଯହୁଂ ଯେହାର ତହିଂ ନାହିଂ
ମଧୁବଣ୍ଟି ବୋଇଲ ମୁଂ ହୋଇବ ଅଗ୍ନି ଦାହି । ୪୩ ।

---

ରବେ ମାତା ଭାରଯା ଯେତୁକାନ୍ତେ ଛନ୍ତ ଶୋଇ
ଭାରଯା ବୋଲ ମାତାଙ୍କୁ ଶୃଙ୍ଗାର କଲ ମୁହିଂ ।
ରାତ୍ରର ସମୟେ ମୋତେ ବଗ୍ଭର ନ ଗଲ
ଜନନୀ ନ ଜାଣିଲ ମୋତେ ସେ ଦେହ ଅଲ ।
ସେହ୍ନ କାରଣେ ମୁହିଂ ମନରେ ବଗ୍ଭରଲ
କେମନ୍ତ କରବ ବୋଲ ମନରେ ଭୟ କଲ ।
ଜନ ମୁଖ ନ ଗ୍ଭହିଂବ ପଶିବ ବନରେ
ନାରଦଙ୍କୁ ପଗ୍ଭର ମୁଂ କହିଲ ଯେତୁକାନ୍ତେ ।
ସେ ବୋଇଲେ ମାତୃ ହରଣ ତୁ ନ କଲୁ ବଗ୍ଭର
ଇନ୍ଦ୍ରଙ୍କ କାଟି ମେଲ ତୀର୍ଥ ଗମନ କର ।
ତେଣୁ ସେ କୋପ ମୋତେ କଲେ ଆଖଣ୍ଡଳ
ଯେତୁକାକୀ ବୁଲଇ ମୁଂ ବନସ୍ତ ଭତର ।
ପଦ୍ମାବତୀ ବୋଇଲେ ମୁଂ ଦ୍ରୁପଦର ରାଣୀ
ଯେ ପୁତ୍ର ଅଟଇ ମୋହୋର ବୀରମଣି ।
ନପୁଂସକ ଅଟଇ ଯେହାର ଲକ୍ଷଣ
ନ ଜାଣି ପଦ୍ମକେଶର ଦୁହିତା ଦଲ ଦାନ ।

ମଧୁକେଶର ବାହିଲା ପାଞ୍ଚାଳ ଦେଶକୁ
ଶିଖଣ୍ଡୀ ନାମନ୍ତେ ଧରିଅଛି ରାଜା ଦ୍ରୋପଦକୁ । ୪୪ ।
ଶିଖଣ୍ଡିକି ଦ୍ରୋପଦ ନେଣ୍ଟଉଇ ଚଉକାନ୍ତ
ବନକଲେ ଯେନି ପଳାଇ ଅଇଲ ମୃଂ ନଶାରାନ୍ତ । ୪୫ ।
ଚନ୍ଦ୍ରବ ବୋଇଲା ମୋତହାର ମାତା ପଦ୍ମାବନ୍ତି
ତୁ ମୋତହାର ମାଉସୀ ହୋଇଲୁ ଯୁଗନ୍ତ । ୪୬ ।
ଶିଖଣ୍ଡୀ ମୋହୋର ହୋଇଲାକ ଭ୍ରାଥ
ମୁଂ ଯେହାକଇଂ କାରଣ କରିବଇଂ ଗୋ ମାତ । ୪୭ ।
ଶିଖଣ୍ଡୀକି ଯେନି ଗନ୍ଧର୍ବ ଅନ୍ତର ହୋଇଲା
ଆପଣାର ଇନ୍ଦ୍ରି କାଟି ଶିଖଣ୍ଡୀ ତହିଂ ଲଗାଇଲା । ୪୮ ।
ସଞ୍ଜୀବନୀ ମଉଷଧି ଦିଲା ନେଇ ତହିଂର ଉପରେ
ଲଗିଲା ମହାମନ୍ତ୍ରେ ଶିଖଣ୍ଡୀ ଶରୀରେ । ୪୯ ।
ବଇବସ୍ୱତ ମନୁ ପଚ୍ଛରିଲେ ପରସ୍ତାବେ
ତୁଳାକର୍ଣ୍ଣିର ମହିମା ଅସଂଖ୍ୟ ମୁନିଦେବେ । ୫୦ ।
ଯେହାକୁ ପରାପତ ତାହାର କେବଣ ପାପ
ପୁରୁଷ ଲକ୍ଷଣ ଗୁଣଗଲା କେବଣ ଭଗନ୍ତ ଅନୁରୂପ । ୫୧ ।
ଅଗସ୍ତି ବୋଇଲେ ଯାହା ପଚ୍ଛିଲୁ ବାରତା
ସାବଧାନେ ଶୁଣ ଯେ ଯେଥିର ତଥ୍ୟ କଥା । ୫୨ ।
ତୁଳାକର୍ଣ୍ଣିକୁ ଅନେକ ଦୟା କଲେ ସହସ୍ରାକ୍ଷ
ଅମରେ କଲେ ତାକୁ ନୃତ୍ୟରେ ପରୀକ୍ଷ । ୫୩ ।
ବାସବର ତହିଂ ସେ ସୁନ୍ଦର ଅଟଇ ତୁଳାକର୍ଣ୍ଣି
ଦେବତାନ୍ତ ଗୁଣ ବିଦ୍ୟାଧରୀ ଯେହାକୁ କଲେ ମନ । ୫୪ ।
ସବୁ ଅପଛରାନ୍ତ ଯେ ରମଣ କରଇ ରସେ
ଯେହାକଇଂ ଗୁଣ ଅପଛରୀ ନ ଗଲେ ଇନ୍ଦ୍ର ପାଶେ । ୫୫ ।
ଯେହାର ମାତା ଯେ ଅଟଇ ପଦ୍ମାବନ୍ତି
ରମ୍ଭାର ସାନ୍ଦକ୍ଷେ ସେ ଅଟଇ ରୂପବନ୍ତୀ । ୫୬ ।

---

୫୬।୨ ସାନ୍ଦକ୍ଷେ—ସାଦୃଶେ ।

ମାତାଙ୍କୁ ଦେଖି ସେ ମଦନେ ଆରତ ହୋଇଲା
ଅନେକ ହିଁ ପଦ୍ମାବତୀକ ବଳତ୍କାରେ ଧଇଲା । ୫୭ ।
ମାତାଙ୍କୁ ବଳେ ଧରି କଲାକ ଶୃଙ୍ଗାର
ତାହା ଜାଣି ଅମରୁ ଇନ୍ଦ୍ର ସେହାକୁ କଲେକ ବାହାର । ୫୮ ।
କେହି ନ ଗୃହାନ୍ତ ଅମରେ ସେହାର ମୁଖ
ବନଗାମୀ ହୋଇ ସେ ପାଇଲା ବହୁତ ଦୁଖ । ୫୯ ।
ସେହି ସଙ୍ଗେ ଇନ୍ଦ୍ର ଛେଦନ ହାଦେ କଲା
ନପୁଂସେକ ଲକ୍ଷଣ ସେ ଆପଣେ ବହିଲା । ୬୦ ।
ଆକାଶେ ଅନେକ ସହୁଂ ପାଇଲା ଅପଗ୍ରାନ୍ତ
ତେଣୁକର ସଙ୍ଗେ ଇନ୍ଦ୍ରକ ଗନ୍ଧର୍ବ ଦିଲା ଶାନ୍ତି । ୬୧ ।
ହେ ବୁଧ ଜନେ ବିଗୃର କର ମନେ
ଅକାରଣେ କାରଣ ପାଇ ମହନ୍ତ ଦରଶନେ । ୬୨ ।
ପାଇଲା କାରଣ ସେ ଦ୍ରୋପଦର ଆତ୍ମଜ
ଚୂଳାକର୍ଣ୍ଣ ପ୍ରସାଦେ ପାଇଲା ନିଜ କାର୍ଯ୍ୟ । ୬୩ ।
ପୁଷ୍ପେକ ବିମାନ ତାକୁ ଦଲାକ ଚୂଳାକର୍ଣ୍ଣ
ସେଥି ଆରୋହି ମାସ୍ୟେ ପୋସ୍ୟେ କର ଯେ ଗମନ । ୬୪ ।
ଆପଣା ଶରୀରେ ଯେତେ ଅଳଙ୍କାର ଥିଲା
ଶିଖଣ୍ଡୀ ଅଙ୍ଗେ ସବୁ ଆଭରଣ କଲା । ୬୫ ।
ଦେବାଙ୍ଗ ବସନ ମାନ କରଣ ଆଭରଣ
ବିମାନେ ବିଜେକଲା ଶିଖଣ୍ଡୀ ତତକ୍ଷଣ । ୬୬ ।
ସମସ୍ତ ଶସ୍ତ୍ର ଶାସ୍ତ୍ର ମାନ ଚୂଳାକର୍ଣ୍ଣ ଦଲା ଶିଖଣ୍ଡୀକ
ରୂପେଣ କୁମାର ତେଜ କାମଦେବ ସତେ କି । ୬୭ ।
ପୁଷ୍ପକୁ ଘେନିଣ ତହୁଂ ଚଳଲେ ପଦ୍ମାବତୀ
ଦଣ୍ଡେ ଘେନି ସହୁଂ ରହିଛୁ ପଦ୍ମକେଶର ନୃପତି । ୬୮ ।
ତ୍ରିପୁରାନ୍ତକ ପର୍ବତ ଉପରେ ଉଡଙ୍ଗେଶ୍ୱର ବସିଛୁ ଆସ୍ଥାନେ
ଧାଇଁକାରେ ପ୍ରବେଶ ହୋଇଲେ ପୁଷ୍ପେକ ବିମାନେ । ୬୯ ।
ବିମାନରୁ ଉତ୍ତୁରିଲା ଦ୍ରୋପଦର ଶିଷ୍ଟି
ଦେଖିଣ ମଧୁକେଶର ଆସନୁଂ ଉଠିଲାକ ହସି । ୭୦ ।

ଇନ୍ଦ୍ର ଦେବତା କ ବଳେ କଲେ ଅମରୁଂ
ଯୋଦ୍ଧା ଅମନାତ୍ୟେ ନାସିଲେ ଦେଖି ଦୂରୁଂ । ୭୧ ।
ଶସ୍ତ୍ରାସ୍ତ୍ର ପକାଇ ସମସ୍ତେ ପରଣାମି
ଶ୍ରୀଖଣ୍ଡୀ ପ୍ରବପତ୍ୟେ ହୋଇଲା ଉତ୍କଳେଶ୍ୱର ସ୍ୱାମୀ । ୭୨ ।
ଆସ୍ଥାନେ ବଳେ ଆସି କଲେକ କୁମର
ଦେଖିଣ ଦ୍ରୋପଦ ପୁତ୍ରକୁ ଧଇଲେ କୋଳର । ୭୩ ।
ଶ୍ରୀଖଣ୍ଡୀ ବୋଇଲା ଶୁଣସି ଶଶୁରନ୍ତ
କାହ୍ନଂର ନମନ୍ତେ ତୁମ୍ଭେ ଭିଆଇଲ ଯେମନ୍ତ । ୭୪ ।
ମଧୁକେଶର ବୋଇଲା ତୁ ଅମରାଧିନାଥ ପ୍ରାୟେ
କେଉଂଣ ପାତକେ ନପୁଂସେକ ଲକ୍ଷଣ ତୋର କାୟେ । ୭୫ ।
ଶ୍ରୀଖଣ୍ଡୀ ବୋଇଲା ତୋର ଦୁହିତା ଦୁର୍ଭାଗୀ
ସାଧନ ପୁରୁଷ ମୁଂ ଅଟଇ ପରମ ଯୋଗୀ । ୭୬ ।
ଇଚ୍ଛାୟେଣ ରତି ମୋର ଇଚ୍ଛାୟେଣ ବିଭୂତି
ତହ୍ନଂକ ମାନ ଯେ ବସିଲା ମଧୁବନ୍ତି । ୭୭ ।
ମୃଦୁଗୁଲୀ ଦେଖିଲେ ଯେ ପରୀକ୍ଷ ନମନ୍ତେ
ତତକ୍ଷଣେ କହିଲେ ନୃପତି ଅଗ୍ରତେ । ୭୮ ।
ଶୁଣିଣ ରାଜନ ଯେ ମନରେ ହରଷ
ସନ୍ୟ ଘେନିଣ ପ୍ରବେଶ ହୋଇଲା ପଞ୍ଚାଳ ଦେଶ । ୭୯ ।
ଶ୍ରୀଖଣ୍ଡୀ ହସ୍ତ ଧରି ନେଲାକ ମଧୁବନ୍ତି
ଇଚ୍ଛାୟେ କୁମର ତୁଲେ ବଢାଇଲା ପୀରତି । ୮୦ ।
ଅନେକ ଶୃଙ୍ଗାର ହୋଇଲା ମନଇଚ୍ଛା
ପୂରେଇଲା ସୁନ୍ଦରୀ ତାହାର ମନବାଞ୍ଛା । ୮୧ ।
ଶ୍ରୀଖଣ୍ଡୀ ନମନ୍ତେ ରାଜା ଅନେକ ବିରସ ହୋଇଥିଲା
ଓହୋ କୁଳରେ ଅନେକ ହରଷ ଉପୁଜିଲା । ୮୨ ।
ମଧୁକେଶର ପ୍ରଣପତ୍ୟେ ଯେ ଦ୍ରୋପଦର ପାଦତଳେ
ମମ ଦୋଷ ଉପେକ୍ଷା କରିବା ସର୍ବକାଳେ । ୮୩ ।
ଦ୍ରୋପଦକୁ ସମାଦ୍ଧ ଚଳଇ ମଧୁସେନ
ଓଡଙ୍ଗ ଦେଶେ ପ୍ରବେଶ ହୋଇଲା ରାଜନ । ୮୪ ।

---

୮୪।୧ ସମାଦ୍ଧ—ସମାର୍ଜି—ସମାଧାନ କରି ।

ମହାଦେବଙ୍କ ଅଗ୍ରତେ କହିଲେ ସର୍ବ କଥାନ୍ତ
ଶୁଣିଣ ହରଷ ସେ ମଧୁବନ୍ତର ମାତ । ୮୫ ।
ଭୃଥଖଣ୍ଡ ରାଜା କର୍ଣ୍ଣମାଧବ ନୃପତି
ତାହାର ଭାରଯା ନାମ ଅଛଇ ଶୁଦ୍ଧମତି । ୮୬ ।
ସେ ରାଣୀର ଗର୍ଭୁଁ ଦୁହିତାଏ ଉତପତ୍ତି
ତାହାର ନାମ ରାଜା ଦେଲ ହାରବନ୍ତୀ । ୮୭ ।
ଦ୍ରୁପଦର ନନ୍ଦନ ଦୃଷ୍ଟ ଯେ ଦୃମନ
ସେ ହାରବନ୍ତୀ କୁ ରାଜା କଲାକ ପ୍ରଦାନ । ୮୮ ।
ଶୁଣ ହୋ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଶ୍ରୀଖଣ୍ଡୀର ହୋଇଲା ବେନି ପୁତ୍ର ଉତପତ୍ତି । ୮୯ ।
ଅନଙ୍ଗ ମକରଧ୍ୱଜ ବେନିଙ୍କର ନାମ
ଅତିଅନ୍ତ ସୁନ୍ଦର ସେ ଜାଣିଣ ଦେବ କାମ । ୯୦—୮୪୩୩ ।



## ପାଣ୍ଡବାଦିଙ୍କର ଭିକ୍ଷାଚରଣ

ସେଥୁ ଅନନ୍ତରେ ଋଳଙ୍କ ଦେଶ ରାଜା
ଅଗସ୍ତିଙ୍କ ପାଦପଦ୍ମେ କଲେ ଦ୍ରବ୍ୟ ପୂଜା । ୧ ।
ପାଣ୍ଡବେ ରହିଥିଲେ ଯେ ହିଡମ୍ବକ ବନେ
ତହୁଁ କେବଣ କୃତ୍ୟ କଲେ ପଞ୍ଚୁ ପଞ୍ଚୁ ନାନେ । ୨ ।
ହିଡମ୍ବକ ବନେ ଘଟଉତ୍କଟକୁ କଲେ ରାଜା
ଦଶ ବରଷର ସେ ଅଛଇ ଆତ୍ମଜା । ୩ ।
ପୁତ୍ର ଗୋଟି ଦେନି ହିଡମ୍ବିକା ଥାଅସି ସେହି ବନେ
ଆମ୍ଭେ ସମସ୍ତେକେ ଯେ ଆସିବୁ ସେହି ସ୍ଥାନେ । ୪ ।
ରାଜ୍ୟ ତେଜ ଯେବେ ହୋଇଲୁ ତୀର୍ଥବାସୀ
ପାଦଶ୍ରମେ ସେ ମିଳଇ ଧର୍ମ ସିନା ଆସି । ୫ ।
ମଗୁଶିର ମାସ ଚଉଠୀ ଶୁକଳପକ୍ଷ ଗୁରୁବାର
ହିଡମ୍ବକ ବନୁଁ ଚଳିଲେ ପଞ୍ଚୁବୀର । ୬ ।

---

୮୮।୧ ଦୃଷ୍ଟଦୃମନ—ଧୃଷ୍ଟଦ୍ୟୁମ୍ନ ।

ବନ ଭେଦିଣ ଯାଆନ୍ତେ କାମେଶ୍ୱ ନଦୀକୂଳେ
ନଗ୍ରେକ ଦେଖିଲେ ସେ ଅଶେଷ ପରମଳେ । ୭ ।
ଯୁଧିଷ୍ଠିର ବୋଇଲେ ଭଲ ନଗ୍ର ଯେ ଗୋଟିଏ
ନଦୀରେ ସ୍ନାହାନ କରି ଏଥି ରହିବା ସମୟେ । ୮ ।
ବ୍ରାହ୍ମଣ ରୂପ ବାବୁ ଧରି ହୋ ମନ ଇଚ୍ଛା
ଦିନ ବଞ୍ଚିବା ନିମନ୍ତେ ମାଗିବା ଯାଇଂ ଭିକ୍ଷା । ୯ ।
ବ୍ରାହ୍ମଣ ରୂପ ହୋ ଧରସି ଯୁଗତେ
ଯେ ଯାହାର ଅନୁରୂପେ ଦେନିଲି ଭିକ୍ଷା ପାତେ । ୧୦ ।
ଲମ୍ବିତ ଜୁଟ ଯେ ବିକଞ୍ଚ ବସନ
ଉତ୍ତରୀ ପବିତ୍ର ଶ୍ରୀବତ୍ସ ଲକ୍ଷଣ । ୧୧ ।
ହାଥେ ତ୍ରିଦଣ୍ଡ କାଖେଣ ବେଦ ଯେ କମଣ୍ଡ
ଗୋପ୍ୟାନେ ଶୋରେହା ବନ୍ଧୁ ଅଗ୍ନିରେ କୁଶ ବନ୍ଦ । ୧୨ ।
କାନ୍ଧେଣ ଛତା କାଖେଣ ବେଦ ପୋଥି
ପଦ୍ମରେ ପାଦୁକା ଯେ କରେଣ ଗଡୁ ପାଣି । ୧୩ ।
ଏମନେକ ବିଧାନ ବିପ୍ର ଯେ ସରୂପ
ନିଜ କାଏ ଗୋପ୍ୟାନ କରି ଧଇଲେ ଦ୍ୱିଜରୂପ । ୧୪ ।
ଯୁଧିଷ୍ଠିର ବୋଇଲେ ମାଗିବା ଯେବେ ଭିକ୍ଷା
କେ କସ ପାତ୍ର ଦେନିମା ମନବାଞ୍ଛା । ୧୫ ।
ଯୁଧିଷ୍ଠିର ଦେନିଲେ ଶୌର ତମ୍ବାପାତ୍ର ଗୋଟିଏ
ମୁଣି ଗୋଟିଏକ ଦେନିଲେ ଧନଞ୍ଜୟେ । ୧୬ ।
ହରି ବିନକେ ଆନ ନ ଆସଇ ମୋ ତୁଣ୍ଡରେ
ହରି ଗୋବିନ୍ଦ ବୋଲି ବୋଲୁଥିବି ମୁଂ ପ୍ରତି ଦ୍ୱାରେ । ୧୭ ।
ଅର୍ଜୁନ ମନେ ଇଚ୍ଛା କଲେକ ଚକ୍ରପାଣି
କରେଣ ଦେନିଲେ ସେ ହରି ଗୋବିନ୍ଦ ଯେ ମୁଣି । ୧୮ ।
ନକୁଳ ସହଦେବ ଦେନିଲେ ତମ୍ବାପାତ୍ରେ
ଶୌରି ପେଟୁଲି ଦେନିଲେ ଦେବୀ କୋନ୍ତେ । ୧୯ ।
ଯୁଧିଷ୍ଠିର ପୃଚ୍ଛା କଲେ ସେ ଯେ ଅର୍ଜୁନକୁ
କସ ବୋଲି ଭିକ୍ଷା ମାଗିବା ପଚାରନ୍ତି ଭୀମସେନକୁ । ୨୦ ।

---

୧୬।୧ ଶୌର—ଶୁଭ୍ର ।

ଜନମର ମଧ୍ୟେ ସ୍ଥାନ ଅଟଇ ଯେ ଭିଖ
ବଳ ବପୁ ଥାଉଁ ହୋଇଲଇଁ ଯେ ନିରେଖ । ୨୧ ।
ପରେ ବିନୋଦ୍ଧି ହୋଇ କହୁଥିବ କଥା
ଭିକ୍ଷାବାସୀ ଜନଙ୍କର ଯେସନେକ ବେବସ୍ଥା । ୨୨ ।
କୋପ ଦୂର କରି ଶାନ୍ତ ଯେବେ ଭଜି
ବହୁତ ସମ୍ପଦ ନୋହଇ କଣ କଳ୍ପ ଅରଜି । ୨୩ ।
ଯେହ୍ନା ପରିପାଳ ଯେବେ ପାରିବୁ ଭୀମସେନ
ଜନ ମୁଖ ଗୃହ୍ନିଂ ସୁଖେ ନେମା ଧନ । ୨୪ ।
ଭୀମସେନ ବୋଇଲ ଦେବ ଧରିବରଷ ପରିଯନ୍ତେ
ଜନ ମନୁଷ୍ୟ ନ ଦେଖି ପଶିଲୁ ବନସ୍ତେ । ୨୫ ।
ଅନ୍ନ ନ ପାଇଣ ଯେ ବନଫଳ ଭକ୍ଷି
ଆବର ବଳ ବପୁ ରାଗ ଦେବ କାହାର ଦେହେ ଅଛି । ୨୬ ।
ଭଜିଲୁ ଶାନ୍ତ ଯେ ହୋଇଲୁ ସ୍ୱାର୍ଥହୀନ
କଣ କଳପ ଭିକ୍ଷାରେ ବଞ୍ଚିବା ଆମ୍ଭେ ଧନ । ୨୭ ।
ଜନ ମୁଖ ଗୃହ୍ନିଂ ଦେବ ଥିବାକ ସମୟେ
ଶୁଣି ବିଚୁରିଲେ କୋଇନ୍ତା ଦେବୀ ମାୟେ । ୨୮ ।
ବାବୁ ଭିକ୍ଷା ବୋଲି କରି ଯେବଣ ବଣିଜ
କଣ କଳ୍ପ କରି ସେ ଯେ ଧଅନ୍ତ ଗ୍ରାହଜ୍ୟ । ୨୯ ।
ବହୁତ ଧଅନ୍ତା ନାହିଁ ଅଳପ ନ ଧରଇ ନୟନେ
ଯାଓ ତ ବୋଲି ବୋଲନ୍ତ ଅଗ୍ୟାଂନ ସ୍ତ୍ରିୀମାନେ । ୩୦ ।
ନ ପାଇଲ ଘରୁ ତାର କୁଣ୍ଡଆ ନ ପୁଣ ଉପାଉ
ରାଗ ଧରି ନ ପୁଣ ସବୁଙ୍କୁ କରୁଉ । ୩୧ ।
ବାବୁ ଯେତକ ଭ୍ରାନ୍ତ ରେ ଭାଳଇ ମୋର ମନେ
ମାତାଙ୍କ ବଚନେ ଯେ ହସିଲ ଭୀମସେନେ । ୩୨ ।
କେବଣ ଭିକ୍ଷା ମା ଗୋ ବାହୁଡାନ୍ତ ନାହିଁ
ସେହି ଭିକ୍ଷା କରେ ମା ଗୋ ଯେନମଇ ମୁହିଁ । ୩୩ ।

---

୨୮।୨ ଶୁଣି ବିସନ୍ନଲେ କୋଇନ୍ତା ଦେବୀ ମାୟେ ।

କୋଇନ୍ତାଏ ବୋଇଲେ ଚକ୍ର ବୋଲି ଏକ ଭିକ୍ଷା
ସମସ୍ତେ କରେ ଦିଅନ୍ତି ସେ ନିରଞ୍ଜନ ଦୀକ୍ଷା । ୩୪ ।
ଧାନ ଗୃଉଲ ବରି ମୁଗ ଆବର ପରିବା
ହିରଣ୍ୟ ବସ୍ତ୍ର ହାଣ୍ଡି ଆଦି କରି ଦେବା । ୩୫ ।
ସେ ବ୍ରାହ୍ମଣଙ୍କୁ ଦେଖିଲେ ଦିନକର ପାପ ହରି
ଏହାଙ୍କୁ ନମସ୍କାର କଲେ ଅଷ୍ଟୋତ୍ତର ଶତେ ବିପ୍ର ସରି । ୩୬ ।
ବେନି ଚକ୍ର ପୂରେଇ ଯେବେ ଦିଅଇ ଅନ୍ନ
ଜନ୍ମେ ଜନ୍ମେ ଅନ୍ନ କଷ୍ଟ ସେ ନ ପାବନ୍ତି ଜନ । ୩୭ ।
ଭୀମସେନ ବୋଇଲା ଭଲହିଂ କହିଲ ମାତା କୋନ୍ତେ
ସେହି ଚକ୍ର ଭିକ୍ଷା ମା ଗୋ ଯୋଗାଇଲା ମୋତେ । ୩୮ ।
କୋଇନ୍ତା ବୋଇଲେ ବାବୁ ଚକ୍ର ଭିକ୍ଷା ମାଗିଲେ ଅନେକ ଅଛି ଦୋଷ
ଦୋହୋରା ଅଗ୍ନି ଥାଇଂ ତାହାଙ୍କର ପାଶ । ୩୯ ।
ଯେଉଂଣ ଭିକ୍ଷା ସେ ମାଗି କରି ନେବ
ଦୁଇ ଭାଗ କରି ଭାଗେ ଦୋହୋରାଙ୍କୁ ଦେବ । ୪୦ ।
ଯଜମାନ କଲ୍ୟାଣ ଚକ୍ର ଭିକ୍ଷାକୁ ଦେବା
ଏତେକ କହି ସମାସ୍ୟା ଦେବା ଆନ କଥା ନ କହିବା । ୪୧ ।
ଚକ୍ର ଭିକ୍ଷାରେ ବାବୁ ଅନେକ ଅବଗୁଣ
ମିଥ୍ୟା କହିଲେ ସେ ରଉରୋବ ନର୍କରେ ପଡ଼ଇ ବ୍ରାହ୍ମଣ । ୪୨ ।
ଭୀମସେନ ବୋଇଲା ଯାହିଂର ଯେମନ୍ତ ଭିକ୍ଷା
ମୁହିଂ କବା ମାତା ଗୋ କହିବଇଂ ହାଦେ ମିଥ୍ୟା । ୪୩ ।
ବନସ୍ତୁ କାଟିଲା ଭୀମ ବେତଲଠୀ ମାନ
ଚିରି ବେନି ଚକ୍ର ଯେ ବୁଣିଲା ଅରଜୁନ । ୪୪ ।
ବାଆଂଶେକ କାଟି ଯେ କଲେ ଭାର ଯଷ୍ଟି
ଲଇରେ ଗୁନ୍ଥି ଭୀମସେନ କନ୍ଧେ ଦିଲେ ଚକ୍ର ଭାର ଗୋଟି । ୪୫ ।
ଚିତାନ୍ତ ପ୍ରସାରି କୁଶବଟୁ ଘେନି କରେ
ଗମନ୍ତି ପାଣ୍ଡବେ ଯେ ଓଡ଼ାଦି ଶିବପୁରେ । ୪୬ ।
ଦେଖନ୍ତି ଓଆସେକ ନଗ୍ରର ବାହିଜେ
ଅନ୍ତଗୃହୀ ହୋଇ ତହିଂ ରହିଛି ଏକ ଦ୍ୱିଜେ । ୪୭ ।

ଭୀମସେନ ବାଟ କଢାଇଲା ତାହାର ଦ୍ୱାରକୁ
ସେ ଦ୍ୱାରକଇଂ ନ ଯାଇଂ ବୋଲି ବୋଇଲେ କୌଇନ୍ତ୍ୟେ
ଭୀମସେନକୁ । ୪୮ ।
ନୟୁତ ନାମ ମାନ ସେ ଲୁଗୁଇଂ ଗୋପ୍ୟ କରି
ଜାଣନ୍ତା ହୋଇବ ନା ନୃପତାନ୍ତ ନାମ ଧରି । ୪୯ ।
ଯୁଧିଷ୍ଠି ନାମ ଯେ ବହିଲେ ଜୟନ୍ତ
ଭୀମସେନ ନାମ ଯେ ବହିଲେ ଜୟବନ୍ତ । ୫୦ ।
ଅର୍ଜୁନ ନାମ ଯେ ବହିଲେ ଅଜୟେ
ଜୟସେନ ନାମ ନକୁଳ ବୀର ବହେ । ୫୧ ।
ଜୟେବଷ୍ଟ ନାମ ବହିଲା ସହଦେବ ମନ୍ତ୍ରୀ
ଯେମନ୍ତେ ଗୁପତ ନାମ ବହିଲେ ପଞ୍ଚ ଛତ୍ରୀ । ୫୨ ।
ଜୟନ୍ତ ବୋଇଲେ ରେ ରହ ରହ ଭାଇ
ଅଛବ ଲୋକ ସେ ଯେ ନଗ୍ର ବାହାରରେ ଥାଇ । ୫୩ ।
ଭୀମସେନ ବୋଇଲା ଦେବ ପରମଳ ଭୁବନ
ବାହ୍ୟବଳ କଲା ଯେତ ଅଟଇ ବପ୍ରଜନ । ୫୪ ।
ପଥିକ ଜନ ପଚରିଲେ ସନ୍ନିଧେଣ ଯାଇ
ଯେ କସ ଘର ବାଭେଯେ ବାହ୍ୟେ ଅଚ୍ଛି ରହି । ୫୫ ।
ସଜ୍ଜନ ବୋଇଲା ଗୋସାଇଂ ଯେ ଅଟଇ ବପ୍ରଙ୍କର ଘର
ନଗ୍ରରୁ ବାହାର କରି ଦେଲେ ବାହ୍ନଜ୍ୟ ପ୍ରକାର । ୫୬ ।
ଗୋସାଇଂ ଉଦ୍ଧାଲେକ୍ତ ନାମେଣ ଯେକଇ ଦ୍ୱିଜବର
ବ୍ରାହ୍ମଣୀ ଶୂଦ୍ରାଣୀ ବେନ ଭାରଯା ଦେନ କରଇ ସେ ଘର । ୫୭ ।
ବେନ ଭାରଯାଙ୍କର ଉପୁଜିଲା ଦଶ ଦଶ ପୁତ୍ର
ଦୁଇବାଡ଼ କରି ତାହା ବସାଇଲା ମହତ । ୫୮ ।
ଶିବପୁର ନଗ୍ର ଯେ ଈଶାନ ଭାଗ କରି
ଲକ୍ଷେ ନବ ସହସ୍ର ବ୍ରାହ୍ମଣ ବସନ୍ତି । ୫୯ ।
ଓଡ଼ାଢ଼ ନଗ୍ର ଯେ ପଶ୍ଚିମ ଭାଗର
ଦୁଇଲକ୍ଷ ପାଞ୍ଚ ସହସ୍ର ବସାଇ ଯେ ଘର । ୬୦ ।

---

୫୪।୨ ବାହ୍ୟବଳି, ଶ୍ୱାନ, ଶ୍ୱପଚ, କାକ ଓ ଅନ୍ୟାନ୍ୟ ଜୀବମାନଙ୍କୁ ଘରର ବାହାରେ ଦେବା ଅନ୍ନ ବ୍ୟଞ୍ଜନକୁ ବାହ୍ୟବଳି କହନ୍ତି । ଏହା ବୈଶ୍ୱଦେବର ଅଙ୍ଗ । ପଞ୍ଚ ମହାଯଜ୍ଞଂରୁ ଏହା ଭୂତଯଜ୍ଞଂ ଅଟେ ।

ପୁତ୍ର ଶିବପୁର ନଗ୍ରେ ବ୍ରାହ୍ମଣେ ବସନ୍ତି
ଅପୁର୍ବିକ ହୋଇଲେ ନଗ୍ରୁଂ ବାହାର କରି ଦ୍ୟନ୍ତି । ୬୧ ।
ବିଷ୍ଣୁକର ପଣ୍ଡାପୁତ୍ର ନଗରର ଗ୍ରାମୀଣ
ପତି ସତେ ବଂଶ ନୋହିଲା ବର୍ଦ୍ଧମାନ । ୬୨ ।
ନଗ୍ର ଲୋକେ ପନ୍ତ୍ରରୁ ବାହାର କରି ଦିଲେ
ଅପୁର୍ବିକ ଲୋକ ବୋଲି କଣ୍ଡରେ ନ ରୁହାଇଲେ । ୬୩ ।
ବିଷ୍ଣୁକର ପଣ୍ଡାଙ୍କର ପୁତ୍ର ଅଟଇ ଗୃହବାସ
ସନ୍ତାନ ଅଭାବେ ପୁତ୍ର ଛାଡିଲେ ନିଜ ଦେଶ । ୬୪ ।
ଯୁଦ୍ଧେଷ୍ଟି ବୋଇଲେ ମା ଗୋ ପୁତ୍ରହି ସେ ଯୋଗାଇ
ଗୁପତ କାଳକୁ ପୁତ୍ର ବାହ୍ମଣ୍ୟ ଚରି ଭୁଇଂ । ୬୫ ।
ପ୍ରଥମେ ଭିକ୍ଷା କରିବା ପୁତ୍ରହାଙ୍କର ଘରେ
ବସା ଖଣ୍ଡିପୁତ୍ର ମାଗିବା ରହିବା ପୁତ୍ରହିଠାରେ । ୬୬ ।
ବିଚୃରଣ ବିଜେ କଲେ ପଞ୍ଚ ପ୍ରାଣୀ
ଭୁଲେଣ ଗୋଡାବନ୍ତି କୋଇନ୍ତା ମହାମ୍ରାଣୀ । ୬୭ ।
ଭିକ୍ଷା ପାନ୍ଦ କଲେ ବିଷ୍ଣୁକର ପଣ୍ଡା ଘରେ
ବ୍ରାହ୍ମଣ ବ୍ରାହ୍ମଣୀ ଭୋଜନ ସାରି ବସିଅଛନ୍ତି ଭିତରେ । ୬୮ ।
ମହାବ୍ରହ୍ମ ବାକ୍ୟ ଯେ ପ୍ରଥମ ଆଧାନ ଖଣ୍ଡି
ପିଣ୍ଡାରେ ବସି ଉଚାରନ୍ତି ବୁଭୁକ୍ଷିତ ଯଜମାନ କାଣ୍ଡି । ୬୯ ।
ଭିତରେଣ ଥାଇ ଶୁଣିଲେ ବିଷ୍ଣୁକର
ନିର୍ଧୂମ ଅଗ୍ନି ଜାଣି ଦିଶଇ ତାହାଙ୍କର ଶରୀର । ୭୦ ।
ବ୍ରାହ୍ମଣ ବିଚୃରନ୍ତି ପୁତ୍ରତ ନାରାୟଣ ଘାଷା
ଦଇବ ପୁରୁଷମାନେ କପଟେ ମାଗନ୍ତି ଭିକ୍ଷା । ୭୧ ।
ବ୍ରାହ୍ମଣୀକି ବୋଇଲା ସୁଫଳ ଆଜ ଦିନ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର କୁବେର ପାଅଜଣ । ୭୨ ।
ଭୁଲେଣ ମାତା ପୁତ୍ରହାଙ୍କର ଅନାଦି ଶକତି
ଦ୍ୱାରେଣ ଉଭା ହୋଇଲେ ପୁତ୍ର ମୋତେ କିଷଣ ନିମନ୍ତି । ୭୩ ।
ତୁ ଦେଖି ଦ୍ରଶନ କରନି ଯାଇ ଆଗେ
ସେ କସ ଆଗ୍ୟାଂ ଦିଅନ୍ତି ତୋତେ ଅନୁରାଗେ । ୭୪ ।

ଅନେକ ବେଶ ବେଶନ ହୋଇଣ ବ୍ରାହ୍ମଣୀ
ସୁତଳ ଆଭରଣ ହେଲ ଦେବସ୍ତ୍ରିଗ ଜାଣି । ୭୫ ।
ପାଟେକ ପିନ୍ଧି ଝୀନ ବସ୍ତ୍ରେକ ଉପୁରଣ
ଅର୍ଘ୍ୟ ଯୋଗାଡ ପୂରେଇ ଘେନଲ ସୁବର୍ଣ୍ଣ ଥାଳୀରେଣ । ୭୬ ।
ଭିତରୁ ବାହାର ହୋଇଲା ବସ୍ତୁକର ବନତା
ପାଦାର୍ଘ୍ୟ ଦେଇଣ ସେ ହୋଇଲା ପ୍ରଲମ୍ବିତା । ୭୭ ।
କୋଇନ୍ତାଏ୍ଁ ଆଶ୍ୱସନା କଲେ ତାହାଙ୍କର ଗାତ
ବୋଇଲେ ମୋହୋର ତୋହୋର ହୋଉ ପଞ୍ଚପୁତ । ୭୮ ।
ଭାଗ୍ୟବନ୍ତ ହୋନ୍ତୁ ସେ ସହ୍ୟ ଶ୍ରେଷ୍ଠ ହୋଅନ୍ତୁ
ଶୂରବନ୍ତ ପଣ୍ଡିତ ଦୁଇ ଯେ ହୋଅନ୍ତୁ । ୭୯ ।
ଏମ୍ଭେସନେକ ବଚନ ଶୁଣିଣ ବ୍ରାହ୍ମଣୀ
ଭିତର ମନ୍ଦିରୁ ସେ ବାହାର ହୋଇଲା ତତକ୍ଷଣି । ୮୦ ।
ପ୍ରଣପତ୍ୟ ହୋଇଲା ସେ କୋଇନ୍ତାଙ୍କ ପଦ୍ମପାଏ୍ଁ
ବୋଇଲେ ପରମ ମାହେଶ୍ୱରୀ ତୁ ଅଟୁ ମହାମାଏ୍ଁ । ୮୧ ।
ପର ମନ ଜାଣିଲୁ ତୁ ପରଦୁଃଖେ ଚନ୍ତା
ଅପୁତ୍ରିକ ଜାଣି ପ୍ରସନ୍ନ ହୋଇଲୁ ଗୋ ମାତା । ୮୨ ।
ଯେହ୍ନେ ସାତ୍ତ୍ୱିକ ସାର୍ଥକ ମାତା ଗୋ ତୋହୋର ଆଗ୍ୟାଂ ବ୍ରତ
ସମ୍ପେ ହୋଇବ ମୋର ପଞ୍ଚ ଯେ ସନ୍ତତ । ୮୩ ।
ଯେବେ ପଣ୍ଡିତ ସେ ଶୂରବନ୍ତ ନୋହିବେ
ସେ ପୁତ୍ର ଗୁର ଥାଇ ଆଲ୍ଲ କସ ଯେ କରିବେ । ୮୪ ।
କୋଇନ୍ତାଏ୍ଁ ବୋଇଲେ ତୁ ଶୁଣ ହୋ ଦ୍ୱିଜବର
ଶୂରବନ୍ତ ପଣ୍ଡିତ ହୋଇବେ ପୁତ୍ର ଯେ ମୋହୋର । ୮୫ ।
ଭିକ୍ଷା ଆଶା କଲେ କେବେ ହେନ ଭିକ୍ଷା ପାବେ
ମାଗନ୍ତି କଣ ଭିକ୍ଷା ବୁଲନ୍ତି ଯେମନ୍ତେ । ୮୬ ।
ଅଛୁରତ କୃପଣ ଅନିମ୍ବା ଅଜାତ
ତାହାଙ୍କର ଘରେ ଦାନେ ଭିକ୍ଷା ଯେ ମାଗନ୍ତି । ୮୭ ।

୭୮।୨ ମୋର ପାଞ୍ଚଟି ପୁତ୍ର, ତୋର ମଧ୍ୟ ପାଞ୍ଚପୁତ୍ର ହେଉ।
୭୯।୧ ସହ୍ୟ—ସହନଶୀଳ ।
୮୭।୧ ଅଛୁରତ—ଅସ୍ପରଶ ।

ହେ କର୍ମ ପୁରୁଷ ହାଦେ ତୋତେ ମୋହୋର ନମସ୍କାର
ତବ ପଦ୍ମପାଦେ ଶତ ସହସ୍ର ଦଣ୍ଡବତ ମୋହୋର । ୮୮ ।
ତୁ ଯାହା କରୁ ତାହା କର୍ମ ବୋଲି ବୋଲି
ଅନ୍ୟେ ବୁଦ୍ଧି ଶିଖି ଯେକା ତୁକୁହିଂ ହାରିଲି । ୮୯ ।
ସମ୍ପଦ କରଣ ଯେ ଭିଆଇଲୁ ପିଣ୍ଡ ଗୋଟି
ଆବର କମ୍ପାଇ ବିପଦ କରିଦେଲୁ କଷ୍ଟି । ୯୦ ।
ତୁହି ସେ ଉଣୁଆସ ତୁହି ସେ ମହାଭାରି
ଯେତେ ମାନବ ଜନକୁ ମୋ‌ଂତ ବିପତ୍ତି ନ କରି । ୯୧ ।
ସଚଳ ନଚଳ ଚଞ୍ଚଳ ଦେବ ତୁହି
ଭାବ ଅଭାବ ତୋ ଉହୁଂ ଆନ ନାହିଂ । ୯୨ ।
ହେ ସଂସାର ଜନେ କେହି ନୋହି ବଣା
କର୍ମ ପୁରୁଷ ଗୋଟି ଜୀବକୁ ଧାରଣା । ୯୩ ।
ହେ କର୍ମ ପୁରୁଷ ତୋହୋର ଚରଣେ ଶରଣ ଭାବେ
ଶୂଦ୍ରମୁନି ସାରଳା ଦାସେ ନନ୍ଦୀକେଶ୍ୱର ସେବେ । ୯୪—୮୫୬୭ ।



## ଶିବପୁରେ ଘଣ୍ଟାଳବଳ ବଧ ଓ ଭୀମଙ୍କର ରାଜ୍ୟାଭିଷେକ

କୋଇନ୍ତୀ ଯେ ବୋଇଲେ ତୁ ଶୁଣ ଦ୍ୱିଜବର
ଭାଗ୍ୟବନ୍ତ ଶ୍ରେଷ୍ଠମନ୍ତ ଜ୍ୟେଷ୍ଠ ପୁତ୍ର ହୋଇବ ତୋହୋର । ୧ ।
କୋଇନ୍ତୀଙ୍କ ବଚନେ ସାନନ୍ଦ ବ୍ରାହ୍ମଣ
ବ୍ରାହ୍ମଣୀକି ବୋଇଲା ପାଗ ସମ୍ବାଦ ଯେତିକ୍ଷଣ । ୨ ।
କୋଇନ୍ତୀ ଯେ ବୋଇଲେ ଆମ୍ଭେ ଗୁହବନ୍ତ ଯୋଗେ
ପର ଅନ୍ନ ଭୋଗୀ ଆମ୍ଭେ ନୋହୁଂ ଜାଣ ଯେବେ । ୩ ।
ବ୍ରାହ୍ମଣ ବ୍ରାହ୍ମଣୀ ଯେ ନେଲେ କୋଇନ୍ତୀଙ୍କୁ
ଈଶାନ ପୁର ଭୁଞ୍ଜା କରି ଦିଲେ ତାଙ୍କୁ । ୪ ।
ଧାନ ଗୁଣ୍ଡଳ ମୁଗ ବିରି ଆଦି କରି
ଯେତେକ ଶଙ୍ଖାଳି ଥିଲା ସେ ପୁରରେ ଭରି । ୫ ।

ଗୁପତ ଧନ ଆଦି କରି ଯେତେକ ତହିଁ ଥିଲା
ବିପୁଳ ଦାନ କରି ବ୍ରାହ୍ମଣ ଘରଯାକ ଗ୍ଭଡିଲା । ୬ ।
ପୁଅନ୍ତି ଯେବେଣ କୋନ୍ତିଭୋଜର କୁମାରୀ
ନିଷ୍ଠିନ୍ତେ ରହିଲେ ଯେ ବିଷ୍ଣୁଙ୍କର ପୁରୀ । ୭ ।
ଅନେକ ଭଗତି ହୋଅନ୍ତି ବ୍ରାହ୍ମଣ ବ୍ରାହ୍ମଣୀ
ପଦାର୍ଥ ନ ଦେବା ନ କରନ୍ତି ଇଷ୍ଟଦେବତା ଜାଣି । ୮ ।
କୁତୋହୋଲେ ଭିକ୍ଷାପାତ୍ର ଯେନି ନିଜ କରେ
ନଗ୍ରେ ପରିମିଳନ୍ତି ଯେ ଓଡ଼ାଦି ଶିବପୁରେ । ୯ ।
ଦେଖିଣ ଅନେକ ଭଗତି ହୋଅନ୍ତି ପୁରଜନେ
କେଉଣ ଦେଶୀ ବୋଲି ପଚାରନ୍ତି ସାବଧାନେ । ୧୦ ।
ପଶ୍ଚିମ ସଉରାଷ୍ଟ୍ରେ ହସ୍ତିନା ନାମେ ପୁରୀ
ଜନ୍ମିଲୁ ନିଜ ଦେଶ ଅଟଇ ଆମ୍ଭରି । ୧୧ ।
ଅନେକ ପୁରୁଷ ଆମ୍ଭେ ଅଟୁ ତୀର୍ଥବାସୀ
ପରିମଳ ନଗ୍ର ବୋଲି ଆମ୍ଭେ ରହିଲୁ ଯେତେହିଂ ଆସି । ୧୨ ।
ବିଷ୍ଣୁଙ୍କର ପଣ୍ଡା ଘରେ କଲୁ ଆମ୍ଭେ ବାସ
ଗ୍ରାମୀଣେ ବୋଲନ୍ତି ତୁମ୍ଭେ ଭିତରକୁ ଆସ । ୧୩ ।
ସୋଦର ବଢିବା ନିମନ୍ତେ ଆମ୍ଭେ ଭିକ୍ଷାବାସୀ
ବିଷ୍ଣୁ ଆଶ୍ରିତେ ଅଟୁଁ ଆମ୍ଭେ ପବିତ୍ର ସୋମବଂଶୀ । ୧୪ ।
ଯାହାକୁ ଲଜ୍ୟେ କରିଅଛନ୍ତି ବାସୁଦେବ
କେ ଅବା ତାହାଙ୍କର ବଶ୍ୟ ଯେ ନୋହିବ । ୧୫ ।
ନେତ୍ର ଗାତ୍ର ଅଧର ବତିଶ ଲକ୍ଷଣ
ଧାର୍ମିକ ବିବେକ ସେ ପଣ୍ଡିତ ଧର୍ମପଣ । ୧୬ ।
ଲକ୍ଷଣବନ୍ତ ପୁରୁଷକୁ ନ ଛାଡଇ ଶିରୀ
ଭାର ନିବାରଣେ ସେ ପ୍ରତକ୍ଷେ ଅଛନ୍ତି ଅବତରି । ୧୭ ।
ଅନେକ ଗଉରବ ପାଇଲେ ସେହୁ ପୁରେ
ଭିକ୍ଷା ମାଗନ୍ତି ରାତ୍ର ପାହାନ୍ତି ପ୍ରହରେ । ୧୮ ।

---

୯।୨ ପରିମିଳନ୍ତି, ପରିଭ୍ରମନ୍ତି—ସବୁଠାରେ ପରିଭ୍ରମଣ କରନ୍ତି ।

ତେତଣେ ରାଜ ପ୍ରହରେ ଥାଇଂ ମାଗି
ନିତ୍ୟକର୍ମ ସାରି ଗୋପ୍ୟାନ ହୋଅନ୍ତି ସେ ବେଗି । ୧୯ ।
ଦିବସେ ପଶିଥାନ୍ତି ବନସ୍ତ ଭିତରେ
କୋଇନ୍ତାଏ ମାତ୍ର ଥାଆନ୍ତି ନିଜ ପୁରେ । ୨୦ ।
କନ୍ଦମୂଳ ପକ୍ୱଫଳ ବନେଣ ଗଣ୍ଡା ହରଣ ମାରି
ନିତ୍ୟକର୍ମ ଭୋଜନ ବେଳକ ଆସନ୍ତି ସାରି । ୨୧ ।
ରାତ୍ରେଣ ଭିକ୍ଷା ସେ ମାଗନ୍ତି ପଞ୍ଚ ଜନ
ଯିସ ତଣ୍ଡୁଳ ଉପୁଜଇ କୋଇନ୍ତାଏ କରନ୍ତି ରନ୍ଧନ । ୨୨ ।
ଅଧିକଇଂ କୋଇନ୍ତାଏ ଭୀମକୁ ଦିଅନ୍ତି
ଅଧେକ ମାତାଙ୍କୁ ଘେନ ପାଞ୍ଚେହେଂ ଭୁଞ୍ଜନ୍ତି । ୨୩ ।
ବଡାଇ କୁତୋହୋଲେ ବଞ୍ଚୁଛନ୍ତି ଦିନ
ଯୁଦ୍ଧେଷ୍ଟି ବୋଇଲେ ଯେତ୍ଥକୁ ନ ଅଣଇ ରାଜ୍ୟର ବିଧାନ । ୨୪ ।
ତୁଳ ବିଛା ଧନୁ ମକର କୁମ୍ଭ ମୀନ ମେଷ ବୃଷ
ଶିବପୁରେ ପାଣ୍ଡବେ ରହିଲେ ଅଷ୍ଟମାସ । ୨୫ ।
ସେ ଯାନ୍ତି ବୃହସ୍ପତି ବସିଲେ ମଘା ସିଂଘେ
ଗଉତମୀ ତୀର୍ଥେ ପଡଇ ସ୍ନାହାନ ପ୍ରୀତିଯୋଗେ । ୨୬ ।
ସିଂଘ ମାସ ଶୁକଳ ପକ୍ଷ ଦୁଖ୍ୟା ଦିନରେ
ସେ ଦିନ ବୃହସ୍ପତି ରହିଲେ ମଘା ସିଂଘରେ । ୨୭ ।
ଆକାଶୁଂ ଓହ୍ଲାଇଲେ ଯେ ପିତୃଲୋକମାନେ
ସମସ୍ତ ଦେବତାଏ ଯଜ୍ଞଏ ସେହୁ ସ୍ଥାନେ । ୨୮ ।
କୋଟିଏ ତୀର୍ଥ ଘେନ ତୀର୍ଥାଧି ପୁଷ୍କର
ତିନ ଦିବସ ରହିବେ ସେହୁ ସେ ତୀର୍ଥର । ୨୯ ।
ସେ ତିନ ଦିନର ମଧ୍ୟେ ଯେ ସ୍ନାହାନ କରନ୍ତି
ଜନ୍ମେକର ପାପ କ୍ଷୟେ ଯାଇ ପାଆନ୍ତି ଫଳଶ୍ରୁତି । ୩୦ ।
ଯେତେକା ଯାନ୍ତି ଯେ ତହିଂ ନଥାକୁ ବୁଡାଇ
ଜନ୍ମେକର ପାତେକ ସ୍ନାହାନ କଲେ ତହିଂ ନାହିଂ । ୩୧ ।

---

୨୬।୧ ପ୍ରୀତି ଯୋଗେ ସ୍ଥାନରେ, ପିତୃ ଯୋଗେ ପାଠ ଅଛି ।

ଲେଞ୍ଛ ଲୋକମାନ ଛୁଅଂନ୍ତ ଯେ ଗମ୍ୟେ ଅଗମ୍ୟେ
ମାନବ ଜନମାନଙ୍କୁ ଛୁଇଁଥାନ୍ତି ବଦ୍ୟମାନେ । ୩୨ ।
ଏମ୍ଭେ ପାତକମାନ ଯେ ସମସ୍ତ ରହିଥାଇ
ଅନ୍ୟ ଜଳେ ସ୍ନାନ କଲେ ଖଣ୍ଡଣ ନ ଯାଇ । ୩୩ ।
ସ୍ୱଜାତି ଯେବେ ରମନ୍ତି ଅନ୍ୟ ଜାତି ସ୍ତ୍ରୀ
ସେ ପାତକମାନେ ଯେ ଥାଆନ୍ତି ଆବୋରି । ୩୪ ।
ମହୋଦଧିରେ ସ୍ନାହାନ କରଇ ବୃହସ୍ପତି ଯୋଗେ ଯେବେ
ଏମ୍ଭେ ପାପ ଦୋଷମାନ ଗୁଚିଯାଇ ତେବେ । ୩୫ ।
ମହା କାର୍ତ୍ତିକ ପଡିଲେ ଚନ୍ଦ୍ରଭାଗା ତୀର୍ଥେ ଯେ କରଇ ସ୍ନାହାନ
ତେବେ ସେ ଗୁଚଇ ଏମ୍ଭେ ମହା ପାତକମାନ । ୩୬ ।
ସିଂହରେ ବୃହସ୍ପତି ବସନ୍ତି ଯେଉଂଣ ବେଳେ
ମଥା ବୁଡାଇ ଯେ ଗଙ୍ଗତମୀ ତୀର୍ଥ ଜଳେ । ୩୭ ।
ତହିଂ ଗୁଚଇ ଯେ ସମସ୍ତ ପାପ ଦୋଷମାନ
ତେବେ ସେ ପିତୃ ଲୋକେ ବସଇ ସ୍ୱର୍ଗେ ପାଆନ୍ତି ଉଦକମାନ । ୩୮ ।
ସିଂହ ଛାଡି ଗୁରୁ ଯେବେ ବସଇ କନ୍ୟାରେ
କନ୍ୟା ବୃହସ୍ପତି ତୀର୍ଥ ପଡଇ କୃଷ୍ଣ ବେଣୀରେ । ୩୯ ।
କୋଟିଏ ତୀର୍ଥ ଯେନ ତହିଂ ବଜେ କରଇ ପୁଷ୍କର
କୃଷ୍ଣବେଣୀ ସ୍ନାହାନ କଲେ ଦୋଷ ହୁଅଇ ଅପହାର । ୪୦ ।
ଉଷାଙ୍କୁରେ ସ୍ନାହାନ ଯେ କରଇ ମକର ମାସେ
ତହିଂରେ ଗୁଚଇ ସେ ଛୁଇଂଲା ପାତକ ଦୋଷେ । ୪୧ ।
ମଣି କର୍ଣ୍ଣିକାରେ ଯେ ସ୍ନାହାନ କରଇ ବେଳେ
ସମସ୍ତ ମହା ପାତକ ଗୁଚଇ ସେ ଜଳେ । ୪୨ ।
ପ୍ରୟାଗ ତ୍ରିବେଣୀରେ ବୁଡାଇ ବେଳେ ମଥା
ନାଶକର ଦଣ୍ଡେ ସେ ନ ପାଇବ ଅବସ୍ଥା । ୪୩ ।
ଏମ୍ଭେସନେକ ବାକ୍ୟ ଯେ ଉପୁଜିଲା ପୁରାଣେ
ତୀର୍ଥକୁ ସଜ ହୋଇଲେ ପାଣ୍ଡବ ପଞ୍ଚୁଜଣେ । ୪୪ ।
ବିଷ୍ଣୁକର ପଣ୍ଡା ଯେ ଅପୁତ୍ରିକ ହୋଇଥିଲା
ପାଣ୍ଡବଙ୍କ ପ୍ରସାଦେ ତାହା ଭାରିଯା ଆଶାବନ୍ତୀ ହୋଇଲା । ୪୫ ।

ମାଙ୍କମାସ ବ୍ରାହ୍ମଣୀ ଯତ୍ନଂ ହୋଇଲା ଗର୍ଭବାସ
ନଗ୍ରେ ଘୋଷଣା ପଡ଼ିଲା ବସ୍ତ୍ରୁକର ପଣ୍ଡାର ଗଲା ଅପୂର୍ବିକ ଦୋଷ ।୪୬।
ଯନ୍ତ୍ରୁ ପଣ୍ଡାପ୍ୟେ ଯେ ହୋଇଥିଲେ ବାହାର
ଗର୍ଭଗ୍ରେବ କରି ତାଙ୍କୁ ବଯାଇଲେ ସଞ୍ଚର । ୪୭ ।
ଜମ୍ବନ୍ତେ ବୋଇଲେ ମାତା ଗୋ ତୁମ୍ଭେ ଥାଅ ଯେତେ
ଗଉତମ ତୀର୍ଥକୁ ଆମ୍ଭେ ଯିବୁ ପଞ୍ଚୁ ଭ୍ରାଥେ । ୪୮ ।
କୋଇନ୍ତାପ୍ୟେ ବୋଇଲେ ନ ଯାଉ ଭୀମସେନ
ଦୁଯୋଧନ ଦେଖିଲେ ତହିଂ କରିବ ସାଂଗ୍ରାମ । ୪୯ ।
ବନସ୍ତେ ଅଛୁ ମ୍ୟେଁ ମହା ଦୁଃଖ ପାଇଂ
ସେ ଘାଗ ସଂହରଣ କରି ନୁଆରିବ ତହିଂ । ୫୦ ।
ଯୁଧିଷ୍ଠିର ବୋଇଲେ ବସ୍ତ୍ରୁକର ପଣ୍ଡାକୁ
ଆମ୍ଭେ ଗୃହ ଭାଇ ଯିବା ଗଉତମ ତୀର୍ଥକୁ । ୫୧ ।
ଜୟେବନ୍ତ ପଣ୍ଡା ମାପ୍ୟେ ଦୁହେଂ ଯେତ୍ଥି ଥିବେଟି
ଆମ୍ଭେ ଆସିବା ଯାପ୍ୟେ ସମ୍ଭାଳି ଥିବଟି ମାତା ଭାଇ ଦୁଇଗୋଟି । ୫୨ ।
ଶୁଣିଣ ପଣ୍ଡାପ୍ୟେ ହୋଇଲେ ଅଶାଅ ହରଷ
ଯେତେକ ଯନ୍ତ୍ର ଯୋଗାଡ଼ ଲଟଇ ମୁଂ ଭୁଲାଇବ ଗୃହ ମାସ । ୫୩ ।
ଭୋଜନେ ତୁଷ୍ଟ ଯେ ହେଉଥିବେ ନିତ
ତୁମ୍ଭର ପରସାଦେ ମୁଂ ଲଭିବ ପରମ ଗତି । ୫୪ ।
ଭୀମକୁ ତଆଣ୍ଟେଲେ ଧର୍ମର ତନୟେ
ଚଳନ୍ତ ଗୃହ ଭାଇ ଗଉତମୀ ତୀର୍ଥ ଯାପ୍ୟେ । ୫୫ ।
ବ୍ରାହ୍ମଣ ରୂପେଣ ସେ କରନ୍ତ ଗମନ
ତୀର୍ଥେ ପ୍ରବେଶ ହୋଅନ୍ତ ଅଣତିରିଶ ଦିନ । ୫୬ ।
କକଡ଼ା ଶୁକଳ ପକ୍ଷ ପୌର୍ଣ୍ଣମୀର ଦିନ
ମେ ବେକ ନଗ୍ରେ ସାଂଗ୍ରାମ କରନ୍ତ ଅନ୍ୟୋଅନ୍ୟ । ୫୭ ।
ସାଂଗ୍ରାମ ପାଞ୍ଚଦିନ ଥାଉଂ ନଗ୍ରେ ପଡ଼ିଲା ଘୋଷଣା
ଯେତ୍ହି ଭୂମି ବାରଦିନ ଯୁଝିଟି ସାଜ ହୋ ଧନୁ ଦ୍ରୋଣ । ୫୮ ।

---

୫୩।୧ ଅଶାଅ—ଅତ୍ୟନ୍ତ, ଅନେକ ହରଷ, (ପାଠାନ୍ତର) ।

ଘୋଷଣ ଶବଦ ଶୁଣି ଉଚ୍ଚବାଚେ
ରଥ ଗଜ ବାଜି ନାହିଂ ପାଦାନ୍ତ ଯୁଦ୍ଧ ସଞ୍ଚେ । ୫୯ ।
ସାଜନ୍ତ ସହସ୍ରନ୍ତ ମାଜନ୍ତ ଖଡ଼ଗମାନ
ଗର୍ଜନ୍ତ ତର୍ଜନ୍ତ ଦୁର୍ଜନ ବଧାନ । ୬୦ ।
ନି କଚ୍ଛ ବସନ ପିନ୍ଧନ୍ତ ମାଲ କାଚ୍ଛେ
ଲମ୍ବିତ ଜୁଡ଼ାନ୍ତ ଫେଡ଼ି ପାଡ଼ନ୍ତ ବେଣୀ ସୁସଞ୍ଚେ । ୬୧ ।
ହସ୍ତରେ ଯଷ୍ଟି ଯେ ଗଳାରେ ମନ୍ଦାରର ମାଳା
କେ ଇଠାର ଧୂଳି ଭୂଷଣ କେ ବିଭୂତି ଭୂଷଣ କଲା । ୬୨ ।
କର୍ଣ୍ଣରେ ଦୁଦୁରି କୁସୁମ ତାଳୁରେ ରଙ୍ଗ ଝୁମ୍ପା
ଭୀମସେନ ପଚ୍ଚରଇ ପଣ୍ଡା ହେ ତୁମ୍ଭର ଯେ୍ୟସନେକ ସରୂପ କମ୍ପା ।୬୩।
ବିଷ୍ଣୁକର ବୋଇଲେ ତୁମ୍ଭେ ଶୁଣିମା ଜପୁବନ୍ତେ
ଉପର ବଂଶେ ଆମ୍ଭର ପିତାର ପାଳକ ପ୍ରୋହିତେ । ୬୪ ।
ଯଶୋବନ୍ତୀ ନାମେଣ ତାହାଙ୍କର ବ୍ରାହ୍ମଣୀ
ଦୁଇପୁତ୍ର ଉପୁଜିଲ ମକରକେତନ ଜାଣି । ୬୫ ।
ଭାଗ୍ୟବର ବସୁବର ଦୁହିଂଙ୍କର ନାମ
ବେଦମନ୍ତ୍ର ବାକ୍ୟେ କେହି ନାହିଂ ତାଙ୍କୁ ସରିସମ । ୬୬ ।
ମକର ମାସେ ଯେ ଗଲେ ବଇତଣୀ ସ୍ନାହାନେ
ଯେ୍ୟକା ମହାତ୍ମା ଉଦ୍ଧାଳେକ ଚଳନ୍ତ ଘୋରବନେ । ୬୭ ।
ବିଷ୍ଣୁକୂଠ ବୋଲି ଯେ୍ୟକଇ ପରବତ
ସୁବଳକ ନାମେ ତହିଂ ଚଣ୍ଡାଳେକ ଥିତ । ୬୮ ।
ତାହାର ଦୁହିତା ନାମ ଅଟେ ହାଦେ ଶ୍ରୀପ୍ରୀ
ବନେ ଯେ୍ୟଠାଯେ୍ୟ ପ୍ରୋହିତଙ୍କୁ ଦେଖିଲି ଗୁଣ୍ଡାଳୁଣୀ ଶ୍ରୀପ୍ରୀ । ୬୯ ।
ଉଦ୍ଧାଳେକ ପ୍ରୋହିତଙ୍କୁ ଧଇଲିକ ବଳେ
ଶୃଙ୍ଗାର କରାଇଲି ସେ ପର୍ବତର ତଳେ । ୭୦ ।
ଗୁଣ୍ଡାଳୁଣୀ ଗର୍ଭେ ମୁନି ଗୁଡ଼ିଲେ ମହାରେତ
ସଇନ୍ଦୁ ପୁତ୍ରେକ ହୋଇଲିକ ଜାତ । ୭୧ ।
ଯେ୍ୟହି ମତ ସ୍ନାହାନେ ଯାନ୍ତ ନିତ
ବଳେଣ ଶୃଙ୍ଗାର ସେ କରଇ ଦୁରାପାତ । ୭୨ ।

ସେମନ୍ତେ ମାସକେ ଉପୁଜିଲେ ଦଶପୁତ୍ର
ଦୁଷ୍ଟ ଆଗ୍ରହରେ ସେ ଯେ ହୋଇଲେ ସାମରଥ । ୭୩ ।
ବ୍ରାହ୍ମଣେ ଉତପତ୍ତି ହୋଇଲା ଦଶ ସନ୍ତତି
ତରେଣ ବେନି ଭାଗ କଲେ ବ୍ରହ୍ମପତି । ୭୪ ।
ଓଡାଦି ଶିବନଗ୍ରେ ସେ ଗୃଣ୍ଡାଳଙ୍କ ବାସ
ବରଷକେ ବନ୍ଦ ହୋଏ ସେହି ଶ୍ରାବଣର ମାସ । ୭୫ ।
କାଲି ଯେ ସାଂଗ୍ରାମ ହୋଇବ ସେହି ନଗ୍ରେ
ତୁମ୍ଭେ ହେ ଯିବଟିକି କାଲି ଆମ୍ଭର ସାଙ୍ଗେ । ୭୬ ।
କୋଇନ୍ତାଏ ବୋଇଲେ ସେ ଦୁଷ୍ଟ ପୁତ୍ର ଯେ ବାପୁଡା
ସେହିକୁ ତୁମ୍ଭେ ଯେ ଉଦବେଗ ନ କର । ୭୭ ।
ଅଛି ନୃପ ବଳୁରି ବ୍ୟାଘ୍ର ଭୟଙ୍କର
ଶ୍ୱାନ ମୂର୍ଖ ଋକ୍ଷ ସିଂହ ମର୍କଟ ଆବର । ୭୮ ।
ମହାଖଳା ଦେବତା ଆବର ବୀର ଚଣ୍ଡ
ସେ ଦାନ୍ତ ଗୃଳିଲେ ଉପୁଜଇ ଅବଶ୍ୟ ବିଖଣ୍ଡ । ୭୯ ।
ବ୍ରାହ୍ମଣ ବୋଇଲେ ଗୋ ଶୁଣିମା ମହାମାୟି
ପୁରୁଷ ହୋଇ ସେ ନଗ୍ରେ ତ ରହି ନ ପାରଇ । ୮୦ ।
ଭୀମସେନ ବୋଇଲା ମା ଗୋ କଛିହିଂ ନ କହ
ସାଂଗ୍ରାମକୁ ଯିବାବେଳେ ମୋତେ ତୁମ୍ଭେ ଦିଅ । ୮୧ ।
ତରେଣ କୋଇନ୍ତାଏ ହୋଇଲେକ ତୁନି
ଆରବେଳେ ସମାସ୍ୟା ନ ବଦଲେ ଭୋଜର ନନ୍ଦିନୀ । ୮୨ ।
ଭୀମକୁ ଘେନଗଲେ ବିପ୍ରୁକର ଦ୍ୱିଜବର
ନେଇଣ ଉଭାକଲା ସେ ସଭାର ଉପର । ୮୩ ।
ବ୍ରାହ୍ମଣେ ଦେଖିଣ ମହାତେଜ ମୂର୍ତ୍ତି
ଚତୁଃସମ ଖୋରାସେ ଲେପନ କଲେ ଝାନ୍ତି । ୮୪ ।
ଶତେ ସରି ରତ୍ନମାଳା ନେଇ ଆଭରଣ କଲେ ହୃଦେ
ବୋଇଲେ ଆମ୍ଭେ ମୁକତ ହୋଇବା ତୁମ୍ଭର ପରସାଦେ । ୮୫ ।

---

୮୪ । ୨ ଚନ୍ଦନ, କସ୍ତୁରି, କୁଙ୍କୁମ, କର୍ପୂର ସମସ୍ତ ମାଟିର ପାତ୍ରରେ ରଖି ତାଙ୍କ ଅଙ୍ଗରେ ଲେପନ କଲେ । ଖୋରାସେ—ମାଟିର ସରାରେ ରଖି । କୋପରାସେ ପାଠ ଅଛି ।

ଦେବାଙ୍ଗ ବସନ ଯେ ନେତର ପଟନ
ଠାକୁର ସମାନେ ଆଭରଣ କଲେ ଆଣି । ୮୬ ।
ସେ ଶିବପୁର ନଗ୍ରେ ଓଡ୍ରାଦ୍ଧ ନଗ୍ରେ ରାଜା ନାହିଂ
ଘରେ ଘରେ ଠାକୁର ବୋଲବନ୍ତ ସେହି । ୮୭ ।
ଖ୍ରୀମକୁ ପୂଜା କଲେ ଅନେକ ଗଉଡ଼େବେ
ବରଣେ ଉଷତ ସେ ପ୍ରକୃତ ଦୁଷ୍ଟଭାବେ । ୮୮ ।
ଓଡ୍ରାଦ୍ଧ ନଗ୍ରୁଂ ବାହାର ହୋଇଲେ ଗୃଣ୍ଡାଳେ
ମାରଣ କରୁଅଛନ୍ତ ସେ ସର୍ବକାଳେ । ୮୯ ।
ଖାଙ୍କର କେଶ ଯେ ବଦନ ବିକଟ
ପ୍ରଳମ୍ବ ଶରୀର ଯେହ୍ନେ ଦିଶଇ ମୟୂରର କଣ୍ଠ । ୯୦ ।
ଧୂସୁରା ଧୂସୁରା ଯେ କାଛେଟୀ ବାଳପୁଞ୍ଜି
ରେ ରେ କାର କରି ବାହାନାଦେ ଗଳଗାଜି । ୯୧ ।
କୋନ୍ତ ଅସିବର ଛେଲ ଚକ୍ର ଯାଠି
ଗଦା ମୁଦୁଗର ଉଭାରନ୍ତ ଡାକନ୍ତ ହାଦେ ଉଠି । ୯୨ ।
ଧାଇଂଲେ ବ୍ରାହ୍ମଣେ ଯେ ଗୃଣ୍ଡାଳ ବଳ ଦେଖି
ପ୍ରହାରନ୍ତ ଶରସ୍ତ୍ର ଯେ ଧର୍ମନ୍ତ ଉପେକ୍ଷି । ୯୩ ।
ବ୍ରାହ୍ମଣଙ୍କୁ ଦେଖି ଧାଇଂଲେ ମହ୍ଲଳ ବଳ
ଶହସ୍ରେ ନର୍ଜିତା ସେ ମଦର ରସେ ଭୋଳ । ୯୪ ।
କଡ଼ା ମର୍ଦ୍ଦଳ ଯେ ଘୁମୁରା ଦାଉଂଣ୍ଡି
ରେ ରେ କାର ଶବଦ କରଣ ହୁଅନ୍ତ ପିଟାପିଟି । ୯୫ ।
କୁନ୍ତଳ ବୋବ ଦିଅନ୍ତ ଅଣ୍ଟାରେ ଲଇ ଖଣ୍ଡା
ଯଷ୍ଟି ନ୍ତ ବୁଲାଇ ଧାମନ୍ତ ପରଚଣ୍ଡା । ୯୬ ।
ମାର ମାର ବୋଲି ଉଠନ୍ତ ଗଳଗାଜି
ଶାସେଣ ବ୍ରାହ୍ମଣେ ଚଳାଇଲେ ଭାଞ୍ଜି । ୯୭ ।
ଗୋଡ଼ାଇ ପିଟନ୍ତ ଯେ କଗୃଡନ୍ତ ଧରି
ଉକଟେ ନଷ୍ଟ କଲେ ବ୍ରାହ୍ମଣଙ୍କୁ ମାରି । ୯୮ ।

---

୯୪।୨ ହୁଲହୁଳି ନାଦେ ଯେ ଖେମଟା ନାଟ ମଣ୍ଡି ।
୯୪।୧ ମହ୍ଲଳ—ମଲ୍ଲ ଆଳ

ସିନ୍ଦୂର ବିଲେପନ ଯେହ୍ନେ ଦିଗମ୍ବର ମହାକାଳେ
ସେହିମତେ ଦିଶନ୍ତି ମଣ୍ତାଳ ଗୃଣ୍ଡାଳେ । ୯୯ ।
ଅନେକ ଦ୍ୱିଜ ମାଇଲେ ବିକଟାଳ ଘୋର ରୂପେ
ଜୟେନ୍ଦ୍ରବନ୍ତ ଭୂମି ହୋଇ ବସିଅଛି ଗୋପେ । ୧୦୦ ।
ବିଷ୍ଣୁଙ୍କର ଭୁଜ ଧରିଅଛନ୍ତି ବାମ କରେ
ବିଷ୍ଣୁଙ୍କର ବୋଇଲେ ପଣ୍ଡା ହେ ପଳାଇ ଯିବା ଦୂରେ । ୧୦୧ ।
କଟାଳ ବେଳ ଯାଏଁ ରହି କସ ବା କରିବା
ବହୁତର ନିମନ୍ତେ କମ୍ପା ଆମ୍ଭେ ନାଶ ଯିବା । ୧୦୨ ।
ଚଣ୍ଡାଳଙ୍କ ହସ୍ତେ କି ପ୍ରାଣ ହରାଇବା । ୧୦୩ ।
ଜୟେନ୍ଦ୍ରବନ୍ତ ବୋଇଲେ ହୋ ସଂଗ୍ରାମକୁ ଅଇଲେ
କୃତାନ୍ତକ ଶାସ୍ତି ଦିଅଇ ଭାଜି ପଳାଇଲେ । ୧୦୪ ।
ଜିଣିଲେ ଉଚ୍ଛବ ଯେ ମଲେ ସ୍ୱର୍ଗ ଲଭି
କ୍ଷତ୍ରୀଙ୍କର ଧର୍ମ ହୋ ଦୁଲଭ ସୁଲଭି । ୧୦୫ ।
ଭୀମସେନ ବୋଇଲା ରହି ଥାଅ ପଣ୍ଡାଏ
ଆସନ୍ତୁ ଚଣ୍ଡାଳ ବଳ ଆମ୍ଭର କେତେ ଯାଏ । ୧୦୬ ।
ବିଷ୍ଣୁଙ୍କର ପଣ୍ଡାଏ ବୋଇଲେ ଆସେ ପ୍ରତି ବରଷ
ଆମ୍ଭେ ଭାଜି ପଳାଉ ସେ ସମସ୍ତ କରନ୍ତି ଧ୍ୱଂସ । ୧୦୭ ।
ଥୋକାଏ ମାରନ୍ତି ସେ ଥୋକାଏ ନଅନ୍ତି ଧରି
ଗୁଡ ଦିଅନ୍ତି ସେ ପୃଣ ସାତ ବେଣ୍ଟି କରି । ୧୦୮ ।
ନଗ୍ର ପୋଡଣ ଧନବସ୍ତ୍ର କରନ୍ତି ସେ କ୍ରୂର
ସୁନ୍ଦରୀ ବ୍ରାହ୍ମଣୀ ନେଇ ସେ କରନ୍ତି ଯେ ଘର । ୧୦୯ ।
ଯେହିମତେ ହୋଇ ଯାଉଛି ସର୍ବକାଳେ
ତାହାଙ୍କୁ ସମସରି ନୋହୁଂ ଆମ୍ଭେ କେଉଂଣିସି ବେଳେ । ୧୧୦ ।
ଜୟେନ୍ଦ୍ରବନ୍ତ ବୋଇଲା ପଣ୍ଡାଏ ଥିର ହୋଇ ରହ
ମୋ ଦେହ କମ୍ପୁଅଛି ଯେମନ୍ତ ନ କୁହ । ୧୧୧ ।
ଯହୁଂ କଟାଳଲେ ଗୃଣ୍ଡାଳ ବଳମାନ
ବିଷ୍ଣୁଙ୍କର ପଣ୍ଡା ଦଣ୍ଡିନ କରଇ ଜୟେନ୍ଦ୍ରବନ୍ତେଣ । ୧୧୨ ।
ଗୃଲ କି ନା ପଳାଇ ଯିବା ଗୋସାଇଂ
ତୁହି ଆପଣେ ନାଶ ଯିବୁ କାହାର ପାଇଂ । ୧୧୩ ।

ଭାଇମାନେ ତୋହୋର ମୋତେ ସମର୍ପିଣ ଗଲେ
ମାତା ମାହାମ୍ବାଣୀ ଆମ୍ଭୁଂ ନରୋଧ ଯେ କଲେ । ୧୧୪ ।
ଭୀମସେନ ବୋଇଲା ତୁମ୍ଭେ ଥାଅ ଥିର ହୋଇ
ଯେତ୍ସୁହଷଣୀ ମାରିବ ଯିବେ ଆର କାହିଂ । ୧୧୫ ।
ବସ୍ତୁକର ବଚ୍ୟରଇ ଜାଣିଲ ଯେହାର ମନ
ଦୁମୋଣ୍ଠା ଶରୀର ଯେହାର ଯେ ପର୍ବତ ସମାନ । ୧୧୬ ।
ଉଦରେ କେହି ନ ଆସିବେ ଯେହାର କତକ
ମୋତେ ଫେଲ ପକାଇବ କଷ୍ଟାଳ ଯହୁଂ ଦେଖି । ୧୧୭ ।
ମୋତେ ମାରିବେ ସେ ଯେ ପଳାଇଣ ଯିବ
ମୋହୋର ଗୃହ ବାସ ଯେ ମାଣ୍ଡଣ ବସିବ । ୧୧୮ ।
ସଞ୍ଚୟେ ବଚ୍ଚର ଯେ କଲା ପାପ ମନ
ଜଳତୁଣ୍ଡିର ତୁଲେ ମୁଂ ହୋଇଲା ପ୍ରୀତିମାନ । ୧୧୯ ।
ଦନ୍ତେଣ ତରଣ ଧେନ ସେ କରଇ ଦପ୍ଲନ
ଗୁଡ଼ୁ କନା ଗୋସାଣ୍ଡଂ ମୋହୋର ଭୁଜ ବେନ । ୧୨୦ ।
ଯେତେ ବଚ୍ୟରନ୍ତେ କଷ୍ଟାଳ କଲେ ଆସି
ଅନେକ ନାରାଜ ଯେ ସମରେ ବରଷି । ୧୨୧ ।
ସହସ୍ରେ ବ୍ରାହ୍ମଣ ଯହୁଂ ପଡଲେ ନମନ୍ତି
ରାଗେଣ ଭୀମସେନ ଉଠିଲା ଗଳଗାଜ । ୧୨୨ ।
ଯେସନେକେ ବରଷା କାଳେ ଧଣଇ ବଂଝଗିରି
ରାଗେ ବୃକୋଦର ବେନି ବୃକ୍ଷ ଯେ ଉପାଡି । ୧୨୩ ।
ତମ୍ଭାଚନ୍ଦ୍ର ପ୍ରାୟେ ଧଣଇ ବେନି ଡୋଳା
ଗର୍ଜିଣ ମାରୁତି ଯେ ଉଠିଲା କୋପାନଳ । ୧୨୪ ।
ବ୍ରହ୍ମାଣ୍ଡ କମ୍ପିଲା ଯେ ଭୀମର ପାଦ ଘାତେ
ତରସ୍ତ ହୋଇଣ ରହିଲେ ଦୁରପାତେ । ୧୨୫ ।
ବୃକ୍ଷ ବୁଲାଇଣ ପିଟିଲା ପାବନ
ଭାଜ ପଳାଇଲେ ଚଣ୍ଡାଳ ବଳ ସଇନ । ୧୨୬ ।

---

୧୧୯।୧ ଜଳତୁଣ୍ଡି—ଜଳପ୍ରଭ—କୁମ୍ଭୀର

ଗୋଡ଼ାଇ ମାଇଲା ତାଙ୍କୁ ବୀର ଭୀମସେନ
ମାରି ଲେଟାଇଲା ଯେ ପଞ୍ଚବଂଶ ଯୋଜନ । ୧୨୭ ।
ମହାବାତେ ଯେସନେ କମ୍ପାଇ କଦଳୀ ବନ
ପାଦ ଘାତେ ଉଠିଲା ରକ୍ତ ମାଂସ କର୍ଦ୍ଦମ । ୧୨୮ ।
ପିଟଇ ବୃକୋଦର ବଜ୍ରର ଖଡ଼ଘାତେ
ନଗ୍ନ ମୁଣ୍ଡ ପଳାଇଲେ ପଞ୍ଚବଂଶ ଯୋଜନ ପର୍ଯ୍ୟନ୍ତେ । ୧୨୯ ।
କାହାକୁ ମୁଥେ କାହାକୁ ଗୃପୃଷ୍ଠେ ପ୍ରହାର କରି
କେ ମୁଥ ଘାତେ ପଡ଼ନ୍ତି ବସୁନ୍ଧରୀ । ୧୩୦ ।
ଜନ୍ମକାଳେ ଯାହାର ପଡ଼ନ୍ତେ ଭାଙ୍ଗିଲା ଶତଶିଂଗ ଗିରି
ମାନବ ମାତ୍ରକେ କେହୁ ଅଛି ତାକୁ ସମସରି । ୧୩୧ ।
ଦଣ୍ଡ ଭଗ୍ନ ଦେଖିଣ ଧାଇଂଲେ ବ୍ରାହ୍ମଣେ
ଗୋଡ଼ାଇ ମାଇଲେ ଯେ ନ ଥୋଇଲେ ଜଣେ । ୧୩୨ ।
ସମସ୍ତ ନାଶ କଲେ ସ୍ତ୍ରୀଶିଶୁବୃଦ୍ଧ ଆଦି କରି
ଅନେକ ଧନ ଦ୍ରବ୍ୟ ଆଣିଲେ ଜୁରି କରି । ୧୩୩ ।
ସାମାନ୍ୟ ପୁଅନ୍ତି କଗୃଡ଼ଲେ ଦ୍ୱିଜବରେ
ନିକଳଙ୍କ କଲେ ସେ ଓଡ଼ାଦ୍ୟ ନଗ୍ରପୁରେ । ୧୩୪ ।
ଶିବପୁର ଆସ୍ଥାନେ ବସିଲେ ଗନ୍ଧମାର୍ଦ୍ଦନ ନଦୀକୂଳେ
ମହାମେଳ ହୋଇଲେ ଅନନ୍ତ ବଟର ତଳେ । ୧୩୫ ।
ଦନ୍ତେ ତୃଣ ଧରି ଶରଣ ପଶନ୍ତି ଦ୍ୱିଜବରେ
ଖାହି ଖାହି ବୋଲି ପଡ଼ଲେ ସମସ୍ତେ ଭୀମସେନ ପାଦରେ । ୧୩୬ ।
ଅନେକ କାଳର ଯେ ଅଟନ୍ତି ମହାମଲ୍ଲ
ବ୍ରାହ୍ମଣନ୍ତ ଉଦ୍ଧରିଲୁ ଧଂସିଲୁ ଚଣ୍ଡାଳଙ୍କ ବଳ । ୧୩୭ ।
ବ୍ରାହ୍ମଣ ଚଣ୍ଡାଳେ ହୋଇଥାଉ ଯେ ଏକ ଗୋଳ
ପ୍ରତିଦିନ ଗୋଳ ଯେ କରନ୍ତି ମତୁଆଳ । ୧୩୮ ।
ଆମ୍ଭନ୍ତ ରକ୍ଷାକଲୁ ଦୁଷ୍ଟ ଜନନ୍ତ ବିନାଶି
ଯେ ରାଜ୍ୟ ସ୍ୱାମୀ ତୁ ଅଭିଷେକ ହୁଅସି । ୧୩୯ ।

---

୧୩୦।୨ କେ ହାବୁଡ଼ା ଘାତେ ପଡ଼ଇ ବସୁନ୍ଧରୀ ।

ଆମ୍ଭର ରାଜ୍ୟେ ସ୍ୱାମୀ ନଷ୍ଟଯେୁ ତୋତେ ପାଟ
ଯେୁ ବେନ ରାଜ୍ୟ ମାଡ଼ ତୁ ହୋଇବୁ ମୁରାଟ । ୧୪୦ ।
ଯେୁ ଗନ୍ଧମାର୍ଦ୍ଦନ ନଗ୍ର ଅଟଇ ପରସିଦ୍ଧି
ଯେ ଅନନ୍ତ ବୈକୁଣ୍ଠରୁ ଅଚ୍ଛି ଯେହ୍ନେ ଭେଦି । ୧୪୧ ।
ସମସ୍ତ ବ୍ରାହ୍ମଣେ ବେଦ ଆଧ୍ୟାନ ଯେ କଲେ
ମୃଦ୍ଧୂନା ଅଭିଷେକ କରି ମଥାରେ ପାଟ ଯେ ବାନ୍ଧିଲେ । ୧୪୨ ।
ଉଡାଦ୍ଧ ଶିବପୁର ନଗ୍ର ଅଧିକାରୀ
ଅମନାତ୍ୟ ପଣେ ବିଷ୍ଣୁ ପଣ୍ଡାଙ୍କୁ ଦିଲେ ଶାଢ଼ୀ । ୧୪୩ ।
ଜଯେୁବନ୍ତ ନାମେ ନୃପତି କାଲେବର
ରାଜ୍ୟ ବଧି ନଯୋଗ ମଡଫୁଲ ସୂପକାର । ୧୪୪ ।
ପାତ୍ର ଅମନାତ୍ୟ ମହାପାତ୍ର ସାମନ୍ତ ଯେ ଜେନା
ପଦ ପଦ କରି ଶାଢ଼ୀ ଦିଲେ ଭୀମସେନା । ୧୪୫ ।
ଆବାହନ ବିସର୍ଜନ ବିଷ୍ଣୁ କରି ପଣ୍ଡା ମହାପାତ୍ରେ
ନଗ୍ରେକ ଭୁଆଇଲେ ଲଟିଣ ସମସ୍ତେ । ୧୪୬ ।
ନବର ପଖାଛ ବିଷ୍ଣୁ କରି ପଣ୍ଡାର ଘର
କୋଇଲ୍ଲାଯେୁ ରହିଛନ୍ତି ସେହି ଉଆସର । ୧୪୭ ।
ସହସ୍ରେ ସୂପକାର ରାନ୍ଧନ୍ତି ମଡଫୁଲ
ବିଚାରଇ ଭୀମସେନ ଯେୁ ଧାନ୍ତ ସୁସ୍ତ ମୁଂ ପାଇଲ । ୧୪୮ ।
ବନ ନରମାନଙ୍କୁ ସେ ଖେଦଇ ଚଉକତି
ଆଣଇ ଧନ ଭଣ୍ଡାର ରଥ ହଯେୁ ହସ୍ତୀ । ୧୪୯ ।
କକଡା ସିଂଘ କନ୍ୟ ତୁଲ ବିଚ୍ଛୁ
ସମ୍ଭରେଣ ରାଜ୍ୟ ହୋଇଲା ସୁରକ୍ଷା । ୧୫୦ ।
ବେଣ୍ଟେ ଯାଇଂ ଆଣଇ ଗଜ ଅଶ୍ୱ ଧରି
ଶାର୍ଦ୍ଦୋଳ ଓଟ ବ୍ୟାଘ୍ର ଗଣ୍ଡା ଗୟୂଳ ମୃଗାରି । ୧୫୧ ।
ନିଶାଣ ଟମକ ଯେ ବୀର ତୂର ବାଜି
ପଞ୍ଚ କ୍ଷେଉଣୀ ବଳ ସମ୍ଭର କରିଣ ଯେ ସାଜି । ୧୫୨ ।
ଅନେକ ସାଧିଲା ବନ ନଗ୍ର ଖଣ୍ଡ
ଆସ୍ତାନେ ଖଟିଲେ ଶତେ ପାତ୍ରଦଣ୍ଡ । ୧୫୩ ।

ଅନେକ ବ୍ରାହ୍ମଣ ଯେ କରନ୍ତି ପାଦ ପୂଜା
ବନ ନଗ୍ର ଦେଶେ କାଳେବର ମହାରାଜା । ୧୫୪ ।
ମହା ସମ୍ବନ୍ଧ କରି ସେ ସାଜଇ ସଇନ୍ୟ
ବୋଇଲା ହସ୍ତିନାକୁ ବାହିବ ମୋର ନିଜ ବଳ ଘେନି । ୧୫୫-୮୭୮୨ ।



## ବିଷ୍ଣୁକର ପଣ୍ଡାଙ୍କର ଶିବପୁର ରାଜ୍ୟ ଲାଭ

ଏଥୁ ଅନନ୍ତରେ ଶୁଣ ମନୁ ମହାଶୟେ
ଶ୍ରୀ ମହାଭାରଥ ଶୁଣି ପାପ କର କ୍ଷୟେ । ୧ ।
ଗଉତମ ତୀର୍ଥ କଲେ ପଣ୍ଡୁର ନନ୍ଦନମାନେ
ସାନେଣ ଚଳନ୍ତି ଦିବସେ ରହନ୍ତି ବନେ । ୨ ।
ଗଉତମୀ ସିଂହ ଶୁକଳ ଅଷ୍ଟମୀର ଦିନ
ରାହ ପ୍ରହରେ ଆଉଂ ମିଳିଲେ ତୀର୍ଥସ୍ଥାନ । ୩ ।
ରାଜାମାନେ ବିଜେ କରି ଅଛନ୍ତି ସମସ୍ତେ
ଜାରି ନାରକା କାଳଯବନ ସହିତେ । ୪ ।
ବାଣା ବଜ୍ରନାଭ ଯେ ସୟମ୍ବର ସହିତେ
କାଶୀଶ୍ୱର ରାଜା ଯେ ନର୍ଦ୍ଦର ଗଣପତ୍ୟେ । ୫ ।
ମାଳବ ବିରାଟ ସଂକୋଚନ ମାଧବ ବାହ୍ଲିକ ଭଇରୋବ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ସମସ୍ତ କଉରୋବ । ୬ ।
ନିଶିକାଳେ ରାଜାନ୍ତ ସମସ୍ତଙ୍କୁ ଦେଖିଲେ
ରାହ ଆଉଂ ସ୍ନାହାନ ପିଣ୍ଡ ଦାନ ଦିଲେ । ୭ ।
ପଞ୍ଚ ଦିବସ ତହିଂ ରହିଲେ ପଞ୍ଚରାତ୍ର
ସ୍ନାହାନ ତର୍ପଣ ଯେ କରନ୍ତି ପାହାନ୍ତି । ୮ ।
ଦିବସେଣ ଥାଆନ୍ତି ଗହନ ବିପୁନ୍ୟେ
ଅନେକ ପିଣ୍ଡ ଦାନ ଦିଅନ୍ତି ରାଜାଗଣମାନେ । ୯ ।

---

୨।୧ ବିପୁନ୍ୟେ—ବିପିନେ, ବନ ମଧ୍ୟରେ ।

ବଦଯ଼ନ୍ତ ଅଗସ୍ତି ଶୁଣ ଯୁଗପତି
ଭୂରସବାଙ୍କୁ ଯେଉଁକାଳେ ପୁଚ୍ଛନ୍ତ ଦ୍ରୋପଦ ନୃପତି । ୧୦ ।
ଶୁଣ ସାବଧାନେ ପାର୍ଥିବ ନୃପତିର ସୁତ
ପାଣ୍ଡବଙ୍କୁ ମୁହିଂ ଯେ ଖୋଜିଲି ବହୁତ । ୧୧ ।
ଖୋଜି ନ ପାରିଲି ଦେବ ପଣ୍ଡୁର ନନ୍ଦନ
ପାଣ୍ଡବେ କାହିଂଛନ୍ତ କହ ସରୂପ ବଚନ । ୧୨ ।
ଶୁଣିଣ ବୋଲନ୍ତ ଯେ ନୃପତିକୁଳ ସୁତେ
ଯାହା ପଚାରିଲୁ ରାଜା ଶୁଣସି ଦ୍ରୋପଦେ । ୧୩ ।
ଭୀମ ଦୁଯୋଧନ ଯେ ହୋଇଲେ ଅଭାବ
ଧୃତରାଷ୍ଟ୍ର ପାଣ୍ଡବଙ୍କୁ ଦିଲ୍ଲି ବାରୁଣାବନ୍ତେ ଠାବ । ୧୪ ।
ବାରୁଣାବନ୍ତେ ଯେ ଜଦୁର ଘରେ ଥିଲେ
ପାଞ୍ଚଭାଇ ମାତାସହ ଦହନ ହୋଇଲେ । ୧୫ ।
ପାଣ୍ଡବଙ୍କର ମରିବାର ଚଉଦ ବରଷ ହୋଇଲା
ଶୁଣି ଦ୍ରୋପଦେଶ୍ୱର ଆଶ୍ରିଜ ହୋଇଲା । ୧୬ ।
ଭୂରସବା ମୁଖରୁ ନିଷ୍ଠୁର ବାକ୍ୟ ଶୁଣି
ବହୁତ ବିସରିଲା ପଞ୍ଚାଳ ନୃପମଣି । ୧୭ ।
ବିଚାରି ବୋଇଲେ ହୋଇଲା କର୍ମ ଯେମନ୍ତ
ଈଶ୍ୱରଙ୍କର ବର ଦେବାର ତ ନୋହିଲା ପରାପତ । ୧୮ ।
ଯେତେ ବିଚାରି ଦ୍ରୋପଦ ନୃପମଣି
ବହୁତ ବିସରିଲା ଅର୍ଜୁନର ନାମ ଗୁଣି । ୧୯ । .
ଯେବେ ରାଜା ମାନନ୍ତ ମୁଂ କରିବି ବରଣ
ଈଶ୍ୱରଙ୍କର ସଞ୍ଚିଲାର ତ ହୋଇଲା ଅକାରଣ । ୨୦ ।
ଯେତେ ବୋଲି ବାଦ୍ୟରେ ଦ୍ରୋପଦ ନୃପବର
ଅର୍ଘ୍ୟ ଯୋଗାଡ ଗୋଟିଏ ଘେନିଲା ହସ୍ତର । ୨୧ ।
ଗୃହ ଉଣା ଲକ୍ଷେ ରାଜା ଅଛନ୍ତ ସମସ୍ତ
ଶ୍ରୀହସ୍ତେ ଅକ୍ଷତ ଶ୍ରୀଫଳ ଘେନିଣ ଦ୍ରୋପଦ । ୨୨ ।
ସମ୍ମୁଖରେ ଆସ୍ଥାନ ଚଳେ ପ୍ରଣିପତ୍ୟ କରଇ
କରପଦ ଯୋଡି ଦ୍ରୋପଦ କାର୍ପୂର୍ଣ୍ଣେ ପଚାରଇ । ୨୩ ।

ସାବଧାନ ହୋଇ ଶୁଣିମା ସକଳ ରାଯ୍ୟେ
ମୋହୋର ଅଛୁ ଦେବ ଦୋହିତା ଗୋଟିଏ । ୨୪ ।
ମହା ଯାଗରୁ ଜାତ ହୋଇଲା ଜଗ୍ନସେଣୀ
ଦ୍ରୋପଦୀ ସଯ୍ୟେମ୍ବର କରିବ ରାଜାମାନନ୍ତ ଘେନି । ୨୫ ।
ଅପୂର୍ବ ଲକ୍ଷେକ ମୁଂ କରିବ ନିର୍ମିତ
ତାହା ଯେ ବିନ୍ଧିବ ପ୍ରଦାନ ହୋଇବ ମୋହୋର ଦୋହିତ । ୨୬ ।
ମକର ଶୁକଳ ଦୁତିଯ୍ୟାର ଦିନ
ପ୍ରବେଶ ହୋଇବ ଯାଇ ମୋହୋର ଭୂବନ । ୨୭ ।
ଅକ୍ଷତ ଦେଇଂଣ ମୁଂ ସମସ୍ତଙ୍କୁ ବରି
ସରୂପ ଆରମ୍ଭ୍ୟାଂ ମୋତେ ଦେବାକ ନିରଧାରି । ୨୮ ।
ରାଜାଯ୍ୟେ ବୋଇଲେ ଯ୍ୟେ ଅଟଇ ମହାତୀର୍ଥ
ସମସ୍ତ ରାଜାଯ୍ୟେ ଆମ୍ଭେ ଧର୍ମ ନିମନ୍ତେ ଅଇଲୁ ଯ୍ୟେଥ । ୨୯ ।
ଯ୍ୟେଥେଂ ସତ୍ୟ କରି ଯେବେ ସଭାକୁ ନ ଯିବୁ
ଯେ ଅବା ନ ଯିବ ତାକୁ ଅବରିଣି କରିବୁ । ୩୦ ।
ଯ୍ୟେ କଥା ଆମ୍ଭର ଅଲଙ୍ଘିତ ନିଯ୍ୟମ
ଯ୍ୟେହା ଯେ ନ କରଇ ସେ ନ ପାଇ ତୀର୍ଥ କଲା ଧର୍ମ । ୩୧ ।
ନିମନ୍ତ୍ରଣ ବରଣକୁ ଗଲେ ଧର୍ମ ଅଛୁ
ନ ଗଲେ ଅଧର୍ମ ଆମ୍ଭେ ସମସ୍ତେ କରି ବାଛୁ । ୩୨ ।
ରାଜାମାନନ୍ତ ନିମନ୍ତ୍ରଣ କରି ଦ୍ରୋପଦେଶ୍ୱର ରାଯ୍ୟେ
ପଞ୍ଚାଳ ଦେଶକୁ ସମଦଣ୍ଡ ଘେନିଣ ରାଯ୍ୟେ ଯାଯ୍ୟେ । ୩୩ ।
ବ୍ୟାସଙ୍କୁ ଦେଖିଲେ ଗଙ୍ଗତମୀ ତୀର୍ଥ କୂଳେ
କରପଦ ଯୋଡ଼ିଣ ପୁଚ୍ଛା କଲା ମହୀପାଳେ । ୩୪ ।
ହେ ବ୍ୟାସେ ଦ୍ରୋପଦୀକି ଜାତ କଲି ଅର୍ଜୁନ ନିମନ୍ତେ
ପାଣ୍ଡବେ କାହିଂଛନ୍ତି କହିବା ମୁନି ମୋତେ । ୩୫ ।
ମୁହିଂ ପୁଚ୍ଛା କଲି ଆଦେ ଭୂରି ଯେ ସର୍ବାଙ୍କୁ
ସମସ୍ତେ ଅଛ ତ ନ ଦେଖିଲ ପାଣ୍ଡବଙ୍କୁ । ୩୬ ।
ଭୂରିସର୍ବାଯ୍ୟେ ବୋଇଲେ ପାଣ୍ଡବେ ବାରୁଣାବନ୍ତେ ଥିଲେ
ଜତୁର ଘର ଦହନେ ସମସ୍ତେ ନାଶ ଗଲେ । ୩୭ ।

ଚଉଦ ବରଷ ହୋଇଲାନ ପାଣ୍ଡବଙ୍କର ମଲ
ଦ୍ୱେ ବ୍ୟାସେ ମୋତେ ଯେମନ୍ତ ବୋଲ ଭୂରସବା କହିଲ । ୩୮ ।
ବ୍ୟାସେ ବୋଇଲେ ହୋ ଶୁଣିଲୁ ଯେମନ୍ତ
ଦ୍ରୋପଞ୍ଚକ ଯେବେ ତୁ କରିବୁ କେମନ୍ତ । ୩୯ ।
ବ୍ୟାସେ ବୋଇଲେ ତୁ ଯେବେ ସମ୍ବର କର
ଆମ୍ଭେ ଲଖେଇ ପାଣ୍ଡବୁ ତୋହୋର ସଭର । ୪୦ ।
ଦ୍ରୋପଦ ବୋଇଲେ ରାଜାମାନଙ୍କୁ ନିମନ୍ତ୍ରଣ କଲି ମୁହିଂ
ମାଘର ପ୍ରଥମ ପକ୍ଷେ ଯିବଟି ତୁମ୍ଭେ ସମସ୍ତହିଂ । ୪୧ ।
ତୁମ୍ଭେ ଥାଇଣ ଭିଆଇବ ସମସ୍ତ
ତୁମ୍ଭେହେଂ ପ୍ରଦାନ କରିବ ତୁମ୍ଭେ କରିଅଛ ଜାତ । ୪୨ ।
ସମଦଣ୍ଡ ଘେନିଣ ବାହୁଡ଼ଇ ଦ୍ରୋପଦ
ତାହାର ପଛେ ଚଳନ୍ତ ପାଣ୍ଡବ ଗୃହଭ୍ରାଥ । ୪୩ ।
ଦ୍ରୋପଦ ଚଳିଲେକ ନିଜର ଭୁବନେ
ଯେ ଯାହାର ଦେଶକୁ ଗଲେ ରାଜାମାନେ । ୪୪ ।
ପାଣ୍ଡବେ ଚଳଲେ ଯେ ଓଡ଼ାଦି ଶିବପୁରେ
ଦେଖିଲେ ସେ ରାଜ୍ୟ ହୋଇଅଛି ମହା ଯେ ସମ୍ପରେ । ୪୫ ।
ରଥଗଜ ଅଶ୍ୱ ସଇନ ପାଦାନ୍ତ
କେବଣ ରାଜା ଅବା ମାଡ଼ ବସିଲେକ ଯେଥି । ୪୬ ।
ଯେତେକ ବର୍ଗୁରଣ ଯେ ରହିଲେ ବନବାସେ
ରାଜ୍ୟ ଭିତରକୁ ନ ପଶିଲେ ଦିବସେ । ୪୭ ।
କଟକ ଭିତରେ ପଶିଲେ ନିଶାରାତ୍ର
ଶୂନ୍ୟ ମନ୍ଦିରେ ଦେଖିଲେ ଯେବା ଅଛନ୍ତ କୋଇନ୍ତୀ । ୪୮ ।
ସଙ୍କୋଚରେଣ ପାଣ୍ଡବେ ନ ପଶିଲେ ଭିତରେ
ଜୟେବନ୍ତ ଜୟେବନ୍ତ ବୋଲ ଡାକନ୍ତ ଦୁଆରେ । ୪୯ ।
ଭିତରେ ଥାଇଂ ଦେବୀ ବାରଲେ ଯୁଧିଷ୍ଠିରଙ୍କ ତୁଣ୍ଡ
ବାହାର ହୋଇଲେ ଦେବୀ କରେଣ ଜଳଭାଣ୍ଡ । ୫୦ ।
ମାତାଙ୍କର ଚରଣେ ପ୍ରଣପତ୍ୟ ଗୃହଭାଇ
ଯୁଧିଷ୍ଠିର ପୁଚ୍ଛା କଲେ ମାଗୋ ଭୀମସେନ ଅଛି କାହିଂ । ୫୧ ।

୩୮।୧ ଭୂରସବା—ଭୂରଶ୍ରବା

ମାତାଏ ବୋଇଲେ ବାବୁ ଆସ ଭିତରକୁ
ସୁସ୍ଥ ହୋଇ ବସ କି ନା ମୁଂ କହିଇ ତୁମ୍ଭଙ୍କୁ । ୫୨ ।
ସ୍ନାହାନ ଶୁଚିବନ୍ତ ହୋଇ ପଶିଲେ ଭିତରେ
ଅନ୍ନ ପୁଞ୍ଜାଏ ମାଏ ଦିଲେ ଦିବ୍ୟସାରେ । ୫୩ ।
ଭୋଜନ ସାରଣ ସେ ଆଞ୍ଚୋବନ କଲେ
ସୁସ୍ଥ ହୋଇ ବସିଲେ କୋଇନ୍ତାଏ କହିଲେ । ୫୪ ।
ତୁମ୍ଭେ ଢେଣେ ଗଲ ବାବୁ ଗଉତମ ତୀର୍ଥେ
କକଡ଼ା ପୌର୍ଣ୍ଣମୀ ଦିନ ଯୁଦ୍ଧ ହୋଇଲାକ ଯେଥେ । ୫୫ ।
ବିଷ୍ଟୁକର ପଣ୍ଡା ଯେ ଭୀମକୁ ଘେନି ଗଲା
ଓଡ଼ାଦି ଶିବପୁରେ ଭୀମ ଚଣ୍ଡାଳ ସବୁନ୍ତ ମାଇଲା । ୫୬ ।
ଶିବପୁର ବ୍ରାହ୍ମଣେ ଅବଧାରି କଲେ
ଯେ ବେନି ନଗ୍ରେ ଭୀମସେନକୁ ଅଭିଷେକ କରାଇଲେ । ୫୭ ।
ବିଷ୍ଟୁକର ପଣ୍ଡାଏ ରାଜ୍ୟରେ ମହାମନ୍ତ୍ରୀ
ପ୍ରତାପ୍ୟାଂ ବହିଲା ଭୀମ କାଳେବର ଚକ୍ରବର୍ତ୍ତୀ । ୫୮ ।
ଅନେକ ବନ ନଗ୍ର ମାରି ଘେନଣ ଅଇଲା
ରଥ ଗଜ ଅଶ୍ୱ ପାଞ୍ଚ କ୍ଷେଉଣୀ ବଳ କଲା । ୫୯ ।
ଯୁଧିଷ୍ଠି ବୋଇଲେ ଆମ୍ଭେ ଗଲୁ ଯେ ବୃଷଭ
ମିଥୁନ କକଡ଼ା ସିଂହ କନ୍ୟା ତୁଳ ମାସ ଛ ହୋଇବ । ୬୦ ।
ଭୀମ ଭିଆଇଲା ଯେସନେକ ଚରିତ
ଦୁର୍ଯୋଧନ ତୁଲେ କରନ୍ତା ଦ୍ୱନ୍ଦ ଯାଇଥିଲେ ତୀର୍ଥ । ୬୧ ।
ତୁମ୍ଭେ ଯେ ଯେଥେଂ ଗୋ ଯେକା ରହିଅଛ ମାତା
ତୁମ୍ଭନ୍ତ ନ କଲା ସେ ଦୟାଭାବ ଚିନ୍ତା । ୬୨ ।
କୋଇନ୍ତାଏ ବୋଇଲେ କଉଂ ଲକ୍ଷଣେ ଜାତ କଲ ତାହାକୁ
ଶତ୍ରୁ ପ୍ରାଏ କରି ବୁଝିଥାଇ ମୁକୁ । ୬୩ ।
ଯୁଧିଷ୍ଠି ବୋଇଲେ ମାତା ଗୋ କେମନ୍ତ କରିବା
ଦ୍ୱାରେଣ ଯାଇ ଗୋ ବାରତା କରାଇବା । ୬୪ ।
ପୋଅନ୍ତ ଘେନଣ କୋନ୍ତ ଭୋଜରି କୁମାରୀ
ଦ୍ୱାର ନାୟକକୁ କଲାଣ ଅବଧାରି । ୬୫ ।

୬୦।୧ ବୃଷଭ—ବୃଷ ମାସ ।

ବାବୁ ଆମ୍ଭେ ତୀର୍ଥବାସୀ ବ୍ରାହ୍ମଣ ଜଣ ଚାର
ଆମ୍ଭଙ୍କୁ ଦର୍ଶନ କରାଇ ପାରବକ ପଡିଆରୀ । ୬୬ ।
ଦ୍ୱାର ନାୟକ ବୋଇଲା ଯେ ଦଣ୍ଡେ ରହିଥିବା
ଦେବାର୍ଚ୍ଚନ ବେଳେ ନେଇ ତୁମ୍ଭଙ୍କୁ ଦର୍ଶନ କରାଇବା । ୬୭ ।
ଯେତେ ବୋଲି ଚାହାଇ ଗଲେ ଦୂତକାରୀ
ରାଜାଙ୍କ ସମ୍ମୁଖରେ କହିଲା କର ଯୋଡ଼ି କରି । ୬୮ ।
ଶ୍ରୀ ଦେବ ଅବଧାନ ହୋଇବା କାଳେବର କାଳଦଣ୍ଡ ଚକ୍ରବର୍ତ୍ତୀ
ପଶ୍ଚିମ ସୋମ ରାଷ୍ଟ୍ରର ଚାରିଜଣ ଦ୍ୱିଜବର ଆସିଛନ୍ତି । ୬୯ ।
ମାତା ମହାବ୍ରାହ୍ମଣୀ ଅଛନ୍ତି ତାହାଙ୍କର ତୁଲେ
ଜୟନ୍ତ ଅଜୟ ଜୟସେନ ଜୟରାଷ୍ଟ୍ର ବୋଇଲେ । ୭୦ ।
ଯାଇଣ ଥିଲେ ଦେବ ଯେ ଗଉତମୀ ତୀର୍ଥକୁ
ଦର୍ଶନ କରି ଲୋଡନ୍ତି ଦେବ ଆସିବେକ ସମ୍ମୁଖକୁ । ୭୧ ।
ବସ୍ତୁକର ମହାମନ୍ତ୍ରୀ କହିଲେ କର୍ଣ୍ଣେ ଲାଗି
ତୁମ୍ଭର ମାୟେ ଯେବେ ସମ୍ମୁଖକୁ ଆସନ୍ତି ବେଗି । ୭୨ ।
ଯୁଗତେଣ ସୋଦର ଆବର ତୀର୍ଥବାସୀ
ମୁଖ ଚାହାନ୍ତେ ଦେବ ପାତକ ହେବ ଧଂସୀ । ୭୩ ।
ଭୀମସେନ ବଚାରଇ ମନେ ମନେ ଗୁଣି
ବନେ କନ୍ଦମୂଳ ଖୁଆଇବେ ନେଇ ପୁଣି । ୭୪ ।
ସ୍ୱାମୀ କେମନ୍ତ ଆଗ୍ୟାଂ ହୋଇଲା ପୁଚ୍ଛନ୍ତି ଦୂତକାରୀ
ରାଗେଣ ଚାହିଁଂଲା କାଳ ନୟନ ଚକ୍ର କରି । ୭୫ ।
ଭୟେ ପଳାଇଲେ ଦ୍ୱାରପାଳମାନେ
ଯାଇଂଣ କହିଲେ ସେ ବ୍ରାହ୍ମଣଙ୍କ ସନ୍ନିଧାନେ । ୭୬ ।
ପଣ୍ଡା ହେ ଠାକୁରଙ୍କର କୋପ ଯେ ହୋଇଲା ତୁମ୍ଭଙ୍କୁ
ଆଗ୍ୟାଂ ନୋହିଲା ତୁମ୍ଭେ ସମ୍ମୁଖକୁ ଯିବାକୁ । ୭୭ ।
ଆବର ଆମ୍ଭଙ୍କୁ କୋପ ହୋଇଲା ବହୁତ
ତୁମ୍ଭେ ସମ୍ମୁଖକୁ ଗଲେ ଅପ୍ରାଧ ପାବନ୍ତି । ୭୮ ।

---

୭୫।୧ ସ୍ୱାମୀ କେମନ୍ତେ ଆଗ୍ୟାଂ ହୋଇଲାକ ଦଣ୍ଡଧାରୀ ।

ଯୁଧିଷ୍ଠିର ବୋଇଲେ ବାବୁ ଶୁଣ ହୋ ଅରଜୁନ
ଦୁଷ୍ଟନ୍ତ ପ୍ରବୋଧିବା ମାଧୁର୍ଯ୍ୟ ବଚନ । ୭୯ ।
ଆମ୍ଭର ଭୁଲେ ପାଉଥିଲୁ ଯେ ବଡ ଦୁଖ
ରାଜମାତ୍ର ହୋଇବ ନା ଅତି ବଡ ସୁଖ । ୮୦ ।
ଏତେକ ବୋଲନ୍ତେ ସେ ଶୁଣିଲେ ଦେବ ଧର୍ମେ
ବାହୁଡ ବନସ୍ତେ ପଶିଲେ ନିଜ କର୍ମେ । ୮୧ ।
ଉତ୍ତରୀ ପବନା ଘେନି ସୁମନ୍ତ୍ରେକ ପ୍ରୋହିତେ
ଭୀମସେନ ଚହ୍ନାଂକ ଯାଆନ୍ତି ସେ ନିତ୍ୟେ । ୮୨ ।
ଯୁଧିଷ୍ଠିର ଦେଖି ସେ ମୁନିଙ୍କି କଲେ ନମସ୍କାର
କଲ୍ୟାଣ କରି ପୁଚ୍ଛିଲେ ମୁନି ଭୀମନ୍ତ ନାହିଂ ଯେ ବାବୁ
ତୁମ୍ଭର ସଙ୍ଗର । ୮୩ ।
ଯୁଧିଷ୍ଠିର ବୋଇଲେ ସେ ଆମ୍ଭନ୍ତ ଉପେକ୍ଷି
ଶିବପୁର ନଗ୍ର ଭୀମା ରାଜା ହୋଇଅଛି । ୮୪ ।
ଆମ୍ଭନ୍ତ ଦେଖିଣ ସେ ନ କଲାକ କଥା
ଶୁଣିଣ ହସିଲେ ସେ ସୁମନ୍ତ୍ରେକ ବ୍ରହ୍ମପଣ୍ଡା । ୮୫ ।
ତୁମ୍ଭେ ଯେ ବସିଥାଅ ଏହି ଠାବରେଣ
ଭୀମକୁ ଘେନିଣ ଆମ୍ଭେ ଆସିବୁଂ ଏହିକ୍ଷଣ । ୮୬ ।
ଯୁଧିଷ୍ଠିରଙ୍କି ସମାର୍ଜି ଗଲେ ପୁରୋହିତେ
ପବନା ଉତ୍ତରୀ ଲାଗି କରାଇଲେ ଭୀମସେନର ଗାଦେ । ୮୭ ।
ପୁରୋହିତେ ବୋଇଲେ ତୁ ଯେ ଅଗ୍ୟାନ ମୁରୁଖ
ଯୁଧିଷ୍ଠିରଙ୍କି ଉପେକ୍ଷିଣ ତୋର କସ ରାଜ୍ୟ ସୁଖ । ୮୮ ।
ଭୀମସେନ ବୋଇଲା ତୁମ୍ଭେ ଭୁମି ହୋଇଥାଅ ମୁନ୍ୟ
ମୁହିଂ ଘାନ୍ତସ୍ତେ ଯାଇ ଆସଇ ହସ୍ତିନା ଭୁବନ । ୮୯ ।
ଧୃତରାଷ୍ଟ୍ର ପୁଅନ୍ତ ମୁଂ ମାରି ଆସଇ ରଣ
ତେବେ ସେ ହୋଇବ ଯୁଧିଷ୍ଠିରଙ୍କ ସଙ୍ଗତେଣ । ୯୦ ।
ସୁମନ୍ତ୍ରେକ ବୋଇଲେ ସେ ହସ୍ତିନାରେ ନାହିଂ
ଦ୍ରୋପଦ ପୁରକୁ ଗଲେନ ସବୁ ରାଜାଏ ଦଣ୍ଡ ବାହି । ୯୧ ।

---

୮୧।୧ ଏତେକ ବଚନ ସେ ଶୁଣିଲେ ଦେବ ଧର୍ମେ
୮୧।୨ ବାହୁଡି ବନସ୍ତେ ପଶିଲେ ନିତ୍ୟ କର୍ମେ ।

ଦ୍ରୌପଦ ରାଜା ଯେ କରଅଛି ସୟମ୍ବର
ଲକ୍ଷେକ ନୃପତି ରୁଣ୍ଡ ହୋଇବେ ତାହାର ପୁର । ୯୨ ।
ରାଧାଚକ୍ର ଲକ୍ଷ ବନ୍ଧିବ ଯେ ବୀର ଫାଲଗୁନ
ତୁମ୍ଭଙ୍କୁ ପ୍ରାପତ ହୋଇବ ସେ ଜଜ୍ଞସେନୀ । ୯୩ ।
ଅନେକ କଉତୁକ ଯେ ହୋଇବ ରଣ ରଙ୍ଗ
ତୁ ଯେବେ ଯାଅ ଯା ବାବୁ ଯୁଧିଷ୍ଠିରଙ୍କ ସଙ୍ଗ । ୯୪ ।
ଶୁଣିଣ ମହା ସାନନ୍ଦ ବୀର ଯେ ମାରୁତି
ପଞ୍ଚାଳ ଦେଶେଣ ଯେ ଭେଟିବା କୁରୁପତି । ୯୫ ।
ଭୀମସେନ ବୋଇଲା ରାଜ୍ୟ ଜନନ୍ତ ଯେ ରାଇ
ରାଜା ହୋଇ ପୁତ୍ର ଭରିଯା ମୋହୋରତ ନାହିଁ । ୯୬ ।
ମୁହିଂ ଯେବେ ଯିବି ପ୍ରାଗ ତୀର୍ଥକୁ
ବଶିଷ୍ଠଙ୍କର ମହାପାଶେ ଠାକୁରଟି ତୁମ୍ଭଙ୍କୁ । ୯୭ ।
ସୁମନ୍ତେକ ପୁରୋହିତେ ଆଗ୍ୟାଂ ଅବଧାରି
ଶିବପୁରେ ହୋଇଲେ ବଶିଷ୍ଠଙ୍କରେ ଅଧିକାରୀ । ୯୮ ।
ଶୁଣ ହୋ ପଣ୍ଡିତ ଜନେ ହୋଇ ସାବଧାନେ
ସମସ୍ତ ସୁଫଳ ହୋଇଟି ମହତଙ୍କର ଦରଶନେ । ୯୯ ।
ବଶିଷ୍ଠଙ୍କର ପଣ୍ଡା ଯେ ନଗ୍ର ବାହ୍ୟ ହୋଇଥିଲା
କୋଇଲାଙ୍କର କଲ୍ୟାଣେ ବେନି ପୁତ୍ର ଯେ ହୋଇଲା । ୧୦୦ ।
ସଭାରୁ ବାହାର କଲେ ପନ୍ତରେ ନ ବରି
ଅନ୍ତେଣ ହୋଇଲା ସେ ରାଜ୍ୟରେ ଅଧିକାରୀ । ୧୦୧ ।
ମହତ ସେବା କଲେ ଯେସନେକ ବଧି
ମହତ ଦରଶନେ ସକଳ କାର୍ଯ୍ୟ ସିଦ୍ଧି । ୧୦୨ ।
ସୁମନ୍ତେକ ମୁନି ଘେନି ଗଲେ ବୃକୋଦର
ନେଇଂଣ ଦ୍ରଶନ କରାଇଲେ ଯାଇଂ ଯୁଧିଷ୍ଠିରଙ୍କ ଛାମୁର । ୧୦୩ ।
ଭୀମସେନ ଯୁଧିଷ୍ଠିରଙ୍କ ଚରଣେ ପରଣାମି
ଭୀମସେନ ଶରୀର ଆଶ୍ୱସନା କଲେ ଦେବ ସ୍ୱାମୀ । ୧୦୪ ।

---

୯୭।୧ ପ୍ରାଗ—ପ୍ରୟାଗ ।

ତହୁଁ ବିଜେ କରିଗଲେ ସୁମନ୍ତେକ ପୁରୋହିତେ
ଅଗମ୍ୟ ବନସ୍ତେ ଚଳନ୍ତି ଯେ ପଞ୍ଚୁ ଭ୍ରାଥେ । ୧୦୫ ।
ଶିବପୁର ନଗ୍ର ଜାଣି ଉତ୍ତର କୋଣ ଆଡେ
ତିନିଶତ ଯୋଜନ ଗଲେ ମହୋଦଧି କଇଗୁଡେ । ୧୦୬—୮୭୮ ।



## ବକାସୁର ବୃତ୍ତାନ୍ତ

ଶୁଦ୍ଧତପା ନାମେଣ ଅଛଇ ଯେକ ନଦୀ
ଆକାଶ ଗଙ୍ଗାରୁ ମଉଦଧିକ ଅଛି ଭେଦି । ୧ ।
ସେ ନଦୀର ତୀରେ ଯେକଇ ନଗ୍ର ଗୋଟିଯେ
ଯେକଚକ୍ରା ବୋଲଣ ତାହାର ନାମ ହୋଯେ । ୨ ।
ବିପ୍ର ଆଦି କରି ଅଷ୍ଟାଦଶ ଜନ କୁଳ
ନିର୍ମଳ ସ୍ଥାନ ଦେଖି ବସନ୍ତି ସକଳ । ୩ ।
ନଦୀକୂଳ ପରିମଳ ଶଉଚ ପୁଣ୍ୟଭୂମି
ବହଇ ମାହେଶ୍ୱରୀ ନଦୀ ଉତ୍ତରଗାମୀ । ୪ ।
ବନ ତେଜିଣ ଗମନ୍ତି ସେ ପଞ୍ଚୁ ବୀରେ
ଭିକ୍ଷା କୁଟୋହୋଲେ ପଶିଲେ ସେ ପୁରେ । ୫ ।
ଯୁଧିଷ୍ଠିର ସଉରଭ ପାର୍ଥ ଭୀମସେନ ଚକ୍ରଧର
ହରି ଗୋବିନ୍ଦ ମୁଣି ଅର୍ଜୁନ ହସ୍ତର । ୬ ।
ନକୁଳ ତମ୍ବା କପୋରୀ ସହଦେବ ହାଥେ ପାର୍ଣ୍ଣୀ
କଉତୁକେ ନଗ୍ରେ ବିହରନ୍ତି ପଞ୍ଚୁ ଛନ୍ନି । ୭ ।
ଦେଖନ୍ତି ଜନ ଗହନ ମହା ନଗ୍ର ଗୋଠା
ସମସ୍ତେ ହେଂ ଭାଗ୍ୟବନ୍ତ ଶରୀର ଦୃମୋଠା । ୮ ।
ଭ୍ରମନ୍ତେ ଭ୍ରମନ୍ତେ ଆଦିତ୍ୟ ଅସ୍ତ ଗଯେ
କାହିଂ ରହିବା ବୋଲି ଭାଳନ୍ତି ସଂଶଯେ । ୯ ।

---

୮।୨ ଦୃମୋଠା—ଦ୍ୱିଗୁଣ ମୋଠା ବା ବହୁତ ମୋଠା

ବେଦଶର୍ମଣ ବୋଲି ଯେ କଇ ଦ୍ୱିଜବର
ଭିକ୍ଷାପାତ୍ର କଲେ ନେଇ ତାହାଙ୍କର ଦ୍ୱାର । ୧୦ ।
ସେ ବେଦଶର୍ମଣ ପଣ୍ଡା ଅଟନ୍ତ ଭିକ୍ଷାବାସୀ
ତାହାଙ୍କ ଦ୍ୱାରେ ବେଦ କରନ୍ତି ଯେ ଘୋଷି । ୧୧ ।
ବସନ୍ତ ଯେ ବ୍ରାହ୍ମଣୀ ଯେ ହୋଇଲା ତାହା ଗୃହେଂ
ପଣ୍ଡାଯେ ଭିକ୍ଷାରୁ ନୁଆସନ୍ତ ଦେବାକୁ କିଛି ନାହିଂ । ୧୨ ।
ମୋହୋର ସ୍ୱାମୀ ଯେ ହମତେ ଭିକ୍ଷାବାସୀ
ଯିବ ତ ବୋଲ ତ ମୋହୋର ବଚନକୁ ନୁଆସି । ୧୩ ।
ଯେ ସେ ହୋଅନ୍ତା ମହନ୍ତ ଦୟାବନ୍ତ
ବଚନ ମଧୁର କହି ବୋଧନ୍ତା ତାହାନ୍ତ । ୧୪ ।
ବଚନ ସମାର୍ଜି ବୋଲନ୍ତ ଭିକ୍ଷାରୁ ଆସନ୍ତୁ ମୋହୋର ସ୍ୱାମୀ
ଅତଥି ନିପୁଣ କର ତଣ୍ଡୁଳ ଅଧେ ଦେମି । ୧୫ ।
ବ୍ରାହ୍ମଣୀ ବୋଇଲା ଗୋ ଅପାର ହୋଇଲାକ ନଶି
ମୋହୋର ଘରେ ଆଜକ ବସା କର ରହସି । ୧୬ ।
ଦଇବେ ଭିକ୍ଷାଣୀ ଘରେ ନାହିଂ କିଛି
ଉଆସରୁ ଅଧେକ ଯେ ଭୁଞ୍ଜା ହୋଇଅଛି । ୧୭ ।
ତହିଂ ଭିତରେ ରୁହାଇଲେ ନେଇ
ରହିଲେ ପାଣ୍ଡବେ ମହା ସୁସ୍ଥ ପାଇଂ । ୧୮ ।
ସନ୍ଧ୍ୟେ ବସି ବ୍ରାହ୍ମଣୀ ସରୂପ ପଚ୍ଛର
ବେଦଶର୍ମଣ ପଣ୍ଡାଯେ ଅଇଲେ ଭିକ୍ଷା କର । ୧୯ ।
ବ୍ରାହ୍ମଣୀ ଆସିଣ ସନ୍ନିଧେ ହୋଇଲେକ ବେଗେ
ସମସ୍ତ କଥା ବ୍ରାହ୍ମଣୀ କହିଲା ବ୍ରାହ୍ମଣଙ୍କ ଆଗେ । ୨୦ ।
ତାହାର ଭିକ୍ଷା ଯେତେକ ସେ ଆଣିଥିଲା
କଣ କଲୁ ଥୋଇ ଆଉ ହାଣ୍ଡିରେ ଭରିଲା । ୨୧ ।
ହାଣ୍ଡି ତଣ୍ଡୁଳ ମୁଗ ନାନାଦ ପରିବା
ଛାମୁରେ ବେଦଶର୍ମଣ ପଣ୍ଡା ଥୋଇ ଅନେକ କଲଇ ସେବା । ୨୨ ।

---

୧୨।୨ ପଣ୍ଡାଯେ ଭିକ୍ଷାରେ ଆସି ନାହାନ୍ତ ଘରେ ତଣ୍ଡୁଳ ନାହିଂ ।
୧୦।୧ ବେଦଶର୍ମଣ—ବେଦଶର୍ମା ।

ସେ ନଗ୍ରରେ ତୁମ୍ଭେ ଥିବ ଯେତେ ଦିନ
ମୁହିଂ ତୁମ୍ଭଙ୍କୁ ଦେଉଥିବି ଅନ୍ନ ଯେ ଭୋଜନ । ୨୩ ।
ସହିଂ ଉଆସରୁ ଅଧିକ ଦିଲେ ବେଦଶର୍ମଣ
ରହିଲେ ନିର୍ଦ୍ଦିନ୍ତେ ମାଆନ୍ତ ଘେନି ଛଡ ଜଣ । ୨୪ ।
ଦିବସ ଭିକ୍ଷାକୁ ସଜ ହୋଅନ୍ତି ଗୃହ ଭାଇ
କୋଇନ୍ତା ସେ ବୋଇଲେ ସଙ୍ଗେ ନ ନିଅ ଭୀମକଇ । ୨୫ ।
ଯୁଧିଷ୍ଠି ବୋଇଲେ ଭୀମ ନ ଯାଉ ଭିକ୍ଷାକୁ
ବହୁତ ଦିଅନ୍ତା ନାହିଂ ଅଳପ ନ ଦିଶଇ ସେହିକୁ । ୨୬ ।
ସିବ ତ ବୋଲିଣ ସେହିକୁ ଯେବଣ ଜନ ବୋଲିବ
କୁଡଆ ଭାଙ୍ଗି ତାର ସବୁନ୍ତ ମାରିବ । ୨୭ ।
ଭୀମସେନ ମାତା ଦୁହିନ୍ତ ଘରେ ଗ୍ଲଡ
ଭିକ୍ଷାପାଇଁ ସେକଚକ୍ରା ନଗ୍ରେ ସୁଖେଣ ବିହାଡ । ୨୮ ।
ସିସ ଅବା ଭିକ୍ଷାରୁ ନିଅନ୍ତି ଉପୁଗୃଇ
ଆପଣେ ପାଞ୍ଚନ କରନ୍ତି କୋଇନ୍ତା ଦେବୀ ଆଈ । ୨୯ ।
ଦୁଇଭାଗ କରି ଅଧିକ ଦିଅନ୍ତି ଭୀମକୁ
ସେହିଙ୍କର ଅଧକରୁ ଦିଅନ୍ତି ଦେବତା ଅଛଥିଙ୍କୁ । ୩୦ ।
ଯେତେକ ଭାତରୁ ଗଳଇ ପେଜ ଫୁଟିସେ
ଭୀମକୁ ଦିଅନ୍ତି ତାହା କୋଇନ୍ତା ଦେବୀ ମାସେ । ୩୧ ।
ଅଧିକ ଆହାର ଯେ କରଇ ଭୀମସେନ
କାହାକଇ କଥା ନ କହଇ ଅବିକ୍ଷଣେ କୋପମନ । ୩୨ ।
ତୁଳ ବିସ୍ତ୍ର ତହିଂ ରହିଲେ ମାସ ବେନି
ଧନୁ ମାସର ଭୋଗ ହୋଇଲା ଦିନା ତିନି । ୩୩ ।
ଧନୁ ମାସ କୃଷ୍ଣ ପକ୍ଷ ଦ୍ୱିତୀୟାର ଦିନ
ବେଦ ଶର୍ମଣ ବ୍ରାହ୍ମଣୀକି ବୋଲଇ ବଚନ । ୩୪ ।
ଶରୀର ଅଳସ ମୋର କପାଳ ବଥାଇ
ଆଜକ ଭିକ୍ଷାକୁ ଗୋ ମୁଂ ନ ପାରଇ ଯାଇ । ୩୫ ।

---

୨୩।୨ ମୁହିଂ ତୁମ୍ଭଙ୍କୁ ଦେବି ଅଧିକ ସମ୍ମାନ ।

ବ୍ରାହ୍ମଣୀ ବୋଇଲା ଯେବେ ଅଳସ ତୁମ୍ଭର କାୟେ
ଥାଅ ଭିକ୍ଷାକୁ ତୁମ୍ଭେ ନ ଯାଅ ପଣ୍ଡାୟେ । ୩୬ ।
ଘରେ ତଣ୍ଡୁଳ ତ ଗୋଟିଏ କାହିଁ ନାହିଁ
ସ୍ୱାମୀ ଆଳସ କଲେ କେମନ୍ତେ ଧନ ବଞ୍ଚିବଇଁ । ୩୭ ।
ବ୍ରାହ୍ମଣଙ୍କୁ ମୁଁ ଯେବେ ପଠିଆଇବ ବଳେ
ଘରଣୀ ପଣ ମୋର ଝଶିବ ସର୍ବକାଳେ । ୩୮ ।
ବୋଲିବ ଯେକା ଧନେ ଯେବେ ନ ପାରିଲୁ ପୂରେଇ
କେତେ ଧନ ଅଳସ ହୋଇବା ରକତ ମାଂସ ଦେହ ବହି । ୩୯ ।
ଜରା ଅବସ୍ଥା ରୋଗ ବ୍ୟାଧି ଯେ ହୋଇଲେ
ସଭିଏଁ ମରିବା ତ ମୋହୋର ଭିକ୍ଷାକୁ ନ ଗଲେ । ୪୦ ।
ଯେତେ ବୋଲି ଘରଣୀ ପଣ ମୋର କରିବ ଦୂଷିତ
ନ ଯାଉ ଦ୍ୱିଜବର ଆଜକ ହୋଉ ସୁସ୍ଥ । ୪୧ ।
ପୁତ୍ର ଦୋହିତା ଦୁଇଗୋଟି ଆମ୍ଭେ ଜଣ ବେନି
ଉଦ୍ଧାର କରି ଆଣିବା ପଛେ ତଣ୍ଡୁଳ ମାଣ ତିନି । ୪୨ ।
ବ୍ରାହ୍ମଣ ବ୍ରାହ୍ମଣୀ ଦୁହେଁ ବସିଲେ ଯେକଥାନେ
ଦୁଖ ସୁଖ କଥା ବସି ଭାଳନ୍ତି ବେନି ଜନେ । ୪୩ ।
ବ୍ରାହ୍ମଣଙ୍କର ନାମ ଅଟେ ବେଦଶର୍ମଣ
ବ୍ରାହ୍ମଣୀର ନାମ ରମା ଦେବୀ ଜାଣ । ୪୪ ।
ପୁତ୍ରଗୋଟି ନାମ ଯେ ଅଟଇ ବିଦ୍ୟାଧର
ଭାନୁବନ୍ତୀ ନାମ ଅଟଇ ଦୁହିତା ଗୋଟିର । ୪୫ ।
ଖେଳି ଯାଇଥିଲେ ଆସି ମିଳିଲେ ନିଜବାସେ
ଅନ୍ନ ପୁଡାୟେ ମାୟେ ଦଲେକ ହରଷେ । ୪୬ ।
ଯେମନ୍ତ ସମୟେ ଅମ୍ବିକା ନାମେଣ ଚଣ୍ଡାଳ
ସେ ନଗ୍ରେ ଘୋଷଣା ଦିଅଇ ସର୍ବକାଳ । ୪୭ ।
ସାଗ୍ରେ ସାଗ୍ରେ ବୋଲି ଘଣ୍ଟା ବଜାଇ ଅନ୍ତରାଳ
ବେଦଶର୍ମଣ ପଣ୍ଡାଙ୍କ ଘରେ କାଲି ଠାକୁରଙ୍କର ପାଳି । ୪୮ ।

ଘଣ୍ଟା ଶବଦ ଶୁଣି ଯେ ବ୍ରାହ୍ମଣୀ ବୋଇଲା
ରହ ରହ ଶୁଣିମା କାଲି କାହା ଘରେ ପାଳି ଯେ ପଡ଼ିଲା । ୪୯ ।
ସାଗ୍ରେ ସାଗ୍ରେ ବୋଲି ଯେ ଡାକିଲା ଶୃଗାଳ
ବେଦଶର୍ମଣ ପଣ୍ଡାଙ୍କ ଘରେ କାଲି ଠାକୁରଙ୍କର ପଡ଼ିଲା ପାଳି । ୫୦ ।
ବ୍ରାହ୍ମଣୀ ବୋଇଲା ପଣ୍ଡା ହେ ମୋହୋର ମୁଣ୍ଡ ତ ପୋଡ଼ିଲା
କାଲି ଆମ୍ଭର ଘରେ ଠାକୁରଙ୍କର ପାଳି ତ ପଡ଼ିଲା । ୫୧ ।
ବ୍ରାହ୍ମଣ ବୋଇଲା ସେ ମିଛହେଂ ନୁହ ବାଇ
କେତେହେଂ ବେଦଶର୍ମଣ ଯେହ୍ନ ପୁରେ ନାହିଂ । ୫୨ ।
ବ୍ରାହ୍ମଣୀ ବୋଇଲା ଲେଖନ ପଣ୍ଡା ହେ
ଆମ୍ଭର ପାଳି ଢଳାର କେତେ କାଳ ହୋଏ୍ । ୫୩ ।
ଖଡ଼ି ଘେନି ଲେଖା କରଇ ଦ୍ୱିଜବର
ଯେକଚକ୍ରା ନଗ୍ରେ ବସଇ ଯେଗାର ସହସ୍ର ନଉ ଷାଠିଯେ ଘର । ୫୪ ।
ଘରକେ ପାଳିଯେ କରି ନେଉଅଛୁ ଲେଖି
ପୁଣ ପୁଣ ଲେଖଇ ବିପ୍ର ଭ୍ରାନ୍ତ ଯେ ଉପେକ୍ଷି । ୫୫ ।
ଯେଗାର ସହସ୍ର ନଉ ଷାଠିଯେ ଘର
ପାଳି ପଡ଼ଇ ତେତିଶ ବରଷ ଦୁଇମାସ କୋଡ଼ିଯେ ଦିନର । ୫୬ ।
ଲେଖି ଲେଖି ବିରସ ହୋଇଲା ଦ୍ୱିଜବର
ସବ ପାହିଲେ ପାଳି ପଡ଼ିବ ଆମ୍ଭ ଘର । ୫୭ ।
ଜାଣିଣ ଅସାଷ୍ଟମ ବ୍ରାହ୍ମଣ ବ୍ରାହ୍ମଣୀ
ଦୁହେଂ ମୋହେ ପଡ଼ିଲେ ବଜ୍ରଘାତ ଜାଣି । ୫୮ ।
ମାତା ପିତାଙ୍କର ଅବସ୍ଥା ଦୁଖ ଦେଖି
ବାଳୁତ ପୁଅ ଦୋହିତା ସେବନ୍ତି ନିରମାଖି । ୫୯ ।
ବ୍ରାହ୍ମଣ ଘରେ ରହିଲ କ୍ରୋଧ ବାଣୀ ଶୁଣି
ଜଳା କବାଟି ବାଟେ ଶୁହାନ୍ତ କୋନ୍ତଭୋଜର ଦୁଲଣୀ । ୬୦ ।

---

୪୯।୧ ନାଗରା ଶବଦ ଶୁଣି ବ୍ରାହ୍ମଣୀ ବୋଇଲା ।
୫୦।୧ ସାଗ୍ରେ ସାଗ୍ରେ ବୋଲି ହସ୍ତେ ସ୍ତେପ କାଠି ଗୃଳ ।
୫୬।୨:—ବ ଗଣା।୨।୨୦ ଦିନ—୧୧୯୭୦ ଦିନ ।

ବ୍ରାହ୍ମଣୀ ବୋଇଲା ପଣ୍ଡାଏ ଅଳସ ତୁମ୍ଭେ କଲ
ଘରେ କିଛି ନାହିଁ ତୁମ୍ଭେ ଭିକ୍ଷାକୁ ନ ଗଲ । ୬୧ ।
ଉଦ୍ଧାର କର ନାଥ ବଞ୍ଚିଲ ଆଜ ମୁହିଁ
ଦୁବ ଅର୍ଘ୍ୟ ଦେବାକୁ ଘରେ ତଣ୍ଡୁଳ ଗୋଟିଏ ନାହିଁ । ୬୨ ।
କାନ୍ଦନ୍ତି ସମସ୍ତେ ପଡ଼ି ଲୋଟନ୍ତି ମହୀଆଳୀ
ଯେମନ୍ତ ସମୟେ ପଡ଼ିଲା ବକ ରାକ୍ଷସର ପାଳି । ୬୩ ।
ଭାତ ଶଗଡ଼େ ପିଠା ଶଗଡ଼େ ପୋଢ଼ୁଅ ହଳେ ବଳଦ ହଳେ
ନରବଳ ଜଣେ କାହିଁ ପାଇବା ବୋଲ ରୋଦନ୍ତି ବକଳେ । ୬୪ ।
ବ୍ରାହ୍ମଣୀ ବୋଇଲା ମୋହୋର ପିତାଘରକଇ ଯିବ
ପୋଢ଼ୁଅ ହଳେ ବଳଦ ହଳେ ଶଗଡ଼ ଦୁଇଗୋଟି ମାଗିବ । ୬୫ ।
ବ୍ରାହ୍ମଣ ବୋଇଲା ମୁଂ ଅତିଥି ପଣ କରିବ
ଭାତ ପିଠା ଥାଳଏ ଥାଳଏ କରି ନଗ୍ରରେ ମାଗିବ । ୬୬ ।
କେଉଣସି ବାଗେ ଯେହା ପୂରୋଇବା
ନରବଳ ଜଣେ ଆମ୍ଭେ କାହିଁ ଭିଆଇବା । ୬୭ ।
ବ୍ରାହ୍ମଣୀ ବୋଇଲା ନାଥ ବୁଦ୍ଧିଏ କରିବା
ପୁତ୍ର ଦୋହିତା ବେନି ଗୋଟି ତୁମ୍ଭେ ସମ୍ଭାଳୁଣ ଥିବା । ୬୮ ।
ମୁଇଁ ଭୋଜନ କାଳି ହୋଇବି ଦୈତ୍ୟକୁ
ତୋହୋର ବ୍ରତ ନାଥ ଭରସା ଅଛି ନ ତୁକୁ । ୬୯ ।
କର୍ମେଣ ଧନ ଅର୍ଜିଲେ ହୋଇବୁ ପୁଣ ବଡ଼
ଯେକା ଥାଉଁ ସ୍ୱାମୀ ମନେ ଆନ ନ ଧରିବା । ୭୦ ।
ବ୍ରାହ୍ମଣ ବୋଇଲା ଯେ ନୋହଇ ସଙ୍ଘାତ
ପୁତ୍ର ଦୁହିତା ବେନି ଗୋଟି ଅଟନ୍ତି ବାଳୁତ । ୭୧ ।
ଯେକା ବାଳୁତକଇ ଛାଡ଼ି ମାତା ଯେବେ ମରଇ
ତାହାର ବକଳେ ପିତା କାହିଁ ଦେହ ଯେ ଧରଇ । ୭୨ ।
ଦେଖୁ ଦେଖୁ ଯେ ତୋହୋର ବାଳୁତ ବେନି
ଯେହାଙ୍କର ବକଳେ କେ ବ୍ରତିବ ଦେହ ଘେନି । ୭୩ ।
ଯେ ପୁତ୍ର ଦୁହିତା ତୁମ୍ଭେ ଆଅସି ସମ୍ଭାଳ
ମୁଂ ହୋଇବ କାଳି ନାଥ ବକ ରାକ୍ଷସର ପାଳି । ୭୪ ।

ବ୍ରାହ୍ମଣୀ ବୋଇଲା ନାଥ ତୋହୋର ନାଶ ଗଲେ
ମରଣହୁଂ ଅଧିକ କଷ୍ଟ ମୋତେ ବିଧବା ହୋଇଲେ । ୭୫ ।
ସ୍ୱାମୀର ଅଭାବେ ବ୍ରତନ୍ତ ଯେବଣ ନାରୀ
ସେ ନାରୀ ପୁଣି ପଛନ୍ତେ ହୋଅନ୍ତି ଦୋଗୃହୀ । ୭୬ ।
ବ୍ରାହ୍ମଣ ବୋଇଲା ମୋହୋର ଜୀଇଂଥାନ୍ତେ
ବକ ରାକ୍ଷସ ତୋତେ ଭକ୍ଷିବ କେମନ୍ତେ । ୭୭ ।
ପିତା ମାତାରେ ବୈକୁଳ୍ୟ ଦେଖି ପୁତ୍ର ଗୋଟି ବୋଇଲା
ହେ ପିତା ଆମ୍ଭର ଘରେ ଯେବେ ବକ ରାକ୍ଷସର ପାଳି ପଡ଼ିଲା । ୭୮ ।
ପିତା ମାତା ବ୍ରତଥିଲେ ପୁତ୍ର ଉପୁଜିବ
ତୁମ୍ଭର ନାଶ ଗଲେ ସନ୍ତାନ କାହୁଂ ଯେ ହୋଇବ । ୭୯ ।
ଅଜା ଯୂଥ ଥିଲେ ଗୋସାଇଂ କ ଅପାଦ ଯେ ନାହିଂ
କାଲି ପାଳିକ ତାତ ସୁଝ ମୋତେ ବକ ରାକ୍ଷସକୁ ଦେଇ । ୮୦ ।
ପୁତ୍ର ଥିଲେ ପିତାମାତାଙ୍କୁ କାହିଂ କଷ୍ଟ
ମୋତେ ଭକ୍ଷଣ କରୁ କାଲି ବକ ରାକ୍ଷସ ଦୁଷ୍ଟପିଷ୍ଟ । ୮୧ ।
ଦଶ ବରଷ ପୁତ୍ର ଗୋଟିର ସ୍ନେହ ବଚନ ଶୁଣି
ପୁତ୍ର କୋଳେ ଧରଣ ରୋବନ୍ତି ବ୍ରାହ୍ମଣ ବ୍ରାହ୍ମଣୀ । ୮୨ ।
କଋଣ ବଚନ ଗୋଟି ମୁଂ ପରମୁଣ୍ଡା ଯାଇ
ତୋତେ ଦେଇ ଦେହ କମ୍ପେ ଧରିବଇ ମୁହିଂ । ୮୩ ।
ସ୍ନେହ ତୋହୋର ମୁଖରୁ କଋଣ ବଚନ ଗୋଟି ଶୁଣି
ଶରୀର ଦହନ କମ୍ପେ ଆମ୍ଭର ନୋହିଲା ସ୍ନେହକ୍ଷଣୀ । ୮୪ ।
ପରେଣ ପ୍ରଦାନ କରିବ ସିନା ମୋତେ
ଦୁହିତା ଗୋଟି ବୋଇଲା ନ ରୋବ ପିତାମାତେ । ୮୫ ।
ମୁଇଂତ ପର ଗୋଷ୍ଠୀ ସିନା ତାତ ଆନ ନ ବୁଝ
ମୋତେ ଦେଇ ମାତା ଗୋ ବକ ରାକ୍ଷସର ପାଳି ଶୁଝ । ୮୬ ।
ବ୍ରାହ୍ମଣ ବୋଇଲା ମାତା ତୁ ଅଟୁ ବାଳୁଙ୍ଗା
ତୋତେ ଦେଖି ରାକ୍ଷସ କମ୍ପେ ହୋଇବ ବିପୁତ୍ର । ୮୭ ।

---

୮୩।୧ { କଋଣ ବଚନ ଗୋଟି ସେ ତୋର ଅପାଦ ଘେନିଯାଇ ।
{ କଋଣ ବଚନ ଗୋଟି ତୋର କଉଚୁଣା ଯାଇ ।

ବ୍ରାହ୍ମଣ ବ୍ରାହ୍ମଣୀର ଯେସନେକ ବଚନ ଶୁଣି
ଗ୍ରାମୁରେ ପ୍ରବେଶ ହୋଇଲେ କୋନ୍ତଭୋଜର ଦୁଲଣୀ । ୮୮ ।
ତୁମ୍ଭର ଯେତେକ ବଇକୁଲ୍ୟ ଗୋ କାହିଂର ନିମନ୍ତେ
କହ କନା ପଣ୍ଡ୍ରା ତାହା ମୋହୋର ଅଗ୍ରତେ । ୮୯ ।
ବ୍ରାହ୍ମଣ ବୋଇଲା ଗୋ ଦୁଷହ ବଡ କଥା
ହିରଣ୍ୟକପଟ ବୋଲି ଯେକଇ ଦୟିତା । ୯୦ ।
ତାହାର ନନ୍ଦନ ହାଦେ ନିବାତକପଟ
ତାହାର ତହୁଂ ଉପୁଜିଲା ଦୁହିତାଯେ ଗୃର ବଛ । ୯୧ ।
କମ୍ମୀର କନ୍ମସ ହିଡମ୍ବେକ ବକ
ହିଡମ୍ବିକା ନାମେଣ ତାର ଦୋହିତା ଯେ ଯେକ । ୯୨ ।
କମ୍ମୀର ଦଇତ୍ୟ ଥାଇ ସୁର ନଦୀ ଝଟରେ
କନ୍ମସ ଦଇତ୍ୟ ଥାଇ ମଧୁବନ ତୋଠାରେ । ୯୩ ।
ହିଡମ୍ବିକା ବନେ ଥାଇ ହିଡମ୍ବକ ଦଇତ
ବକ ରାକ୍ଷସର ଯେକଚକ୍ରା ନଗ୍ରେ ସ୍ଥିତ । ୯୪ ।
ଭାତ ଶଗଡେ ପିଠା ଶଗଡେ ଯେ ରାଜ୍ୟରେ ଭିଆଣେ
ପୋଡୁଅ ହଲେ ବଳଦ ହଲେ ନରବଳି ଜଣେ । ୯୫ ।
ତେତିଶ ବରଷ ବେନି ମାସ କୋଡିଯେ ଦିନେ ଯେତେକ ଦେଇ
ଯେତେକ ଦିଲେ ଯମ ପଶି ନୁଆରଇ ଯେ ପୁର କଇ । ୯୬ ।
ଡରେଣ ମେଘମାନ କରୁଥାନ୍ତି ବୃଷ୍ଟି
ପଞ୍ଚାଶ ଭରଣ ଧାନ ଫଳଇ ଯେକ ବାଟି । ୯୭ ।
ଆନ ଉପଦର୍ଗ ନାହିଂ ଯେଥେ ରୋଗ ବ୍ୟାଧି
ଜରା ମୃତ୍ୟୁ ନାହିଂ କଛୁ ହିଂ ଅବଧି । ୯୮ ।
ମୋହୋର ଘରେ ତାର ପଡବ କାଲି ପାଳି
ସମସ୍ତ ଭିଆଇ ଚାରେ ନାହିଂ ନରବଳି । ୯୯ ।
କୋଇନ୍ତାଯେ ବୋଇଲେ ମା ଗୋ ମୁଂ ରହିଲି ତୁମ୍ଭ ଘରେ
ପାପ ପୁଣ୍ୟ ଭାଗୀ ହୋଇ ପଶିଲୁ ତୋହୋର କର୍ମରେ । ୧୦୦ ।

---

୯୦।୧ ଦୁଷହ—ଦୁଃସହ,

ଏ୍ୟେ ଯୋଗାଡମାନ ବେଗେ କରସି ସମ୍ଭାର
ନରବଳି ଜଣେକ ହୋଇଲା ଆମ୍ଭର ଘରର । ୧୦୧ ।
ଭୂଇଂ ଛୁଇଂ ବ୍ରାହ୍ମଣ ଶ୍ରବଣେ ଧଲା ହାଥ
ତୁମ୍ଭେ ଠାକୁରାଣୀ କମ୍ପେ କହିଲ ଯେମନ୍ତ । ୧୦୨ ।
ମୋହୋର ଘରେ ତିନମାସ ରହିଲ ଯେ ସର୍ବେ
ମୁହିଂ ପାଂପିଷ୍ଟ ତୋର ପୁତ୍ରକୁ କେମନ୍ତେ ଦେବି ଯେବେ । ୧୦୩ ।
ମୁହିଂ ଯାଉଅଛୁ ଗୋ ଯେବେ ଅସୁର ତହିଂକି
ପୁଅ ଝିଅ ଘରଯାକୁ ମୋହୋର ଥିବ ତୁମ୍ଭେ ରଖି । ୧୦୪ ।
କୋଇନ୍ତାଏ୍ୟେ ବୋଇଲେ ଏ୍ୟେ ମୋହୋର ସତ୍ୟ ସତ୍ୟ
ତୋହୋର କିମନ୍ତେ ଦେବି ମୋହୋର ଏ୍ୟେକ ପୁତ୍ର । ୧୦୫ ।
ତୁମ୍ଭେ କଟ୍ଟୁ ବସ୍ତୁଏ୍ୟେ ନୁହନ ପଣ୍ଡାଏ୍ୟେ
ମୋହୋର ଅଛୁ ହାଦେ ଦୁଷ୍ଟ ପୁତ୍ର ଯେ ଗୋଟିଏ୍ୟେ । ୧୦୬ ।
ଭିକ୍ଷା ମାଗି ନ ଯାଇ ଅଧେକ ଅନ୍ନ ଖାଇ
କଥା ନ କହଇ ବସିଥାଇ ମୁହିଂ ଯେ ଫୁଲଇ । ୧୦୭ ।
ତାହାର ମରିବାର ମୁଂ ମନାସଇ ଯୁଗତେ
ଆମ୍ଭେ ଯାହା ମାଗିବୁଂ ସେ ମରୁ ହାଦେ ଏ୍ୟେମନ୍ତେ । ୧୦୮ ।
ଦୁଷ୍ଟ ପୁରୁଷ ଆବର ନଷ୍ଟ ଯେ ଘରଯା
ଋଣକାରି ପିତା ଯେ ଅଭାବ ମଇନା । ୧୦୯ ।
କୁସ୍ଥାନ ଭୂମି ଅସୁର ଭୋଗ ତୀର୍ଥ
ଏ୍ୟେତେକ ଉପେକ୍ଷନ୍ତି ଯେ ଧାର୍ମିକ ପଣ୍ଡିତ । ୧୧୦ ।
ଦ୍ଵିଜବରକୁ ବୁଝାଇ ଗଲେ ଦେବୀ କୋଇନ୍ତେ
ଭୀମସେନ ସନ୍ନିଧେ ପ୍ରବେଶ ହୋଇଲେ ତୁରିତେ । ୧୧୧ ।
ଭୀମସେନ ହସିଲା ମାତାଙ୍କ ମୁଖ ଚୃହିଂ
ଭାତ ପିଠା ବେନି ଶଗଡ ବୋଲୁଥିଲ କାହିଂ । ୧୧୨ ।
କୋଇନ୍ତାଏ୍ୟେ ବୋଇଲେ ମୁଂ ତୋହୋର ଅପାଦ ଘେନି ଯାଇ
କେତେ ଅନ୍ନ କଷ୍ଟ ସେ ଦେଖିବି ତୋହୋର ମୁହିଂ । ୧୧୩ ।

---

୧୧୦।୧ ସୁସ୍ଥାନ ଭୂମି ଯେବେ ହୋଇବ ଅଶୁଭ ତୀର୍ଥ ।

ବାବୁ ବେଦଶର୍ମଣ ପଣ୍ଡା ଘରେ କାଲି ବକରାକ୍ଷସର ପାଳି
ଭାତ ପିଠା ବେନି ଶଗଡ଼ ପୋଡ଼ୁଅ ବଳଦ ବେନି ହଳ । ୧୧୪ ।
ଯେତେକ ଘେନି ବାବୁ ଯାଅସି ଅଡ଼ାଇ
ଭାଲୁଙ୍କି ନଦୀ କୂଳେ ରାକ୍ଷସକୁ ଦେଇ ଆସ ଯାଇ । ୧୧୫ ।
ଭାତ ପିଠା ଶଗଡ଼ ଭୁଆଇ କେହ୍ନ ନଅନ୍ତା ନାହିଂ ଡରେ
ମୁହିଂ ସତ୍ୟ କଲି ବ୍ରାହ୍ମଣକୁ ପୋଏକ ଦେବି ସେ ସଙ୍ଗରେ । ୧୧୬ ।
ଭୀମସେନ ବୋଇଲ ମାଗୋ ମୁହିଂ ଯିବଇଟି କି ?
ରାକ୍ଷସ କେମନ୍ତଟି ଆସଇ ନା ଦେଖି । ୧୧୭ ।
ଭୀମସେନ ସୁମରଇ ଦେବୀ ଅନାଦି ଶକତି
ମୁକୁଇଂ ଯେଠାକୁ ପଠିଆଇ ଦିଅନ୍ତୁ ଦେବୀ କୋନ୍ତି । ୧୧୮ ।
ଯେସନେକ ପ୍ରସ୍ତାବେ ବିରସ ମନେ ମାଏ
ବେଳ ଅବସାନେ ମିଳିଲେ ଗୃହ ଯେ ତନଏ । ୧୧୯ ।
ଦ୍ୱାରେ ଉଭା ହୋଇ ଡାକନ୍ତି ଝାରମଣି
ମାଗୋ ପାଦ ଶଉଚ କରିବା ବହନ ଦିଅ ପାଣି । ୧୨୦ ।
କୋଇନ୍ତାଏ ବିରସେ ବାହାର ନୋହିଲେ
ଭିକ୍ଷା ତଣ୍ଡୁଳ ଘେନି ଭିତରକୁ ଗଲେ । ୧୨୧ ।
ଗୃହଭାଇ ମାତାଙ୍କ ଚରଣେ ବନୋଇ
ମାଗୋ ଭୀମା ଗାଳି ଦିଲ୍ଲି କି ବସିଛ ବିରସ ହୋଇ । ୧୨୨ ।
ଶୁଣସି ରେ ବାବୁ ବଦଯନ୍ତ କୋନ୍ତଭୋଜର ଦୁଲ୍ଲାଳୀ
ବେଦଶର୍ମଣ ପଣ୍ଡା ଘରେ କାଲି ବକ ରାକ୍ଷସର ପାଳି । ୧୨୩ ।
ସମସ୍ତ ଦ୍ରବ୍ୟ ଦ୍ୱିଜବର ସମ୍ପାଦନା ହାଦେ କଲ୍ଲି
ନରବଳି ଜଣେ ସେ ଭୁଆଇ ନ ପାରିଲ୍ଲି । ୧୨୪ ।
ପୁଅ ଝିଅ ବେନି ଗୋଟି ବ୍ରାହ୍ମଣ ବ୍ରାହ୍ମଣୀ
ବସିଣ ରୋଦନ ଯେ କରନ୍ତି ଗୃହ ପ୍ରାଣୀ । ୧୨୫ ।

---

୧୧୯।୧ ଯେସନେକ ସମଏ ବିଗୃହଣ ମାଏ ।

୧୨୦।୨ "ମାଗୋ ପାଦ ଶଉଚ କରିବା ବହନ ଦିଅ ପାଣି" ପାଦାନ୍ତ ପରେ ଅଧିକା ପାଠ—

ଭୀମସେନ ତହିଂ ପାଣି ଦିଲକ ବଢାଇ
କାଠୁଆରେ ଗୋଡ଼ ଧୋଇ ଭିତରକୁ ଗଲେ ଗୃହଭାଇ ।

ତାହାଙ୍କର ବୈକ୍ଲବ୍ୟ ଦେଖି ମୁଁ ସହି ନ ପାରିଲି
ମୁଇଁ ନରବଳି ଜଣେ ଦେବି ବୋଲି ସତ୍ୟ କଲି । ୧୨୬ ।
ଶୁଣିଣ ଅନ୍ତର୍ଭୂତ ହୋଇଲେ ଯୁଧିଷ୍ଠିର
ମାଗୋ ସର୍ବେ ଆମ୍ଭେ ତୋହୋର ପୁତ୍ର ପାଞ୍ଚଗୋଟି । ୧୨୭ ।
ଶତେ ଶତେ ପୁତ୍ର ଗୋ ଯାହାର ଅଛନ୍ତି
ତାହାଙ୍କର ମାୟେ ଗୋ ଯେମନ୍ତ ନ ବୋଲନ୍ତି । ୧୨୮ ।
ମାଗୋ ଭୀମକଇ ହଲ ଯାନ୍ତୁୟେ କନିଷ୍ଠ ଦୈତ୍ୟକୁ
ଧର୍ମବଳେ ଜିତି ସେ ଅଇଲା ସାଙ୍ଗକୁ । ୧୨୯ ।
କନିଷ୍ଠ ଦଇତ ଯେ ମଧୁବନେ ମାରୁଥିଲା
ହିଡମ୍ବକ ଦୈତ୍ୟ ଗୋ ଅନେକ ଦୁଖ ଦେଲା । ୧୩୦ ।
ଭୀମସେନ ବାହୁବଳକୁ କରିଅଛଇ ଆଶ
ଆନ ଜଣେ ଦିଅ ଗୋ ଭକ୍ଷୁ ସେ ରାକ୍ଷସ । ୧୩୧ ।
ନକୁଳ ସହଦେବ ବଇମାତ୍ରି ବେନି ଭାଇ
ମୋହୋର ଦେହେ ପ୍ରାଣ ଥିଲେ ତାହାଙ୍କୁ ଦେଇ ନ ପାରଇ । ୧୩୨ ।
ଆମ୍ଭେ ସର୍ବେ ତୋହୋର ଅଟୁ ତିନିପୁତ୍ର
ଭୀମସେନ ଅଟେ ମୋ ସାଂଗ୍ରାମେ ସାମରଥ । ୧୩୩ ।
ଅର୍ଜୁନ ଅଟଇ ଗୋ କ୍ଷତ୍ରିୟ ଧନୁର୍ଦ୍ଧାରୀ
ଦୁଷ୍ଟକୃଷ୍ଣ ନାମ ହେଲେ ହରି ତାହାନ୍ତ ଦେଇତ ନୁଆରି । ୧୩୪ ।
ମୁହିଁ ହାଦେ ଯୋଗ୍ୟ ନୋହଇ କାହିଂକ
ମୋତେ ପଠିଆଅ ବକ ରାକ୍ଷସ ତହିଂକ । ୧୩୫ ।
କୋଇନ୍ତାୟେ ବୋଇଲେ ବାବୁ ଦେବା ଭୀମସେନକୁ
ଅବଶ୍ୟ ମାରିବ ସେ ବକ ରାକ୍ଷସକୁ । ୧୩୬ ।
ମୁଇଁ ପ୍ରତକ୍ଷେ ଜାଣଇ ଯେହାରି ବଳବୀର୍ଯ୍ୟ
ଦୁର୍ଦ୍ଧର୍ଷ ପବନର ଯେ ଅଟଇ ଆତ୍ମଜ । ୧୩୭ ।
ଜନ୍ମ କାଳେ ଯେହାକୁ କୋଳେ ଅଛୁ ଧରି
ଗ୍ରହକାଳେ ପର୍ବତ ତଳେ ବ୍ୟାଘ୍ରେକ ହେଲା ଉଡି । ୧୩୮ ।

---

୧୩୨ { ନକୁଳ ସହଦେବଙ୍କୁ ସମର୍ପି ଗଲେ ମାଦ୍ରୀ
{ ମୋହୋରେ ଦେଇ ନୋହୋଇ ମାନ୍ତେ ତାହାଙ୍କୁ ବରେ । ଧୀ ।

କୋଡରୁ ପୁଅକୁ ମୁଂ ପକାଇଲି ତଳେ
ଶତଶିଂଗ ଗିରି ପଶିଲା ପାତାଳ ଭୁବନରେ । ୧୩୯ ।
ପକାଇ କରି ମୁଂ ଯେ ଡରେ ପଳାଇଲି
ବୃକ୍ଷ ଗୋଟାକର ଉପରେ ଯାଇଣ ଉଠିଲି । ୧୪୦ ।
ପାଦ ହଲାଇଣ କାନ୍ଦଇ ଯେ ବାଳଶିଷି
ଗିଳିବ ବୋଲି ବ୍ୟାଘ୍ର ଧାଇଁଲା ଆକ୍ରୋଷି । ୧୪୧ ।
ଭୀମସେନ ପାଦ ଅଙ୍ଗୁଷ୍ଠି ବାଜିଲା ବ୍ୟାଘ୍ରର ମୁଧ୍ନା
ଭାଞ୍ଜିଣ ମୁଣ୍ଡ ଚାରି ହୋଇଲା ଶତେ ଚୂନା । ୧୪୨ ।
ଡାହାଣ ପାଦର କାଣି ଅଙ୍ଗୁଷ୍ଠିଟି ବାଜି
ଶତେ ଯୋଜନ ଆପ୍ରେତନ ପର୍ବତ ଶିଂଗ ଗଲା ଭାଜି । ୧୪୩ ।
କୋପେଣ ଶାପ୍ୟ ଯେ ଦେଲି ଗିରିବର
ପ୍ରଥମହୁଂ ମୋତେ ଯେ ପ୍ରହାର କଲୁ, ତୁ ପ୍ରଥମ ଯୁଦ୍ଧେ ହାରି । ୧୪୪ ।
ବ୍ୟାଘ୍ରର ନିଧନ ଦେଖି ମୁଂ ବୃକ୍ଷରୁ ଓହ୍ଲାଇଂ
ପର୍ବତକୁ ବୋଇଲି କ୍ଷମା ଶାପ୍ୟ ଦେଲୁ ମୋହୋର ପୁତ୍ରକୁଇ ।୧୪୫।
ଅକଳଙ୍କ କରି ମୁଂ ପୁତ୍ରକୁ କଲି ଜାତ
ଶତଶିଂଗ ବୋଇଲା ମୋତେ କୋପ ନ କର ଗୋ ମାତ । ୧୪୬ ।
ପ୍ରଥମ ଯୁଦ୍ଧେ ସେ ହାରିବ ଯୁଗତେ
ଦୁଜ ଯୁଦ୍ଧରେ ମୁଂ ବସିବି ସେହି ହାର ଗାତେ । ୧୪୭ ।
ଯଦ୍ୟପି ବ୍ରହ୍ମା ବିଷ୍ଣୁ ଇନ୍ଦ୍ର କୋବେର ମହେଶ୍ୱର
ବୃକୋଦର ମୂରତି ସେ ଯେ କରିବ ପ୍ରହାର । ୧୪୮ ।
ବାବୁ ସେସନେକ ସନ୍ଦେଶ ମୁଂ ପାଇଅଛି ପୂର୍ବେ
ତେବେ ସେ ଭୀମସେନକୁ ପଠିଆଉଂଅଛି ସେବେ । ୧୪୯ ।
ତୁମ୍ଭେ କିଛି ଚିନ୍ତା ବାବୁ ନ କର ସେ କଥାକୁ
ଆଜ ଅବଶ୍ୟ ଭୀମସେନ ମାରିବ ବକ ରାକ୍ଷସକୁ । ୧୫୦ ।
ବାବୁ ଆମ୍ଭେ ରହିଲୁଂ ଆସି ସେହୁ ଭୁବନେ
କାଳକଇ ସୁମରଣା କରୁଥିବେ ନାହିଂ କ ନଗ୍ରଜନ ମାନେ ।

୧୫୧—୮୯୩୯



# କୁନ୍ତୀଙ୍କର ପ୍ରସ୍ତାବରେ ଭୀମଙ୍କ ବକାସୁର ବଧ ନିମନ୍ତେ ପ୍ରେରଣ

ଯୁଧିଷ୍ଠିର ଶୁଣିଲେ ସହଦେବର ବଦନ
ସଂଚରେ ବକ ରାକ୍ଷସକୁ ମାରିବେକ ଭୀମସେନ । ୧ ।
ସହଦେବ ବୋଇଲା ସ୍ୱାମୀ ଶୁଣିମା ସାବଧାନେ
କୁନ୍ତିର କନ୍ୟାର ବକ ହିଡ଼ମ୍ବକ ଯେକ ପିତାରୁ ଉତପନ୍ନେ । ୨ ।
ହିଡ଼ମ୍ବିକା ବହେଣୀ ଅଟଇ ଯେହାଙ୍କର
ତିନି ଭାଇଙ୍କି ମାଇଲେନି ଠାକୁର ବୃକୋଦର । ୩ ।
ଯେ ବୃତ୍ରଙ୍କର ଭାର ସହୁଂ ନ ସହିଲା ମହୀ
ଆକାଶେ ଦିଗପାଳେ ନୁଆରିଲେ ରହି । ୪ ।
ଅମର ସ୍ୱର୍ଗରୁ ଯେ ଆଣିଲେ ଅପସରା
ଦେବ ଭଣ୍ଡାର ମାନ ଆଣିଲେ ସବୁନ୍ତ ଜୂର କରି । ୫ ।
ଇନ୍ଦ୍ର ଦେବତା ପଳାଇଲା ଅସୁରଙ୍କ ଡରେ
ଯମ ଦେବତା ରହି ନ ପାରିଲା ସଞ୍ଜୀବନୀ ପୁରେ । ୬ ।
ଈଶ୍ୱର ଇନ୍ଦ୍ର କୋବେର ବହୁତ ଯୁଦ୍ଧ କଲେ
ଯେ ବୃତ୍ର ଭାଇନ୍ତ ସାଂଗ୍ରାମେ ଦେବେ ହାରି ପଳାଇଲେ । ୭ ।
ଦେବେଣ ବଧ ସହୁଂ ନୋହିଲେ କଉଣୋପେ
ଆମ୍ଭେ ଉତପତ୍ତି ହୋଇଲାଇଂ ମନୁଷ୍ୟ ସରୂପେ । ୮ ।
ସେହାନ୍ତ ବଧ କରିବା ନିମନ୍ତେ
ଆମ୍ଭନ୍ତ ବନବାସ କରାଇଲେ ଗୁପତେ । ୯ ।
ଯୁଧିଷ୍ଠିର ଦେବଙ୍କୁ କହିଲେ ସହଦେବ ମନ୍ତ୍ରୀ
ଭୀମସେନର ବଳ କୋଇନ୍ତାଯେ ଜାଣନ୍ତି । ୧୦ ।
ସହଦେବର ବଚନେ ସାନନ୍ଦ ଯୁଧିଷ୍ଠିର
ଯାଅ ବାବୁ ଆମ୍ଭ ଆଦ୍ୟ ଯେନ ବୃତ ଭାଇଗୋଟି । ୧୧ ।

---

୯।୨ ଆମ୍ଭନ୍ତ ବନବାସ ଧାତା ଦୈବତେ ।

ଅପାଦ ଖଣ୍ଡନ୍ତୁ ଦେବୀ ପ୍ରତକ୍ଷେ ହୋଇଁ ଲା
ସେ ତୋତେ ଅନୁଗ୍ରହ କରନ୍ତୁ ସର୍ବମଙ୍ଗଳା । ୧୨ ।
ତହୁଂ ବଜେ କର ଅଇଲେ କୋଇନ୍ଦ୍ରାୟେ
ସମ୍ଭର କର ଯୋଗାଡ଼ କରସି ପଣ୍ଡ୍ରାୟେ । ୧୩ ।
ସହାଂର ନମନ୍ତେ ତୁମ୍ଭେ ହୋଇଥିଲ ବକଳ
ମୁହାଂ ତୁମ୍ଭଙ୍କୁ ଦେବ ଜଣେକ ନରବଳ । ୧୪ ।
ଶୁଣିଣ ସାନନ୍ଦ ହୋଇଲା ଦ୍ୱିଜବର
କରଇ ଯୋଗାଡ଼ ସେ ଅନେକ ସମ୍ଭାର । ୧୫ ।
ବ୍ରାହ୍ମଣୀ ଗଲା ତାର ପିତାର ଘରକୁ
ଘୃତ ପିଠା ମାଗିଲା ବେନ ଶଗଡ଼ ତାହାର ପିତା ମାତାଙ୍କୁ । ୧୬ ।
ଭଲ ଭଲ ଲୋକେ ସଞ୍ଚ ଥାଆନ୍ତ ସର୍ବକାଳେ
ଶ୍ରୀଗତ ନର୍ଗତ ଲୋକ ଲୋଡ଼ଇ ଯେତେବେଳେ । ୧୭ ।
ସଞ୍ଚିତ ଘରେ ସେ ପାଇଲାକ ମାଗି
ଦୁଇ ଶଗଡ଼ ପୂରେଇ ଦୁଇ ହଳ ଯୋଡ଼ି ଆଣଇ ବେଗି ବେଗି । ୧୮ ।
ଆଣି ଉଭରିଲା ଆପଣାର ଦ୍ୱାରେ
କୋଇନ୍ଦ୍ରାୟେ ବୋଇଲେ ଯାଅ ରେ ବୃକୋଦରେ । ୧୯ ।
ଯୁଧିଷ୍ଠିର କାନେ କହିଲେ ଗୁପତେଣ ମାର
କେହି ନ ଜାଣୁ ଯେଥୁଂ ହୋଇଯିବା ବାହାର । ୨୦ ।
ଶଗଡ଼ ଓଡ଼ାଇ ଚଳଇ ଭୀମସେନ
କୋଇନ୍ଦ୍ରାୟେ ଗୋଡ଼ାଇ ଅଛନ୍ତ ସନ୍ନିଧାନ । ୨୧ ।
ନଗ୍ର ସ୍ତ୍ରୀମାନେ ପଚ୍ଚରନ୍ତ ଦେଖି
ଯେହାର ପର ପୁତ୍ର ଗୋଟିକ ଗୋ ପଠିଆଅ କାହାଂକ । ୨୨ ।
ଯେ ଯୋଗାଡ଼ ଲୋଡ଼ଟି ଆସିବା ପ୍ରାୟେକ ମଣୁ
ଯେବଣ ଜଣେ ଯାଇ ଗୋ ପୋଡ଼ାବଳ ଏହା କ ନ ଜାଣୁ । ୨୩ ।
ଶତେ ଚନ୍ଦ୍ର ଜିଣି ଯେହାର ବଦନ ଗୋଟି
କ ଯେ ଚନ୍ଦ୍ରସେନ ନଳକୁବେର କାମଦେବ ହେଟି । ୨୪ ।

---

୧୭।୨ ସଙ୍ଗତ ଅସଙ୍ଗତ ଲୋକେ ଲୋଡ଼ନ୍ତ ଯେତେବେଳେ ।

୨।୧ ଅପାଦ—ଆପଦ

କି ଅବା ସ୍ୱେହାକାଇ ନ ପାରିଲୁ ପୋଷି
ଅକାରଣେ ବିନାଶ ନ କର ଆମ୍ଭଙ୍କୁ ବିଅସି । ୨୫ ।
କୋଇନ୍ତ୍ରାଏ ବୋଇଲେ ମୁଂ ରହିଲି ସେହାର ପୁଷ୍ଟି
ପାପ ପୁଣ୍ୟେ ରହିଲି ମୁଂ ସେହାର ଘର ଅଧେକ ଆବୋର । ୨୬ ।
ମୋହୋର କର୍ମେ ସେ ଯେବେ ହୋଇଲା ସେମନ୍ତ
ଧର୍ମ କି ଗଛଇ ଯେ ହୋଇଲେ ନସତ । ୨୭ ।
ତେତିଶ ବରଷ ବେନି ମାସ କୋଡ଼ରେ ଯେ ଧନେ
ପାଳି ପଢ଼ଇ ଗୋ ବକ ରାକ୍ଷସ ଭୋଜନେ । ୨୮ ।
ସର୍ବେ ତୋହୋର ଯେ ସେଥେଂ ରହିଲା ତିନି ମାସ
ତୁ କେମନ୍ତେ ନରବଳି ଗୋ ଦେବୁଟି ରାକ୍ଷସ । ୨୯ ।
କୋଇନ୍ତ୍ରାଏ ବୋଇଲେ ମୋତେ ନ ବୋଲ ଗୋ ସେହା
ଆପଣେ ଯାହା କର କର୍ମ ବୋଲି ତାହା । ୩୦ ।
ସମସ୍ତ ଜନେ ବଦନ୍ତି ବଇକୁଳ୍ୟ ବାଣୀ
ପୁତ୍ର ନୋହିଲ କି ତୋର ଶତ୍ରୁ ମହାପ୍ରାଣୀ । ୩୧ ।
ପଣ୍ଡିତ ଜନେ ବୋଲନ୍ତି ବାବୁ ସେ ମହତ
ପର ଦୁଖେଣ କାତର ସେ ପର ଦୁଖେଣ ହତ । ୩୨ ।
ନଗ୍ର ବାହାରୁ ବାହୁଡ଼ିଲେ ଭ୍ରାତା ମାଏ
ଶଗଡ଼ ଓଡ଼ାଇ ଚଳଇ ପବନ ତନଏ । ୩୩ ।
ଘୋର ଗହନ ବନେ ଚଳଇ ମାରୁତି
ନଗ୍ର ଗ୍ରାଡ଼ିଲକ ଷାଠିଏ ଜୁଣ ପ୍ରତି । ୩୪ ।
ବଳଦ ହଳେ ପୋଢ଼ୁଅ ହଳେ ଓଡ଼ାଇଣ ନେଲା
ସ୍ନାହାନ କର ଆସି ରୋଦର ତଳକୁ ଓହ୍ଲାଇଲା । ୩୫ ।
ଡାହାଣ କରେଣ ଭାତ ବାମ କରେ ପିଠା
ବାମ ଆଣ୍ଠୁ ମାଡ଼ିଣ ଆକର୍ଷିଣ ସନ୍ତୁଷ୍ଟା । ୩୬ ।
ଡାହାଣ କରେ ଭାତ ଗୁଣ୍ଡାଏକ ଖାଇ
ବାମ କରେ ପିଠା ଗୋଟାଏ ଗୋଟାଏ ଗର୍ଭକୁ କ୍ଷେପଇ । ୩୭ ।

---

୩୬।୨ ବାମ ଆଣ୍ଠୁ ମାଡ଼ିଣ ଭୁଞ୍ଜଇ ସନ୍ତୁଷ୍ଟା ।
୩୩।୧ ଓଡ଼ାଇ--ଅଡାଇ । ୩୫।୨ ରୋଦର—ଓଦର ।

ମହା କ୍ଷୁଧାର୍ତ୍ତୀ ହୋଇଣ ଯେ ଭୀମସେନ
ପବନହୁଁ ବେଗ କରି ସେ କରଇ ଭୋଜନ । ୩୮ ।
ଯହୁଁ ବେଳ ହୋଇଲା ପ୍ରହରକ ବେନି
ରାକ୍ଷସ ବଜେକଲା କରେ ଶୂଳ ଦୁଇଗୋଟି ଘେନି । ୩୯ ।
ଦେଖିଲା ଭୀମସେନ ମହା ସମ୍ଭ୍ରମ କାଏଁ
ଭୋଜନ କରନ୍ତେ ବଢିଲା ରାହୁର ତେଜ ପ୍ରାଏଁ । ୪୦ ।
ଆରେ ଆରେ ବୋଲି ଧାମଇଂ ଦୈତ୍ୟେଶ୍ୱର
ଉତ୍ରିଷ୍ଟ କପାଇଂ କରୁ ରେ ମୂଣୋହ୍ନ ମୋହୋର । ୪୧ ।
ଧାଇଂଣ ଡାକ ଦିଅଇ ଦୁଷ୍ଟ ରାକ୍ଷସେ
ବୃକୋଦର ବଚନ ନ ଶୁଣଇ ଭୁଞ୍ଜିବାର ରସେ । ୪୨ ।
ଡାକ ଯହୁଁ ନ ଶୁଣିଲା ପବନ ତନଏଁ
ଗର୍ଜଇ ବକାସୁର ମହାମତ୍ତ ନାଗପ୍ରାଏଁ । ୪୩ ।
ଦଇତର ଗର୍ଜନ୍ତେ କମ୍ପିଲା ଯେ ସପତ ବ୍ରହ୍ମାଣ୍ଡ
ଭୁଞ୍ଜଇ ଭୀମସେନ ବେନି କରେ ବିସ୍ତାରିଣ ତୁଣ୍ଡ । ୪୪ ।
ଡାକଣ ବିରସ ଯେ ହୋଇଲା ବୀରମଣି
ନ ଶୁଣଇ ମାରୁତି ବଧୀର ମତ ଜାଣି । ୪୫ ।
କୋପେଣ ବେନି ଶୂଳ ଯେ ବୁଲାଇ ଅସୁର
ବଜ୍ର ଜାଣି ପିଟିଲା ଭୀମସେନର ଉପର । ୪୬ ।
ଭାଙ୍ଗିଲା ବେନି ଶୂଳ ହୋଇଲା ମର୍ଦ୍ଦିଗୁଣ୍ଡା
ତହିଂ ନ ମାନିଲା ସେ ମାରୁତି ପରଚଣ୍ଡା । ୪୭ ।
ରାଗେଣ ଦାନବକୁଳ ଷଣ୍ଢ ପର୍ବତେକ ଉପାଡ
ଭୀମସେନ ଉପରେ ଉର୍ଦ୍ଧ୍ୱେ ବାହୁ କରି କଗୃଡ । ୪୮ ।

୪୬।୧ ଶୂଳ ଘେନି ଦାନବ ଧାମଇଂ ଖରତର ।
୩୯ ପଦ ସ୍ଥାନରେ ଭିନ୍ନପାଠ—
ଯହୁଂଣ ବେଳ ଯେ ହୋଇ ପହର ଘନ
ରୋଷେ କୋପଭର ଅସୁର ମୂଢ ଅଗ୍ୟାନୀ ।
ବେଳ ହରୁର ଘେନି କୋପଭର ହୁଅଇ ଅସୁର
ମହାତମ ହେଉଅଛୁ ଶଷ୍ଟରେ ତାହାର ।
୪୧।୧ ଉତ୍ରିଷ୍ଟ—ଉଚ୍ଛିଷ୍ଟ

ବୃକୋଦର ମୁଣ୍ଡେ ଯେ ପଡ଼ିଲା ଗିରିବର
ଧୂଳିପ୍ରାୟେ ହୋଇଣ ସେ ପଡ଼ିଲା ଭୂମିର । ୪୯ ।
ଦେଖିଣ ବିରସ ଯେ ହୋଇଲା ରାକ୍ଷସେ
ତାହା ନ ମାନିଲା ଭୀମ ଭୁଞ୍ଜିବାର ରସେ । ୫୦ ।
ଭୁଞ୍ଜିଣ ଶରୀର ସନ୍ତୁଷ୍ଟ ହୋଇଲା ତାର ତୁଷ୍ଟି
ରାକ୍ଷସକୁ ମାରୁଛି ଶୃଙ୍ଖଳା ଲେଉଟି । ୫୧ ।
ବାମକରେ ଦରିଣ୍ଡି ଧଇଲା ଦକ୍ଷିଣ ବେନି ଭୁଜ
ସଞ୍ଚୟେ ମୋହରା ତୁ ରେ ଅଟୁ ଦୁଷ୍ଟ ଯେ ଦନୁଜ । ୫୨ ।
ଅଗ୍ୟାନ ପାମର ରେ ଗ୍ୟାନ ତୋର ନାହିଁ
ଭୁଞ୍ଜିବାର ବେଳେ ଶତ୍ରୁକୁ ମାରି ତ ନ ଯୋଗାଇ । ୫୩ ।
ଦେଖିଣ ରାକ୍ଷସ ଯେ ବିଷାଦ ହୋଇଲା
ଜାଣିଲି ସେ ମୋହରା ତ ମୋ ତନ୍ତୁ ବଳିଲା । ୫୪ ।
ଦାନବ ବୋଇଲା ତୁ ରେ କାହାଁର ବ୍ରାହ୍ମଣ
ମୋହୋର ମୁଣୋହ୍ନି ଉଚ୍ଛିଷ୍ଟ କଲୁ କେଉଁଣ କାରଣ । ୫୫ ।
ଭୀମସେନ ବୋଇଲା ଆବର ଜୀବନ ତୋର କାହିଁ
ସୁମର ଇଷ୍ଟ ଦେବତା ରେ ମରିବୁ ଆଜ ତୁହି । ୫୬ ।
ରାଗେଣ ନିଶାଚର ଭୀମକୁ ଧାଇଁ ପେଲି
ହାଥ ଗୁଡ଼ ବ୍ରାହ୍ମଣ ହୋ ଅସୁରେଶ୍ୱର ବୋଲି । ୫୭ ।
ଅସୁର ବେନି ଭୁଜ ଧରିଣ ବାମହସ୍ତେ
ଡାହାଣ କରେ ମାରୁଛି ମାଇଲା ବଜ୍ର ମୁଥେ । ୫୮ ।
ଭୀମସେନର ବଜ୍ର ମୁଥ ପଡ଼ିଲା ଅସୁରର ମୁଣ୍ଡେ
ଶ୍ରୋଣିତ ଉଦ୍‌ଗାର ହୋଇଲା ତାହାର ତୁଣ୍ଡେ । ୫୯ ।
ପୁଣ ସାଷ୍ଟାମ ହୋଇଣ ଦାନବ ମହାବଳୀ
ଭୀମକୁ ପେଲି ଦେଲା ସେ ପଡ଼ିଲା ମହୀଥଳୀ । ୬୦ ।
ଭୀମସେନକୁ ମାଡ଼ିଣ ବସିଲା ହୃଦଗତେ
ପ୍ରଥମ ଯୁଦ୍ଧେ ହାରଇ ସେ ପବନର ସୁତେ । ୬୧ ।
ବକକଇ ମାଡ଼ ଯେହ୍ନେ ବସଇ ଶ୍ୟାମଳ
ପ୍ରତଗ୍ୟାଂ କରଇ ସେ ଅସୁର ଅର୍ଗଳ । ୬୨ ।

ତୁ ଯେ ମୁଣୋହ୍ନ ମୋହୋର କଲୁସି ରେ ନଷ୍ଟ
ବକୋନ୍ତ ମାଂସ ତୋହୋର ରେ ଭକ୍ଷିବ ପାପିଷ୍ଟ । ୬୩ ।
ଭୀମସେନ ବୋଇଲା ରେ ଅସୁରେଶ୍ୱର ନଷ୍ଟ
ଧର୍ମ ଯୁଦ୍ଧ ତୋହୋର ମୋହୋର ହୋଇଲ କରଣ୍ଟ । ୬୪ ।
କରଣ୍ଟ ବୋଇଲେ ଶୁଣିଲା ଦଇତ୍ୟ ଅଇର
ଆନ୍ୱେଷି ବୃକୋଦର ଲେଉଟାଇ ପାଡ଼ । ୬୫ ।
ମାଡ଼ ବସିଲା ବୃକୋଦର ଦତ୍ୟର ବକ୍ଷସ୍ଥଳେ
ବୃକୋଦର ରୂପ ଯେ ପ୍ରକାଶିଲା ମହାବଳେ । ୬୬ ।
ମନ୍ଦର ମାଡ଼ ଯେହ୍ନେ ବସଇ ମାହେନ୍ଦ୍ର ଗିର
ମାଡ଼ଣ ବୃକୋଦର ଯେ ଦିଅଇ ମହାରଡ଼ । ୬୭ ।
ତୋଷି ମାଡ଼ଣ ମାଇଲା ବଜ୍ର ମୁଥେ
ଲଲାଟ ଫାଟିଣ ଯେ ବହଇ ଶ୍ରୋଣିତେ । ୬୮ ।
ଅସୁର ବୋଇଲା ହୋ କରଣ୍ଟ ମୋହୋର
ଧର୍ମ ଯୁଦ୍ଧେ ହାରିଲି ହୋ ଶୁଣ ଦ୍ୱିଜବର । ୬୯ ।
ଆରେ ଆରେ ଦାନବ ଗ୍ୟାନ ତୋର ନାହିଂ
ବ୍ରାହ୍ମଣ ଯୁଦ୍ଧ ଯେ କରଣ୍ଟ ଲୋଡ଼ୁ କାହିଂ । ୭୦ ।
ଦାନବ ବୋଇଲା ମାଲଯୁଦ୍ଧରେ ପେୂ ବାଟ
ମରଣ ସମ୍ଭାଳ ଯେ ବୋଇଲୁ କରଣ୍ଟ । ୭୧ ।
ଭୀମସେନ ବୋଇଲା ମୋହୋର କରଣ୍ଟ ତୋହୋର କରଣ୍ଟକ
ମରିବାର ବେଳେ ନିଶ୍ଚିତ ହୋଉଛୁ କାହିଂକ ? । ୭୨ ।
ଆରେ ବୃଚପୁଣ୍ଡ ଉପୁଜାଇଲା ନିବାତ କପଟ
ମୋହୋର ହାଥେ ମରଣ ତୋହୋର ପ୍ରତ୍ୟକ୍ଷ । ୭୩ ।
ଆରେ କୁମ୍ଭୀର ଦତ୍ୟକୁ ମାଇଲି ସୁର ନଦୀର ଭିତରେ
କନ୍ଦର୍ପ ଦତ୍ୟକୁ ମାଇଲି ମଧୁବନ ତୋଟାରେ । ୭୪ ।
ହିଡ଼ମ୍ବକ ଦତ୍ୟକୁ ମାଇଲି ହିଡ଼ମ୍ବକ ବନେ
ତୁ ଉବୁରି ଥିଲୁ ପଡ଼ିଲୁ ମେପ୍ଟେ ଦିନେ । ୭୫ ।

---

୬୪।୨ କରଣ୍ଟ—କରଟ—(କର୍+ଅଟ)—ଲାକ୍ଷିଣାଥ—ମୂଳ ବ୍ରତ୍ଥ ଶବ୍ଦ ।

୬୫।୧ ଦଇତ୍ୟ—ଦାନବ, ବଂକ୍ଷପ; ଅଇର—ଅର—ଶ୍ରେଷ୍ଠ, ଦାନବ ଶ୍ରେଷ୍ଠ

ଯେତେ ବୋଲି ଆନ୍ଦୋଳିଣ ମାଡିଲା ତାର ତଣ୍ଟି
ଅସୁର ପ୍ରାଣ ଛାଡିଲା ବେନି ଚକ୍ଷୁ ଘୂର୍ଣ୍ଣି । ୭୬ ।
ଜିଭ ବାହାର ହୋଇଲା ବେନି ଦନ୍ତ ପରିଯନ୍ତେ
ନିଜ ପ୍ରାଣ ବିସର୍ଜିଲା ପଡିଲା ଦୁରାପାତେ । ୭୭ ।
ଆଦିତ୍ୟ ଅସ୍ତଗଲା ପଶ୍ଚିମ ପ୍ରଦେଶ
ସାଧୁ ସାଧୁ ପାବେନ ବୋଲନ୍ତି ନିଦଶେ । ୭୮ ।
ଅସୁର କେଶ ଧରି ଭୀମ କାଳେ ନେଲା
ନଗରଆଡ ମୁହାଣେ ନେଇ ମୁର୍ତ୍ତି କରି ଥାପିଲା । ୭୯ ।
ଶାଳବୃକ୍ଷ ଗୋଟାକରେ ଅସୁରକୁ ଆଉଜାଇ
ମହାମୃତ କରି ଥାପିଲା ନଗରକୁ ଅନାଇଂ । ୮୦ ।
ଭୀମ ହୋଇଅଛି ଅଢାଇ ପ୍ରହର
ପାଞ୍ଚେ ହେଂ ବାଟ ଗୃହଂ ଅଛନ୍ତି ବସିକରି ଦ୍ୱାର । ୮୧ ।
ସଂପୂର୍ଣ୍ଣ ତିନି ପ୍ରହର ହୋଇଅଛି ନିଶି
ଯୁଧିଷ୍ଠିର ସମ୍ମୁଖରେ ଭୀମସେନ ମିଳିଲେକ ଆସି । ୮୨ ।
ଯୁଧିଷ୍ଠିର ବୋଇଲେ ମାଗୋ ବହନ ହୋଇ ଯିବା
ଭୀମ ପାହିଲେ ପୁଣ ଜାଣନ୍ତା ହୋଇବା । ୮୩ ।
ଯେ ନଗ୍ର ଲୋକେ ସମସ୍ତେ କରିବେ ଯେ ପୂଜା
ଯେ ନଗ୍ରେ ଭୀମକୁ ପୁଣ କରିବେଟି ରାଜା । ୮୪ ।
ଯେତେ ବିଚାରିଣ ବାହାର ନିଶାରାତ୍ର
ନଗ୍ର ତେଜି ବନେ ମିଶିଲେ ତତ୍‌କ୍ଷଣାନ୍ତ । ୮୫ ।
ବଡ ବଡ ବୃଟପ ଯେ ଗହନ କଣ୍ଟା ଭୂମି
ଚାଲି ନ ପାରନ୍ତି ମାତାଯେ ଯୁଧିଷ୍ଠିର ଦେବ ସ୍ୱାମୀ । ୮୬ ।
ଯୁଧିଷ୍ଠିର ବୋଇଲେ ଚାଲି ଧୁରି ହୋଇଯିବା ଯେ ବନ ଉପେକ୍ଷି
ଲେଉଣ ନଗ୍ର ଜନେ ନ ପାବନ୍ତି ଯେମନ୍ତେ ଆମ୍ଭଙ୍କୁ ଦେଖି । ୮୭ ।
ଭୀମସେନ ବୋଇଲା ମାତା ଗୋ ଶିରେ ମୋର ବସ
ଶିରେ କୋଇଲା ଦେଖି ବସି ହୋଇଲେ ହରଷ । ୮୮ ।
ଡାହାଣ କାନ୍ଧେ ଯୁଧିଷ୍ଠିର ବାମ କାନ୍ଧେ କରନ୍ତୀ
ଦୁଇ କାଖେ ବସିଲେ ନକୁଳ ସହଦେବ ଭାଇ ବେନି ଗୋଟି । ୮୯ ।

୮୦।୨ ମୃତ—ମୂର୍ତ୍ତି  ୮୭।୧ ଧୁରି—ଦୂର

ପବନଙ୍କ ବେଗେ ଯେ ଚଳଇ ବୃକୋଦର
ଝୁଣ୍ଟି ଆଣି ଘାଏ୍େ ଗିରିବର ହୋଉଛନ୍ତି ଚୂର । ୯୦ ।
ନଗ୍ରୁଂ ବାହାର ହୋଅନ୍ତେ ଗତ ପ୍ରହରେକ ଥିଲା
ଯେତିକା ପ୍ରହରକେ ଭୀମସେନ ଦ୍ୱିଶାଶତେ ଯୋଜନ ଗଲା । ୯୧ ।
ଶ୍ରୀରାମବେଣୀ ବୋଲି ଯେତିକ ନଦୀ ଗୋଟିଏ୍
ତହିଂର କୂଳେ ପ୍ରବେଶ ହୋଇଲେ ଯାଇ ରଜନୀ ପ୍ରଭାତ ହୋଏ୍ । ୯୨ ।
ଲକ୍ଷଣ ଜଟାସୁରକୁ ମାଇଲେ ସେହି ବନେ
ଶତଜଟା ବୋଲିଣ ସେ ବନସ୍ତର ନାମେ । ୯୩ ।
ସେ ନଦୀରେ ସ୍ନାନ ସାରିଲେ ପ୍ରାତଃ ସ୍ନାହାନ
ରଣସୁନ୍ଦର ବୋଲି ଯେ ପର୍ବତେକ ବିଦ୍ୟମାନ । ୯୪ ।
ଦେଖନ୍ତି ଗଣ୍ଡା ହରିଣ ଚରନ୍ତି ପଲ ପଲ
ବୋଲନ୍ତି ଯୁଧିଷ୍ଠିର ବାବୁ ଏ୍ ବନ ଅଟଇ ଭଲ । ୯୫ ।
ରହିଲେ ପଞ୍ଚୁ ନନ୍ଦନ ଘୋର ଗହନ ଅଟବୀ
ସୁଖେ ବିହରନ୍ତି ବନେ ସେ ଶୂରବର ପାଣ୍ଡବା । ୯୬ ।
ଅଗସ୍ତି ପଚାରିଲେ ବଇବସୁତ ମନୁ
ବକ ଦୈତ୍ୟ ବଧ ହୋଇଲା ଯୁଧିଷ୍ଠିରଙ୍କର ଗ୍ୟାନୁ । ୯୭ ।
ଭୀମସେନ ରାକ୍ଷସକୁ ଆଣିଲା କେଶ ଧରି
ନଗ୍ର ବାହାରେ ଥାପିଲା ପ୍ରେତାଧିରୂପ କରି । ୯୮ ।
ପାଣ୍ଡବେ ଯେ ବାହାର ହୋଇଲେ ମହା ନିଶାକାଳେ
ମହା ଗହନେ ପଶିଲେ ରଜନୀ ପ୍ରସରର ବେଳେ । ୯୯ ।
ଶୁଣ ହୋ ଯୋଗେଶ୍ୱର ବୋଲନ୍ତି ଅଗସ୍ତି
ତିମିର ବିଦାରଣ ସ୍ୱାମୀ ବିକାଶିଲେ ଜ୍ୟୋତି । ୧୦୦ ।
ପ୍ରଭାତେ ନଗ୍ରୁଂ ବାହାର ହୋନ୍ତି ଯେ ପୁରଜନ ମାନେ
ଦେଖିଲେ ଭୀଷ୍ମରୂପେ ଗୃହିଂଇ ରାକ୍ଷସ ପ୍ରଜ୍ୱଳିତ ନୟନେ । ୧୦୧ ।
ବିକଟାଳ ବଦନ ଯେ ଊର୍ଦ୍ଧ୍ୱ ଜିହ୍ୱାବଳୀ
ଦଶ ନଖ ବିରାଜିତ ତେଜ ତା ବିଜୁଳି । ୧୦୨ ।

---

୧୦୧ { ବ୍ୟବସାୟ୍ ନିମନ୍ତେ ବାହାର ନଗ୍ରଜନେ
{ ଦେଖିଲେ ମହା ବିସ୍ମୟ୍େ କରି ଗୃହିଂଙ୍କୁ ନୟନେ ।

ବସ୍ତ୍ରର ଭୁଣ୍ଡି ଯେ ହୁଦେ ଲୁଲଇ ଜିହ୍ୱା
ଦେଖିଲେ ପୁରଜନମାନେ ଆକର୍ଷଣ ଦୁଲ୍ଲଭ । ୧୦୩ ।
ନଗ୍ରକୁ ଆନ୍ଦଷଣ ମହାଖ୍ରିଷ୍ଟ ମୂର୍ତ୍ତି
ଭାଳନ୍ତି ପୁରଜନେ ଠାକୁର ହୋଇଲେ ଅବପୃଭି । ୧୦୪ ।
ଅମ୍ବିକା ନାମେଣ ହକାରିଲେ ଘୋଷଣକାରୀ
କାହାର ଘରେ ହୋଇଥିଲା କାଳି ଠାକୁରଙ୍କର ପାଳି । ୧୦୫ ।
ଝାଡକାରେ ଘୋଷଣକାରୀ ଗଲା ବେଗେ ଧାଇଁ
ବେଦଶର୍ମଣ ପଣ୍ଡାକୁ ସେ ଡାକଲେ ହକରାଇ । ୧୦୬ ।
ପୁରଜନମାନେ ପଚ୍ଚରନ୍ତି ବ୍ରାହ୍ମଣକୁ
କି ପୁଭି କର ହୋ ନ ପାରିଲୁ ଠାକୁରଙ୍କୁ । ୧୦୭ ।
କସ କସ ଯୋଗାଡ ପଣ୍ଡା ହେ କସ ହେଲା କାଲି
ବେଦଶର୍ମଣ ବୋଇଲା ମୁଁ ସମ୍ବର୍ଦ୍ଧେଣ କାଲି ଯୋଗାଡ ହେଲି । ୧୦୮ ।
ନରବଳି ଜଣେ କସ କଲ ହେ ଦ୍ୱିଜବର
ବେଦଶର୍ମଣ କହଇ ନଗ୍ର ଜନଙ୍କ ଆଗର । ୧୦୯ ।
ମୋହୋର ପୁରେ ରହୁଥିଲେ ମାତା ପାଞ୍ଚ ପୁତ୍ର
ମୋର କଷ୍ଟ ଦେଖି ହେଲେ ସେ ଭାଇନ୍ତି ।୧୧୦ ।
ନଗ୍ର ଜନ ବୋଇଲେ ପଣ୍ଡା ହେ ମନ୍ଦ କୃତ୍ୟ କଲ
ଆପଣେ ନ ଯାଇ କମ୍ପେ ପରକୁ ପେଷିଲ । ୧୧୧ ।
ଯାହାକୁ ପଠିଆଇଲ ଦେଖ ନି ତୋହୋର ପୁରେ
ତତକ୍ଷଣେ ଧାଇ ଧାଇଁ ଦେଖନ୍ତି ବ୍ରାହ୍ମଣ ଅନ୍ତଃପୁରେ । ୧୧୨ ।
ଦେଖିଲେ ସେ ପୁରେ ଜନ ମନୁଷ୍ୟ କେହି ନାହିଁ
ବେଦଶର୍ମଣ ବ୍ରାହ୍ମଣ ଅଗ୍ରତେ ଯାଇ କହି । ୧୧୩ ।
ପଣ୍ଡାପୁତ୍ର ମୋଣୋହି ଯୋଗାଡ ଖାଇଲା ସେ ଦୁର୍ମୁଖ ବ୍ରାହ୍ମଣ
ରାତ୍ରେ ପଳାଇ ସେ ଗଲେ ଛଡଜଣ । ୧୧୪ ।
ବେଢିଣ ପୁରଜନେ ହୋଇଣ ବଜ ବଜ
ପର କରଇ କିକ ହୋ ଆପଣାର କାର୍ଯ୍ୟ । ୧୧୫ ।

---

୧୦୩।୨ ଦେଖିଣ ନଗ୍ରଜନେ ହୋଇଲେ ଅଗ୍ନିଭୂଆ ।
୧୦୪।୧ ନଗ୍ରକୁ ଆନ୍ଦଷଣ ମହା ତେଜ ମୂର୍ତ୍ତି ।

ଠାକୁରଙ୍କର କୋପ ହୋଇଲା ତୋହୋର ଯତମାଦେ
ଯେହ୍ନକ୍ଷଣି ନଗ୍ରକୁ ପଡବ ଦୁସହ ପରମାଦେ । ୧୧୬ ।
ଚଲ ହୋ ବେଦଶର୍ମଣ ପଣ୍ଡା ହେ ଯେ ମହାନଗ୍ର ରଖ
ଯେହ୍ନକ୍ଷଣି ଠାକୁରଙ୍କୁ ହୋଅ ବଳଭକ୍ଷ । ୧୧୭ ।
ଅନେକ ଶୀତଳ ଯୋଗାଡ ଘେନ ପୁର ଜନେ
ମୋଣୋହ୍ନ ଯୋଗାଡ ଅପ୍ରମିତେ ଆଣନ୍ତି ବହନେ । ୧୧୮ ।
ଶଗଡ ଭିତରେ ଅନେକ ଶୀତଳ ଯୋଗାଡ ସେ ଭର
ଚଳଇ ବେଦଶର୍ମଣ ନାରାୟଣ ନାରାୟଣ ସୁମର । ୧୧୯ ।
ଭାତ ପିଠା ଯେତେ ଶଗଡେ ପୂରୋଇ
ବକ ଦଇତ୍ୟ ଛାମୁରେ ପ୍ରବେଶ ବିପ୍ର ଯାଇ । ୧୨୦ ।
ଦୂରେଣ ଥାଇ ବିପ୍ର ଯେ ହୋଇଲା ପ୍ରଣିପତ୍ୟ
ବିନୟ ଭାବ ହୋଇ ସ୍ତୁତି କରଇ ବହୁତ । ୧୨୧ ।
ପହଣ୍ଡେ ଯାଇଂ ନଉଛୁଳି କରଇ ପରଣାମି
ବୋଇଲା ପୁରଜନ ମାନଙ୍କୁ କୋପ ନ କରିବା ଦେବସ୍ୱାମୀ । ୧୨୨ ।
କୋପ ଶାନ୍ତ କରିବା ଯେହ୍ନେ ଭୁବନ ଦେବ ରକ୍ଷ
ମୋହୋର ଘରେ ପାଳ ମୋତେ ଦେବ ଭକ୍ଷ । ୧୨୩ ।
ଅନେକ ବଇକୁଳ୍ୟେ ସ୍ତୁତି କରଇ ବିପ୍ର ହୋଧେ
ପ୍ରଣିପତ୍ୟ ହୋଇଯାଇ ମିଳିଲା ସନ୍ନିଧ୍ୟେ । ୧୨୪ ।
ଦେଖଇ ବିପ୍ର ଅଲକ୍ଷଣ ବକ ରାକ୍ଷସର କାୟେ
ଜୀବନ ନଆଶୀ ବିପ୍ର ହୋଇଲା ନିର୍ଭୟେ । ୧୨୫ ।
ଅସୁରର ଭୁଜ ଧରି ଉଭା ଦ୍ୱିଜବର
ସ୍ୱାମୀ ତୋହୋର ସଞ୍ଚିଲା ସିନା ଯେକଚକ୍ର ନଗ୍ରପୁର । ୧୨୬ ।
ସମସ୍ତ ପୁରଜନ ଆମ୍ଭେ ଅଛୁ ତୋର ଗର୍ବେ
ଅନେକ ଦୋଷୀ ଆମ୍ଭେ ତୋତେ ଭାବେ ଅଭାବେ । ୧୨୭ ।
ଯେତେ ବୋଲି ବିପ୍ର ଅସୁର ଭୁଜ ଧରି
ସ୍ୱାମୀ ମୋତେ ଭକ୍ଷ୍ୟପାନ କର ବୋଲି ଅସୁର ଭୁଜ ଉଚ୍ଚୁଡି । ୧୨୮ ।
ବୃକ୍ଷକୁ ଆଉଜାଇ ସିନା ଥିଲା ଅସୁର ଆପି
ଗଡଣ ପଡିଲା ସେ ଅସର କାମରୂପୀ । ୧୨୯ ।

ଅସୁରକଇ ଦେଖି ନରୋପଇ ବେଦ ଯେ ଶର୍ମଣ
ଦେଖଇ ରାକ୍ଷସର ଶଙ୍କରେ ନାହିଁ ପ୍ରାଣ । ୧୩୦ ।
ନଗ୍ରଲୋକ ମାନେ ରହିଥିଲେ ଦୂରେ
ଧାଇଁ ଯାଇଁ ସମସ୍ତେ ମିଳଲେ କଡରେ । ୧୩୧ ।
ଅସୁର ବଧ ଦେଖି ବେଦଶର୍ମଣକୁ ତୁସ୍ତି କରି
ତୋହୋର ପ୍ରସନ୍ନେ ଆମ୍ଭର କଷ୍ଟ ଗଲା ପାରି । ୧୩୨ ।
ମହତ ଭେଟିଲୁ ତୁ ଆମ୍ଭନ୍ତ କଲୁ ହେ କାରଣ
ଚଉକତ ଲୋଡନ୍ତ ସେ ଭିକ୍ଷୁକ ବ୍ରାହ୍ମଣେ । ୧୩୩ ।
ଅଦଭୁତ ପୁରୁଷନ୍ତ ପାଇବା କାହିଁ ଲୋଡି
ଆମ୍ଭର ରାଜ୍ୟେ ହୁଅନ୍ତା ଠାକୁର ଅଧିକାରୀ । ୧୩୪ ।

ଏକଚକ୍ରା ନଗ୍ର ଲୋକେ ବେଦଶର୍ମଣକୁ କଲେ ପୂଜା
ଏକଚକ୍ର ନଗ୍ରେ ବେଦଶର୍ମଣ ହେଲା ରାଜା । ୧୩୫ ।
ବଦଯୂନ୍ତ ଅଗସ୍ତି ଶୁଣ ମନୁ ମହତ
ମହତ ଆଶ୍ରେ କଲା ପ୍ରାଣୀ ହୋଅନ୍ତ ଏମନ୍ତ । ୧୩୬ ।
ସେହି ନଗ୍ରେ ବେଦଶର୍ମଣ ଭିକ୍ଷାପାନ କରୁଥିଲା
ବଡଲୋକ ଆଶ୍ରେ କରି ନୃପତି ହୋଇଲା । ୧୩୭ ।
ବେଦଶର୍ମଣ ଭାରିଯା ଭିକ୍ଷୁକ ବ୍ରାହ୍ମଣୀ
ପୁଣ୍ୟ ପ୍ରସାଦେ ସେହି ନଗ୍ରେ ହେଲା ଠାକୁରାଣୀ । ୧୩୮ ।

ବନସ୍ତେ ବକ ରାକ୍ଷସର ମୂଳେ ଯେତେକ ଥିଲା ଧନ ଭଣ୍ଡାର
ପୁରଜନ ମାନେ ସେ ସମସ୍ତ କଲେ ଜୂର । ୧୩୯ ।
ରାଜ୍ୟେଣ ଅଭିଷେକ ବେଦଶର୍ମଣ ବ୍ରାହ୍ମଣ
ପାନ ଅମନାତ୍ୟ ମାନ କଲାକ ଭିଆଣ । ୧୪୦ ।
ଅନେକ ସୁସ୍ତ ପାଇଲେ ସେ ନଗ୍ର ପୁରଜନେ
ଅସୁରକୁ ଅନେକ ଭୟ ଉପୁଜୁ ଥିଲା ମନେ । ୧୪୧ ।
ଇନ୍ଦ୍ର ଦେବତା ହୋଇଲା ଅନେକ ତୁଷ୍ଟି
ଅସୁର ନାଶ ଗଲା ସରିଲା ସ୍ୱର୍ଗର ଅରିଷ୍ଟି । ୧୪୨ ।

ସୋଦରନ୍ତ ଅନେକ ନାଶ କରିଥିଲା ରାକ୍ଷସ
ପାସୋରିଲା ସମସ୍ତ କଷ୍ଟ ଫିଟିଲା ତରାସ । ୧୪୩ ।

ପୃଥିବୀର ଭାରଭର ଉଶ୍ୱାସ ହୋଇଲା
ଦୁର୍ଭିକ୍ଷର କଡ଼ଶୋପ କଞ୍ଚେ ନାଶଗଲା । ୧୪୪ ।
ବଦନ୍ତି ଅଗସ୍ତି ଶୁଣ ହେ। ଯୁଗପତି
ଆପଣେ ଦୁଖେ ପଡ଼ି ପାଣ୍ଡବେ ଫେଡ଼ନ୍ତି ପରର ଦୁର୍ଗତି । ୧୪୫ ।
କୁମ୍ଭୀରା କନ୍ୟା ହିଡ଼ମ୍ବକ ବକାସୁର
ମନୁଷ୍ୟ ଧ୍ୱଂସନ ଯେ ପୃଥ୍ୱୀକି ମହାଭାର । ୧୪୬ ।
ଅନେକ ବ୍ୟଥା ଯନ୍ତ୍ରଂ ପାଇଲେ ଦେବତାମାନେ
ବସୁଧା ବଇକୁଲ୍ୟ ଯେ ଅସୁରଙ୍କର ଗହନେ । ୧୪୭ ।
ଋଷି ବିପ୍ର ତପୋଧନେ କରନ୍ତି ତପ ଉପଇଚ୍ଛା
ଦୁରାପଦ ଭୟରୁ କେହି କରନ୍ତା ନୋହିଲେକ ରକ୍ଷା । ୧୪୮ ।
ତ୍ରିଦଶ ଦେବେ ଯେ ବସି ଭାଳିଲେ ଆକାଶେ
ଅଦଭୁତେ ପାଣ୍ଡବନ୍ତି ପେଷିଲେ ବନବାସେ । ୧୪୯ ।
ଯେ ଗୃହ ଦୈତ୍ୟନ୍ତ ବଧ କରିବାର ନିମନ୍ତେ
ପାଣ୍ଡବେ ବନବାସ ହୋଇଲେ ଯେଥିର ଯେ ଅର୍ଥେ । ୧୫୦ ।
ବନ ଭୁବନ ରକ୍ଷା କଲେ ଦୁଷ୍ଟନ୍ତ ନିବାର
ମଧୁବନେ, ହିଡ଼ମ୍ବକ ବନେ ଘଟଉତ୍କଟକୁ କଲେ ଅଧିକାରୀ । ୧୫୧ ।
ଓଡ଼ାଦ ଶିବପୁରେ ଗୃଣ୍ଡାଳ ବଳ ଧ୍ୱଂସି
ଧର୍ମ ଉଦତ କଲେ ଗୁପତେ ବନବାସୀ । ୧୫୨ ।
ବିଷ୍ଣୁକର ବ୍ରାହ୍ମଣର ଆଶ୍ରିତେ ରହିଲେ
ଶିବମ୍ବନେ ବିଷ୍ଣୁକରକୁ ଠାକୁର କରାଇଲେ । ୧୫୩ ।
ଯେ କଚନ୍ଦା ନଗ୍ରେ ରହିଲେ ବେଦଶର୍ମଣର ଘରେ
ସେହି ଠାକୁର ହୋଇଲେ ଯେ କଚନ୍ଦା ନଗ୍ରପୁରେ । ୧୫୪-୯୦୯୮ ।



## ଦ୍ରୌପଦୀ ସ୍ୱୟମ୍ବରେ ଲକ୍ଷ ନିର୍ମାଣ

ମନୁ ପଚ୍ଚରଲେ ଅଗସ୍ତିଙ୍କର ପାଶେ
ଶୁଣିଲେ ମହାତ୍ମନ ହୋଇଲେ ସନ୍ତୋଷେ । ୧ ।

---

୧୪୮।୧ ତପ ଉପଇଚ୍ଛା—ତପ ଉପେକ୍ଷା, ତପସ୍ୟା ପରିତ୍ୟାଗ ।

ପୃଥି ଉଦରୁ ଜାତ ହେଲା ମହାମୁନି
ତବ ମୁଖୁଂ ଶୁଣି ଶାନ୍ତ ହୋଇବ ମୋର ଧନି । ୨ ।
କାର୍ତ୍ତିକ ଶୁକଳ ଯେ ପୌର୍ଣ୍ଣମୀର ଦିନ
ଗୁରୁବାର ରୋହିଣୀ ନକ୍ଷତ୍ର ବିଦ୍ୟମାନ । ୩ ।
ଦ୍ୱାରକାକୁ ବିଜେ କଲେ ରାମକୃଷ୍ଣ ବେନି ଭ୍ରାଥେ
ହସ୍ତିନାକୁ ବିଜେ କଲେ ଧୃତରାଷ୍ଟ୍ରଙ୍କୁ ଦେଖିବା ନିମନ୍ତେ । ୪ ।
ଦେଖିଣ ଧୃତରାଷ୍ଟ୍ର ଅନେକ ଗଉରବେ କଲେ ପୂଜା
ଆସ୍ଥାନେ ବିଜେ କଲେ ଦେବାଧି ଦେବରାଜା । ୫ ।
ଗୋବିନ୍ଦେ ବିଜେ କଲେ ବିଦୁରଙ୍କୁ ଘେନିଣ ସୃକାନ୍ତେ
କୁଶଳ ବାରତା ପଚାରନ୍ତି ଜଗନ୍ନାଥେ । ୬ ।
ବିଦୁରେ ବୋଇଲେ ସ୍ୱାମୀ ପୋଏ ଗଲେ କେଉଂଣ ବନେ
ବାରତା ନ ପାଇଲୁ କେଣେ ଗଲେ ଛଡ଼ ଜଣେ । ୭ ।
ବିଦୁର ବୋଇଲେ ସ୍ୱାମୀ ପୋଏ କେମନ୍ତେ ବାରତା ପାଆନ୍ତୁ
ପଞ୍ଚାଳ ଦେଶକୁ ଯେ ବହନ ହୋଇ ଯାନ୍ତୁ । ୮ ।
ଅର୍ଜୁନକୁ ପ୍ରାପତ ହୋଇବାକ ଦ୍ରୌପଦୀ
ରାଜାନ୍ତ ନିମନ୍ତ ଅଛି ପଞ୍ଚାଳ ଆଧିପତି । ୯ ।
ଦ୍ରୋପଦ ରାଜା ଯେ କରଅଛି ସୟମ୍ବର
ଦୁର୍ଯୋଧନ ଯିବ ଆଜ ଅଢାଇ ପହର । ୧୦ ।
ସମସ୍ତ ଦେଶର ଯେ ଯିବେକ ନୃପତି
ଅର୍ଜୁନ ନିମନ୍ତେ ଜାତ କରଅଛି ଦ୍ରୌପଦୀ । ୧୧ ।
ଖୋଜି ନ ପାଇଲୁ ଯାରେ ଅଛନ୍ତି କାହିଂ
ପୃଥିକୁ ଚିନ୍ତା କର ତୁ ଯଦୁକୁଳ ସାଇଂ । ୧୨ ।
ସ୍ୱାମୀ ପାଣ୍ଡବେ ଯେବେ ବ୍ରତନ୍ତି ବିଷ୍ଣୁଙ୍କ ଆଶ୍ରିତେ
ତୋହର ଚିନ୍ତା ନ କଲେ ସେ ରାଜ୍ୟ ପାଇବେ କେମନ୍ତେ । ୧୩ ।
ବିଦୁର ତୁଲେ କଥା ହୋଅନ୍ତେ ନାରାୟଣ
ବ୍ୟାସଙ୍କୁ ଲୟେ କରି କଲେ ସୁମରଣ । ୧୪ ।
ଦଣ୍ଡ କମଣ୍ଡଳ କଷା କଉପୁନ ବିଭୂତି
ପାରେଶ୍ୱର ନନ୍ଦନ ସାଇଂ ମିଳଲେ ତତ୍‌କ୍ଷଣାନ୍ତି । ୧୫ ।

---

୩।୨ ରୋହିଣୀ ନକ୍ଷତ୍ର—କୃତ୍ତିକାଗତ ରୋହିଣୀ । ୯।୨ ନିମନ୍ତ—ନିମନ୍ତି ।

ଉଠିଣ ବିଦୁର ଯେ ଶତ ସହସ୍ରେ ଦଣ୍ଡ ପରଣାମି
ବ୍ୟାସଙ୍କୁ ପୂଜା କଲେ ଶ୍ରୀ ପୁରୁଷୋତ୍ତମ ଦେବସ୍ୱାମୀ । ୧୬ ।
ନାରାୟଣ ପୁଚ୍ଛା କଲେ ବ୍ୟାସଙ୍କର ମୁଖ ଚାହିଂ
ଭୋ ବ୍ୟାସେ ଯେତେବେଳେ ପାଣ୍ଡବେ ରହିଛନ୍ତି କାହିଂ । ୧୭ ।

ଧ୍ୟାନେଣ ଚିନ୍ତିଲେ ଯେ ସତ୍ୟବତୀର ସୁତେ
ଦେଖିଲେ ପାଣ୍ଡବେ ରହିଛନ୍ତି ପଞ୍ଚୁବଟୀ ବନସ୍ତେ । ୧୮ ।
ବ୍ୟାସେ ବୋଇଲେ ଶୁଣିମା ଦାମୋଦର
ପାଣ୍ଡବେ ରହିଛନ୍ତି ଯେ ଶ୍ରୀ ରାମବେଣୀ ତୀର୍ଥର । ୧୯ ।

ସୁର ନଦୀରେ ମାଇଲେ କୁମ୍ଭୀର ଦନ୍ତ୍ୟକୁ
ମଧୁବନେ ନାଶକଲେ କନ୍ଦର୍ପ ରାକ୍ଷସଙ୍କୁ । ୨୦ ।
ହିଡମ୍ବକ ବନେ ହିଡମ୍ବକକୁ ମାରି
ଯେକଚକ୍ରା ନଗ୍ରେ ବକାସୁରକୁ ନିବାରି । ୨୧ ।
ହିଡମ୍ବିକା ପ୍ରଦାନ ହୋଇଲା ଭୀମସେନ
ଘଟଉତ୍କଚ ନାମେ ତହିଂ ପୁତ୍ରେକ ଉତପନ୍ନ । ୨୨ ।
ସର୍ବ କୁଶଳେ ପାଣ୍ଡବେ ତହିଂ ବ୍ରତିଛନ୍ତି କ୍ଷମେ
ଯାହାକଇଂ ଚିନ୍ତା କରନ୍ତି ପୁରୁଷଙ୍କ ଉତ୍ତମେ । ୨୩ ।
ବ୍ୟାସେ ବୋଇଲେ ବିଦୁରର ବଡ ଦୟା
ଯେହାର ବୁଦ୍ଧିବଳେ ପାଣ୍ଡବେ ପାର ଗଲେ ମାୟା । ୨୪ ।
ଜଗନ୍ନାଥେ ବୋଇଲେ ବ୍ୟାସେ ତୁମ୍ଭେ ଦ୍ରୋପଦର ଦେଶକୁ ଯିବ
ବ୍ୟାସ କୂଟ କରି ତହିଂ ଲକ୍ଷେକ ପାଡିବ । ୨୫ ।
ଅଶ୍ରୁତ ଅଦୃଷ୍ଟି ହି ଲୋକ୍ୟେ ହୋଇବ
ମନଭେଦୀ ନାରାଜେ ସେ ଲକ୍ଷ ଜୟେ ଯିବ । ୨୬ ।

ଯେମନ୍ତ କରିଣ ପାଡିବାକ ଲକ୍ଷ
ତଳେ ଧନୁ ଯେକ ଥୋଇବ ବଳ ଯେକଲକ୍ଷ । ୨୭ ।

ଯେହା ସଞ୍ଚଣ ତୁମ୍ଭେ ଯିବ ଘୋରବନେ
ପାଣ୍ଡବଙ୍କୁ ପଠାଇ ଦେବ ଦ୍ରୋପଦ ଭୁବନେ । ୨୮ ।

ଦୁର୍ଯୋଧନ ଶକୁନି ଯେ କଲେକ ଗାରିମା
ଲକ୍ଷେ ରାଜାଙ୍କୁ ଦେଖାଇବା ନା ଅର୍ଜୁନର ମହିମା । ୨୯ ।

ଗୋବିନ୍ଦେ ବୋଇଲେ ଆମନ୍ତ୍ର ନିମନ୍ତ୍ରିଲେ ଦ୍ରୋପତେ
ଆମ୍ଭେ ବେନି ଭାଇ ଯାଉଅଛୁ ଉଗ୍ରସେନ ସନ୍ଧିତେ । ୩୦ ।
ନାରାୟଣଙ୍କ ଆଗ୍ୟାଂଏ ଯେ ଚଳନ୍ତି ମୁନିବରେ
ମନଭେଦୀ ନାରାଜ ଦିଲେ ବ୍ୟାସଙ୍କ ହାଥରେ । ୩୧ ।
ଏ ନାରାଜ ଗୋଟି ନେଇ ଅର୍ଜୁନକୁ ଦେବ
ଏ ଶବ୍ଦସ୍ତ୍ର ବାସବ ରାଧାଚନ୍ଦ୍ର ଝିନ୍ଧିବ । ୩୨ ।
ରାଧାଚନ୍ଦ୍ର ନେଇ ପାଣ୍ଡବ ସଭିରେ
ଅନ୍ତର୍ଦ୍ଧାନେ ବୁଲୁଥିବଟି ଆକାଶ ଶୂନ୍ୟରେ । ୩୩ ।
ରାଧାଚନ୍ଦ୍ର ମନଭେଦୀ ଶବ୍ଦସ୍ତ୍ର ଯେ ଘେନି
ତହୁଁ ଚଳିଗଲେ ସେ ବ୍ୟାସ ମହାମୁନି । ୩୪ ।
ପ୍ରବେଶ ହୋଇଲେ ଯାଇଂ ପଞ୍ଚାଳର ଦେଶେ
ସଦାନନ୍ଦ ମନ୍ତ୍ରୀ ଜଣାଇଲା ବିଜେ କଲେ ବ୍ୟାସେ । ୩୫ ।
ଧାଣ୍ଡିକାରେ ଆସ୍ଥାନ ତେଜିଲେ ଦ୍ରୋପଦେ
ପାଦ୍ୟ ଅର୍ଘ୍ୟ ଦେଇ ପ୍ରଣିପତ୍ୟ ବ୍ୟାସଙ୍କ ପଦ୍ମପାଦେ । ୩୬ ।
ବ୍ୟାସେ ବୋଇଲେ ରାଜା ପରମ କଲ୍ୟାଣ ହୋଅସି
ସ୍ୱୟମ୍ବର ବିଧାନ ରାଜା ପାଣ୍ଡଲୁ କି ବିଶେଷି । ୩୭ ।
ଗଙ୍ଗା ନଦୀକୂଳେ ଉଠଇ ଘରମାନ
ପାଞ୍ଚ ମଭୂର୍ତି ଘଟଣକାରୀ ଲାଗିଅଛନ୍ତି ବହନ । ୩୮ ।
ପାଞ୍ଚ ଦଣ୍ଡ ଘେନି ନିର୍ମିତ ଯେ ନଳକାଠି
ଭିନ ଭିନ ନଳ ଆପୂତନ ଏକ ବଖରା ଗୋଟି । ୩୯ ।
ବାଅଷଠି ବଖରାଏ ଘରେକ ନିର୍ମିତ
ଛଅ ଘର ମାନ ହୋଇଲାନି ଚଉବିଂଶ ଅହ୍ୱବ୍ରତ । ୪୦ ।
ଗଜ ଶାଳମାନ ପାଞ୍ଚ ମେବକ୍ଷ ପନ୍ଦର ସହସ୍ର-ଘର
ଅଶ୍ୱ ଶାଳମାନ ହୋଇଲା ସତୁରି ସାଗର । ୪୧ ।

---

୩୩।୨ ଅନୁବ୍ରତେ ବୁଲୁଥିବ କୁରାଳଚନ୍ଦ୍ର ଆକାରେ ।
୩୮।୧ { ଗଙ୍ଗାକୂଳେ ଉଠାଉ ଅଛଇ ଛଅ ଘରମାନ ।
ଗଙ୍ଗାକୂଳେ ଉଠଇ ଛତ୍ରଶାଳାମାନ ।
୪୧।୧ ଗଜ ଶାଳମାନ ପାଞ୍ଚ ପଦ୍ମ ପନ୍ଦର ମେବକ୍ଷ ଘର ।

ରାଜାମାନଙ୍କ ଯେ ନବର ଆଏ୍ତନ
ଦଶ ଅହ୍ମବ୍ରତ ଘର କଣସ୍ତୁ ନିର୍ମାଣ । ୪୨ ।
ଥମ୍ବର ଉପରେ ଯେ କଣସ୍ତୁ ଗୁପ୍ୟେଣୀ
ରୁଅ ଘର ବଡା ସୁବର୍ଣ୍ଣେ ନବାଣି । ୪୩ ।
ତହ୍ନଂର ଉପରେ ଯେ ରୂପାର ଗୁପ୍ୟେଣୀ
ବସନ୍ତ କଳଶ ଯେ ଝଳନ୍ତ ରତ୍ନମଣି । ୪୪ ।
ଲକ୍ଷେକ ଜଗଣ୍ଡା ଆସ୍ଥାନ ରାଜା ବସିବାକୁ
ସହସ୍ରେ ସହସ୍ରେ ଯୋଗାଡ ମୁଣୋହ୍ନ ଠାବକୁ । ୪୫ ।
କଣସ୍ତୁ ଘଟଣ ଲକ୍ଷେକ ଯୋଗାଡ
ଲକ୍ଷେକ ରାଜାଙ୍କୁ ଯେନ୍ହମତ ସମ୍ଭାର । ୪୬ ।
ଗୁପ୍ୟା ମଣ୍ଡୋପେ ସମ୍ଭମ୍ବର ଥାନକୁ ନବାଣ
ପାଞ୍ଚ ଯୋଜନ ଆଏ୍ତନ ଗୁପ୍ୟେଣି କଣସ୍ତୁ ରତ୍ନମାନ । ୪୭ ।
ଲକ୍ଷେକ ଥମ୍ବ ଅଛୁ ଗୁପ୍ୟା ମଣ୍ଡୋପର
ଅଷ୍ଟ ରତ୍ନ ନିର୍ମିତ କଲେ ସୁବର୍ଣ୍ଣ ଥମ୍ବର । ୪୮ ।
ରାଜାଙ୍କର ବସିବାକୁ ସୁବର୍ଣ୍ଣ ସିଂଘାସନ
ସେହ୍ନ ଥମ୍ବ ଆଉଜଣା ଆହୁଟ ହାଥ ସୁବର୍ଣ୍ଣ । ୪୯ ।
ନେତର ସୁପାଡ ଯେ ଗୋଟିଏ୍ ଗୋଟିଏ୍
ନେତର ଚନ୍ଦ୍ରାତପ ଉପରେ ଶୋଭା ପାଏ୍ । ୫୦ ।
ଯେସନେକ ନିର୍ମିତ ଯେ ସଭାର ଆଏ୍ତନ
ଲମ୍ବନ୍ତ ମୁକୁତା ମାଳ ଝରା ଅଷ୍ଟରତ୍ନ । ୫୧ ।

---

୪୭—ପଦ ପରେ ଗୋଟିଏ ପୋଥିରେ ଅଧିକା ପାଠ—
ପାଞ୍ଚ ଯୋଜନ ଆୟତନ ଅନେକ ଗୁମ୍ଫେଣି
ବସନ୍ତ କଳଶ ଯେ ଝଟକନ୍ତ ରତ୍ନମଣି ।
ପାତ୍ର ଅମନାତ୍ୟ ଯେ ମିଳବେ ତହ୍ନଂ ଜାଣି
ଏମନ୍ତ କର ରାଜା କଲ୍ଲ ନରବାଣି ।
ଲକ୍ଷେକ ବ୍ରାହ୍ମଣ ବସିବେ ଗୁମ୍ଫା ମଣ୍ଡୋପର
ଅଷ୍ଟରତ୍ନ ନିର୍ମିତ ସୁବର୍ଣ୍ଣ ଥମ୍ବର ।

ଅଲେଖା ସୁପକାର ଛତ୍ରଶାଳ ମାନଙ୍କୁ
ଗୃହ ଗୃହ ମହାଜନ ମାନ ଭୁଲେଣ ତାହାଙ୍କୁ । ୫୨ ।
ଅଶ୍ୱ, ଗଜମାନଙ୍କୁ ଚରଣୀ ପିଉଣୀ ଘାସ ବହ୍ନିର
ସମସ୍ତ ସମ୍ପାଦିଲା ରାଜା କଲା ଦୃଢ କରି । ୫୩ ।
ବ୍ୟାସେ ପରଶଂସା କଲେ ଦ୍ରୋପଦ ରାଜାକୁ
ସାଧୁ ସାଧୁ ଧୂନ ଗୋଟିଏ କଲୁ ଦ୍ୱାପର ଯୁଗକୁ । ୫୪ ।
ଦ୍ରୋପଦ ବୋଇଲେ ବ୍ୟାସେ ଅର୍ଜୁନ ଯେବେ ଥାଆନ୍ତା
ତାହାକଇ ପ୍ରଦାନ ମୁଂ କରନ୍ତ ଦୁହିତା । ୫୫ ।
ଯେଉଁ ତ କନ୍ଧ୍ନସେନୀ ଅଗ୍ନିରୁ ଉତପତ୍ତି
ଯେହାର ନିମନ୍ତେ ମୁଂ ସବୁନ୍ତ ନିମନ୍ତି । ୫୬ ।
ବ୍ୟାସେ ବୋଇଲେ ରାଜା ଆମ୍ଭର ବୋଲ କର
ଲିଖେକ ପାତିବୁ ଆମ୍ଭେ ତୋହୋର ସ୍ୱୟମ୍ବର । ୫୭ ।
ପାଣ୍ଡବେ ମଲେ ବୋଲି ଯେ ସଂସାର ବାରତା ପାଉ
ଆମ୍ଭେ ଯେ କଥାକୁ ଯେ ପରତେ ନ ଯାଉ । ୫୮ ।
ଧର୍ମ ପବନ ଇନ୍ଦ୍ର ଅଶ୍ୱିନୀକୁମାରେ
ଯେମାନଙ୍କର ପୁତ୍ର ସେ ଅଛନ୍ତି ପଞ୍ଚୁ ବୀରେ । ୫୯ ।
ଅର୍ଜୁନର ଆତ୍ମା ଯେ ଅଛନ୍ତି ଜଗନ୍ନାଥ
କୋଳେ ଧରି ଦୁଷ୍ଟକୃଷ୍ଣ ନାମ ବହିଲେକ ଅଚ୍ୟୁତ । ୬୦ ।
ବିଦୁରଇ ସଙ୍ଗେ ସଂ ଆବୋରନ୍ତ ପାଣ୍ଡବ
ଆବର ସମସ୍ତ କଥା ଜାଣଇ ସହଦେବ । ୬୧ ।
ଯେମାନଙ୍କର ଥାଆନ୍ତେ କି ପାଣ୍ଡବଙ୍କର ହୋଇବ ପରମାଦେ
ଯେ କଥାକୁ କେବେହେଂ ଆମ୍ଭେ ନ ଯାଉ ସଂପ୍ରତେ ହାଦେ । ୬୨ ।
ମହା ଯାଗରୁ ଜାତ କରାଇଲୁ କନ୍ଧ୍ନସେନୀ
ମାନବେ ପ୍ରଦାନ କରାଇବୁ କି ତୋହୋର ନନ୍ଦନୀ । ୬୩ ।
ଲିଖ ଗୋଟିଏକ ଆମ୍ଭେ କରିବୁ ନିର୍ମାଣ
ସେ ଲିଖ ବିନ୍ଧିବ ଯେ କନ୍ୟା ଦେବୁ ତତକ୍ଷଣ । ୬୪ ।

---

୫୩।୧ ବିହଣ—ବ୍ରୀହି ।

ବ୍ୟାସକୂଟ ଲଖ ପାଣ୍ଡଲେ ମୁନି ବ୍ୟାସ
ଦେବେ ଅଗୋଚର ସେ ଯେ ମାନବେ ଅଦୃଶ । ୬୫ ।
ମାନବ ତାଳେ ସାତ ତାଳ ଦେବେଣ ଏକ ତାଳ ବୋଲି
ଦେବ ତାଳେ ସାତ ତାଳ ରାଧାଚକ୍ର ଘଟଣ କଲି । ୬୬ ।
ମାନବ ତାଳେ ଅଣଚାଶ ତାଳ ହୋଇଲା ଉଚ୍ଚର୍ଗ
ଆକାଶକୁ ଗୃହାଂଲେ ଅଦୃଶ ଦୁଷ୍ଟସ୍ୱର୍ଗ । ୬୭ ।
ରାଧାଚକ୍ର ବଇଶଇ ସହସ୍ରେକ ଧାର
ଅନୁକ୍ରମେ ବୁଲୁଥାଇ କୁରାଳଚକ୍ର ଆକାର । ୬୮ ।
ତହାଂର ଉପରେ ବସାଇଲେ ସୁବର୍ଣ୍ଣ ଏକ ମାଛ
ତଳେ ଧନୁଏକ ଥୋଇଲେ ବଳ ଏକ ଲକ୍ଷ । ୬୯ ।
ତାଳେକ ଉଚ୍ଚର୍ଗ ସୁବର୍ଣ୍ଣ ପଟାଏକ କର୍ଣ୍ଣି
ତହାଂର ତଳେ ଥୋଇଲେ ତୀର୍ଥ ଜଳଘଟ ଗୋଟି । ୭୦ ।
ବ୍ୟାସେ ବୋଇଲେ ରାଜା ଶୁଣ ହୋ ଦ୍ରୋପଦ ନୃପତ୍ୟ
ଲକ୍ଷେ ବଳ ପିନାକ ଧରିବାକୁ କେହୁ ସାମରଥ । ୭୧ ।
ତଳକଇଂ ଗୃହାଂ ଉପରକଇଂ ମୁଷ୍ଟି
ଚକ୍ରଭେଦୀ ନାରାଜ ମାଛ ବାମଚକ୍ଷୁ ଯିବ ଫୁଟି । ୭୨ ।
ଏହେନେକ ସରୂପେ ଯେ ଲଖ ବନ୍ଧେ
ତାହାକୁ ଦୁହିତା ଦେବୁଟି ପରମ ସାନନ୍ଦେ । ୭୩ ।
ଏକାନ୍ତେ ଦ୍ରୋପଦଙ୍କୁ କହିଲେ ବ୍ୟାସ ମହାମୁନି
ଯେ ଲଖ ବନ୍ଧିବ ସେ ଇନ୍ଦ୍ର ଗୋବିନ୍ଦ ଫାଲଗୁନି । ୭୪ ।
ଏହା ତଦନ୍ତ କରି ଜାଣି ଥାଅସି ତୋହୋର ମନେ
ଏତେ କହି ମହାତମା ଚଳଲେ ଅନ୍ତର୍ଦ୍ଧାନେ । ୭୫ ।
ପାଣ୍ଡବେ ରହିଛନ୍ତି ଯେ ଶ୍ରୀ ରାମବେଣୀ କୂଳେ
କୃପଛନ୍ନ ରୂପ ଧଇଲେ ବ୍ୟାସେ କୁତୂହୋଳେ । ୭୬ ।
ଲମ୍ବିତ ଜୁଡ଼ା ବାଳ ପୁଞ୍ଜା ଯେ କାଛେଟି
ପଞ୍ଚବକ୍ର ଗୃଳି ପ୍ରପଞ୍ଚ ଲଗଂଟି । ୭୭ ।

୭୬। ୨ କୃପଛନ୍ନ—କୁ ପ୍ରସନ୍ନ—କୁତ୍ସିତ

ଲମ୍ବିତ ରୋମମାନେ ଦଉଡ଼ି ବର୍ଣ୍ଣି ଶିରେ
ଧବଳ ଚନ୍ଦ୍ର ମାତ୍ର ଅଛଇ ଶରୀରେ । ୭୮ ।
ଲଙ୍ଗଠ ଭ୍ରୂକୁଟ କୁବୁଜ ଗଳିତ ଆଖି
ଭୀମସେନ କରତାଳ ମାରି ହସିଲା ତାହା ଦେଖି । ୭୯ ।
ମଣିଷ ବାତୁଳ କି ପ୍ରପଞ୍ଚ ରୂପ କାଏଁ
ଦେଖିଲ କି ମାଏଁ ଗୋ ଅନ୍ୟାକାର ରୂପ ଗୋଟାଏଁ । ୮୦ ।
ଯୁଧିଷ୍ଠିର ବୋଇଲେ ସହଦେବର ମୁଖ ଚାହିଁ
ଚଉଦ ବରଷ ବନେ ବୁଲିଲୁ ଯେମନ୍ତ ରୂପ ଦେଖିଲୁତ ନାହିଁ । ୮୧ ।
ସହଦେବ ବୋଇଲେ ଦେବ ନ କର ଉପହାସ୍ୟ
ଆମ୍ଭନ୍ତ କଷଣ ନିମନ୍ତେ ବିଜେ କଲେ ମୁନି ବ୍ୟାସ । ୮୨ ।
ବିଦୁର ବାସୁଦେବ ଯେଲେ ପଠିଆଇ
ଆମ୍ଭନ୍ତ ଉଦ୍ଧରିଛନ୍ତି କପଟ୍ଛନ୍ନ ରୂପ ହୋଇ । ୮୩ ।
ପୁତ୍ରନ୍ତ ଘେନି ସେ କୋଇନ୍ତୀ ମହାମାଣ୍ଡି
ଶତ ସହସ୍ର ଦଣ୍ଡ ପ୍ରଳମ୍ବିତ ହୋଇ ଭୂମିରେଣ ଶୋଇ । ୮୪ ।
ବ୍ୟାସ ବୋଇଲେ ହୋ ତୁମ୍ଭେ ଚିହ୍ନିଲ କେମନ୍ତେ
ନ ଚିହ୍ନିବୁ ବୋଲି ଆମ୍ଭେ ଅଇଲୁ ଯେମନ୍ତେ । ୮୫ ।
ପ୍ରପଞ୍ଚ ରୂପ ଗୋଟି ଛାଡ଼ିଲେ ମୁନିବର
ନିଜ ରୂପ ଧରି ସେ ବସିଲେ ଆସ୍ଥାନର । ୮୬ ।
ପୁଣ ପୁଣ ପ୍ରଣିପତ୍ୟ ପଣ୍ଡୁର ତନଯେ
ଆସନ ଯେଲେ ନେଇ କୃଷ୍ଣାଜିନ ମୃଗ ଛାଲ ଗୋଟିଏ । ୮୭ ।
କୋଇନ୍ତାଏଁ କ୍ରୋଧ କଲେ ବ୍ୟାସଙ୍କର ମୁଖ ଚାହିଁ
ତୁମ୍ଭର ଥାଆନ୍ତେ ପୋଏଁ ମୋର ବନସ୍ତେ ବୁଲନ୍ତି ଦୁଖ ପାଇ ।୮୮।
ହୀନ ଜନ ପ୍ରାଏଁ ନଗ୍ରେ ମାଗନ୍ତି ଯେ ଭିଖ
ଗାନ୍ଧାରୀ ପୁଅଙ୍କର ସେ ସମ୍ପଦ ମୋହୋର ପୁଅଙ୍କର ଯେତେ ଦୁଖ ।୮୯

---

୭୮।୧ { ପ୍ରଲମ୍ବ ରୋମ ଯେ ଦଉଡ଼ି ଜାଣି ଶିର ।
ଲମ୍ବିତ ବଦନ ଜଟା ଦଉଡ଼ି ଜାଣି ଶିରେ । }

୭୮।୨ ବିଭୂତି ଭୂଷଣ ଧବଳ ଦିଶଇ ଶରୀରେ ।

କୋଳବୋଳର ଦୁଲଣୀ ମୁଁ ସୋମବଂଶର କୁଳବଧୂ
ଯେତେ ଜୀବନ ଯାକ ଆମ୍ଭର ହୋଇଲା ଅସାଧୂ । ୯୦ ।
ଛତ୍ରୀ ପଣେ ଜାତ ହୋଇଲେ ଯେ ମୋହୋର ପୁତ୍ରେ
ଅପୂଜ୍ୟେକ ହୋଇଲେ କେବଣ ଦୋଷ ଅର୍ଥେ । ୯୧ ।
କହନ୍ତେ କୋନ୍ତାଙ୍କର କ୍ରୋଧ ଯେ ହୋଇଲା ଅପାର
ବ୍ୟାସେ କହିଲେ ମାଗୋ କ୍ରୋଧ ଶାନ୍ତ କର । ୯୨ ।
ଆକାଶ ନାଶ କଲେ ଯହୁଂ ଅସୁର ଶୂର ବୀରେ
ଜମ୍ଭିଗ୍ରୀ କନ୍ୟକା ହିଡମ୍ବକ ବକାସୁରେ । ୯୩ ।
ତାହାଙ୍କର ଭରା ଯହୁଂ ନ ସହିଲା ମେଦିନୀ
ତେଣୁକର ଆଗ୍ୟାଂ ତୁମ୍ଭଙ୍କୁ ଦିଲେ ପଦ୍ମଯୋନି । ୯୪ ।
ଅସୁର ବଧକଲେ ପିତାମହର ବଚନେ
ଅନେକ ସାନନ୍ଦ ଯେ ହେଲେ ଦେବ ମାନେ । ୯୫ ।
ଯେବେ ପୁଅନ୍ତ ଯେନ ସ୍ୱର୍ଗ ଭୋଗ ପାଇବ ଟଗୋ ମାଯେ
ନିକଣ୍ଟକ ରାଜ୍ୟ ସଞ୍ଚିଲେନ ଦେବତାଯେ । ୯୬ ।
ଭାର ନିବାରଣେ ତୁମ୍ଭେ ହୋଇଛ ଜନମ
ଅପାଦ ଅନ୍ତେଣ ଗୋ ଉଦ୍ଧତ ହୋଇ ଧର୍ମ । ୯୭ ।
ଜନମ କରମ ଆଧାନ ସମସ୍ତ ନାଶି
ଯେକା ଶରୀର ଗୋଟି ଭୋଗ୍ୟ ଗୃହ ଗୋଟି ରାଶି । ୯୮ ।
ଜନ୍ମ ନକ୍ଷତ୍ରେ ଗୋ ପାଇଲେ ଯେତେ ଦୁଖ
କରମ ନକ୍ଷତ୍ରେ ଯେବେ ଭୁଞ୍ଜିବ ପରମ ସୁଖ । ୯୯ ।
ଦୁଖ ପାର ଗଲାନି ଯେବେ ଅଳପ ଦିନ ସହ
ଗୁହ ଦିବସେଣ ତଳ ଯେଥେଂ ଦଣ୍ଡେହେଂ ନ ରୁହ । ୧୦୦ ।
ଦ୍ରୋପଦ ରାଜା ଯେ ଯେବେ କରୁଅଛି ସଯମ୍ବର
ଲକ୍ଷେକ ନୃପତି ବଜେ କରିବେ ତାହାର ପୁର । ୧୦୧ ।
ରାଧାଚକ୍ର ବିନ୍ଧିବ ଯେ ବୀର ଫାଲଗୁନି
ତାହାକୁ ପ୍ରାପତ ଯେ ହୋଇବ ଜଜ୍ଞସେନୀ । ୧୦୨ ।
କନ୍ୟା ଆଣନ୍ତେ ଗୋଳ ହୋଇବ ସାଂଗ୍ରାମ
କଉରବେବଙ୍କର ଦର୍ପ ତହିଂ ମର୍ଦ୍ଦିବ ଭୀମସେନ । ୧୦୩ ।

---

୯୦।୨ ଯେତେ କୁଳର ହୋଇ ମୁଁ ଜୀବନ ହୋଇଲା ଅସାଧୂ ।

ହରି ବଳରାମେ ଆସୁଛନ୍ତି ବେନି ଭ୍ରାଥେ
ଏହାଂକରେ ଭେଟ ସିନା ପୁଣି ହୋଇବ ସମସ୍ତେ । ୧୦୪ ।
ସ୍ୱୟମ୍ବର ଦେବାକୁ ଅଛନ୍ତି ଷୋଳଦିନ
ଏଥିକୁ ଦ୍ରୋପଦ ରାଜ୍ୟ ତିନିଶତ ପଞ୍ଚାଶ ଯୋଜନ । ୧୦୫ ।
ବାବୁ ଅର୍ଜୁନ ତୁହି ସେ ପାରବୁ ଲଖ ବିନ୍ଧି
ଶ୍ରୀ ଜଗନ୍ନାଥେ ଦିଲେ ଆମ୍ଭର ହସ୍ତେ ନାରାଜ ମନଭେଦୀ । ୧୦୬ ।
ସେ ମନଭେଦୀ ନାରାଜ ତୁ ସମ୍ଭାଳସି ଯତନେ
ଏକା ଘାନ୍ତକେ ଭେଟଇଟି ଯାହାକୁ କରବୁ ମନେ । ୧୦୭ ।
ଆମ୍ଭେତ ଯାଉଅଛୁ ସ୍ୱୟେମ୍ବରକଇ ବୋଲ
ପବନହୁଂ ବେଗେ ଯିବଟି ତୁମ୍ଭେ ସମସ୍ତେ ଚଳ । ୧୦୮ ।
ଏତେ ବୋଲି ମୁନି ପାଦୁକା ମନ୍ତ୍ର ଦିଲେ
ନିମିଷକେ ଲକ୍ଷେ ଯୋଜନ ଯାଇଟି ସେ ମନ୍ତ୍ର ପଢ଼ି ପାଦୁକା
ଆଉଂଶିଲେ । ୧୦୯ ।
ଶହସ୍ର ମନ୍ତ୍ର ଦେଇ ଚଳନ୍ତି ବେଦବ୍ୟାସେ
ଯୁଧିଷ୍ଠି ଦେବ ପଚ୍ଛିଲେ ବ୍ୟାସ ମୁନିଙ୍କର ପାଶେ । ୧୧୦ ।
ଦ୍ରୋପଦୀ ପ୍ରାପତ ହୋଇବ କି ମୁନି ହେ ମୋତେ
କନ୍ୟା ପାଇବାର ହୋଇଲେ ଯିବଇଂ ଯୁଗତେ । ୧୧୧ ।
ଯେବେ ପ୍ରାପତ ନୋହିବଟି ଦ୍ରୋପଦ କୁମାରୀ
ଆବର କମାଇ ପର ସମ୍ପଦ ଦେଖି ଯିବୁଂ ଝୁରି । ୧୧୨ ।
ବ୍ୟାସେ ବୋଇଲେ ବାବୁ ଶୁଣିମା ଯୁଧିଷ୍ଠିର
ଅର୍ଜୁନ ନିମନ୍ତେ ଦ୍ରୋପଦୀ କରଛନ୍ତି ସ୍ୱୟମ୍ବର । ୧୧୩ ।
ଯୁଧିଷ୍ଠି ବୋଇଲେ ଦେବ କହିଲ ତୁମ୍ଭେ ମିଥ୍ୟା
ଆମ୍ଭେ ଶୁଣିଲୁ ଯେ ଦ୍ରୋପଦଙ୍କର ସ୍ୱୟମ୍ବର ବାରତା । ୧୧୪ ।
ତୁମ୍ଭେ କହିଲ ଅର୍ଜୁନ ଲାଗି ସ୍ୱୟମ୍ବର
ତୁମ୍ଭର କଥା ମୋତେ ଶୁଣିତେ ଅଗୋଚର । ୧୧୫ ।
ପାଣ୍ଡବେ ମଲେ ବାରୁଣାବନ୍ତେ ଜଉର ଘରେ
ଏହୁ ବାରତା ଯାଇ ଶୁଭିଲା ତିନି ପୁରେ । ୧୧୬ ।
ଏତେକ ଧାର୍ମିକ କାହୁଂ ଯେ ହୋଇଲା ଦ୍ରୋପଦେ
ଅର୍ଜୁନ ନିମନ୍ତେଣ ସ୍ୱୟମ୍ବର କରଇ କେମନ୍ତେ । ୧୧୭ ।

ବ୍ୟାସେ ବୋଇଲେ ବାବୁ ଶୁଣ ହୋ ଆବ କଥା
ତୁହି ସେ ଜାଣିଅଛୁ ନା ତହିଂର ବାରତା । ୧୧୮ ।
ଦ୍ରୋଣେ ଦ୍ରୋପଦେ ସେ ହୋଇଲେ ବିବାଦ
ଦ୍ରୋଣେ ଦ୍ରୋପଦକୁ ନଆଇଲେଟି ଅର୍ଜୁନ ହାଥେ ବାନ୍ଧି । ୧୧୯ ।
ଦ୍ରୁଯୋଧନ ଅପ୍ରାଧ ସେ କଲା ଦ୍ରୋପଦକୁ
ହିଂସି ଦ୍ରୋଣେ ସେ ଗୁଣ୍ଡଲେ ମଇବକୁ । ୧୨୦ ।
ଲଜେଣ ଦ୍ରୋପଦ ତାର ରାଜ୍ୟକୁ ନ ଗଲା
କୌରବନ୍ତ ଜିଣିମ ବୋଲି ଈଶ୍ୱରଙ୍କୁ ସେବା କଲା । ୧୨୧ ।
କଷ୍ଟୋର ତପ ଦେଖି ହରଜୟେ କାପାଳୀ
ବୋଇଲେ କୌରବନ୍ତ ଜିଣି ନ ପାରିବୁ ତୋହୋର ଭଳି । ୧୨୨ ।
ଭାରତର ନାଶ କରନ୍ତା ସେ ପାଣ୍ଡବ ଧନୁର୍ଜୟେ
ତାହାର ହାଥେ ଭୀଷ୍ମ ଦ୍ରୋଣ ସମସ୍ତେ ଯିବେ କ୍ଷୟେ । ୧୨୩ ।
ପିରତି ବଢାଅ ତୁ ରେ ଅର୍ଜୁନର ତୁଲେ
କୌରବେ ନାଶ ଯିବେ ହାଦେ ଯେକା ଅର୍ଜୁନର ବଳେ । ୧୨୪ ।
ବିଶ୍ୱନାଥ ଆଗ୍ୟାଂୟେ ଦ୍ରୋପଦେଶ୍ୱର ଗଲା
ଆମ୍ଭନ୍ତ ବରିଣ ସେ ସନ୍ତତି ଯଗ୍ୟଂ କଲା । ୧୨୫ ।
ଆମ୍ଭନ୍ତ ପୂଜା କରି ବୋଇଲା ଦ୍ରୋପଦେଶ୍ୱର ରାୟେ
ମୋତେ ଜାତ କରି ଦେବ ହୋ ଦୋହିତା ଗୋଟିଏ । ୧୨୬ ।
ସେ କନ୍ୟା ଗୋଟିକ ମୁଂହି ଅର୍ଜୁନକଇଂ ଦେବି
ତାହାର ହାଥେ କୌରବନ୍ତ ନାଶ କରାଇବି । ୧୨୭ ।
ତାହାର ବଚନେ ଆମ୍ଭେ ଯାଗ ଆରୋପଣ କଲୁ
ପୁତ୍ର ଦୋହିତାୟେ ଆମ୍ଭେ ଯାଗରୁ ଉପୁଜାଇଲୁ । ୧୨୮ ।
ଧୃଷ୍ଟଦ୍ୟୁମନ କୁମାର, କୁମାରୀ ଦ୍ରୋପଦୀ
ଅର୍ଜୁନକୁ ଦେବ ବୋଲି କରଛୁ ସମ୍ବନ୍ଧି । ୧୨୯ ।

---

୧୨୧। କୌରବନ୍ତ ଜିଣିବ ବୋଲି ଘୋର ତପ କଲା ।

୧୨୮। { ତାହାର ବଚନେ ଆମ୍ଭେ ଯାଗ ଆରମ୍ଭିଲୁ
{ ଦୁଇପୁତ୍ର ଦୋହିତାୟେ ଯାଗୁଂ ଉପୁଜାଇଲୁ ।

୧୨୯। ଅର୍ଜୁନକୁ ଦେବ ବୋଲି ଅଛଇ ସମ୍ବାଦ ।

ଶବଦେଙ୍କ ଶୁଭିଲ୍ଲ ପାଣ୍ଡବେ ନାଶ ଗଲେ
ତେଣୁ କରି ଦ୍ରୋପଦ ସୟମ୍ବର କଲେ । ୧୩୦ ।
ବିଚକ୍ଷଣ ରାଜା ସେହି ଦ୍ରୋପଦ ନୃପତି
ତୁମ୍ଭର ନାଶଗଲ୍ଲ କଥା ମନରେ କରଇ ଭ୍ରାନ୍ତି । ୧୩୧ ।
ତେଣୁ କରି ମହାଲକ୍ଷ ପାତିଲ୍ଲ ଦ୍ରୋପଦ
ଅର୍ଜୁନହିଂ ଆନ ନ ଜାଣଇ ସମ୍ବାଦ । ୧୩୨ ।
ସଂସାରକୁ ଶୁଭଇ ଦ୍ରୋପଦୀ ସୟମ୍ବର
ଅର୍ଜୁନଙ୍କୁ ସୟମ୍ବରଟି ଦ୍ରୋପଦ ହୃଦୟର । ୧୩୩ ।
ଅନେକ ଦେଶର ଯେ ମିଳିଲେ ରାଜଦେବ
ଅର୍ଜୁନ ଗଲେ ସେ ସୟମ୍ବର ହୋଇବ । ୧୩୪ ।
ଦ୍ରୋପଦୀର ସୟମ୍ବର ଶୁଣିଲ ତୁମ୍ଭେ କାହିଂ
ଅର୍ଜୁନ ନ ଗଲେ ସେ ସୟମ୍ବର ନାହିଂ । ୧୩୫ ।
ବ୍ୟାସଙ୍କ ମୁଖରୁ ଯେସନେକ ବାକ୍ୟ ଶୁଣି
ପାଣ୍ଡବେ ସାନନ୍ଦ ହୋଇଲେ ମନେ ଗୁଣି । ୧୩୬ ।
ଯେତେ କହି ମହାତ୍ମା ଚଳିଲେ ଅନ୍ତର୍ଦ୍ଧାନେ
ଚଳନ୍ତି ପାଣ୍ଡବେ ତହୁଂ ମହା ତୋଷ ମନେ । ୧୩୭—୯୨୩୦ ।



## ଅଙ୍ଗାରପର୍ଣ୍ଣ ଯୁଦ୍ଧ

ଶତେ ଯୋଜନ ଗଲେ ଯେତେକଇ ଦିବସେ
କେତୁମାଳ ବନେ ଯାଇ ହୋଇଲେ ପ୍ରବେଶେ । ୧ ।
ଗନ୍ଧର୍ବ ନଦୀ ଯେ ବହଇ ଦକ୍ଷିଣଗାମୀ
ଗନ୍ଧମାର୍ଦନ ପର୍ବତ ସେ ଅଟଇ ଊର୍ଦ୍ଧ୍ୱଗାମୀ । ୨ ।

---

୧୩୧।୨ ତୁମ୍ଭ ନାଶଗଲ ତାହାର ନାହିଂ ସମ୍ମତ ।
୧୩୨।୨ ଅର୍ଜୁନ ବିନୁ କେହି ନ ଜାଣନ୍ତି ସେ ଲକ୍ଷର ଭେଦ ।

ଯୁଧିଷ୍ଠିର ବୋଇଲେ ବାବୁ ଶୁଣସି ଅର୍ଜୁନ
ପ୍ରାତସ୍ନାନ ସାରିବାକୁ ଦେଖ ଜଳ ଯେ ଉଦ୍ଧାନ । ୩ ।
କେତେ ଦୂରେ ବାବୁ ରେ ଅଛଇ ଜଳଘାଟି
ପ୍ରକୃତି ଶଙ୍କାଯେ ଶରୀର ବଡ କଷ୍ଟି । ୪ ।
କରେ ଶୋଭାବନ ଧନୁଶର ଭରଥି
ଗନ୍ଧର୍ବ ନଦୀ ତୀରେ ଯାଇଂ ପ୍ରବେଶ ତତ୍‌କ୍ଷତି । ୫ ।
ସେ ନଦୀ କୂଳେ ଯେ ତୋଟା ବନ
ପାଚ ପଡୁଅଛି ଯେ ପକ୍ବ ଫଳମାନ । ୬ ।
ଅନେକ କୁସୁମ ଅବସନ୍ତେ ତହିଂ ବହଇ ବସନ୍ତ
ତୋଟା ଦେଖି ପ୍ରଶଂସା କରଇ ବୀର ପାର୍ଥ । ୭ ।
ତହିଂର ନିକଟେ ଅଛନ୍ତି ସହସ୍ରେ ବାଳାସୁଣୀ
ଜଗତ୍‌ଜନ ମୋହୋମି ସେ ରମ୍ଭା ତୁଲ ଜାଣି । ୮ ।
ସର୍ବ ଅଳଙ୍କାର ସେ ଆଭରଣ ହୋଇଣ କାମିନୀ
ଶରୀରେ ପରିହରଣ ଝୀନ ରଙ୍ଗ ପତନ । ୯ ।
ଜଳକ୍ରୀଡା ରଙ୍ଗେ ସେ ମାତିଥିଲେ ଯୁବତୀ
ସ୍ତନ ଜଂଘ ଯଉବନ ସବୁ ଫୁଟିଣ ଦିଶନ୍ତି । ୧୦ ।
ଅମୂଲ୍ୟ ବାଳାସୁଣୀ ବନ୍ଧୂକ ମଞ୍ଜୁଳ ବିମ୍ବ ଓଷ୍ଠି
ପୁଷ୍ପ ତୋଳନ୍ତି ବାଳାସୁଣୀ ମଧୁର ଗୀତ ଗାବନ୍ତି । ୧୧ ।
ଅର୍ଜୁନକୁ ଦେଖିଲେ ସହୁଂ ତୋଟାର ଭିତରେ
ଅତିଅନ୍ତ ସୁନ୍ଦର ସେ ଧାଇଲେ ମଦନ ଜ୍ୱରେ । ୧୨ ।
ଭୟେଣ ସଙ୍କୋଚେ ସେ ପଳାଇଲେ ତହୁଂ ବେଗେ
ଧାଇଂ ଯାଇ ପଡିଲେ ସେ ଅଙ୍ଗାରପର୍ଣ୍ଣଗର ଆଗେ । ୧୩ ।
ଗନ୍ଧର୍ବ ବୋଇଲା ଯେ ହୋଇଲା କେମନ୍ତ
କାହାକୁ ଦେଖିଲ ଲୋ ତୁମ୍ଭର ଯେତେ ଭୟ ଚିତ୍ତ । ୧୪ ।

---

୯ { ଦିବ୍ୟ ବେଶନ ଯେ ହୋଇଣ କାମେମୀ
{ ଶରୀରେ ପିନ୍ଧିଛନ୍ତି ସୁରଙ୍ଗ ପତନ ।

୧୧।୧ ଅମୂଲ୍ୟ ବାଳାସୁଣୀ ବନ୍ଧୂକ ବିମ୍ବ ଓଷ୍ଠି ଡାଳିମ୍ବ ଦନ୍ତ ପନ୍ତି ।

ବିଦ୍ୟାଧରୀ ବୋଇଲେ ପୁରୁଷେକ ଦେଖିଲୁ
ଅତିଅନ୍ତ ସୁନ୍ଦର ସେ ଦେଖିଣ ମୋହିଗଲୁ । ୧୫ ।
ପଳାଇ ଅଇଲୁ ଦେବ ତାହାଙ୍କର ଭୟେ
କି ସେ ମକରଧ୍ୱଜ ବିଷ୍ଣୁର ତନୟେ । ୧୬ ।
କନ୍ୟାଙ୍କର ସମସ୍ୟା ଶୁଣି ଅଙ୍ଗାରପନ୍ନଗ
କଦଳୀ ପତ୍ର ଜାଣି କମ୍ପଇ ତାର ଅଙ୍ଗ । ୧୭ ।
ମୁଂହି ସେ ସୁନ୍ଦର ଅଟଇ ତ୍ରିଭୁବନେ
ଅମର ନାୟେକର ପୁତ୍ର ମୁଂ ମୋ ତହୁଂ ସୁନ୍ଦର କେ ଆନେ । ୧୮ ।
କୁତୂହଳେ ତେଜଇ ମୁଂ ଅମର ବାରସ୍ତ୍ରୀ
ସସସ୍ତ୍ରେ କନ୍ୟା ଘେନ ମୁଂ ଜଳକ୍ରୀଡ଼ା କରଇ ନିତ୍ତି । ୧୯ ।
ଶ୍ରୀହସ୍ତେ ଧରିଅଛୁ ଉଦଣ୍ଡ ନାମେ ଧନୁ
ରେ ରେ କାହିଁ କରଣ ସେ ବାସେବର ତନୁ । ୨୦ ।
ଦେଖଇ ପଙ୍କ ଫଳ ତୋଳଇ ଫାଲଗୁନ
ବିଦ୍ୟାଧର ବନ୍ଧିଲା ଲକ୍ଷ ଶର ମୁନା ଘେନ । ୨୧ ।
ଗୁଣ ଟଙ୍କାର ଶବଦ ଶୁଣିଣ ସବ୍ୟସାଚୀ
ଉପ୍ୟେ କରି ଫାଲଗୁନ ନାରାଜ ତାହାର ଆମଞ୍ଚି । ୨୨ ।
ପୁଣ ବିଦ୍ୟାଧର ଯେ ବନ୍ଧିଲା ପଞ୍ଚ ଶର
ନାରାଜେ ଆଲିଙ୍ଗନ କଲେ ଅର୍ଜୁନ ବଦନର । ୨୩ ।
ପୁଣ ପୁଣ ବନ୍ଧଇ ସେ ଶରୀ ଦେଖାଇ ବଳା
ସଂଗେଣ ଫାଲଗୁନ ଯେ ତେଜେଣ ଅନର୍ଗଳା । ୨୪ ।
ଆପଣେ ଶ୍ରୀକରେ ଯେ ଧଇଲା ପାର୍ଥ ଧନୁ
ଅଙ୍ଗାରପନ୍ନଗକୁ କଲକ ଶର ଆଧାନୁ । ୨୫ ।
ବେନ ସହସ୍ର ନାରାଜ ବନ୍ଧିଲା ସବ୍ୟସାଚୀ
ଅଙ୍ଗାରପନ୍ନଗ ପାଦ ତଳେ ନାରାଜ କରଇ ପ୍ରାଚୀ । ୨୬ ।

---

୨୦।୧ ଶ୍ରୀହସ୍ତେ ଧରିଅଛୁ ଇନ୍ଦ୍ର କୋଦଣ୍ଡ ସମାନ ଧନୁ ।

୨୨।୨ ଦେଖି ଫାଲଗୁନ ଗାଣ୍ଡୀବ ଶର ବଞ୍ଚି (ପା) ଗୁଣ ଆମଞ୍ଚି ।

୨୬।୨ ପ୍ରାଚୀ—ପୁରବର୍ତ୍ତୀ ହେଲ—ସମ୍ମୁଖରେ ରହିଲା ।

ନ ଚହ୍ନି ବେନି ଭ୍ରାଥେ କରନ୍ତି ସାଂଗ୍ରାମ
ନାରାଜ ମାନ ତହିଂ ନ ଗ୍ଣନ୍ତି ଧର୍ମ । ୨୭ ।

ଯେବଣ ନାରାଜ ବନ୍ଧଇ ବିଦ୍ୟାଧର
ଅର୍ଜୁନ ମୁଖେ ଚୁମ୍ବ ଦେଇ ପଡଇ ଭୂମିର । ୨୮ ।

ଅର୍ଜୁନ ନାରାଜ ଯେ ବନ୍ଧଇ କୋପାନଳେ
ଶହସ୍ରେ ପଡଇ ଯାଇ ଅଙ୍ଗାରପନ୍ନଗ ପାଦ ତଳେ । ୨୯ ।

ଅପାର ଯୁଦ୍ଧ ଯହୁଂ ହୋଇଲା ଅପ୍ରମିତେ
ଗନ୍ଧର୍ବଙ୍କୁ ଜିଣି ନ ପାରିଲା ଶହସ୍ର ଘାତେ । ୩୦ ।

ବେଳେ ବେଳେ କୋପ ଯେ ବାସବର ବାଳେ
ଦେବ ଶହସ୍ର ଅଙ୍ଗାରପନ୍ନଗ ବନ୍ଧଇ କୋପାନଳେ । ୩୧ ।

ବଜ୍ର ଶହସ୍ରେକ ଯେ କଲାକ ଆଧାନ
ନ ବନ୍ଧୁ ଛେଦିଲା ତାହା ପଣ୍ଡୁର ନନ୍ଦନ । ୩୨ ।

ଗନ୍ଧର୍ବ ଶହସ୍ରେକ ବନ୍ଧିଲା ବିଦ୍ୟାଧର କୋପଭରେ
ଅର୍ଜୁନ ନିବାରିଲା ତାହା ବଜ୍ର ମୁଦୁଗରେ । ୩୩ ।

ଅଗ୍ନି ଶହସ୍ରେକ ଯେ ବନ୍ଧିଲା ବାସବ
ଜଳଧାର ଶହସ୍ରେ ତାହା ଅର୍ଜୁନ ପ୍ରାଭବ । ୩୪ ।

ପର୍ବତା ଶରେକ ଯେ ପେଷିଲା ଜମ୍ବୁଭେଦୀ
ବଜ୍ରା ଶହସ୍ରେ ତାହା ଫାଲଗୁନ ଛେଦି । ୩୫ ।

ପନ୍ନଗ ଶହସ୍ର ଯେ ଅଙ୍ଗାରପନ୍ନଗ ମାରି
ଗରୁଡା ଶହସ୍ରେ ତାହା ଅର୍ଜୁନ ନିବାରି । ୩୬ ।

ବେଳୁଂ ବେଳ ଅର୍ଜୁନର ବଢିଲାକ କୋହ
ରାଗେଣ ଶହସ୍ର ଯେ ବନ୍ଧିଲା ଅମୋହ । ୩୭ ।

ଅନେକ ଶହସ୍ର ମୋତେ ବନ୍ଧିଲୁ ରେ ଚଣ୍ଡାଳ
ସ୍ୱେ ଘାନ୍ତ ତୁ ମୋର ଶହସ୍ର ସମ୍ଭାଳ । ୩୮ ।

ବିଦ୍ୟାଧର ବୋଇଲା ମୁଂ ସ୍ୱେ ବନର ଅଧିକାରୀ
ଅଦଭୁତେ ମୋତା ରେ କାହୁଂ ପଶିଲୁ ମୋହୋର ପୁରୀ । ୩୯ ।

ନିଜ ବଂଶେ ତୋହୋର ଲଗାଇଲୁ କାଳ
ଅସ୍ଥି ମାଂସ କାଟି ତୋର ଆଜ ଦେବ ବଶୀବଳ । ୪୦ ।
ଅର୍ଜୁନ ବୋଇଲା ତୁ ରେ ଅଟୁ ବାଟପଡ଼ା
ସଞ୍ଚୟେ ପ୍ରାଣ ତ୍ୟାଗ ହୋଇବୁ ବାପୁଡ଼ା । ୪୧ ।
ସହସ୍ରେ ଯୁବତୀ ତୋତେ କରିଛନ୍ତି ଆଶ୍ରେ
ଯେହାଙ୍କର ବଳକେ ତୋତେ ନ ମାରିବି ଯେକବାରେ । ୪୨ ।
ଗନ୍ଧର୍ବ କୋପ କଲା ପାର୍ଥର ବଚନ ଶୁଣି
ବେନି ଗଦା ବୁଲାଇ ଧାଆଇ ଶିର ଝୁଣି । ୪୩ ।
ମୋହୋନା ଶହସ୍ର ଯେ ବନ୍ଧିଲା ଧନୁର୍ଜୟେ
ଅଙ୍ଗାରପର୍ଣ୍ଣଗ ପଡ଼ିଲା ଅର୍ଜୁନ ଶର ଘାୟେ । ୪୪ ।
ଗର୍ଜିଣ ଅର୍ଜୁନ ଯେ ଧାଇଂଲା କୋପାନଳ
ବାମ କରେ ଧଇଲା ଅଙ୍ଗାରପର୍ଣ୍ଣଗର ବାଳ । ୪୫ ।
ବାଳ ଧରି ବାମ ଆଣ୍ଠୁରେ ଶିର ପାଡ଼ି
ଡାହାଣ କରେ ଘେନିଲା ବୀର ବଜେ କର୍ତ୍ତି କଟାରି । ୪୬ ।
ବଦନ ନିରେଖଇ ଯେ ବୀର ଫାଲଗୁନ
କାହାର ପୁତ୍ର ତୁ ରେ କେ ତୋହୋର ଜନମି । ୪୭ ।
ବିଦ୍ୟାଧର ପ୍ରାୟେ ତୁ ଯେ ଦିଶୁ ରେ ସୁନ୍ଦର
ମାରିବି ସତ ଯେ ନ ବଳଇ ମୋହୋର । ୪୮ ।
ସହସ୍ରେକ ଯୁବତୀ ଜଳୁଂ ବାହାର ହୋଇଲେ
ଲାଜ ଅଭିମାନ ତେଜି ପ୍ରଣପତ୍ୟ ହୋଇଲେ । ୪୯ ।
ଯେସନେକ ସମୟେ ଯୁଦ୍ଧେଷ୍ଟି ଆସନ୍ତି ଗନ୍ଧର୍ବ ନଦୀ କୂଳେ
ସହସ୍ର କନ୍ୟା ଯାଇଂ ପଡ଼ିଲେ ପାଦତଳେ । ୫୦ ।
ଗୋସାଇଂ କାହାର କଣ ସେ ଅଟଇ ପୁରୁଷ
ଆମ୍ଭର ସ୍ୱାମୀକି ଅଦୋଷେ କରଇ ପ୍ରାଣନାଶ । ୫୧ ।
ଯେକ ପୁରୁଷକୁ ଯେବେ ସେ ନାଶହିଂ କରିବ
ସହସ୍ରେ ଯୁବତୀ ଆମ୍ଭେ ହୋଇବୁଂ ବିଧବ । ୫୨ ।
ପତିଂ ଦେହି ପତିଂ ଦେହି ପତିଂ ଦେହି ନାହି
ଦନ୍ତରେ ତୃଣ ଘେନି କାରୁଣ୍ୟ ମତେ କହି । ୫୩ ।

ତୋହୋର ଚରଣେ ଦେବ କରୁଅଛନ୍ତି ସେବା
ଅନୁଗ୍ରହ କର ନାଥ ସ୍ୱାମୀ ଦାନ ଦେବା । ୫୪ ।
ଧାଆଁରେ ମାରୁତ୍ତ ବୋଲ ବୋଇଲେ ଯୁଧିଷ୍ଠି
ନ ପୁଣ ମାର ପକାଇ ସେ କଇଛା ଜଗଜେଠି । ୫୫ ।
ବାବୁ ମୋହୋର ରାଣ ପାଡ ରୁହାଅ ଅର୍ଜୁନକୁ
ସ୍ୱାମୀ ଦାନ ଦେବା ରେ ଯେ କନ୍ୟାମାନଙ୍କୁ । ୫୬ ।
ଧାଅଁରେ ନକୁଳ ସହଦେବ ବେନ
ମୋହୋର ରାଣ ପାଡ ରୁହାଅ ଫାଲଗୁନ । ୫୭ ।
ଆଗ୍ୟାଂ ପ୍ରମାଣେ ଧାଇଁଲେ ବୃକୋଦର
ଯୁଧିଷ୍ଠି ବୋଇଲେ ଆମ୍ଭେ ମନ୍ଦ କଲୁ ଯେ କଥାର । ୫୮ ।
ତା ତହ୍ନଂ ଦୁଷ୍ଟ ଯେ ଅଟଇ ଭୀମସେନ
ଅର୍ଜୁନ ତହୁଂ ଛଡାଇ ନକ ଯେ କରଇ ନିଧନ । ୫୯ ।
ଆପଣେ ଧାଇଁନ୍ତ ଦେବ ଧର୍ମ ଧର୍ମ ସୁମର
ଆମ୍ଭର ଯିବା ଯାଯେ ଅର୍ଜୁନ ଥାଯେ କ ରକ୍ଷା କର । ୬୦ ।
ଧାଇଁଲେ ପାବନ ସେ ହାକ ଦଅଇ ଦୂରେ
ରକ୍ଷା କର ଥାଅ ବାବୁ ଆସୁଛନ୍ତି ଠାକୁରେ । ୬୧ ।
ସହଦେବ ଯାଇଂ ଆଟବାରଲା ଗନ୍ଧର୍ବକୁ
ଠାକୁରଙ୍କର ଆଗ୍ୟାଂ ଯେ ନ ମାର ଯେହାଙ୍କୁ । ୬୨ ।
ଯୁଧିଷ୍ଠି ଡାକ ଦେଲେ ରହ ରହ ପାଥ
ନ ମାର ତାହାକୁ ରେ ମୋହୋର ଶପଥ । ୬୩ ।
ନାରୀଗଣେ ମାଗନ୍ତ ରେ ଦେବା ସ୍ୱାମୀଦାନ
ଅନାଥ ନାଶ କରବା ହୋ କେବଣ କାରଣ । ୬୪ ।
ବାବୁ ରେ ଯେକା ପୁରୁଷକୁ ସହସ୍ରେକ ନାରୀ
ଯୁବା ଯୁବତୀ ଯେହାନ୍ତ ନାହାଂ ପଟାନ୍ତର । ୬୫ ।

---

୫୪।୨ ଶରଣ ପଞ୍ଜର ନାଥ ପତି ଦାନ ଦେବା ।
୫୯।୨ ଅର୍ଜୁନକୁ ନ କହ ପୁଣ ନକରଇ ନାଶମାନ ।

ଅର୍ଜୁନ ବୋଇଲେ ସ୍ୱାମୀ, ଏବେ ସେ ବାଟପଡ଼ା
ଏହାକୁ ମାଇଲେ ଦୋଷ ନାହିଂ, ଏ ପୃଥୀକ ମହାଜ୍ୱର । ୬୬ ।
ଅର୍ଜୁନ ହସ୍ତରୁ ଖଡ଼ଗ ଧଇଲେ ଯୁଧିଷ୍ଠି
ପ୍ରତଗ୍ୟାଂ ସାର୍ଥକ କରି କଇଲ୍ହା ଜଗଜ୍ଜେଠ । ୬୭ ।
ସ୍ୱାମୀର ବଚନେ ଗୁଡ଼ଲା ଡାର ବାଳ
ବିଦ୍ୟାଧର ପ୍ରଣପତ୍ୟ ଅର୍ଜୁନର ପାଦତଳ । ୬୮ ।
ସାଧୁ ମହିଂମା ତୋର ମାନବ ଦେହ ବହି
ତିନ ପୁରେ ଜିଣନ୍ତା ତିନ ଜଣ ଆନ କେହି ନାହିଂ । ୬୯ ।
ଅଙ୍ଗାରପନ୍ନଗ ବଚନ ଧନୁର୍ଜ୍ୟେ ଶୁଣି
ତ୍ରୈଲୋକ୍ୟେ କେ କେ ତୋତେ ପାରନ୍ତା ଜିଣି । ୭୦ ।
ଆକାଶେ ଜିଣି ପାରଇ ମୋତେ ବାସବ ଦେବତା
ପାତାଳେ ବାସୁକି ବାସୁଦେବ ଯଥା । ୭୧ ।
ମର୍ତ୍ତ୍ୟରେ ଜିଣି ପାରଇ ମୋତେ ଫାଲଗୁନ
ଆନ ଭଳ ଜିଣନ୍ତା ମୋତେ ନାହିଂ ଭୁବନ ତିନ । ୭୨ ।
ଇନ୍ଦ୍ର ମୋତେ ଜିଣିବାକୁ କେମନ୍ତେ ସାମରଥ
ଅଙ୍ଗାରପନ୍ନଗ ମୁଂ ବାସବର ସୁତ । ୭୩ ।
ସେହୁ ପୁରନ୍ଦର ଅଟଇ ମୋର ପିତା
ତେଣୁ କରି ଜିଣି ପାରଇ ମୋତେ ବାସବ ଦେବତା । ୭୪ ।
ମର୍ତ୍ତ୍ୟେଣ ଅର୍ଜୁନ ଜିଣି ପାରଇ ଯେ ମୋତେ
ସେ ମୋର ସୋଦର ଯେ ଅଟଇ ଯୁଗତେ । ୭୫ ।
ଯୁଧିଷ୍ଠି ବୋଇଲେ ହୋ କିସ ତୋହୋର ନାମ
ମୁହିଂ ସେ ଅଙ୍ଗାରପନ୍ନଗ ବିଦ୍ୟାଧର ଉତ୍ତମ । ୭୬ ।
ଏସନ ବଚନ ଶୁଣି ଅର୍ଜୁନ ପଚାରିମି
ଦଣ ଦୋଷ ଅପ୍ରାଧ ମୋହୋର କ୍ଷମା କରିବାକ ସ୍ୱାମୀ । ୭୭ ।
ମୋହୋର ନାମ ଦେବ ଅଟଇ ଫାଲଗୁନ
ଅଗ୍ୟାଂନ ପଣେ ମୁଂ ନୁଆରିଲି ଚିହ୍ନି । ୭୮ ।

---

୭୩ାଂ ଇନ୍ଦ୍ର କେସନେକେ ତୋତେ ଜିଣିତେ ସାମରଥ ।

ମୁହିଂ ଅନେକ ଦୋଷ କଲଇଂ ହୋଇଲି ଦୋରେହା
ଛେଦ ପକାଅ ଦେବ ଯେ ମୋହୋର ବେନି ବାହା । ୭୯ ।
ଯେ ଭୁଜେ ସ୍ୱାମୀ ମୁଂ ଯେ ଧଇଲି ତୋର ବାଳ
ଆବର ଦ୍ରୁତ କସ କରିବ ଶୃଣ୍ଡାଳ । ୮୦ ।
ବଦ୍ୟାଧର ତୋଷ ହୋଇଲା ଅର୍ଜୁନର ବଚନେ
ମୋହୋର ବଡ ଭାଗ୍ୟ ଧଂସି ନୋହିଲତ ଆନେ । ୮୧ ।
ମୋହୋର ଭ୍ରାଥ ମୋତେ କଲା ଅପମାନ
ନିସ୍ତରିଲି ଆବର ମୋହୋର କାହାକୁ ଅଭିମାନ । ୮୨ ।
ଅର୍ଜୁନକୁ କୋଳେ ବସାଇ ଅଙ୍ଗାରପନ୍ନଗ
ମୁଖେ ଚୁମ୍ବନ ଦେଇ ଆଉଂଶଇ ପାଥର ଅଙ୍ଗ । ୮୩ ।
ବାବୁ ତୋତେ ଜିଣି ନ ପାରିଲି ସାଂଗ୍ରାମ ପ୍ରସ୍ତାବେ
ତୋହୋର ଛର୍ନ୍ଦପଣ ଜାଣିଲିନି ବାବୁ ଯେବେ । ୮୪ ।
ବାବୁ ଆଦ୍ୟହିଂ ପୃଥୀକି ଉଦ୍ଧାରଣ ସୋମବଂଶ
ଚନ୍ଦ୍ର ଦେବତାଙ୍କ ବୀର୍ଯ୍ୟେ ବୁଧ ଯେ ପରକାଶ । ୮୫ ।
ବୁଧର ନନ୍ଦନ ହୋଇଲେ ପୁରରବା
ଅମରାଙ୍କ ନାଥ ଯେ ସ୍ୱର୍ଗେଣ ସୁରଦେବା । ୮୬ ।
ତ୍ରୈଲୋକ୍ୟ ନାଥ ଯେ ଯେ ଅମର ଭୁବନ୍ନୁଂ
ଯେକସ୍ତରି ଗଣ୍ଡା ଯୁଗ ଭୋଗ କଲେ ସେ ମହାମନୁ । ୮୭ ।
ପୁରରବାର ନନ୍ଦନ ଆୟୁର ନୃପତି
ଯେହି ସୋମବଂଶେ ବସିଲେ ଅମର ବାରସ୍ୱତି । ୮୮ ।
ଆୟୁର ନନ୍ଦନ ଯେ ହୋଇଲେ ନହୋଷ
ଯେହି ଇନ୍ଦ୍ର ପଦେ ବସିଲେ ସ୍ୱର୍ଗେ ଯୁଗ ପଞ୍ଚାଶ । ୮୯ ।
ଋଷିନ୍ତ ଦୁଖ ଦଲେ ମହାଉଗ୍ର ତପେ
ଶାପ୍ୟ ପାଇଣ ସେ ହୋଇଲେ ମହାସର୍ପେ । ୯୦ ।
ନହୋଷ ନନ୍ଦନ ହୋଇଲା ଯଯାତି
ନବ କନ୍ୟା ପ୍ରଦାନ ହୋଇଲେ ସ୍ୱର୍ଗୁଂ ନବ ଜାତି । ୯୧ ।

---

୮୧।୧ ଯେ ମୋହୋର ଭାଗ୍ୟ ମୁଂ ଦୃଷ୍ଟିତ ନୋହିଲି ଆନ ଜଣେ ।
୮୫।୧ ବାବୁ ଯେ ପୃଥୀକି ଧାରଣା ଅଟଇ ସୋମବଂଶ ।

ସେ କନ୍ୟାଙ୍କର ତହୁଁ ଜାତ ନବ ପୁତ୍ର
ନବ ଖଣ୍ଡ କରି ପୃଥ୍ୱୀ ବାଣ୍ଟି ଦିଲେ ତାତ । ୯୨ ।
ତହୁଁ ସେ ନବ ଖଣ୍ଡ ନାମ ବହଇ ମେଦିନୀ
ଅଙ୍ଗାରପନ୍ନଗ କହଇ ଶୁଣ ଫାଲଗୁନି । ୯୩ ।
ଦେବଯାନୀ ବୋଲି କରି ଶୁକ୍ରଙ୍କର ଦୋହିତା
ପ୍ରଥମ ପ୍ରଦାନ ହୋଇଲେ ଯଯାତିଙ୍କଇ ସେ ଦେବ କୁଳର ବନିତା ।୯୪
ଦେବଯାନୀର ହୋଇଲା ପୁରରବା ନାମେ ପୁତ୍ରେ
କୋବେର ପଦ ଦେନି ବସିଲା ମନୁ ସାତେ । ୯୫ ।
ପୁରର ନନ୍ଦନ ଯେ ହୋଇଲା ପ୍ରବୀର
ଯେ ଯମର ତହୁଁ ବଳେ ଦେନଲେ କାଳଦଣ୍ଡ ବଳକ୍କାର । ୯୬ ।
ନବଯୁଗ ପରିଯନ୍ତେ ଯମଦଣ୍ଡ ଦେନିଲା
ଅମର ହୋଇଲେ ସଂସାରେ କେହି ନାଶ ଯେ ନ ଗଲା । ୯୭ ।
ମନୁ ରାଜା ତହୁଁ ଯେ ଅନେକ ସାନନ୍ଦ ହୋଇଲା
ପୁତ୍ରେକ ଉପୁଜିଲା ମନୁସାନନ୍ଦ ନାମ ଦିଲା । ୯୮ ।
ଯେହାଙ୍କର ନନ୍ଦନ ଯେ ହୋଇଲା ଇଳା ବୀର
ଦୁଷ୍ୟନ୍ତ ବୋଲି ପୁତ୍ରେକ ହୋଇଲା ତାହାର । ୯୯ ।
କହଣା ନୁହଇ ସେ ଦୁଷ୍ୟନ୍ତ ମହିମା
ସପତ ଦୀପେଶ୍ୱର ହୋଇଲା ଯେକାଙ୍ଗ ମହାତମା । ୧୦୦
ଦୁଷ୍ୟନ୍ତର ନନ୍ଦନ ଭରଥ ଉପୁଜିଲା
ଭରଥଖଣ୍ଡ ମେଦିନୀ ଯେ ଦେବତାନ୍ତ ଭୋଗ କରାଇଲା । ୧୦୧ ।
ଭରଥର ନନ୍ଦନ ଯେ ହୋଇଲା ଭୂମନୁ
ଭୂମନୁ ଭୋଗ କଲା ସେ ଯେ ଭୂତଳ ଭୁବନୁ । ୧୦୨ ।
ବରଥ ବୋଲାଣ ତାର ପୁତ୍ରେକ ଉତପତ୍ତି
ସବୁନ୍ତ ବରଥୀ କରି ମଞ୍ଜେ ହୋଇଲା ଯେକ ଛତ୍ରୀ । ୧୦୩ ।
ତାହାର ନନ୍ଦନ ଯେ ଶମ୍ଭୁରାଣ ନୃପତି
ସୂର୍ଯ୍ୟର ଦୋହିତା ପ୍ରଦାନ ହୋଇଲାକ ତାପତୀ । ୧୦୪ ।
କୁରୁ ନାମେ ତହୁଁ ଯେ ପୁତ୍ରେକ ଉପୁଜିଲା
ତହୁଁ ସେ କୁରୁବଂଶ ଉତପତ୍ତି ହୋଇଲା । ୧୦୫ ।

---

୧୦୫।୨ ତହୁଁ ସେ କୁରୁବଂଶ ଉଦିତ ହୋଇଲା ।

ବାବୁ ଯେତେହେନ୍ତେକ ମହିମା ଯେ ଅଛି ତୁମ୍ଭର ବଂଶ
ମୁହିଂ ହାଦେ ଇନ୍ଦ୍ର ଦେବତାଙ୍କର ଅଟଇ ଜ୍ୟେଷ୍ଠ ଶିଷ । ୧୦୬ ।
ମୋହୋର ମାତାର ନାମ ଅଟଇ ଜାନକୀ ସରସ୍ୱତୀ
ବୈଶ୍ୱାନର ବଂଶେ ମୁଂ ହୋଇଲି ଉତପତ୍ତି । ୧୦୭ ।
ବାବୁ ଇନ୍ଦ୍ର ଦେବତାଙ୍କର ଯେତେବେଳେ ପଡଇ ଅପଚୟେ
ସ୍ୱର୍ଗେ ଇନ୍ଦ୍ର ପଦ ମୋତେ ଦିଅନ୍ତି ଦେବତାୟେ । ୧୦୮ ।
ଅଙ୍ଗେଣ ଭୋଗ୍ୟ ମୁଂ କରଇ ଦିବ୍ୟ ସ୍ୱର୍ଗ
ତେଣୁ ସେ ନାମ ମୋର ଅଙ୍ଗାରପନ୍ନଗ । ୧୦୯ ।
ଅର୍ଜୁନ ବୋଇଲେ ତୁ ଅଙ୍ଗେ ତ୍ରୈଲୋକ୍ୟ ରକ୍ଷା କଲୁ
ଅଙ୍ଗାର ନାମ ତୁ ସ୍ୱାମୀ, ପ୍ରତ୍ୟକ୍ଷେ ବହିଲୁ । ୧୧୦ ।
ପନ୍ନଗ ନାମ ସ୍ୱାମୀ, ବହିଲୁ କସ ଅର୍ଥେ
ଯେତ୍ଥିର ଚରିତ ସ୍ୱାମୀ, କହିବାକ ମୋତେ । ୧୧୧ ।
କହଇ ବିଦ୍ୟାଧର ଶୁଣ ହୋ ଫାଲଗୁନ୍ୟ
ଖଗେଶ୍ୱର ନାଶ କଲା ସକଳ ସର୍ପମାନ । ୧୧୨ ।
ଗରୁଡ ଭୟେ ରହି ନ ପାରିଲେ ଉଡଙ୍ଗେ
ବାବୁ ମୋହୋର ଶରଣ ଯାଇ ପଶିଲେ ସେ ସ୍ୱର୍ଗେ । ୧୧୩ ।
ମୁହିଂ ସାଂଗ୍ରାମେ ସରି ନୁହଇ ଗରୁଡକୁ
ଶରଣ ରକ୍ଷା ନିମନ୍ତେ ସମ୍ଭାଳିଲି ନାଗଙ୍କୁ । ୧୧୪ ।
ଯହୁଂ ଗରୁଡର ଶୁଝିଲା ଘୋର ରଡ
ସର୍ପେ କଙ୍କର ହୋଇ ଲଗିଲେ ମୋହୋର ଶଙ୍ଖ । ୧୧୫ ।

---

୧୦୬।୧ ପଦ ସ୍ଥାନରେ ଅଧିକା ପାଠ—

କୁରୁର ନନ୍ଦନ ଶାନ୍ତନୁ ଭୂଶସବା
ଶାନ୍ତନୁର ନନ୍ଦନ ଚିତ୍ର ବିଚିତ୍ର ଉପୁଜିବା ।
ଚିତ୍ର ବିଚିତ୍ରର ପୁତ୍ର ପଣ୍ଡୁ ଧୃତରାଷ୍ଟ୍ର ବିଦୁର
ବେଦବ୍ୟାସ ଜାତ କଲେ ଯେ ତିନି କୁମର ।
ପଣ୍ଡୁ ରଜା କ୍ଷେତ୍ରେ ଇନ୍ଦ୍ର ରଜା ବୀର୍ଯ୍ୟେ
ତୁମ୍ଭେ ଜାତ ହୋଇଲଟି ଶ୍ରୀକୃଷ୍ଣର ତେଜେ ।
ପୂର୍ବର ଚରିତ୍ର କହିଲି ତୁମ୍ଭର ଯେ ପାଶେ
ମୁହିଂ ଇନ୍ଦ୍ର ଦେବତାଙ୍କର ଅଟଇ ନିଜ ଶିଷ୍ୟେ ।

ସମସ୍ତ ସର୍ପଙ୍କର ବଳକଳ ଦେଖିଲ ମୁହିଂ ଯେବେ
ସମସ୍ତ ସର୍ପନ୍ତ ମୁହିଂ ଲାଇଲଇଂ ଗର୍ବେ । ୧୧୬ ।
ସର୍ପମସ୍ତ ମୋର ହାଦେ ହୋଇଲାକ ଅଙ୍ଗ
ତେଣୁ ସେ ନାମ ମୋହୋର ଅଙ୍ଗାରପନ୍ନଗ । ୧୧୭ ।
ଗର୍ଭ ବିସ୍ତାର ଦିଅଇ ଅଙ୍ଗାରପନ୍ନଗ
ଅର୍ଜୁନ ଦେଖଇ ତାର ଗର୍ଭେ ପାତାଳ ବିସ୍ୱର୍ଗ । ୧୧୮ ।
ବହୁତନ୍ତ ସର୍ପେ ଯେ ଖେଳନ୍ତ କୁତୋହୋଲେ
ଅନେକ ଯୋଜନ ବିସ୍ତାର ଦେଖିଲା ବେନି ଡୋଳେ । ୧୧୯ ।
ଦେଖିଣ ଅର୍ଜୁନ ଶତେ ସହସ୍ର ଦଣ୍ଡ ପରଣାମି
ଯେତେ ଦୋଷ କଲ ମୋତେ କ୍ଷମା କରିବାକ ସ୍ୱାମୀ । ୧୨୦ ।
ଅଙ୍ଗାରପନ୍ନଗ ବୋଇଲା ମୁଂ ଆନକୁ ଖ୍ଷ୍ଣ ମୂର୍ତ୍ତି ଦିଶଇ
ତୋତେ ଯେ ସାଂଗ୍ରାମେ ହାରିଲି, ତୁ ଯେଣୁ ମୋର ଭାଇ । ୧୨୧ ।
ବର ମାଗ ପାଥ ହୋ ଦେବଇଂ ମୁହିଂ ତୋତେ
ଅର୍ଜୁନ ବୋଇଲା ବର ମାଗିବି କେମନ୍ତେ । ୧୨୨ ।
ଅଭଗତେ କସ ବର ମାଗିବି ଦେବ ସ୍ୱାମୀ
ଜାଣି ଅନୁଗ୍ରହ ମୋତେ କରିବା ଦେବ ସ୍ୱାମୀ । ୧୨୩ ।
ଶୁଣିଣ ଅନୁଗ୍ରହ କଲାକ ବିଦ୍ୟାଧର
ଅର୍ଜୁନକୁ ଦିଲା ଗନ୍ଧର୍ବା ଶହସ୍ର ଯେ ସାର । ୧୨୪ ।
ଅରୁଣ କରଣ ବର୍ଣ୍ଣ ଯେତୁକ ଯେ ବିମାନ
ଯେତୁମାନ ପ୍ରାପତ ତୋତେ ହୋଉ ଫାଲଗୁନ୍ୟ । ୧୨୫ ।
ମୋହୋର ତହିଂ ଯେତୁ ଥିବ ଅନୁବ୍ରତେ
ସୁମରନ୍ତେ ପ୍ରାପତ ହୋଇବ ଯୁଗତେ । ୧୨୬ ।
ପଞ୍ଚାଳ ଦେଶେ ଲାଖ ବାନ୍ଧବୁ ବୀର ପାଥ
ସେ ଜଦ୍ମସେନୀ ତୋତେ ହୋଇବ ପରାପତ । ୧୨୭ ।
ବାବୁ ଅଭିଷେକ କାଳକୁ ପୁରୋହିତ ଜଣେ ଲୋଡ଼
ଧର୍ମ ପ୍ରୋହିତେ ଅଛନ୍ତ ଅମର ଅଧିକାଶ । ୧୨୮ ।
ସେ ଭୂମ୍ୱର ଭୂଲେ ପଞ୍ଚାଳ ଦେଶକୁ ଯାଆନ୍ତୁ
ଦ୍ରୋପଦୀକ ଭୂମ୍ୱନ୍ତ ପ୍ରଦାନ କରନ୍ତୁ । ୧୨୯ ।

---

୧୨୨।୨ ଅର୍ଜୁନ ବୋଇଲା ବର ମାଗିବାକୁ ସମାନ ନୁହଇ ଯୁଗତେଁ ।

ଅଙ୍ଗାରପର୍ଣ୍ଣଙ୍କ ସୁମରଲେ ଧୌମ୍ୟ ପୁରୋହିତଙ୍କୁ
ଅମରୁ ଆସି ପ୍ରାପତ ମଞ୍ଜ ଜଗତକୁ । ୧୩୦ ।
ପାଣ୍ଡବଙ୍କୁ ସମର୍ପିଲେ ଧୌମ୍ୟ ପୁରୋହିତେ
ପାଣ୍ଡବ ସୁମରନ୍ତେ ଯାଇଁ ମିଳବ ଅଗ୍ରତେ । ୧୩୧ ।
ବାବୁ ଆମ୍ଭେ ଯିବୁଟି ବୃନ୍ଦାଅର୍କ ମେଳେ
ଦେବତାମାନେ ଥିବେଟି ପଞ୍ଚାଳ ଦେଶ ଆଳେ । ୧୩୨ ।
ଯେତେ କହି ଅନ୍ତର୍ଦ୍ଧାନେ ଗଲେ ବିଦ୍ୟାଧର
ତହୁଁ ପଞ୍ଚଭାଇରେ ମାତା ଗଲେ ବନ ଘୋର । ୧୩୩–୧୩୬୩ ।

## ପାଣ୍ଡବଙ୍କର କୁରାଳଶାଳେ ପ୍ରବେଶ

ଦୁର୍ଯୋଧନ ଆଗତ ବୋଲି କହିଲେ ବେଦବ୍ୟାସେ
ତହୁଁ ପବନ ନନ୍ଦନ ଚଳଇ ମହାରୋଷେ । ୧ ।
ବନ ଗହନ କନ୍ଦରେ ଗୃଳଇ ଘର ପେଲି
ଗିରି ଡଙ୍ଗର ଖାଲ ଚିକରେ କୋନ୍ତାଯେ ନ ପାରନ୍ତି ଗୃଳି । ୨ ।
ଥୋକାଯେ ଦୂର ଯାଇ ରହଇ ମାରୁତି
ସୟଂମ୍ବର ନିକଟେ ଦେବ ଯିବାନା ତତ୍ତ୍ୱ । ୩ ।
ଯୁଦ୍ଧେଷ୍ଠି ବୋଇଲେ ବ୍ୟାସେ ମନ୍ଦକୃତ୍ୟ କଲେ
ସୟଂମ୍ବର ବାରତା କଥା ଆମ୍ଭନ୍ତ କହିଲେ । ୪ ।
ଅନେକ ସମ୍ଭରେ ସେ ଅଛନ୍ତି କୁରୁପତି
ନ ଦେଖୁଂ ଯେହିବାର ତ ଯେତେ ଧୃଷ୍ଟ ମୂର୍ତ୍ତି । ୫ ।
ବନସ୍ତେ ଅଛୁ ଯେ ଅନେକ କଷ୍ଟ ପାଇ
ଭାଇନ୍ତ ମାରବ, ଦୟା ଯେହିବାର ତ ନାହିଁ । ୬ ।
ଯେହିବାର କୋପରେ ଦୁର୍ଯୋଧନ ନାଶଯିବ
ଅନ୍ଧରାଜା ଗୋଷ୍ଠି ମୋର ଅନାସ୍ତ ହୋଇବ । ୭ ।
ଧୀରଥିର ହୋଇ ଆମ୍ଭେ ଯାଉଥିବା ବନେ
ସୟମ୍ବର ସରୁ ତେଣେ ଦ୍ରୋପଦୀକ ନେଇଯାଉ ଆନେ । ୮ ।

---

୬।୨ ଭାଇନ୍ତ ମାରବ ଅନେକ କଷ୍ଟ ଦେଇ ।

କନ୍ୟା ଗୋଟିଏକ ଗଲେଣ ପାଇବା
ସୃଷ୍ଟି ଅର୍ଥେ କ ସେ ସୋଦର ମରାଇବା । ୯ ।
ଏସନେକ ବସୁର ଦେବ ଗୃଲନ୍ତ ଧୀର ଧୀର
ଆସ କନା ବୋଲ ଡାକ ଦଅଇ ବୃକୋଦର । ୧୦ ।
ଯୁଦ୍ଧେଷ୍ଠି ବୋଇଲେ ତୁ ଯେ ପବନୁ ବେଗେ ଗୃଲୁ
ତେତେ ବେଗେ ଆମ୍ଭେ ଗୃଲ ଯେ ନ ପାରୁ । ୧୧ ।
ଭୀମସେନ ବୋଇଲା ମୋତେ ଯେବେ ଗୋଡ଼ାଇ ନ ପାର
ତୁମ୍ଭେ ଆଗ ହୁଅ ମୁଂ ଗୃଲଇ ତୁମ୍ଭ ପଛର । ୧୨ ।
ଆଗେଣ ଯୁଦ୍ଧେଷ୍ଠି ପଛେଣ ମାରୁତି
କୋଇନ୍ତାଙ୍କ ପାଦ ଭୀମ ମାଡ଼ଇ ଧାଡ଼ି ଧାଡ଼ି । ୧୩ ।
ଭୀମସେନ ବୋଇଲା ଏ କେବଣ ବସ୍ତର
ଆଗରେ ନ ଗୃଲ ପଛରେ ଓଠାଶ ହୋଇପଡ଼ । ୧୪ ।
ଭୀମସେନ ଭୁଜ ଧର କୋଇନ୍ତା ଦେବୀ ମାଏ
କୋଇନ୍ତାଙ୍କୁ ତୋଳ ଭୀମସେନ ବସାଇଲା ମଥାଏ । ୧୫ ।
ଡାହାଣ କାନ୍ଧେ ଯୁଦ୍ଧେଷ୍ଠି ବାମ କନ୍ଧେ କରଣ୍ଟୀ
ଦୁଇ କାଖେ ନକୁଳ ସହଦେବ ଭାଇ ବେନି ଗୋଟି । ୧୬ ।
ଗୃଲଇ ଭୀମସେନ ପବନ ଆଘାତେ
ତଙ୍ଗର ଚୂର୍ ହେଉଅଛି ଭୀମସେନର ପାଦଘାତେ । ୧୭ ।
ଆକର୍ଷଣ ମୂରତି ହୋଇ ଗୃଲଇ ଭୀମସେନ
ଏକା ରାତକେ ଗଲା ଶଏ ସତୁର ଯୋଜନ । ୧୮ ।
ଦ୍ରୋପଦର ରାଜ୍ୟକୁ ପଞ୍ଚାଶ ଯୋଜନ ଅନ୍ତରେ
ଗଙ୍ଗାଧାର ବହୁଅଛି ସଙ୍ଗମ ସାଗରେ । ୧୯ ।
ଭୀମସେନର ତହୁଂ ଓହ୍ଲାବନ୍ତ ସେହି ନଦୀର କୂଳେ
ବସିଲେ ପାଣ୍ଡବେ ଅଗ୍ରବନକାର ତଳେ । ୨୦ ।
ପ୍ରାତ ସ୍ନାହାନ ସାରିଲେ ସେହି ନଦୀର ଜଳେ
ଉଠିଲେ ବାରଣ ଗିରି ପର୍ବତ ଉପରେ । ୨୧ ।

---

୧୭।୧ ଆଘାତେ—ପବନର ଗତିରେ ।
୨୦।୨ ଅଗ୍ରବନକା—ଅଗୁରୁଚନ୍ଦନର ଶ୍ରେଷ୍ଠ ବଣ ।

ଦେଖିଲେ ଆସୁ ଅଛନ୍ତି ରାଜାଗଣ ମାନେ
ରଥ ଗଜ ଅଶ୍ୱ ଯେ ପାଦାନ୍ତି ଗହନେ । ୨୨ ।
ଚନ୍ଦ୍ରବଂଶ ଦାଣ୍ଡ ପଡ଼ିଅଛି ପାଞ୍ଚାଳ ଦେଶକୁ
ପଞ୍ଚାଶ ଯୋଜନ ଥାଉଂ ପଶି ନୁଆରନ୍ତି ଭିତରକୁ । ୨୩ ।
ଉତ୍ତର ଦେଶରୁ ଆସୁଛନ୍ତି ଦୁଇ ଊଣା ଶ୍ରୀଳଗି ସହସ୍ର ନୃପତି
ପଶ୍ଚିମ ଦିଗରୁ ଆସନ୍ତି ଏକ ଊଣା ପଚିଶ ସହସ୍ର ନୃପତି । ୨୪ ।
ପୂର୍ବ ଦିଗରୁ ଆସୁଛନ୍ତି ସାତ ସହସ୍ର ରାଏ
ଦକ୍ଷିଣ ଦିଗରୁ ତିନ ସହସ୍ର ନୃପତି ଆଏ । ୨୫ ।
ପଞ୍ଚଚିରଶ ଯୋଜନ ଥାଉଂ ଦିଶୁଅଛି ଠାଠ
ଯୁଧିଷ୍ଠି ବୋଇଲେ ହୋ ପଶିବାକୁ ନାହିଂ ବାଟ । ୨୬ ।
ବାବୁ ନଦୀରେ ପାଣି କେତେ କହନ୍ତି ଭୀମସେନ
ତାଞ୍ଚତାଳ ଗଭୀର ସେ ନଦୀର ପୂର୍ଣ୍ଣମାନ । ୨୭ ।
ଆହୋ ଆମ୍ଭେ କେମନ୍ତେ ଯିବୁ ଯୁଧିଷ୍ଠି ଦେବ ବୋଇଲେ
ସାତତାଳ ଉତ୍ସର୍ଗ ଯେ ଭୀମସେନ ହୋଇଲେ । ୨୮ ।
ବେନି ଭୁଜ ବିସ୍ତାରି ଭୀମସେନ ଦିଲେ
ଦୁଇ କାନ୍ଧେ ଚାରିଭାଇ ମଥାଏ ମାତାଙ୍କୁ ବସାଇଲେ । ୨୯ ।
ଭୁଜ ବୁଡ଼ି ଶିର ପରଯନ୍ତେ ହେଲା ପାଣି
ବୁଡ଼ି ସନ୍ତୁରି ମାରୁତି ପାରି କରି ଆଣି । ୩୦ ।
ଉତ୍ତର କୂଳେ ତୀରେ ଉଭା ଯେ ହୋଇଲେ
ଅନେକ ଗହନ ସଇନ୍ୟ ତହିଂ ଯେ ଦେଖିଲେ । ୩୧ ।
ରଥ ଗଜ ହୟ ପାଦାନ୍ତି ସୈନ୍ୟ ଠାଠ
ପଞ୍ଚାଶ ଯୋଜନ ଥାଉଂ ପଶିତେ ନାହିଂ ବାଟ । ୩୨ ।
ଭୀମସେନ ବୋଇଲା ସ୍ୱାମୀ, ମୁଂ ହୋଇଥାଇ ଆଗେ
ମୋତେ ଗୋଡ଼ାଇ ତୁମ୍ଭେ ଆସ ବେଗେ ବେଗେ । ୩୩ ।
ଭୁଲଇ ବୃକୋଦର ହଲାଇ ଭୁଜ ବେନି
ହାତବୋଡ଼ାରେ ଧାଏ ଦୁଇପାଶେ ପଡୁଛନ୍ତି ସଇନ । ୩୪ ।
ଭୁଜ ହାତବୋଡ଼ନ୍ତେ ଯେ ଗଜେ ପଡ଼ନ୍ତି ତଳ
ହାତବୋଡ଼ା ହାତବୋଡ଼ି ଧାଏ ରଥେ ହେଉଛନ୍ତି ଧୂଳ । ୩୫ ।

ଯୁଧିଷ୍ଠିର ବୋଇଲେ ରହ ରହ ଭୀମସେନ
ଯେହ୍ନେକ୍ଷଣି ଜାଣନ୍ତା ରେ ହୋଇବ ବଦ୍ୟମାନ । ୩୬ ।
ହବମେ ବଞ୍ଚିବା ଯେ ଗହଳ ଦଣ୍ଡ ଗ୍ରୁଡ
ଗ୍ରାବ ହୋଇଲେ ସିନା ସିବା ପଥ ମାଡ । ୩୭ ।
ଯୁଧିଷ୍ଠିର ବାଟ ଗ୍ରୁଡ ରହିଲେ ନମ ବନକାଯେ
ଯୁଧିଷ୍ଠିର ବୋଇଲେ ଭୀମ ଯାଆ ତୁ ଯେକାଯେ । ୩୮ ।
ଠାବ ଗୋଟିଏ ବାବୁ ତୁ ଖୋଜ ଆସ ଯାଇ
ସୁସଞ୍ଚ ସ୍ଥାନ ହୋଇବ ଆଗମ ନିଗମ ଭୂଇଁ । ୩୯ ।
ଆଗ୍ୟାଂ ପ୍ରମାଣେ ଯେ ଚଳଇ ବୃକୋଦର
ସନ୍ଧ୍ୟାକାଳେ ପଶିଲା ଯାଇ ଦ୍ରୋପଦ କଟକର । ୪୦ ।
ରାଜାମାନଙ୍କର ଯେ ଅଟଇ ମଧ୍ୟସ୍ଥାନ
ହଇନ ମାଡ ରହିଛନ୍ତ ପଞ୍ଚ ଯେ ଯୋଜନ । ୪୧ ।
ତିଳ ପକାଇଲେ ନ ପଡଇ ଭୂଇଁ
ଦ୍ୱାଦଶ ଯୋଜନ ଆଯେତନ ଲଡାଯେ ଠାବ ନାହିଁ । ୪୨ ।
ନଗର ପଶ୍ଚିମ ଆଡେ ଯମୁନା ନଦୀ କୂଳେ
ଛନ୍ତି ଯେକା ମାନ ଦେଖିଲା ତୁଚ୍ଛା କୁରାଳଶାଳେ । ୪୩ ।
ଦେଖଇ ଦ୍ରୋପଦର ରାଜ୍ୟସଭା ନବର
ଦବ୍ୟ ପୁର ଦେଖି ବଗୃରଇ ବୃକୋଦର । ୪୪ ।
ଭୀମସେନ ବଗୃରଇ ଯେ ଦୂରେଣ ଥାଇଁ ଗୃହିଂ
ରାଜାଯେ ବସିଲେ ଯେ ମେଞ୍ଚରେ କେହି ନାହିଂ । ୪୫ ।
ବଗୃରଇ ପାବେନ ସୁସଞ୍ଚ ମେଞ୍ଚ ଦେଖି
ଯେଥି ଆଣି ଯେହ୍ନେକ୍ଷଣି ବସାଇବ ଯୁଧିଷ୍ଠିରଙ୍କି । ୪୬ ।
ଅନେକ ସାନନ୍ଦେ ଭୀମ ଧାମଇଂ ହରଷେ
କରଯୋଡ ଜଣାଇ ଯାଇଂ ଯୁଧିଷ୍ଠିରଙ୍କ ପାଶେ । ୪୭ ।
ସଭାର ମଧ୍ୟରେ ଦେବ ମେଞ୍ଚେକ ନିର୍ମିତ
ଆମ୍ଭନ୍ତ ବୋଲ ତାହା ଯେ ତୋଳାଇ ଅଛି ଦ୍ରୋପଦ । ୪୮ ।
ଯୁଧିଷ୍ଠିର ହସିଲେ ଭୀମସେନର ବଚନ ଶୁଣି
ମୂର୍ଖ ଲୋକେ କହନ୍ତ କ ପଣ୍ଡିତଙ୍କର ବାଣୀ । ୪୯ ।

ଆମ୍ଭର ନାଶ ଗଲା ଚନ୍ଦ୍ର ବର୍ଣ୍ଣ ନାହିଂ
ଆମ୍ଭନ୍ତ ଦ୍ରୋପଦ ଅବା ଜାଣିଅଛି କାହିଂ । ୫୦ ।
ଏତାତେ କସ ବୋଲିବୁଂ ପ୍ରକୃତି ଆମ୍ଭର ମନ୍ଦ
ଭଲ କଲୁ ବାବୁ ଯାଇଂ ରେ ନ କଲୁ ତହିଂ କଳି ଦ୍ୱନ୍ଦ । ୫୧ ।
ସେମ୍ଭି ଯେ ଅଟଇ ଆମ୍ଭର ପରମ ଭାଗ୍ୟ
ରାଜାମାନନ୍ତ ଦେଖି ଯେ ନ କଲୁ ମନେ ରାଗ । ୫୨ ।
ଯୁଧିଷ୍ଠିର ଦେବ ବୋଇଲେ ଶୁଣ ରେ ଅର୍ଜୁନ
ବ୍ରାହ୍ମଣ ରୂପ ଆଜ ଭିକ୍ଷା ପାତ୍ର ଘେନ । ୫୩ ।
ଠାକୁରଙ୍କ ବଚନେ ଚଳଇ ଫାଲଗୁନ
ଦଦରା ଛତା କନ୍ଧେ ହାଥେ ହରି ଗୋବିନ୍ଦ ଭଣି । ୫୪ ।
ପଞ୍ଚାଳଦେଶ ରାଜାର ସୟଂମ୍ବର ଦେଖିଲା
ସାଧୁ ସାଧୁ ବୋଲି ପ୍ରଶଂସା ବାର କଲା । ୫୫ ।
ଠାବ ନ ପାଇଲା ଯେ ଦ୍ୱାଦଶ ଯୋଜନେ
ସେହି କୁମ୍ଭାଳଶାଳ ଦେଖଇ ଫାଲଗୁନେ । ୫୬ ।
ବନସ୍ତର ନିକଟେ ଯେ ପର୍ବତର ତଳେ
ବହଇ ଜାହ୍ନବୀ ଗଙ୍ଗା ନିର୍ମଳ ନଦୀକୂଳେ । ୫୭ ।

---

୫୭ ପଦ ସ୍ଥାନରେ ଗୋଟିଏ ପୋଥିରେ ଅଧିକା ପାଠ—
ବହଇ ଜାହ୍ନବୀ ଯେ ପଶ୍ଚିମ ନଦୀକୂଳେ ।
ବ୍ୟାସଙ୍କର ବଚନେ ଚଳିଲେ ପାଞ୍ଚଜଣେ
କୁମ୍ଭାଳଶାଳରେ ଯେ ରହିଲେ ତୋଷମନେ ।
ବୁଦ୍ଧିଆ ବୋଲିଣ ଯେ କୁମ୍ଭାରର ନାମ
ତାହାର ଶାଳରେ ଯାଇଂ କଲେକ ବିଶ୍ରାମ ।
ଘରଯାର ନାମ ତାର ଲୀଳାବତୀ ହୋଏ
ଶ୍ରୀଧର ବୋଲିଣ ତାର ସେକଇ ତନଯେ ।
ରହିଲେ ତାହାର ମେଳେ ପଣ୍ଡୁର ତନଯେ
ଦେଖିଣ କୁମ୍ଭାର ତାଙ୍କୁ କଲାକ ସଦୟେ ।
ଭିକ୍ଷା ମାଗିଣ କଲେକ ରନ୍ଧନ ଭୋଜନ
ସେଥୁ ଅନନ୍ତରେ କଥା ଶୁଣ ହୋ ରାଜନ ।

ଅର୍ଜୁନ ବଚନରେ ସେହି ସଞ୍ଚଲେ ବାସୁଦେବ
ଆନକୁ ପ୍ରାପତ ହୋଇବ କାହିଂ ସେହି ଠାବ । ୫୮ ।
ଯୁଧିଷ୍ଠିର ପାଶେ ପାର୍ଥ ହୋଇଲା ପ୍ରବେଶ
କୁଶଳଶାଳ ଇଚ୍ଛା ହୋଇଅଛି ରହିବା ଦେବ ଆସ । ୫୯ ।
ଭୀମସେନ ବୋଇଲା ବାବୁ ଭଲ ଠାବ କଲୁ
ଯେଉଁଠି ଠାବ ଗୋଟିଏ ଖୋଜିଣ ଅଇଲୁ । ୬୦ ।
ସ୍ୱାମୀ ଖାଲ ଖୁଞ୍ଚ କଣା ଖପରା ଖାର ଭୂମି
ସେଠାରେ କେମନ୍ତେ ରହିବେ ଯୁଧିଷ୍ଠିର ଦେବ ସ୍ୱାମୀ । ୬୧ ।
ଧର୍ମ ନନ୍ଦନ ବୋଲନ୍ତି ରହ ରହ ବୃକୋଦର
ସେ ଠାବ ଗୋଟି ବାବୁ ବଡାଇ ପବିତ୍ର ସ୍ଥାନ ସାର । ୬୨ ।
ଗାଈ ଗୋରୁ ଗୃହାଳ ଆବର କୁଶଳଶାଳ
ପୁଣ୍ୟ ଦେହା ଭୂମି ଯେ ପାତକ ଦହଇ ସର୍ବକାଳ । ୬୩ ।
ଦିବସେକ ଯେବେ ବାବୁ ସେ ସ୍ଥାନରେ ରହି
ଛଅ ମାସ ପରଯନ୍ତେ ଯେ ପାତକ ହୋଏ ଦହି । ୬୪ ।
ନଗ୍ର ବାହାରୁ ସେ ଚଳିଲେ ରାତ୍ରକାଳେ
ସୁବେଳେ ଯାଇ ପ୍ରବେଶ ହୋଇଲେ କୁଶଳଶାଳେ । ୬୫ ।
ସୁମରନ୍ତି ଭଗବାନ ଦେବ ଦାମୋଦର
ଯେ କଷ୍ଟ ଅବସ୍ଥାରୁ କରିବା ଦେବ ପାର । ୬୬ ।
ହେ ମହେଶ୍ୱର ଦେବ ତବ ଚରଣେ ନମାମି
ତବ ପଦ୍ମପାଦେ ଶତ ସହସ୍ର ଦଣ୍ଡ ପରଣାମି । ୬୭ ।

---

୬୩।୧ "ଦିବସେକ ଯେବେ ବାବୁ ସେ ସ୍ଥାନରେ ରହି"ପାଦାନ୍ତ ପରେ ଅଧିକା ପାଠ ।
କାଠ ଲୋଡ଼ ନ ଯିବା ଅଗ୍ନି ଲୋଡ଼ ନ ଯିବା
ନବରତନ ହାଣ୍ଡି ଲୋଡ଼ିଲେ ପାଇବା ।
ଯେ ଯେ ଶିଶିର ଶୀତ କାଳ ଲୁଗା ଆମ୍ଭର ନାହିଂ
ପାଉଂଶ ଗୁଡ଼ାଏ ପାଡ଼ ଶୋଇବା ସୁସ୍ଥ ହୋଇ ।
କୋଇନ୍ତାଏ ବୋଇଲେ ସେହି ଯେ ଦୁର୍ଲ୍ଲଭ ସ୍ଥାନ
କୁଶଳଶାଳକୁ ବେଗେ କରସି ଗମନ ।
୬୭ { ମାହେନ୍ଦ୍ର ଲଗ୍ନେ ଶ୍ରୀ ପୁରୁଷୋତ୍ତମ ଚରଣେ ନମାମି ।
ତବ ଭଗନ୍ଧ ଗତ ଭାବେ ଶତ ସହସ୍ର ପରଣାମି ।
ଭୃତ୍ୟର ଭୃତ୍ୟ ଦେବ ସହସ୍ର ଦଣ୍ଡ ପରଣାମି ।

କାଳ ବ୍ରତମାନେ ଯେ ବ୍ରତନ୍ତ ପାଣ୍ଡବେ
ଯେଣୁ କରି ପ୍ରିୟ, ହରି ଧରନ୍ତ ହୃଦ ଭାବେ । ୬୮ ।
ନୀଳେନ୍ଦ୍ରଦଳଉତ୍ପଳ ଯାହାର ବଦନ ମଣ୍ଡଳ
ଶ୍ରୀବତ୍ସ ବିରାଜିତ ହୃଦେ ଶଙ୍ଖ ଶାର୍ଦ୍ଧୋଳ । ୬୯ ।
ଭାବାଙ୍ଗ ପୁରୁଷ ଦେବ ଶଫଳ ଜନ ଚନ୍ତା
ତେଣୁ କରି ଜନାର୍ଦ୍ଦନ ନାମ ବହନ୍ତ ସୃଷ୍ଟି କରତା । ୭୦ ।
ଯାବତ ଚନ୍ଦ୍ର ଦିବାକର ଥିବ
ଶ୍ରୀ ଜଗନ୍ନାଥ ନାମ ଗୋଟି ହୃଦୟରେ କର ଠାବ । ୭୧ ।
ସଂସାର ମୋହଜଳେ ପଡ଼ି ଯେତେଥିଂ ଭାସି
ଧର୍ମଇଂ ସେ ତାର ନାବ ହୋଇଲାକ ଆସି । ୭୨ ।
ସେ ନାବେ ବସି ନରେ ତରନ୍ତ ଅଗାଦ ଜଳ
ନାରାୟଣ ନାମ ଗୋଟି ଅଟଇ ବେନି କୂଳ । ୭୩ ।
ଅନୁଗ୍ରହ ନାଥ ସଦୟ ଜଗବନ୍ଧୁ
ସଂସାର ଅଗାଦ ଜଳେ ନାରାୟଣ ପରମବନ୍ଧୁ । ୭୪ ।
ଜଟଳଣ ଦେବ ମେଦାସୁର ଶରୀର କର୍ଦ୍ଦନ କରି
ତାହାକୁ ମେଦ, ମେଦଣୀ ନାମ ହେଲେ ବସୁନ୍ଧରୀ । ୭୫ ।
ଶରଣ ରକ୍ଷଣ ନାଥ କଇଷା ଜଗଜ୍ଜେଠି
ଜନ୍ମେ ଜନ୍ମେ ଭାବଇ ମୁଂ ଶ୍ରୀକୃଷ୍ଣ ନାମ ଗୋଟି । ୭୬ ।
ତୁଳସୀର ବଲ୍ଲଭ କାଳନ୍ଦୀ ପ୍ରାଣନାଥ
ଶୂଦ୍ରମୁନି ସାରଳା ଦାସ ଶତ ସହସ୍ର ଦଣ୍ଡ ପ୍ରଣମିତ । ୭୭— ୯୪୪୦



## ଦ୍ରୌପଦୀ ସ୍ୱୟମ୍ବର

ବଦୟନ୍ତ ଅଗସ୍ତି ଶୁଣ କୁମ୍ଭ ଋଷିର ବାଳ
ନାରାୟଣ ସୁମରନ୍ତେ ସକଳ କାର୍ଯ୍ୟ ସୁଫଳ । ୧ ।
ନିର୍ଜନ ସ୍ଥାନ ଭୂମି ପବନ କୁଶଳଶାଳ
ରହିଲେ ପାଣ୍ଡବେ ଯେ ମଙ୍ଗଳ ଶୁଭବେଳ । ୨ ।

୬୯।୧ ନୀଳେନ୍ଦ୍ରରୁଚିର ଯାର ନୟନ ମଣ୍ଡଳ ।

କୋଇନ୍ତାପ୍ୟେ ବୋଇଲେ କୁଶଳଶାଳ ଦେଖି
ମୋହୋର ବର୍ତ୍ତୁରକୁ ପ୍ୟେ ସ୍ଥାନ ବଡ ସୁଖୀ । ୩ ।
କାଠ ଲୋଡ ନ ଯିବା ଅଗ୍ନି ଲୋଡ ନ ଯିବା
ନବଘନ ହାଣ୍ଡି ଯେ ଲୋଡଲେ ପାଇବା । ୪ ।
ପ୍ୟେ ମାଘ ମାସ ଆମ୍ଭର ଶୀତ ବସ୍ତ୍ର ନାହିଂ
ପାଉଂଶ ଗୁଡାପ୍ୟେ ପାଡ ଶୋଇବା ଉଷୁମ ହୋଇ । ୫ ।
ପଞ୍ଚୁ କଣ୍ଟକର ମଧ୍ୟେ ସେ ଯେ ନରନାଥ
ଆବର ବିଶେଷେ ଜଗନ୍ନାଥଙ୍କ ପଞ୍ଚଭୂତ । ୬ ।
ଧର୍ମ ପବନ ଇନ୍ଦ୍ର ଅଶ୍ୱିନୀକୁମାରୁଂ ଜାତ
କର୍ମର ଅବଳେ ହୋଇ ଅଛନ୍ତ ପ୍ୟେମନ୍ତ । ୭ ।
ରତ୍ନଖଟେ ହଂସୁଲି ନେତ ତୁଳ ପାଟ ମୁଚୁଳା ସୁପାତି
ସ୍ଥୁର ପାଉଂଶ ପାଇ ସେ ଯେ ଭଜିଲେ ବିପ୍ରତି । ୮ ।
ଆହୋ ବିପଦ କାଳେ ଯେବେ ବିସ୍ମର କରଇ ପ୍ରାଣୀ
ଦୁଖ ସୁଖ ସହଣା କ୍ଷତ୍ରୀଙ୍କ ଧର୍ମ ପୁଣି । ୯ ।
ସେ ଆପଣେ କଷ୍ଟ ସହିଲେ ସଂସାର ତାରଣ ନିମନ୍ତେ
ତାହାଙ୍କର ଚରିତ ଶୁଣିଲେ ଗୁଡଇ ଦୁର୍ଗତି ବିପତ୍ତେ । ୧୦ ।
ଇତି ଶ୍ରୀ ମହାଭାରତ ଆଦିପର୍ବ କଥା
ବାଞ୍ଛା ପୂରେଇ ପ୍ୟେ ମହା ପାତକ ହରନ୍ତା । ୧୧ ।
ସମ୍ପତ୍ତି ବିପତ୍ତି ଯେ ହୋଅଇ ଅବଶ୍ୟ
ଶ୍ରୀ ମହାଭାରତ ଶୁଣନ୍ତେ ପାତେକ ହୋପ୍ୟେ ଧ୍ୱଂସ । ୧୨ ।
କୋଇନ୍ତା ବୋଇଲେ ଦୃଣିନ୍ତ ପାଶୋ ରାଇ
ବ୍ରାହ୍ମଣ ସଭାକୁ ଯାଅ ବ୍ରାହ୍ମଣ ବେଶ ହୋଇ । ୧୩ ।
ଦ୍ରୋପଦ ରାଜାର ଦାନ ଦେବା ବେଳେ
ତୁମ୍ଭେ ହୋ ଥାଅ ଯାଇ ବ୍ରାହ୍ମଣଙ୍କର ମେଳେ । ୧୪ ।
ଯୁଧିଷ୍ଠି ବୋଇଲେ ମାଗୋ ପ୍ୟେହିକ୍ଷଣି ଯାଇ ପାରଇ
ତୋର ପୁଅ ଭୀମା କୋପକୁ ବଡ ମୁଂ ଡରଇ । ୧୫ ।
ଅନେକ ସମ୍ପଦ ଦେଖି ଆସିଅଛୁ ରାଜା ମାନଗୋବିନ୍ଦ
ନ ପୁଣ ତାହାର ତୁଲେ ଭୀମା କରଇ ଦ୍ୱନ୍ଦ । ୧୬ ।

---

୧୬।୧ ଅନେକ ସମ୍ପଟ୍ଟ (ସମ୍ପଟରେ) ଡମ୍ଭଂ ଅଛୁ ମାନ ଯେ ଗୋବିନ୍ଦ ।

କୋଇଲ୍ଲାସ୍ୟେ ବୋଇଲେ ବାବୁ ଖ୍ରମା ରେ ମୋହୋର ଶପତ
ଯୁଦ୍ଧେଷ୍ଟିଙ୍କ ଆଗ୍ୟାଂ ତୁ ନ ଲଙ୍ଘିବୁ ଅନୁବ୍ରତ । ୧୭ ।
ବ୍ରାହ୍ମଣ ବେଶ ଯେ ଧଇଲେ ପଞ୍ଚୁଭାରେ
ଦ୍ଵିକଚ୍ଛ ବସନ ଆରୋପିଲେ କଟୀରେ । ୧୮ ।
ନବଗୁଣ ପଇତା କନ୍ଧରେ ଉତ୍ତୁରୀ ଅଚ୍ଛ
ଆଧାନ ମନ୍ତ୍ର ପୋଥି କାଖରେ ସବୁର ଅଚ୍ଛ । ୧୯ ।
ଦ୍ଵାଦଶ ଚିତା ଯେ ଶ୍ରୀବତ୍ସ ଲକ୍ଷଣ
କାଖେ ବେଦ କରନ୍ତି ତେଜମୟେ ବ୍ରାହ୍ମଣ । ୨୦ ।
କାନ୍ଧେଣ ଛତା ତଥି ପ୍ରୋକ୍ଷଣୀ ଯେ ଶ୍ରୁଆ
ତମ୍ଭାର ବର୍ଣ୍ଣ ଜାଣି ବିକାଶଇ ସବ କାୟା । ୨୧ ।
ଗୋପ୍ୟାନ ଦୋହରା ଅଣ୍ଟାରେ କୁଶ ବିଡ
ଚନ୍ଦ୍ର ସ୍ଵାମୀ ଦେବତା ବିଜୟେ କରନ୍ତି । ୨୨ ।
କ୍ଷର୍ବୀବୃଭି ଗୁଡ ବ୍ରାହ୍ମଣ ସରୂପେ
ସଭାକଇ ପାଣ୍ଡବେ ଚଳନ୍ତ ଗୋପ୍ୟାନ ରୂପେ । ୨୩ ।
ଗଡୁ ତମ୍ଭା ପାବୀ କପୋଲ କରେଣ ଜପାମାଳୀ
କଣ୍ଠେଣ ତୁଳସୀ ଭୁଜେ ରୁଦ୍ରାକ୍ଷର ମାଳୀ । ୨୪ ।
ଯଦ୍ୟପି ଗୋପ୍ୟାନ ରୂପେ ଲୁଗ୍ବନ୍ତ କାୟେ
ସରୂପ ବିକାଶଇ ନିର୍ଧୂମ ଅଗ୍ନି ପ୍ରାୟେ । ୨୫ ।
ଗୁପ୍ତା ମଣ୍ଡୋପ ଦକ୍ଷିଣ ଆଡେ ବ୍ରାହ୍ମଣଙ୍କର ସଭା
ମହା ସମ୍ଭବେ ଯେ ଆଦିତ୍ୟ ଜ୍ୟୋତି ପ୍ରଭା । ୨୬ ।
ବ୍ରାହ୍ମଣ ସଭାୟେ ବିଜେ ପାଞ୍ଚ ଭାରେ
ବିପ୍ର ପ୍ରତକ୍ଷେ ଦିଶନ୍ତ ବ୍ରହ୍ମା ରୁଦ୍ର କୋବେରେ । ୨୭
ସୁନାସୀର ନାରାୟଣ ପ୍ରାୟେ ଦିଶନ୍ତ ପଞ୍ଚୁଭାରେ
ବସୁଦେବ ନାମେ ତହିଂ ଯେକଇ ଦ୍ଵିଜବରେ । ୨୮ ।
ବୈତରଣୀ ନଦୀକୂଳେ ଈଶାନ୍ୟ ନଗ୍ର ପୁରେ । ୨୯ ।

---

୨୧।୧ ଶ୍ରୁଆ—ଶ୍ରୁବ । ପ୍ରୋକ୍ଷଣୀ ଓ ପ୍ରଣୀତା ଦୁଇଟି ପାତ୍ର । ପ୍ରୋକ୍ଷଣୀ—
ପବିତ୍ରଜଳ ଧାରଣ ପାତ୍ର ।

ବଡ଼ାଇ ଧାର୍ମିକ ସେ ଅଟଇ ଅଥର୍ବ ବେଦୀ
ଧାର୍ମିକ ବିବେକ ସେ ମନ୍ତ୍ରେଣ ପ୍ରସିଦ୍ଧି । ୩୦ ।
ଗୁଣବନ୍ତ ବ୍ରାହ୍ମଣ ସେ ପାଣ୍ଡବନ୍ତ ରୂପ ଗୃହ୍ନିଂ
ଏମ୍ଭେ ପାଞ୍ଚଙ୍କର ମୂରତି ବ୍ରାହ୍ମଣ କୁଳେ ନାହିଂ । ୩୧ ।
ଆକାଶୁଂ ବିଜେ କଲେ କି ପଞ୍ଚୁ ଦିଗପାଳେ
କଷଣ ଦେଖି ବିଜେ କଲେ ରାଜ୍ୟ ପାଞ୍ଚାଳେ । ୩୨ ।
ମାନବ ଜନ୍ମ ପ୍ରାଏ୍ମ ନ ଦିଶଇ ଏମ୍ଭାଙ୍କର ତେଜ
ଅନ୍ତ୍ରେଣ ଜାଣିବା ଏମ୍ଭେ ପାଞ୍ଚଙ୍କର ବଳ ବୀର୍ଯ୍ୟ । ୩୩ ।
ଗୁଣବନ୍ତ ଲକ୍ଷଣବନ୍ତ ଦେଖି ବସିତେ ଦିଲେ ଠାବ
ବ୍ରାହ୍ମଣଙ୍କ ସଭାରେ ବସିଲେ ପଞ୍ଚୁ ଯେ ପାଣ୍ଡବ । ୩୪ ।
ଭୀମସେନ ବିଚାରଇ ଏମ୍ଭେ ରାଜାଗଣ ମାନେ
ମହା ସମ୍ଭ୍ରବେ ବସି ଅଛନ୍ତି ଏମ୍ଭେ କନକ ଆସନେ । ୩୫ ।
କଞ୍ଚିତ କରି ଆଗ୍ୟାଂ ଦେବେକ ଯୁଧିଷ୍ଠିରି
ନିମିଷକେ ମୋଡ଼ି ପକାଇବି ଲକ୍ଷେ ରାଜାଙ୍କର ମୁଣ୍ଡ ଗୋଟି । ୩୬ ।
ଚତୁର୍ଦ୍ଦିଗର ରାଜାମାନେ ଆସିଅଛନ୍ତି ସମ୍ଭ୍ରେ
ପୂଜା କରି ଦ୍ରୋପଦ ବସାଇଲା ସଭାରେ । ୩୭ ।
ଗଙ୍ଗାରେ ସ୍ନାହାନ କରି ମୁଣୋହି କରନ୍ତି ସର୍ବ ରାଏ୍ମ
ଅନ୍ନୋବକ ସାରି ସଭାଏ୍ମ ବିଜେ କଏ୍ମ । ୩୮ ।
କର୍ପୂର ତାମ୍ବୋଳ ଦେଇଣ ସବୁନ୍ତି
ଜଣେ ଜଣେ ସମାର୍ଜ୍ଜିଇ ସଦାନନ୍ଦ ମନ୍ତ୍ରୀ । ୩୯ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଦିଗ ଚାରି
ଯେ ଯାହାର ଆସନେ ରାଜାଏ୍ମ ବସନ୍ତି ଆବୋରି । ୪୦ ।
ଅନେକ ଉଚ୍ଛବ ଦ୍ରୋପଦର ଭୁବନେ
ରାଜାମାନେ ପରବେଶ ହୋଇଲେ ପଞ୍ଚଦଶ ଦିନେ । ୪୧ ।
ଶ୍ରୀକରେ ଅର୍ଘ୍ୟ ଘେନି ଧୃଷ୍ଟଦ୍ୟୁମନ
ସମସ୍ତ ନୃପତିନ୍ତ କରଇ ସମାଧାନ । ୪୨ ।
ଶିରେ ମଣି ମୁକୁଟ ହୃଦରେ ରତ୍ନମାଳା
କର୍ଣ୍ଣେ କର୍ଣ୍ଣାଞ୍ଚଳ ସୀମନ୍ତମ୍ବ ଜଗଦଳା । ୪୩ ।

ଭୁଜେଣ ବାହୁଟି ଚରଣେ ନୂପୁର
ହାର କୁଣ୍ଡଳ ମଣିମୟେ ଦ୍ରବ୍ୟ ସାର । ୪୪ ।
ଶରୀରେ ମୃଗନାଭ ଚନ୍ଦନ ଲେପନ
ଶିରରେ ଆଭରଣ ସୁଗନ୍ଧ ପୁଷ୍ପମାଳ ମାନ । ୪୫ ।
ଯେତେକ ରାଜାଙ୍କେ ବର୍ଣ୍ଣନ ଶତେ ଶତେ ଖଣ୍ଡ
ଲକ୍ଷେ ରାଜାଙ୍କୁ ଦ୍ରୋପଦ ଯେତେହେଲେକ ସମ୍ବାଦ । ୪୬ ।
ସମସ୍ତ ରାଜାନ୍ତ ବରଣ କରଇ କୁମର
ଅର୍ଘ୍ୟ ଘେନ ଦ୍ରୋପଦ ମିଳିଲା ସଭାର । ୪୭ ।
ଅର୍ଘ୍ୟ ଆଣି ଥୋଇଲା ସଭାର ମଧ୍ୟ ସ୍ଥାନେ
ଶତ ସହସ୍ର ଦଣ୍ଡ ପ୍ରଣପତ୍ୟ ବିଧାନେ । ୪୮ ।
ଜରାସନ୍ଧ ବୋଇଲା ଉଠ ହୋ ଦ୍ରୋପଦ
କେବଣ ତୋହୋର କାମାର୍ଥ କହନ ସମ୍ବାଦ । ୪୯ ।
ଦ୍ରୋପଦ ବୋଇଲା ସ୍ୱାମୀ ସାବଧାନେ ଶୁଣିମା
ଅଗ୍ନିରୁ ଜାତ ମୋହୋର ଦୋହିତା ଦ୍ରୋପଦୀ ଶୁଦ୍ଧ ବାମା । ୫୦ ।
କୋଟିଏ ଋଷି ଘେନ ହୋମ କଲେ ମହାତ୍ମା ବେଦବ୍ୟାସ
ମହା ଅନଳୁଂ ତାହାର ଶରୀର ପ୍ରକାଶ । ୫୧ ।
ମୋହୋର ମନ କାମନା କଲି ଯାହାର ଅର୍ଥେ
ଦୈବର ବିପାକେ ସେ ନାଶ ଗଲେ ଅନମିତ୍ତେ । ୫୨ ।
ତାହାର ତୁଲ୍ୟ ବର ନ ପାଇଲି ଯେ ମଧ୍ୟ ଭୁବନେ
ତେଣୁ କରି ସୟମ୍ବର ରଞ୍ଜିଲ ବିଦ୍ୟମାନେ । ୫୩ ।
ମୋହୋର ପୂର୍ବ ଭାଗ୍ୟଂ ଦୁହିତା ଅନୁଯାୟୀ
ଯେ ଲକ୍ଷେ ନୃପତିଙ୍କି କେତେ ପୁଣ୍ୟେ ପାଇ । ୫୪ ।
ସମସ୍ତେ ବରଣ ହୋଇଲ ତୁମ୍ଭେ ଗୁରୁଉଣା ଲକ୍ଷେ ଯେ ନୃପତି
କାହାକଇଂ ଆସ୍ତି କରିବ କାହାକଇଂ କରିବ ନାସ୍ତି । ୫୫ ।
ମହାଲକ୍ଷ ପାତିଲି ମୋହୋର ବ୍ରତର ନିମନ୍ତେ
ଇଚ୍ଛାଏ ବରିବ କନ୍ୟା ମୋହୋର ନୋହଇ ଯୁଗତେ । ୫୬ ।
ଯେ ମହାଲକ୍ଷ ମୋହୋର ଯେତୁ ବିନ୍ଧିବ ଗୋସାଇଂ
ଲକ୍ଷର ଚରିତ କହଇ ଶୁଣିମା ସାବଧାନ ହୋଇ । ୫୭ ।

---

୫୦।୨ ଅଗ୍ନିରୁ ଜାତ ମୋର ଯେ ଦୋପଦୀସ୍ତ ଧର୍ମୀ ।

ରାଧାଚକ୍ର ବୁଲଇ ଯେ ସହସ୍ରେକ ଧାର
କନକର ମୀନ ଅଛି ତହିଂର ଉପର । ୫୮ ।
କୁଲାଳ ଚକ୍ର ପ୍ରାଏ ସେ ବୁଲଇ ଅନ୍ତରୀକ୍ଷେ
ତଳେ ଧନୁ ଏକ ଅଛଇ ବଳ ଏକ ଲକ୍ଷେ । ୫୯ ।
ରାଧାଚକ୍ର ବୁଲୁଅଛି ସାତତାଳ ଉଚ୍ଚେ
ତାଳେକ ଉପରେ କନେକ ପଟାଏ କଣ୍ଟିଲି ଅଛି ସଞ୍ଚେ । ୬୦ ।
ଲକ୍ଷେ ବଳ ଧନୁ ଧରି ସେ ପଟାର ଉପରେଣ ଉଠି
ତହିଂର ତଳେ ଥୋଇଲା ଅଛି ତୀର୍ଥଜଳ ଘଟୀ ଗୋଟି । ୬୧ ।
ତଳକୁ ଦେବ ଦୃଷ୍ଟି ଉପରକୁ ହୋଇବ ମୁଷ୍ଟି
ବିନ୍ଧିବ ନାରାଜ ଚକ୍ର ଭେଦି ମୀନ ବାମ ଚକ୍ଷୁ ଯିବ ଫୁଟି । ୬୨ ।
ଏହେନ୍ତେକ ସରୂପେ ଯେଉଣ କ୍ଷତ୍ରୀ ଲକ୍ଷ ବିନ୍ଧିବ
ମୋହୋର ଦୁହିତା ଦ୍ରୋପଦୀକ ମେ ପ୍ରଧାନ ହୋଇବ । ୬୩ ।
ଯେ ଲକ୍ଷ ବିନ୍ଧିବ ସେ ଲଭିବ କୁମାରୀ
ତହିଂକ କେହି ତୁମ୍ଭେ ନୋହିବ ହିଂସାକାରୀ । ୬୪ ।
ଅଛ ତୁମ୍ଭେ ନୃପତିଗଣ ମହିମା ମହାବଳ
କନ୍ୟା ନଅନ୍ତେ ତାହାକୁ ନ ପୁଣ କର ଗୋଳ । ୬୫ ।
ଏଥିକୁ ସ୍ୱାମୀ ତୁମ୍ଭେ କହିବା ଦୂତ ବାଣୀ
ତେବେ ସେ ସଭାକୁ ମୋହୋର ଦୋହିତା ପାରଇ ଆଣି । ୬୬ ।
ସମସ୍ତେ ରାଜାଏ ବୋଇଲେ ଏହି ସେ ସତ୍ୟ ସତ୍ୟ
ଯାହାର ପୁଣ୍ୟ କର୍ମ ତାହାକୁ କନ୍ୟା ପରାପତ । ୬୭ ।
ତାହାକୁ ନ ସହି ଯେ କରିତ ଲୋଡଇ ଦ୍ୱନ୍ଦ
ସମସ୍ତ ନୃପତି ତାହାକୁ କରିବା ଶିରଚ୍ଛେଦ । ୬୮ ।
ସ୍ୱୟମ୍ବର ସ୍ଥାନ ବରଣ ଲକ୍ଷ କଥା ନିବର୍ତ୍ତି
ନିଜ ଭୁବନେ ପ୍ରବେଶ ପଞ୍ଚାଳ ଅଧିପତି । ୬୯ ।
ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମନ ବେନି ପୁଅନ୍ତ ରାଇ
ଦ୍ରୋପଦୀକ ଆଣ ବାବୁ କନ୍ୟା ବେଶ କରାଇ । ୭୦ ।
କେଶିନୀ ନାମେ ଯେ ଅଟଇ ମୃଦୁସୁଲି
ସର୍ବାଳଙ୍କାର କରାଇ ଲକ୍ଷେକ ପୋଇଲି । ୭୧ ।

କନ୍ୟାଙ୍କୁ ସ୍ନାହାନ କରାନ୍ତି ସର୍ବେ ମିଳି
ନାନା ଗନ୍ଧରସ ଯେ କର୍ପୂରମାଧୁରେ ପଖାଳି । ୭୨ ।
କୁଙ୍କୁମ କସ୍ତୁରୀ ଯେ ଲେପନ୍ତି ଶରୀରେ
ମୃଗନାଭି କସ୍ତୁରୀ ଲେପିଲେ ତହିଁ ଉପରେ । ୭୩ ।
ଆଳାଟ ଢାଳିଣ ଶୁଖାବନ୍ତି କେଶ
ଅଙ୍ଗେ ପରିଧାପନ କରନ୍ତି ନବତନ ଝୀନବାସ । ୭୪ ।
ଜାଇ ଯୁଇ ମଲ୍ଲୀ ମାଳତୀ ନାଗେଶ୍ୱର ପାଖୁଡ଼ା
ସୁଗନ୍ଧ ପୁଷ୍ପ ଦେଇ ସାଞ୍ଚୋଇଲେ କବେରୀ ଭାରା । ୭୫ ।
ସୁସଞ୍ଚ ଖୋପା ପରିମଳ ସୁବାସେ
ଲୁବୁଧେ ମଧୁକରେ ବୁଲୁଛନ୍ତି ପାଶେ । ୭୬ ।
ମୁକୁତା ଜାଲ ଉପରେ ସୀମନ୍ତମଣି
ଲଲାଟ ପାଟିରେ ହୀରା ଅଷ୍ଟରତ୍ନେ ଖଞ୍ଜାଣି । ୭୭ ।
କର୍ଣ୍ଣେଣ ତଡ଼ଙ୍କ ନାଶାରେ ରତ୍ନଫୁଲ
ହୃଦେଣ ଝଟକନ୍ତି ରତ୍ନହାର ଅମୂଲ୍ୟ । ୭୮ ।
ଭୁଜେଣ କଙ୍କଣ ଶୋଭିତ ରତ୍ନଚୂଡ଼
ଅଷ୍ଟରତ୍ନେ ଖଞ୍ଜି ଅଙ୍ଗୁଷ୍ଠିରେ ମୁଦି ଜଡ଼ । ୭୯ ।
ପାଦେଣ ନୂପୁର ଝଲକନ୍ତି ହୀରା
ନ ସହଇ ସୁନ୍ଦରୀ ବହୁତ ରତ୍ନ ଭାରା । ୮୦ ।
ମିଳିଣ ଗଣିକାଏ କରନ୍ତି ଅବଲେଖ
ସେ ବେଶ ଦେଖଣମାନ ସୁନ୍ଦରୀ ବୁଝିଲେ ବିମୁଖ । ୮୧ ।
ଉପରେ ପରିଧାପନ ଇନ୍ଦ୍ରଗୋବିନ୍ଦ ଦାସୀନେତ ଗୋଟି
ଅନଳ ଜ୍ୟୋତି କି ସେ ବିକାଶଇ ଦେହ ଫୁଟି । ୮୨ ।
ତୁଲେଣ ଅଛନ୍ତି ସେ ଲକ୍ଷେକ ପରିବାରୀ
ତାହାଙ୍କର ବେଶମାନ କହିତ କି ପାରି । ୮୩ ।

---

୭୩।୨ ମୃଗନାଭି ସଉରଭି ଗନ୍ଧ ସମୂହ ବସରେ ।
୭୫ { ଜାଇ ଜୁଇ ସେବତୀ ପାଖୁଡ଼ା ମାଳତୀ
ସୁବାସ କୁସୁମେ କବେରୀ ସାଞ୍ଚୋବନ୍ତି ।
୮୨।୨ ଅନଳ୍ପ ଜାତ କି ସେ ବିକାଶଇ ତେଜ ଫୁଟି ।
୮୩।୧ ସମ୍ପୂର୍ଣ୍ଣ ଯୁବା ବୟସ ସେ ଲକ୍ଷଲ କୁମାରୀ ।

ସଂପୂର୍ଣ୍ଣ ଯୁବତୀ ସେ ସ୍ତ୍ରୀରତ୍ନ କାନ୍ତ
ଅନେକ କନ୍ୟା ଉପରେ ଯେ ଅତ୍ୟନ୍ତ ରୂପବନ୍ତୀ । ୮୪ ।
ଅମରବାଳାସୁଣୀମାନେ ଉତପତ୍ତି ହୋଇଅଛନ୍ତ ଆସି
ଆନନ୍ଦ ନାୟିକା ସେ କୃଷ୍ଣାଙ୍କରିଂ ଅତ୍ୟନ୍ତ ଦାସୀ । ୮୫ ।
ଅନେକ ବେଶ ବେଶନ ଯେ ହୋଇଣ ଯୁବତୀ
ସ୍ତ୍ରୀରତ୍ନ ନାୟିକା ସେ ଜଗତ ମୋହନ୍ତ । ୮୬ ।
ସହସ୍ରେକ ଚାମର ଢାଳନ୍ତ ଚଉକନ୍ତ
ସହସ୍ରେକ ଚାମର ଯେ ସୁବର୍ଣ୍ଣ ଝଟକନ୍ତ । ୮୭ ।
ଉଭାରେଲେ ସୁନ୍ଦରୀ ସହସ୍ରେକ ଉଲ୍ଲୋଳ ନେତଛନ୍ତି
ଘ୍ରମୂରେଣ ନୃତ୍ୟ କରନ୍ତ ସହସ୍ରେକ ଯୁବତୀ । ୮୮ ।
ମଧୁର ରସ ବାଦ୍ୟ ବାଜଇ ଶୁଦ୍ଧ ବାଣୀ
କୋକିଳ ଧ୍ୱନି ସୁସ୍ୱରେ ଗାବନ୍ତ ନାୟିକୀ । ୮୯ ।
ସୁବର୍ଣ୍ଣ ଯୋଗାଡ ଘେନ ସହସ୍ରେ ପରବାସୀ
ସହସ୍ରେ କନ୍ୟା ଚଳନ୍ତ ଆଗେ ପୁଷ୍ପ ବୃଷ୍ଟି କରି । ୯୦ ।
କନେକ ହାଦୋଳାୟେ ଖଜଯେ ପାଞ୍ଚାଳୀ
ଚଳନ୍ତ ଯୁବତୀଗଣେ ସମସ୍ତେ ହେଂ ଶୁଦ୍ଧଶାଳୀ । ୯୧ ।
ନାନା ବାଦ୍ୟରେଣ ଯେ ପୂରିତ ଗହଳ
ଶରଦ ଉତ୍ସବେ ଯେହ୍ନେ ମାତଙ୍ଗୀ ବୃନ୍ଦମେଳ । ୯୨ ।
ତେସନେକ ଶୋଭବନ ସରୂପ ପ୍ରକାଶି
ଦେଖିଣ ରାଜାଗଣମାନେ ସମସ୍ତେ ପ୍ରଶଂସି । ୯୩ ।
ଦ୍ରୌପଦୀର ବଦନ କେହ୍ନ ନ ପାରନ୍ତ ଚାହିଂ
ଧାତ୍ରୀଗଣମାନଙ୍କ ମୁଖ ଚାହିଂ ସମସ୍ତେ ହୋଇଲେକ ମୋହ । ୯୪ ।
ଯେଉଁଣେ ବେଢିଛନ୍ତ ଲକ୍ଷେକ ଯୁବତୀ
ଲକ୍ଷେ ରାଜାଙ୍କୁ ଯେ ଯୋଗାନ୍ତ ପ୍ରିୟବନ୍ତୀ । ୯୫ ।
ସଭାର ମଧ୍ୟରେ ନେଇ ଉଭାରେଲେ ବାଳୀ
ସମସ୍ତ ଗଣିକାମାନେ ମଙ୍ଗଳ ଧ୍ୱନି ତୋଳି । ୯୬ ।

---

୮୯।୧ ମଧୁର ଶବଦେ ବେଣୁ ବୀଣା ଯନ୍ତ୍ର ଧ୍ୱନି ।

ମେଡ଼ର ମଧ୍ୟେ ବଜେ କରାଇଲେ ଯୁବତୀ
ପୂର୍ଣ୍ଣମୀ ଚନ୍ଦ୍ର ଜାଣି ବରାଜଇ ବଦନ ଜ୍ୟୋତି । ୯୭ ।
ସଭାରେ ଉଭା ହୋଇ ଧୃଷ୍ଟ ଯେ ଦ୍ୟୁମନ
ରାଜାଗଣମାନଙ୍କୁ ପଚାରନ୍ତ ବଚନ । ୯୮ ।
ଲକ୍ଷେ ରାଜାସ୍ୱେ ତୁମ୍ଭେ ଯେ ବସିଲ ଆସ୍ଥାନେ
ମୁବୃତ୍ତ କରିଲ ମୁଂ ବରବେଶ ବଧାନେ । ୯୯ ।
ସ୍ୱେ ମୋହୋର ଭଗ୍ନୀ ଯେ ଆଣିଲ ଦ୍ରୌପଦୀ
ବରିବେ କରେପିବା ସ୍ୱେହାର ମୂରତି । ୧୦୦ ।
ଯେହୁ ପାର ଲଖ ବିନ୍ଧିବା ଗୋସାଇଂ
ସ୍ୱୟମ୍ବର କଲ ମୁଂ ପାଞ୍ଚାଳୀର ପାଇଂ । ୧୦୧ ।
ସମସ୍ତରାଜାମାନେ ବସି ଅଛନ୍ତ ମଣ୍ଡନବ୍ରତେ
ସମସ୍ୟା ଦିଲ୍ଲ ସେ ମଗଧେଶ୍ୱର ନରନାଥେ । ୧୦୨ ।
ଜାରାସନ୍ଧ ବୋଇଲା ହୋ ଶୁଣ ଧୃଷ୍ଟଦ୍ୟୁମନ
କେହ୍ନ ନ କହନ୍ତ ତୋତେ ତଥ୍ୟ କଥା ମାନ । ୧୦୩ ।
ତୁ ଯେ ହାନ୍ଦୋଳାରେ ବସାଇ ଆଣିଲୁ ଦ୍ରୌପଦୀ
କେହ୍ନ ନ ଦେଖିଲେ ତାହାର ଚିହ୍ନ ବର୍ଣ୍ଣ ମୂରତି । ୧୦୪ ।
ମେଡ଼ରୁ ଓହ୍ଲାଇ ଆଣ ଦ୍ରୌପଦୀ ଯେ ବାଳୀ
ଦେଖନ୍ତୁ ରାଜାଗଣମାନେ ସରୂପ ହିଆଳୀ । ୧୦୫ ।
ଜାରାସନ୍ଧ ବଚନେ ଦ୍ରୌପଦ ନୃପତି
ମେଡ଼ରୁ ଓହ୍ଲାଇ ଆଣଇ ତତକ୍ଷଣାନ୍ତ । ୧୦୬ ।
କେଶିଣୀ ଜୟସେନୀ ଧରିଛନ୍ତ ଦ୍ରୌପଦୀର ହସ୍ତ
ଦେଖନ୍ତ ଚିହ୍ନ ବର୍ଣ୍ଣ ସରୂପ ସଂଜାତ । ୧୦୭ ।
ବଦନ ଦେଖି ରାଜାସ୍ୱେ ହୋଇଲେ ମତିଭ୍ରମ
ଭେଦିଲା କାମଶରେ ମଦନେ ଅସାଷ୍ଟମ । ୧୦୮ ।
ନର୍ମ୍ମର ଦେଶର ରାଜା ଯେ ଗଣପତି
ଦେଖିଣ ବିସରିଲା ସେ ସୁନ୍ଦରୀର ମୂର୍ତ୍ତି । ୧୦୯ ।
ସାଧୁ ସ୍ୱେ ସୁନ୍ଦରୀ ରାଜାର ଦୁଲ୍ଲଳ
ବଂଶର ସାଧୁ ଯେ ସ୍ୱେହାକୁ ପ୍ରତିପାଳ ୧୧୦ ।

ଆକୁଞ୍ଚିତ କେଶ ଗହଳ ଚିକୁର
କୁସୁମ ବନ୍ଧନେ ବନ୍ଧିଅଛନ୍ତି ମଧୁକର । ୧୧୧ ।
ରସାଣ ପଦ୍ମ ପ୍ରାୟେ ଦିଶଇ ଲଲାଟ ପାଟି
ବନ୍ଧୂକ ଅଧର ଡାଳିମ୍ବ ବୀଜ ଦଶନ ବିମ୍ବଓଷ୍ଠୀ । ୧୧୨ ।
ଯେ ଏକଖଣ୍ଡ କପୋଳ ଖଞ୍ଜିତ ଭ୍ରୂଲତା
ରୋମାବଳୀ ଅମୂଲ୍ୟ କି ଦିଶଇ ବନିତା । ୧୧୩ ।
ଆରକ୍ତ ଶୋଭବନ ଦିଶେ ବେନିଡୋଳ
ଅବଲୋକନେ ଗୃହ୍ୟଂଲେ ଟଳିବେ ସକଳ । ୧୧୪ ।
ଗୃହାନ୍ତେ ବନ୍ଧ ନୟନେ ହୃଦୟ ଯିବ ଫୁଟି
ସଂସାର ରକ୍ଷା ନିମନ୍ତେ ଚଳିଲୁ କଲ ଦୃଷ୍ଟି । ୧୧୫ ।
କଞ୍ଚିତ କରି ସେ ଯେବେ ଗୃହ୍ୟଂବ ସଭିଙ୍କୁ
ଅନେକ ପୁରୁଷ ହତ୍ୟା ଦୋଷ ଲାଗିବ ଯେହାକୁ । ୧୧୬ ।
ସ୍ତ୍ରିୟଧର୍ମ ଯେହୁ ଅଟଇ ସୁଗ୍ୟାମୀ
ପାପକୁ ଭୟେ କରି ସେ ହୋଇଲା ମାନିନୀ । ୧୧୭ ।
ବୋ ଧର୍ମ ଦେବତା ଯେ ସଭିଙ୍କୁ ନ ଗୃହ୍ନ
ଭଲେ ଅଇଲୁ ଆମ୍ଭେ ଅପ୍ରମାଦେ ଯେଥୁଂ ଯାଉଂ । ୧୧୮ ।
ଯେସନେକ ମନେ ବିଚାରନ୍ତି ସଂବରେ
ଅଦାଗ୍ର ଅଯୋନି ଅଗ୍ନିରୁ ଜାତ ହୋଏ । ୧୧୯ ।
ଯଦ୍ୟପି ପାଷାଣ ହୋଇବ ବଜ୍ର ଗୋଟି
ଅପାଙ୍ଗ ନୟନେ ଗୃହ୍ୟଂଲେ ସେହୁ ଯିବ ଫୁଟି । ୧୨୦ ।
ଯେ ସେ ଦେବ କାର୍ଯ୍ୟେ ଜଗତ ମୋହିନୀ
ଋଷି ବିପ୍ର ତପୋଧନ ତପ ଯେ ଭଞ୍ଜନୀ । ୧୨୧ ।
ନାସାକୁ ପଟାନ୍ତର ନୋହଇ ତିଳଫୁଲ
ଧନକର ବିଳମ୍ବେ ଝଡ ପଡଇ ଭୂମିତଳ । ୧୨୨ ।
ଅଙ୍ଗୁଟ ଶୋଭବନ କନକ ପଦ୍ମ ଜାଣି
ସୁଶୀତଳ ପବନ ମଳୟାନଳମଣି । ୧୨୩ ।

---

୧୧୪ { କର୍ଣ୍ଣ ପ୍ରଲମ୍ବିତ କି, ରଞ୍ଜିତ କାମ ଦୋଳା
{ ରୋମାବଳୀ ରେଖାକି ବିରାଜିତ ଚପଳା ।

ଯେହ୍ନାର ନାସାରୁ ବାହାର ଯେବଣ ପବନ
ନମ୍ବ ବନକାରେ ଲଗିଲେ ହୋଇବ ଚନ୍ଦନ । ୧୨୪ ।
ତାମ୍ବୁଲ ବହନେ ଯେ ଅଧରେ ରଙ୍ଗ ଫୁଟି
ବାଳ ଆଦିତ୍ୟଙ୍କର ତେଜ ବିମ୍ବକୁ ନ ଘଟି । ୧୨୫ ।
ବିମ୍ବ ପଟାନ୍ତର ଅଧର, ବୁଦ୍ଧି କାଟଲେ
ସେହ୍ନ ସେ ତୁଲ୍ୟ ନୋହିବେ ଝଡିବ ଅବଶ୍ୟ ତଳେ । ୧୨୬ ।
ଯେସନ ଘଟଣ ଶୁଦ୍ଧ ହିଙ୍ଗୁଳର ପାଟି
ତେସନେକ ଶୋଭିବନ ତାହାର ଅଧର ଗୋଟି । ୧୨୭ ।
ବଞ୍ଜୁଳ ନ ଗଞ୍ଜଇ ତାହାର ଦନ୍ତପନ୍ତି
ପଙ୍କୁ ଡାଳମ୍ବ ସେ ରୂପ ବିକାଶନ୍ତି । ୧୨୮ ।
ସୁଲଳିତ ସୁସଞ୍ଜ ଅଧର ପାଟି ଗୋଟି
ବତିଶ କଳାରେ କ ଚନ୍ଦ୍ରମା ତେଜ ଧୋଟି । ୧୨୯ ।
ଗ୍ୟାନବନ୍ତ ସୁନ୍ଦରୀ ସେ ବିକାଶଇ ବାଣୀ
ମତ୍ତପିକ ଚୂତବନ ଉପେକ୍ଷିବେ ଯେହ୍ନାର ବାକ୍ୟ ଶୁଣି । ୧୩୦ ।
ଯେବଣ ପୁରୁଷକୁ ଯେ ବିକାଶିବ ବାକ୍ୟ
ଶରୀର କେ ଧରିବ ହୋଇବ ଅଶକ୍ୟ । ୧୩୧ ।
ଶରଦ ପୂର୍ଣ୍ଣମୀ ଚନ୍ଦ୍ର ସେ ବଦନ ଭଲ
ରାହୁର ତେଜ ଲଗି ସେ କଳଙ୍କ ବହିଲ । ୧୩୨ ।
ନିକଳଙ୍କ ବଦନ ଯେହ୍ନାର ଅଛଇ ନିରଦୋଷୀ
ତେଣୁ କରି ପଟାନ୍ତର ନ ଘଟଇ ଶଶୀ । ୧୩୩ ।
ନ ଜାଣି ପଟାନ୍ତର କରିବା କେହ୍ନେ ଜହ୍ନ
ପ୍ରଜାପତିର ଶାପେ ତନୁ ହୋଇଲ୍କ କ୍ଷୀଣ । ୧୩୪ ।

---

୧୨୪।୨ ଲମ୍ବ ସାହାଡାରେ ଲାଗିଲେ ସେ ହୋଇବ ଚନ୍ଦନ ।

୧୨୮।୨ { ଡାଳମ୍ବ ନଗଞ୍ଜଇ ତାହାର ଦନ୍ତପନ୍ତି
ପଙ୍କୁକାଲେ ସେ ସରୂପ ବିକାଶନ୍ତି ।

୧୩୪ { ହୃଦୟୁ ବିସ୍ତାର ପୃଥଳ ବର୍ତ୍ତୁଳ ଯଉବନ
ଗଜକୁମ୍ଭ ବିସ୍ତାର ମଧ୍ୟସିଂଘ ପ୍ରାୟେ କ୍ଷୀଣ ।

୧୨୮।୧ ବଞ୍ଜୁଳ—ଅଶୋକଫୁଲ ।

ସୁବର୍ଣ୍ଣ ଘଟ ଜାଣି ଦିଶଇ ଗଳକନ୍ଧ
କ୍ଷୁଦ୍ର କୁନ୍ଦରେ ଦେଇ କି ଘଟିଲା ପ୍ରବନ୍ଧ । ୧୩୫ ।
ବେନି ଶ୍ରବଣେ ଝଳନ୍ତି ଦୋଦଂବାହୁ ଶିଖେ
କୃଷ୍ଣମେଘ ଉଦେ ହୋଇ ଯେହ୍ନେ ଉଡନ୍ତି ବଳାକେ । ୧୩୬ ।
ତେସନେକ ପଟାନ୍ତର ଅଇର ଦର୍ପଭଞ୍ଜା
ବିସ୍ତୀର୍ଣ୍ଣ ବଛଥଳ ତାହାର କୃପଣଦାନ ମଞ୍ଜା । ୧୩୭ ।
ଅନାଦି ଅପର୍ଣ୍ଣା ଯେ ସିଦ୍ଧି ଯେ ସମ୍ଭବ
ଶରୀର ବର୍ଣ୍ଣିବାକୁ କେସ କ୍ଷମ ଯେ ହୋଇବ । ୧୩୮ ।
ଅନନ୍ତଂ ଉତପତ୍ତି ଯେ ତେଜ ବିସ୍ତାର
ମୁଂ କେସ ବର୍ଣ୍ଣିବି ମାନୁଷେ ଅବତାର । ୧୩୯ ।
ପୃଥୁଳ ସୁହଞ୍ଚ ସୁନ୍ଦର ଯେ ତୋହୋର ଭୁଜ ବେନି
କୁମୁଦ ନାଳ କମଳ ଜଡିତ ହିରଣ୍ୟ ଘେନି । ୧୪୦ ।
ସୁରଭି ପଟାନ୍ତର ବେନି କରସ୍ଥଳୀ
ଚମ୍ପେକ କଳି ଜାଣି ଦିଶଇ ଅଙ୍ଗୁଳି । ୧୪୧ ।
ଜାତି ପାଖୁଡା ଜାଣି ଦିଶଇ ଲଖ ରେଖ
ନୋହଇ ଅତି ସୂକ୍ଷ୍ମ ନୋହଇ ଅତି ଶାକ୍ଷ । ୧୪୨ ।
ଉଲଟ କଦଳୀ ଜାଣି ବେନି ଜାନୁସ୍ଥଳୀ
ରକତ କୁମୁଦ ଜାଣି ବେନି କରତଳ । ୧୪୩ ।
ପାଟ ପୋଯେଲା ଜାଣି ପାଦନଖ ରେଖ
ହରିଲା ସବୁର ଦର୍ପ ହୋଇଲୁ ନିରେଖ । ୧୪୪ ।
ସଭାପୂର୍ଣ୍ଣ ଥାଇ ବୋଲଇ କାଳଦମନ
କନ୍ୟାର ଶରୀରେ ତ ଅଳଙ୍କାର କ୍ଷୀଣ । ୧୪୫ ।

---

୧୩୮।୨ ସିଦ୍ଧ ସାଧବୀ ବର୍ଣ୍ଣିବାକୁ କି ସଂକ୍ଷେପି କହିବ ।
୧୪୧।୧ ସରସିଜ ପଟାନ୍ତର ବେନିକର ସ୍ଥଳୀ ( ପା )
୧୪୨।୨ { ନୋହଇ ସରସମ ଅପୂର୍ବ ବିଶିଖ
ନୋହଇ ଅତି ସୂକ୍ଷ୍ମ ନୋହଇ ଅତି ଶିଖ ।
୧୪୫।୨ କନ୍ୟାର ଶରୀର ଶୋଭାକୁ ଅଳଙ୍କାର ଦିଶେ କ୍ଷୀଣ ।
୧୪୧।୧ ସୁରଭି—ସୁବର୍ଣ୍ଣ ।

ଦୁର୍ଯୋଧନ ବୋଇଲା ହୋଇଲୁ କି ବାଇ
ଶରୀରକୁ ଭାର ବୋଲି ଅଲଙ୍କାର ନ ବହ । ୧୪୬ ।
କର୍ଣ୍ଣ ବୋଇଲା କିସ କରିବ ଅଲଙ୍କାର
କଣ୍ଠପୂରୁ ଶତେଗୁଣ ତେଜ ଯେ ଯେହ୍ନାର । ୧୪୭ ।
ଅଗ୍ନି ସାକ୍ଷେ ଯାହାର ତେଜ ଝଳ
କିସ ଶୋଭାବନ କରିବ କଣ୍ଠସ୍ଥ ଗୁରୁ ଭଳ । ୧୪୮ ।
ଯେସନେକ ଜଳରେ ଗମଇ ହଂସ ପନ୍ତ
ଚଳନ୍ତେ ସୁନ୍ଦରୀ ତେସନେକ ପାଦଗତ । ୧୪୯ ।
ନ ଜାଣିଣ ଦ୍ରୋପଦ କଲାକ ସ୍ୱୟମ୍ବର
ଯେ ସଭାରେ ନାହିଁ ଯେହ୍ନାକଇଁ ପଟାନ୍ତର ବର । ୧୫୦ ।
ପୁଣିହିଁ ଜନମି ଯେବେ ଆସଇ କାମଦେବ
ଯେହ୍ନାର ରୂପକୁ ସେହ୍ନ ସେ ଶୋଭା ପାଇବ । ୧୫୧ ।
ଯେସନେକ ବର୍ଣ୍ଣନ୍ତ ସମସ୍ତ ଦଣ୍ଡଧାରୀ
କେଶିନୀ ମୃଦୁସ୍ୱର୍ଲୀ ଦେଖାଏ ରାଜାନ୍ତ ନରାଧାର । ୧୫୨—୯୫୯୨ ।



## ସ୍ୱୟମ୍ବର ସଭାରେ ରାଜାମାନଙ୍କର ସ୍ୱରୂପ ନିର୍ଣ୍ଣୟ

ଦ୍ରୋପଦୀ ବୋଇଲେ ଶୁଣ ଗୋ କେଶିନୀ
ଯେମାନେ କେବଣ ଦେଶରୁ ଅଇଲେ ସନ୍ୟ ଘେନି । ୧ ।

---

୧୪୬।୨ ସୁକୁମାରୀ ସ୍ତ୍ରିରୀଙ୍କି ଯେ ବହୁତ ଅଲଙ୍କାର ଭାର ହୋଇ ।

୧୫୧।୨ "ଯେହ୍ନାର ଶୋଭା···ପାଇବ" ପଦପରେ ଗୋଟିଏ ପୋଥିରେ ଅଧିକା ପାଠ—
ଯେମନ୍ତ ବର୍ଣ୍ଣନ୍ତ ସକଳ ନରସାଇଁ
ଦ୍ରୋପତୀକି କେଶିନୀ ଯେ ମେଡରେ ବସାଇଲା ନେଇ ।
ସଭାର ମଧ୍ୟସ୍ଥାନେ ମେଢେକ ନିର୍ମିତ
ତଥି ଉପରେ ଦୃଷ୍ଟି ଦିଲେକ ଦ୍ରୋପଦ ଦୋହିତ ।
ଦେଖିଲେ ଦ୍ୱାଦଶ ଯୋଜନ ପ୍ରତି ଲକ୍ଷେ ରାଜାଙ୍କର ଥାଠ ।
ସମ୍ଭବ ଆସ୍ଥାନେ ଯେ ବଡାଇ ମୁରାଟ ।

ଆମ୍ଭର ରାଜ୍ୟକୁ ଆଇଲେ କା ନିମନ୍ତେ
କେଶିନୀ ବୋଇଲା ରାଜ୍ୟେ ସ୍ୱୟମ୍ବର କଲେ ତୋତେ । ୨ ।
ତୁ ଦେଖି ବାକ୍ଷତ ଯେ ନ ଜାଣୁ ଗୋ ସେହା
ରାଜାମାନେ ମିଳଲେ ହୋଇବ ତୋହୋର ବିହା । ୩ ।
ମୃଦୁସୁସ୍ୱର ବଚନେ ବୋଲଇ ଦ୍ରୌପଦୀ
ଯେ ସଭାର ମଧ୍ୟେ କେ ମୋହୋର ପତି । ୪ ।
କେଶିନୀ ବୋଇଲା ମାଗୋ ସ୍ୱୟମ୍ବର ତୋହୋର
ଯେତୁ ଲଖ ବିନ୍ଧିବ ସେ ତୋହୋର ବର । ୫ ।
ଦ୍ରୌପଦୀ ବୋଇଲେ କେ କେବଣ ଦେଶର ଅଧିକାରୀ
ଧନବନ୍ତ ଗୁଣବନ୍ତ ବିବେକ କେ କେବଣ ଗୁଣେ ପ୍ରଚାରୀ । ୬ ।
ସେମାନ କେଶିନୀ ମୋତେ କହନା ସଞ୍ଚପି
ସେହାଙ୍କର ଗୁଣ ସରୂପ ବୁଝିଇ କନା ଅଦ୍ୟାପି । ୭ ।
ଦ୍ରୌପଦୀର ଅଗ୍ରତେ କହଇ କେଶିନୀ
ରାଜାମାନଙ୍କର ମହିମା ଶୁଣିମା ଯଜ୍ଞସେନୀ । ୮ ।
କୁଞ୍ଜାଗଳ ଦେଶର ଗୋ ଦେଖ ଆଧିପତି
ଧୃତରାଷ୍ଟ୍ର ନନ୍ଦନ ଯେ ମାନ ଚକ୍ରବର୍ତ୍ତୀ । ୯ ।
କାଳ ବଞ୍ଚାଯେ ଯେ ଯେ ମାନଗୋବିନ୍ଦର ପଣେ
ଗାନ୍ଧାରସେନ ବଂଶ ଯେ ନାଶିଲା ଅକାରଣେ । ୧୦ ।
ଶଙ୍ଖନିଧି ପଦ୍ମନିଧି ଶୋଭିତ କରସ୍ଥଳେ
ପାଷାଣେ କର ଲାଗନ୍ତେ ପାଣିଦ୍ରବ୍ୟ ସର୍ବକାଳେ । ୧୧ ।

---

୧୫୧।୨ ଅପୂର୍ବ ସଭା ତହିଁ ଗହଳ ସଇନୀ
କମ୍ପାଇ ଅସନ୍ତ ଏ ଥାଠସନ୍ୟ ଜେନ ।
କେଶିନୀ ବୋଇଲା ସ୍ୱୟମ୍ବର କଲେ ତୋହୋର ହିତେ ।
ଲକ୍ଷେକ ରାଜା ବସି ଅଛନ୍ତି ତୋହୋର ନିମନ୍ତେ ।

୧୧ ପଦ ସ୍ଥାନରେ ଗୁମ୍ଫାପୋଥିର ଅଧିକା ପାଠ—
ଶଙ୍ଖନିଧି ପଦ୍ମନିଧି ଯାର କରପଦେ ଥାଇ
ତାର ତୁଲେ ରାଜାଯେ ପୃଥ୍ୱୀରେ କେହି ନାହିଁ ।
ପଟାନ୍ତର ଦେବାକୁ ଯେ ନାହିଁ ଭୂମଣ୍ଡଳେ
ମାନେ ମାନଗୋବିନ୍ଦ ଯେ ଅଟେ ରବିତଳେ ।

ଅଛ ମାନେ ମାନଗୋବିନ୍ଦ ରାଜା ଅଛଇ
ଚାଲନ୍ତେ ଭୂମିରେ ଅବେଣ୍ଟ ସୁବର୍ଣ୍ଣ ପଦ୍ମ ଫୁଟଇ । ୧୨ ।
ଭୀଷ୍ମ ବୋଲି କରି ଯେବଣ ସେନାପତି
ଇଚ୍ଛାମୃତ୍ୟୁ ସେ ଗଙ୍ଗାଙ୍କର କୋଳେ ଉତପତ୍ତି । ୧୩ ।
ଶରୀର ନ ଛାଡଇ ସେ କାଳର ଯୁଗତେ
ଦାର ସଂଘରଣ କଲେ ସେ ପିତାର ନିମନ୍ତେ । ୧୪ ।
ଭରଦ୍ୱାଜଙ୍କର ନନ୍ଦନ ସେ ଦେଖ ଗୁରୁ ଦ୍ରୋଣ
ପ୍ରଶୁରାମଙ୍କର ବିଦ୍ୟାସେହୁଣ ସକଳ ଜାଣି ପାରଇ ପୁଣ । ୧୫ ।
ହସ୍ତେ ଶହସ୍ର ସେହୁହାଙ୍କର ଥାଇଛି ଯେତେବେଳେ
ଜିଣନ୍ତା ନାହିଁ ସେହୁହାଙ୍କୁ କେ ତ୍ରଇଲୋକ୍ୟ ମଣ୍ଡଳେ । ୧୬ ।
ସେହୁହାଙ୍କର ନନ୍ଦନ ଯେ ଅଶସ୍ତମା ମହାରଥୀ
ଚିରଞ୍ଜୀବୀ ଯୋଦ୍ଧାସେ ସେହୁହାଙ୍କୁ ଜିଣନ୍ତା ନାହିଁ ପୃଥୀ । ୧୭ ।

---

୧୧ ପଦ ସ୍ଥାନରେ ପାଠ—
ନିରନ୍ତର କମଳା ଯେ ବିଜୟ କନ୍ଦର
ଅଇଶ୍ୱର୍ଯ୍ୟ ଅଚଳ ଯେ ହୋଇଛୁ ତାହାର ।
ଚାଲନ୍ତେ କନକ ପଦ୍ମ ପାଦରେ ଫୁଟଇ
ମହୀରେ ପନ୍ନଗାନାରାୟଣ ସେ ବୋଲାଇ ।

୧୨ ପଦ ସ୍ଥାନରେ ଅଧିକା ପାଠ—
ଏହାର ଭାରଯା ନାମ ଅଟେ ଭାନୁବତୀ
ଆଠଦିନେ ପ୍ରଦାନ ହୋଅଇ ନିତ ପ୍ରତି ।
ଅହର୍ନିଶି ବରବେଶ ହୋଇଥାଇ ଯାର
ପିତାମାତା ଆଦି କରି କାହାକୁ ନ କରେ ନମସ୍କାର ।

୧୪ ପଦ ସ୍ଥାନରେ ଛପା ପୋଥିର ପାଠ—
ଧାର୍ମିକ ବିବେକ ଜଣେ ନାହିଁ ଏହା ପରି
ପ୍ରଶୁରାମ ସେହିହାକୁ ଯୁଦ୍ଧେ ଗଲା ହାରି ।
ପ୍ରତିଜ୍ଞା ସାର୍ଥକ କରେ ଏହି ମହାବୀର
କୁରୁକୁଳ ପିତାମହ ଶାନ୍ତନୁ କୁମର ।

୧୬ ପଦ ପରେ ଅଧିକା ପାଠ—
ସେହିହାଙ୍କର ହସ୍ତେ ଧନୁ ଯେ ଧଇଲେ
ନାଶକର ସଚ୍ଚିଦାନନ୍ଦେ ଛାଡଇଛି ଭଲେ ।

ଅଶ୍ୱତ୍ଥାମାଙ୍କର ମାତୁଳ ଦ୍ରୋଣଙ୍କର ଶାଳକ ଉତ୍ତମ
କୃପ ଆଚାର୍ଯ୍ୟ ଗୋ ଅଟଇ ଯେହାଙ୍କର ନାମ । ୧୮ ।
ଦେଖ ସଖୀ ଶାକଲ୍ୟ ଦେଶର ରାଜା ଶଲ୍ୟ ମହାରଥୀ
ପାଣ୍ଡବଙ୍କର ମାତୁଳ ଯେ ଦୁର୍ଯୋଧନ ସେନାପତି । ୧୯ ।
ସଞ୍ଜୟେ କର ଯେବେ କରିବ ସାଂଗ୍ରାମ
ଯେହାଙ୍କର ଧନୁ ଧଇଲେ ହାସନ୍ତି ଶ୍ରୀ ପୁରୁଷୋତ୍ତମ । ୨୦ ।
ଶକୁନ ମହାମନ୍ତ୍ରୀ ଦେଖ ଗୋ ଗାନ୍ଧାର ଦେଶର
ଯେହାର ବଂଶ ନାଶ କଲା ଭରଣ ପଥରଘର । ୨୧ ।
ଦେଖ ଦେଖ ସଖୀ ଯେ ଭୂରିଶ୍ରବା ମହାରଥୀ
ପ୍ରତକ୍ଷେ ସୋମବଂଶୀ ଯେ ଅଟଇ ଚନ୍ଦ୍ରଗୁପ୍ତି । ୨୨ ।
ଦୁଃଶିଳାର ବଲ୍ଲଭ ଗୋ ଦେଖ ଜୟଦ୍ରଥ
ସିନ୍ଧୁଦେଶ ଠାକୁର ଯେ ସୁରଥର ସୁତ । ୨୩ ।
ଯେହାଙ୍କର ଚରିତ ଗୋ ଶୁଣ ମହାସତୀ
ତୋତେ ହରି ନେଇବାକୁ କରିଥିଲା ମତି । ୨୪ ।

୧୭ ପଦପରେ ଅଧିକା ପାଠ--
ତାହାଙ୍କର ମାତୁଳ ଯେ ଦ୍ରୋଣଙ୍କ ଶାଳକ
ଅମତ ଯୋଦ୍ଧା ଯେ ଅଟନ୍ତି ଆଚାର୍ଯ୍ୟ କୃପ ।
ଯେ ଯେବେ ହସ୍ତେ ନାରାଜ ଧଇଲେ
ଇନ୍ଦ୍ର ଶଙ୍କା କରଇ ଯେ ବାରମ୍ବାର ପୁରେ ।
୨୧।୧ ଶକୁନ ମହାରାଜ ଗୋ ଗାନ୍ଧାର ଦେଶର ।
୨୨।୨ ବିଶେଷେ ପରମ କ୍ଷତ୍ରୀ ଯେ ସୋମବଂଶ ଆଧିପତି ।
୨୨ ପଦ ସ୍ଥାନରେ ଅଧିକା ପାଠ—
ସଂଗ୍ରାମ କାଳେ ଭୂରିଶ୍ରବା ଯେ ନାରାଜ ଧଇଲେ
ବସୁଧା ଶିର ଟେକି ନ ପାରେଟି ଭଲେ ।
୨୪ ପଦ ପରେ ଅଧିକା ପାଠ—
ଯେହାର ଅଭ୍ୟନ୍ତରେ ଦେଖ ଗୋ ରାଜପୁତ୍ରୀ
ଯେ ସେ କର୍ଣ୍ଣ ମହାଦାନୀ କ୍ଷତ୍ରିୟ ମହାରଥୀ ।
ଅମୃତ କୁଣ୍ଡଳ ବଜ୍ର ଛଉଣି ଅଭେଦ କପଟ
ଗୋପ୍ୟେଣ ଶରୀରେ ଖଞ୍ଜିଲେ ଆଦିତ୍ୟ ।
ଯେହାର ପାଦଭାର ନ ସହେ ବସୁମତୀ
ଶତେଭାର ସୁବର୍ଣ୍ଣ ଲକ୍ଷ ଦଅଇ ନିତି ।

ଯେହ୍ନାର ଅନ୍ବେଷଣ ଗୋ ଦେଖ ଦ୍ରୌପଦୀ
ଯେ ସେ ଜାରାସନ୍ଧ ମଗଧ ଦେଶର ନୃପତି । ୨୫ ।
ଛୟାଣୋଇ ସହସ୍ର ରାଜା ଖଟନ୍ତି ଯେହ୍ନାକୁ
ତେଇଶି କ୍ଷଉଣୀ ବଳ ଘେନ ଯେ ଅଇଲା ଯେଥକୁ । ୨୬ ।
ଶତେ ନଳ ଆଯେତନ ନାମଗିର ଠାଣି
ରାଜାଙ୍କର ଉରଶଲ ଯେ ଅଟେ ନୃପମଣି । ୨୭ ।
ଚେଦ୍ଦ ଦେଶର ରାଜା ଗୋ ଅଟଇ ଦମଘୋଷ
ସାତ କ୍ଷଉଣୀ ବଳ ଘେନ ହେଲା ପରବେଶ । ୨୮ ।
ଶିଶୁପାଳ କୁମର ଯେ ଅତିଅନ୍ତ ସୁନ୍ଦର
ଯେ ସେ ରୁକୁଣୀ ଙ୍କ ଗୋ ହୋଇଥିଲା ବର । ୨୯ ।
ବଳାତ୍କାରେ ତାହା ଜଗନ୍ନାଥେ ନଲେ ହରି
ନାରାୟଣର ଭୁଲେ ସେ ଅହର୍ନିଶି ଦ୍ୱନ୍ଦ କରି । ୩୦ ।
ଦ୍ରୋପଦୀ ବୋଇଲେ ଯେଣେ ତହିଂ ନାହିଂ ପିରୋଜନ
ଦଣ୍ଡେ କ୍ଷଣେ ସିନା ଗୋ ଯେହ୍ନାଙ୍କର ଜୀବନ । ୩୧ ।
ଦେଖ ଦେଖ ସଖୀ ଗୋ କୁଣ୍ଡୀ ନଗ୍ର ରାଯେ
ରୁକ୍ମ ରୁକ୍ମଣ ରୁକବାହୁ ରୁକମାଳ ଯେ ଗୃହ ତନୟେ । ୩୨ ।
ଦୁହିତାର ନାମ ଯେ ଯେହ୍ନାର ଅଟଇ ରୁକୁଣୀ
ନାରାୟଣଙ୍କ ବଲ୍ଲଭୀ ସେ ପ୍ରତ୍ୟକ୍ଷେ କମଳଣୀ । ୩୩ ।

---

୨୪ ପଦପରେ ଅଧିକା ପାଠ—
ଯେହ୍ନାର ଭୁଜଦର୍ପ ଶୁଣସି ଗୋ ଦ୍ରୋପଦୀ
ଯେହ୍ନାରେ ଦୁର୍ଯୋଧନକୁ ପ୍ରାପତ ହୋଇଲା ଭାନୁବତୀ ।
ଅଙ୍ଗ କରି ଦୁର୍ଯୋଧନ ଯାହାକୁ ରାଜ୍ୟେକ ଦେଲା
ଅଙ୍ଗ ଦେଶ ରାଜା ବୋଲି ନାମ ବୋଲାଇଲା ।
ସମରେ ଧନୁ ଯେ ଯେବେ ଧରିବାକ ଛଲେ
ସପତ ବ୍ରହ୍ମାଣ୍ଡ ଜିଣି ଯେ ଯେ ପାରଇ ଅବହେଳେ ।
ଦେଖ ଦେଖ ସଖୀ ଗୋ ଯେହ୍ନ ରାଜାର ଶତେଭ୍ରାଥ
ସମର କଲେ ଜିଣି ପାରନ୍ତି ଇନ୍ଦ୍ର ଚନ୍ଦ୍ର ଆଦିତ୍ୟ
ଦ୍ରୋପଦୀ ବୋଇଲେ ଗୋ ଯେ ଅଟଇ ମନ୍ଦ
ବାଳକାଳୁଂ ହତ୍ୟାବାଦୀ କରାଇଲା ଦ୍ୱନ୍ଦ ।
୨୭।୧ ଶତେ·ନଳ ଆସ୍ଥେତନ ରାଜଗିର ଠାଣି ।

ମା ଗୋ ବଜ୍ରଗିର ଦେଶର ରାଜା ବନମାଳୀ
ବେନ ମର୍ଭୁତ ରଥ ଘେନ ଅନୁବ୍ରତେ ଚଳି । ୩୪ ।
ଅତି ସୁକୁମାର ଗୋ ଅଟଇ ସ୍ୟେହାର କାୟେ
ଆକାଶ ଚଳଇ ସେ ଅଙ୍ଗାରପର୍ଣ୍ଣଙ୍କର ପ୍ରାୟେ । ୩୫ ।
ମାଳବ ଦେଶ ରାଜା ସ୍ୟେ ଅଟଇ କୃତବର୍ମା
ସ୍ୟେହାର ହସ୍ତୀର ନାମ ଅଟଇ ଅଶସ୍ତମା । ୩୬ ।
ନବ କ୍ଷେଉଣୀ ବଳ ଗୋ ଅଟଇ ଅନୁବ୍ରତେ
କୋବେର ସାଶକ୍ଷେ ରାଜା ଅଟନ୍ତି ଧନବନ୍ତେ । ୩୭ ।
କାଶୀ ଦେଶର ରାଜା ଗୋ ଅଟଇ କାଶୀଶ୍ୱର
ସ୍ୟେଦ୍ୱାଦଶ କ୍ଷଉଣୀ ବଳ ଅଟଇ ସ୍ୟେହାର । ୩୮ ।
କର୍ଣ୍ଣର ଦେଶର ରାଜା ଅଟଇ ଗଣପତି
ବଡାଇ ପ୍ରତାପୀ ରାଜା ସ୍ୟେ ଜଗତେ ବିଖ୍ୟାତି । ୩୯ ।
ପାଞ୍ଚଲକ୍ଷ ରଥ ଆଠଲକ୍ଷ ହାଥୀ
ପଞ୍ଚାଶ ଲକ୍ଷ ହୟେ ତେର କ୍ଷଉଣୀ ପାଦାନ୍ତି । ୪୦ ।
କଳିଙ୍ଗ ଦେଶର ରାଜା ସ୍ୟେ ଅଟେ କଳିଙ୍ଗସେନ
ନବଲକ୍ଷ ଗୁଞ୍ଜର ତୁଳେ ସାତକ୍ଷଉଣୀ ସନ୍ୟ । ୪୧ ।
ସଖୀ ଉତଙ୍ଗ ଦେଶର ରାଜା ସେ ମଧ୍ୱକେଶର
ଶ୍ରୀଖଣ୍ଡୀର ଶଗୁର ଗୋ ଅଟଇ ମହାବୀର । ୪୨ ।
ବଶ୍ୟାନର ଦେଶର ଗୋ ଧୃତସେନ ରାୟେ
ଦଶଲକ୍ଷ ଯୋଦ୍ଧା ଘେନ ଗୋ ତୋହୋର ଆଶେ ଆୟେ । ୪୩ ।
କନାଉଜ ଦେଶର ଗୋ ରାଜା ଜମ୍ବୁମାଳୀ
ଆଠ କ୍ଷଉଣୀ ବଳ ଘେନ ସ୍ୟେ ପଞ୍ଚାଳ ଦେଶେ ମିଳି । ୪୪ ।
ଡାହାଳ ଦେଶର ରାଜା ଗୋ ଅଟେ ଜନାର୍ଦ୍ଦନ
ଶ୍ୱେତ ଅଶ୍ୱ ପଦ୍ମେକ ତୁଳେ କଳିକ ଗବନ । ୪୫ ।
ବଙ୍ଗବଂଶିକ ରାଜା ଗୋ ନୃପତି ବୀରବାହୁ
ସାତଲକ୍ଷ ରଥୀ ଘେନ ବିଜୟେ କଲ୍ ସେହୁ । ୪୬ ।

---

୪୪ { କାନ୍ୟକୁବ୍ଜ ଦେଶର ରାଜା ବନମାଳୀ
ଆଠସୈନ୍ୟ ବଳ ଘେନ ଆସିଅଛୁ ଚଳି ।

୩୭।୨ ସାଶକ୍ଷେ—ସାଶ୍ୱକ୍ଷେ—ସାଦୃଶ୍ୟେ ।

ତେଲଙ୍ଗ ଦେଶର ଗୋ ଶ୍ୱେତାଙ୍ଗ ଚକ୍ରବର୍ତ୍ତୀ
ସୂର୍ଯ୍ୟବଂଶୀ ରାଜା ଗୋ ପ୍ରତାପୀ ମହାଛନ୍ଦୀ । ୪୭ ।
ଖାଞ୍ଜଣ ଦେଶର ରାଜା ଗୋ ଅନୁପାମ ଚକ୍ରବର୍ତ୍ତୀ
ଗଜ ଅଶ୍ୱ ନାହିଁ ତୁଲେ ତିନ କୋଟି ରଥୀ । ୪୮ ।
ଶତେ ନଳ ଆୟତନ ଯେହ୍ନାର ମଲ୍ଲାର ନାମେ ଗିର
ପଶ୍ଚିମ କୋଶଳେ ଯେହ୍ନାକୁ ନୃପତି ନାହିଁ ସମସର । ୪୯
ନିହୁତି ଦେଶର ରାଜା ଅଟଇ ଖାରବାହୁ
ମହା ଖ୍ରିଷ୍ଟରୂପୀ ସାଂଗ୍ରାମରେ ନଶଙ୍କ ରାହୁ । ୫୦ ।
ଗୁଞ୍ଜର ଦେଶର ଦାମୋଦର ସେନ ନୃପତି
ରଥ ଗଜ ଅଶ୍ୱ ତୁଲେ ଯେହ୍ନାର କ୍ଷଉଣୀ ପାଦାନ୍ତ । ୫୧ ।
ମଦ୍ଧ ଦେଶର ରାଜା ଗୋ ଅଟଇ ନିଗର୍ତ୍ତି
ପାଞ୍ଚ କ୍ଷଉଣୀ ବଳ ତାହାର ତିନକୋଟି ରଥ । ୫୨ ।
କାଞ୍ଚେକ ଯେହ୍ନାର ରାଜ୍ୟ ଘେନିଲେକ ବେଳେ
ହତରାଜ୍ୟ ହୋଇ ବୁଲଇ ବନସ୍ତ ମଣ୍ଡଳେ । ୫୩ ।
ମତ୍ସ୍ୟଦେଶର ରାଜା ଅଟଇ ବିରାଟେଶ୍ୱର
ସାତ କ୍ଷଉଣୀ ବଳ ଗୋ ତୁଲେଣ ଯେହ୍ନାର । ୫୪ ।
ଦୁହାଂଳ ଦୁଇ ପଦ୍ମ ବରଡ ବାରଲକ୍ଷ ଗାଈ
ଅଣ୍ଡିର ବାର ଲକ୍ଷ ବତ୍ସା ତରୁଣ ଲକ୍ଷ ମାଈ । ୫୫ ।
ସଖୀ, ଦୁହାଂଳ ଦୁଇପଦ୍ମ ଗୋପାଳ ଦୁହନ୍ତ
ପ୍ରଥମ ଟରେକ ଯେ ପୃଥୀକ ଦୁହିଁ ପକାବନ୍ତ । ୫୬ ।
କଟକ ବେଢି ସାତଖଣ୍ଡ ପରଯନ୍ତେ ବହଇ କ୍ଷୀର ନଦୀ
ତାଲେକ ଉଚ୍ଛର୍ଗେ କ୍ଷୀର ବହଇ ଧବଳମୁଖୀ ଭେଦି । ୫୭ ।
ଯେହ୍ନାର ବନସ୍ତେ ସଖୀ ଗୋ ଅଛନ୍ତି ଯେତେକ ଜୀବଜନ୍ତୁମାନେ
ସମସ୍ତ ଜୀବ ମାନେ ଯେ ବ୍ରତନ୍ତି କ୍ଷୀର ପାନେ । ୫୮ ।
ପୂର୍ବ ଜନ୍ମେ ଯେବେ ପ୍ରୟାଗେ ଥାଇ ଝାସି
ତେବେ ସେ ଯେହ୍ନାର ଗୋ ରାଜ୍ୟଣ ବଳସି । ୫୯ ।

---

୫୦ { ଉହୁତି ଦେଶର ରାଜା ଅଟଇ ସୁବାହୁ
ମହା ଖ୍ରିଷ୍ଟମୂର୍ତ୍ତି ସାଂଗ୍ରାମେ ରଙ୍କ ରାହୁ ।

ଦେଖ ଦେଖ ସଖୀ ଗୋ ଶରଦେଶ୍ୱର ଚକ୍ରବର୍ତ୍ତୀ
କାଞ୍ଚନ ନାମେଣ ରାଜା ଯେ ଉତ୍ତର ଦିଗେ ବିଖ୍ୟାତ । ୬୦ ।
କାଞ୍ଚନ ମୂଳେ ଗୋ ଶତେପୁତ୍ର ଘେନି
ପୁଣ୍ୟେଣ ତୋଷିଲା ଯେ ଦୁର୍ବାସା ମହାମୁନି । ୬୧ ।
ଶତେ ସିଂହର ବଳ ସଖୀ ଗୋ କାଞ୍ଚନ ସେନାପତି
କଣସ୍ଥ ଗିରି ଉପାଡିଲା ନବଯୋଜନ ଦୀର୍ଘପ୍ରସ୍ଥି । ୬୨ ।
ଚିର ଦେଶର ରାଜା ଗୋ ବାମଦେବ ବୀର
ରଥ ଗଜ ଅଶ୍ୱ ଯେହ୍ନାର ସତର ସାଗର । ୬୩ ।
ବୀର ଦେଶର ରାଜା ଗୋ ଅଛଇ ସୁବାହୁ
ସୁମନ୍ତେକ ମଣି ପାଇ ଧନେଣ ବଡ ସାହୁ । ୬୪ ।
ମହାରାଷ୍ଟ୍ରର ରାଜା ଗୋ ନୃପତି ଦୁର୍ଜୟେ
ଦେବ ଦାନବ ମାନବେ ଗୋ ନ କରଇ ଭୟେ । ୬୫ ।
ଭୋଟ ଦେଶର ରାଜା ଗୋ କର୍ଣ୍ଣକେଶର ବୀର
ସୈନ୍ୟ ନ ଆଣିଲା ରଥ ତିନକୋଟି ସାଗର । ୬୬ ।
ସବୁ ରଥ ଯେହ୍ନାର ଦିଶଇ ରତ୍ନମୟେ
ଇଚ୍ଛା ହୋଇଲେ ତାହାକଇ ବରସି ଗୋ ମାୟେ । ୬୭ ।
ମନ୍ଦାର ଦେଶର ରାଜା ଅଛଇ ଋଷିକେଶୀ
ବାସ୍ତୋର ପଦ୍ମ ସୈନ୍ୟ ଘେନଣ ଯେହୁ ଆସି । ୬୮ ।
କାଉଂରୀ ଦେଶର ରାଜା ଗୋ ସଖୀ କାମପାଳ
ମନସିଜ ଜାଣି ଗୋ କ୍ଷତ୍ରିୟ ମହାମଲ୍ଲ । ୬୯ ।
ଦଶଲକ୍ଷ ରଥ ତାର ଦଶଲକ୍ଷ ହାଥୀ
ଦଶଲକ୍ଷ ତୁରଙ୍ଗମ ଦଶଲକ୍ଷ ପାଦାନ୍ତି । ୭୦ ।
ବଙ୍ଗାଳ ଦେଶର ଗୋ ରାଜା ସଦାଶିବ
ପାଞ୍ଚ କ୍ଷଉଣୀ ସୈନ୍ୟ ଘେନି ଅଇଲା ରାଜଦେବ । ୭୧ ।
ଖେଚର ଦେଶର ରାଜା ସଖୀ ମନୋହର
ସୈନ୍ୟବଳ ତୁଲେ ଯେହ୍ନାର ପାଞ୍ଚ ଯେ ସାଗର । ୭୨ ।

---

୭୧।୧ ଗୋରେଖ ଦେଶର ରାଜା ସଦାଶିବ ।

୭୨।୧ { କ୍ଷୀର ଦେଶର ଗୋ ରାଜା ଅନୁହର
{ ଖଡ଼୍ଗ ଦେଶର ଗୋ ରାଜା ମନୋହର ।

ଗୁର୍ଜର ଦେଶର ରାଜା ମଦନ ମହାଦେବ
ଲକ୍ଷେ ଯୁବତୀ ବିଳସଇ ପ୍ରିୟଭାବ । ୭୩ ।
କାମ୍ବୋଜ ନୃପତି ସେହୁ କାମାକ୍ଷୀ ପ୍ରସନ୍ନେ
ଜାଣଇ ସାଧନ ବିଦ୍ୟା ସେହୁ ସମସ୍ତ ବିଦ୍ୟମାନେ । ୭୪ ।
କୌଶିକ ଦେଶର ରାଜା କର୍ଣ୍ଣ ମାଧବସେନ
ଦଶ ମର୍ଦ୍ଦିତ ଯୋଦ୍ଧା ଘେନ ଅଇଲା ତୋହୋର ଭୁବନ । ୭୫ ।
ଛଡ଼ଦେଶର ନୃପତି ଗୋ ଅଟଇ ଚଣ୍ଡବଳୀ
ଅସଂଖ୍ୟ ସୈନ୍ୟ ଘେନ ସେହୁ ଭ୍ରମଇ ମହୀଆଳୀ । ୭୬ ।
ବିଚିତ୍ର ଦେଶର ଗୋ ନୃପତି ବିକର୍ଣ୍ଣ
ଗୃଧ୍ର କ୍ଷଉଣୀ ବଳ ଘେନ ବିଜୟେ ରାଜନ । ୭୭ ।
ନେପାଳ ଦେଶର ଗୋ ରାଜା ନରେନ୍ଦ୍ରେକ
ରଥ ଗଜ ଅଶ୍ୱ ପାଦାନ୍ତ ତାହାର ଅନେକ । ୭୮ ।
ବାରଷ୍ଠି ପୁରର ଗୋ ବାମଦେବ ନୃପତି
ଶ୍ୱେତ ବର୍ଣ୍ଣ ସେହୁହାର ତିନସାଗର ହାଥୀ । ୭୯ ।
ରଥ ଗଜ ପାଦାନ୍ତ ଗୋ ତୁଲେ ନାହିଂ କଛି
ଅନୁବ୍ରତେ ସେହୁହାର କନ୍ଦୁନ ଗୁଡମ୍ଭ ଲଛି । ୮୦ ।
ଅତି ପୁଣ୍ୟ ସଖୀ ଗୋ କରିଥାଇ ଯେବେ
ସେହୁ ରାଜାର ଭାରିଯା ହୁଅ ସଖୀ ତେବେ । ୮୧ ।
ପାରିଜାତ ଦେଶର ରାଜା ମାଳିଅଞ୍ଜ
ପ୍ରଶୁରାମ ବିଦ୍ୟା ସେହୁ ଜିଣିପାରଇ ମଞ୍ଜ । ୮୨ ।
ସେହୁହା ପିତା ସଖୀ ଗୋ ଜଳତରଙ୍ଗ ନୃପତି
ତ୍ରେତାଯୁଗେ ବରୁଣକୁ ଦଣ୍ଡିଲାକ ତିନ ଘାନ୍ତି । ୮୩ ।
ଭୋଜ ଦେଶର ରାଜା କୋନ୍ତଭୋଜ
ପୃଥିବୀର ମଧ୍ୟେ ଗୋ ଅଟନ୍ତି ମହାରାଜ । ୮୪ ।
ସେହୁହାଙ୍କର ଦୁହିତା ଅଟଇ ଦେବୀ କୋନ୍ତୀ
ତାହାକୁ ପ୍ରଦାନ ହୋଇଲେ ପଣ୍ଡୁ ଯେ ନୃପତି । ୮୫ ।

---

୭୫।୧ କୃଷ୍ଣରାଷ୍ଟ୍ର ରାଜା ମଦନ ମୋହନ ।

କୋଇନ୍ତାଙ୍କର ତହୁଂ ସେ ଉପୁଜିଲେ ତିନି ପୁତ୍ର
ଯୁଧିଷ୍ଠିର ଭୀମ ଅରଜୁନ ତିନିହେଂ ବଳବନ୍ତ । ୮୬ ।
ମାଦ୍ରୀ ବୋଲି କରି କୋଇନ୍ତାଙ୍କର ସପତଣୀ
ନକୁଳ ସହଦେବ ତାହାଙ୍କର ବେନି କୁମର ଜାଣି । ୮୭ ।
ଏମ୍ଭେ ପଞ୍ଚୁ ପାଣ୍ଡବେ ମହା ମହା ବଳିଷ୍ଠ
ଉପାୟେ ଦୁଯୋଧନ ତାହାଙ୍କୁ କଲା ପ୍ରାଣଭ୍ରଷ୍ଟ । ୮୮ ।
ଭୋଟ ଦେଶର ରାଜା ସୁରଙ୍ଗସେନ ବୀର
ଚନ୍ଦ୍ର କରଣ ଜାଣି ଏମ୍ଭହାର ହ୍ଣଦେ ହାର । ୮୯ ।
ଅଷ୍ଟାଦଶ ମଞ୍ଜୁରି ହାଥୀ ଏମ୍ଭହାର ଭୁଲେ
ସେ ତୋହୋର ସୟମ୍ବର ଦେଖିତେ ଅଇଲେ । ୯୦ ।
ଭୋଟାଙ୍ଗ ଦେଶର ରାଜା ମନ୍ମଥ ବ୍ରହ୍ମା
ଗୃହ ଷଉଣୀ ବଳ ଘେନି ସଭରେ ଆରମ୍ଭା । ୯୧ ।
ଅନୁପାମ ଦେଶର ରାଜା କୃତାନ୍ତେକ
ରଥ ଗଜ ଅଶ୍ୱ ଭୁଲେ ସଇନ ଅନେକ । ୯୨ ।
ଚଣ୍ଡୀହର ଦେଶର ରାଜା ଦମନକ
ସଙ୍ଗେ ଅଛି ଏମ୍ଭହାର ତୁରଙ୍ଗ ନବଲକ୍ଷ । ୯୩ ।
ଗିରିବଜ୍ର ଦେଶର ଗୋ ପୁଣ୍ଡରିକ ବାସୁଦେବ
କାଠର ଗରୁଡ଼ ଚଢ଼ି ବୁଲଇ ବିଷ୍ଣୁର ସଭାବ । ୯୪ ।
କାଠର ବେନିଭୁଜ କରି ଶଙ୍ଖ ଚକ୍ର ବହଇ
ଜଗନ୍ନାଥଙ୍କୁ ନିନ୍ଦଇ ଦୁର୍ବାର କଥା କହି । ୯୫ ।
ବୋଲଇ ଜନ୍ମସେମି ଗୋ ନ ପାଡ ଏମ୍ଭହାର କଥା
ଜୀବନଯାକ ଏମ୍ଭହାର ଲୋ ଧନ ଗଣିତା । ୯୬ ।
ଏମ୍ଭ ସଂସାର ଯାକ ଲୋ ଅଟଇ ବିଷ୍ଣୁମୟେ
ଅସୁର ଅଂଶ ଲୋକ ଜଗନ୍ନାଥଙ୍କୁ ନିନ୍ଦା କଏ । ୯୭ ।

---

୯୬।୨ ଜୀବନ ଏମ୍ଭହାର ଗୋ ଘଡ଼ଏ ନୁହଇ ଗଣିତା

୯୭।୨ { ଅସୁର ଅଂଶ ଲୋକେ ବିଷ୍ଣୁ ନିନ୍ଦନ୍ତି ନିର୍ଭୟେ
{ ଅସୁର ଅଂଶ ଲୋକେ ବିଷ୍ଣୁଙ୍କୁ ନ କରନ୍ତି ଭୟେ ।

୯୬ ପଦର ଭାବ—ତାହାର ଜୀବନ ବୃଥା ଅଟେ । ତାହାର ସମସ୍ତ ଜୀବନ ଗୋଟିଏ ଧନ ମଧ୍ୟ ନୁହେ ।

ଅରବନ୍ଦ ଦେଶ ରାଜା ଅନଙ୍ଗ ବାସୁଦେବ
ବଡ ବଦ୍ୟାବନ୍ତ ଗୁଣବନ୍ତ ଶାନ୍ତଶୀଳ ରାଜା ସୁସ୍ୱଭାବ । ୯୮ ।
ଶାକଲ୍ୟ ଦେଶର ରାଜା ଶାଲୁ ଯେ ନୃପତ
ଦଶ ସହସ୍ର ରଥ ଘେନ ସେ ଚଳଇ ଶୂନ୍ୟଗତ । ୯୯ ।
ପ୍ରାଗଜ୍ୟୋତଷପୁର ରାଜା ମନସିଜ
ସାତ କ୍ଷଉଣୀ ବଳ ଘେନ ଚଳଇ ମହାରାଜ । ୧୦୦ ।
ସଖୀ କାମପୁରନଗ୍ର ରାଜା ବରୂପାକ୍ଷ
ଶାର୍ଦ୍ଦୋଳ ବାହାନେ ରାଜା ମୁକୁଟ ବନ୍ଧା ଯୋଦ୍ଧା ଦଶଲକ୍ଷ । ୧୦୧ ।
ସଖୀ ନଖିଳ ଦେଶର ରାଜା ଦରଦ ସେନ
ଅଶୀ ପରାର୍ଦ୍ଧ ଯେହ୍ନାର ଭୁଲେଣ ସଇନ । ୧୦୨ ।
ଯମୁନା ପୁର ରାଜା ଗୋ ଅଟଇ ଜମାଗୋଷ୍ଟ
ଊଣେଇଶ ପଦ୍ମ ସନ୍ୟ ଭୁଲେ ଚଳଇ ନୃପଶ୍ରେଷ୍ଠ । ୧୦୩ ।
ଯେହ୍ନାର ମହମା ସଖୀ ଗୋ ଦେବଙ୍କୁ ଦୁର୍ଲ୍ଲଭ
ଦକ୍ଷିଣ କାଣି ଅଙ୍ଗୁଷ୍ଟିରେ ଅଛୁ ଯେହ୍ନାର ଜୀବ । ୧୦୪ ।
ନାମ ଧର ଜହ୍ୱ ପୋଡୁଲେ ହୁଅଇ ବେନ ଖଣ୍ଡ
ଯେହ୍ନାର ଭୁଲକୁ ସର ନୋହେ ଯମଦଣ୍ଡ । ୧୦୫ ।
ହରଣ୍ୟପୁର ରାଜା ଯେ ଅଟେ ପଦ୍ମନାଭ
ମହାବଇଷ୍ଣବ ସେ ସେବଇ ବାସୁଦେବ । ୧୦୬ ।
ତେଲଙ୍ଗ ପୁରର ରାଜା ଅଟଇ ବଶ୍ୱନାଥ
ଭସ୍ମ ଲେପନ ଶରୀରେ ଜଟାଭାର ମାଥ । ୧୦୭ ।
ଧର୍ମ କଥାଉଂ ଯେହ୍ନାର ଆନେ ନାହିଁ ବାଞ୍ଛା
ଯୋଗ ଲଯ୍ୟେ କରଣ ଭାବଇ ବଶ୍ୱନାଥା । ୧୦୮ ।
ଛନଶତ ଯୋଜନର ଯେ ଅଟଇ ଚନ୍ଦ୍ରବୃକ୍ଷ
ସତ୍ୟ ଅଗ୍ୟୁରବନ୍ତ ଯେ ସ୍ୱଦାରାଯ୍ୟେଣ ବୃକ୍ଷ । ୧୦୯ ।
ଭଇରୋବ ଦେଶର ସଖୀ ଭଇରୋବ ରାଜ
ଯେକଇ ଚରଣ ସବୁର ଗୃର ଗୃର ଭୁଜ । ୧୧୦ ।

---

୧୦୨।୧ { ଖିନ ଖିନା ଦେଶ, ନୀଳଦେଶ
{ ଲେଖନ ଦେଶର ରାଜା ଦରଦ ସେନ

୧୦୩।୧ ଜମାପୃଷ୍ଠ

ଡମ୍ବରୁ ତ୍ରିଶୂଳ ଖଟ୍ୱାଙ୍ଗ ପାଶ ହସ୍ତେ
ମଉଳେକ ଜଟା ଧବଳବର୍ଣ୍ଣ ଗାତ୍ରେ । ୧୧୧ ।
ସମସ୍ତେ ଚଳନ୍ତି ଯେ ବଇଲ ବାହାନେ
ନିମିଷକେ ଚାଣି ପାରନ୍ତି ସ୍ୱେ ମଧ୍ୟ ଭୁବନେ । ୧୧୨ ।
ଜେନାବଳୀ ନଗ୍ରେ ରାଜା ଗୋସିଂହ ନୃପତି
ଅଶୀ କୋଟି ସୈନ୍ୟ ଭୁଲେ ସ୍ୱେହ୍ମ ମହାରଥୀ । ୧୧୩ ।
ବିଜୟ ନଗ୍ର ରାଜା ଅଟଇ ଋତୁପର୍ଣ୍ଣ
ଅମଳାନ ସୂର୍ଯ୍ୟବଂଶୀ ସ୍ୱେ ଶ୍ରୀରାମ ନନ୍ଦନ । ୧୧୪ ।
ପଞ୍ଚାଶ ସାଗର ଗୋ ଖଟଇ ସ୍ୱେହାକୁ ସଇନ
ତୋହୋର ପ୍ରତି ଆଶେ ସେ କଲେ ଗବନ । ୧୧୫ ।
ବଙ୍ଗଳ ଦେଶର ଗୋ ରାଜା ନରସିଂହ
ଶଙ୍ଖଚକ୍ର ଧରନ୍ତା ସ୍ୱେ ସେବଇ ଶ୍ରୀରଙ୍ଗ । ୧୧୬ ।
କର୍ଣ୍ଣାଟ ଦେଶର ଗୋ ରାଜା ଯଦୁଶ୍ରେଷ୍ଠ
ଅଶିଲକ୍ଷ ଯୋଦ୍ଧା ଘେନ ଅଇଲା ରାଜଶ୍ରେଷ୍ଠ । ୧୧୭ ।
ଯାଜନଗ୍ର ରାଜା ଗୋ ଅଟଇ ଧରଣୀଧର
ସମଦଣ୍ଡ ଘେନିଣ ବିଜୟେ ନୃପବର । ୧୧୮ ।
ଯମନକ ଦେଶର ଗୋ ରାଜା ଯମନକ
ତବ ଆଶେ ଅଇଲା ଗୋ ଦ୍ରୋପଦ ଦୁହିତ । ୧୧୯ ।
ଦ୍ୱିଜ ନଗ୍ରର ଗୋ ଚନ୍ଦ୍ରକେତୁ ନୃପତି
ସମଦଣ୍ଡ ଘେନି ଅଇଲା ସୟମ୍ବର ପ୍ରତି । ୧୨୦ ।
ଅନଳ ଦେଶର ଗୋ ରାଜା ସୁରପତି
ନବ ସାଗର ରଥୀ ଘେନି ଗୋ ବିଜୟେ ଦ୍ରୋପତୀ । ୧୨୧ ।

---

୧୧୩।୨ ଅଶୀକୋଟି ସୈନ୍ୟ ପାଞ୍ଚ କୋଟି ଯେ ରଥୀ ।

୧୧୫ { ଏ କଥା ସଞ୍ଚପି ଶୁଣ ଜନ୍ମସେନୀ
ଯାହା କର୍ମେ ଯଶଥବ ଭୁଞ୍ଜିବ ସେ ପୁଣି ।

୧୧୬।୨ { ଶଙ୍ଖଚକ୍ର ଧାରୀ ସେ ବହଇ ଶ୍ରୀଅଙ୍ଗ
ଶଙ୍ଖଚକ୍ର ଆଭରଣ ବହଇ ଶ୍ରୀଅଙ୍ଗ ।

୧୧୫ ଗବନ—ଗମନ—ଗମନ

ରଣଜସ୍ତେ ନଗ୍ରର ଗୋ ରାଜା ବୀରମଣି
ତୋହୋର ସ୍ୱୟମ୍ବରେ ବଜେ କଲ୍କ ଠାକୁରାଣୀ । ୧୨୨ ।
ପଦ୍ମଦଳ ଦେଶର ଗୋ ରାଜା ସୁରମଣି
ସ୍ୱୟମ୍ବରେ ବଜେ କଲେ ନୃପମଣି । ୧୨୩ ।
ଚଣ୍ଡପୁର ଦେଶର ରାଜା ଚଣ୍ଡେଶ୍ୱର
ଚଉଦ କ୍ଷଉଣୀ ବଳ ଘେନ ଗୋ ବଜସ୍ତେ ସ୍ୱୟମ୍ବର । ୧୨୪ ।
ଖଡ଼ଗ ନଗ୍ର ରାଜା ଯେ କାର୍ତ୍ତିକସେନ
ଅସଂଖ୍ୟ ସନ୍ୟ ଘେନ ଅଇଲା ରାଜନ । ୧୨୫ ।
ଦେବନଗ୍ର ରାଜା ଅଟଇ କୁଶକେତ୍ତ
ପାଞ୍ଚଲକ୍ଷ ସନ୍ୟ ସ୍ୱେହାର ଭୁଲରେ ଚଳନ୍ତ । ୧୨୬ ।
କାଞ୍ଚନଗ୍ରୀ ରାଜା ଅଟଇ ନଳସେନ
ଅଷ୍ଟାଦଶ କ୍ଷଉଣୀ ସନ୍ୟ ଘେନ ଅଇଲା ରାଜନ । ୧୨୭ ।
କେଶରୀ ନଗ୍ରେ ଗୋ ରାଜା ପଦ୍ମକେଶରୀ
ନବ ସାଗର ସନ୍ୟ ଭୁଲେ ବଜେ ଦଣ୍ଡଧାରୀ । ୧୨୮ ।
କୁଶ ମଣ୍ଡଳ ରାଜା ପରମାନନ୍ଦ ମଲ୍ଲ
ପାଞ୍ଚ କ୍ଷଉଣୀ ବଳ ଘେନ ସ୍ୱେହାର ଭୁଲ । ୧୨୯ ।
ଦୁର୍ଗମଣ୍ଡଳ ରାଜା ଅଟଇ ପର୍ଶୁଧ୍ୱଜ
ତୋହୋର ଆଶେ ଗୋସାମଣୀ ଗୁଡଲା ନଜ ରାଜ୍ୟ । ୧୩୦ ।
ଚନ୍ଦ୍ରମଣ୍ଡଳ ଦେଶ ରାଜା ମାରକଣ୍ଡ
ଦ୍ୱାଦଶ କ୍ଷଉର୍ଣୀ ଗୋ ଆଣିଛୁ ସମଦଣ୍ଡ । ୧୩୧ ।
ଶିବ ମଣ୍ଡଳର ରାଜା ଧୂର୍ଜଟି
ରଣେ ଅଜସ୍ତ୍ର ବରଧ୍ୟୂ ସାଂଗ୍ରାମେ ନ ଲେଉଟି । ୧୩୨ ।
ଗଉରୀ ମଣ୍ଡଳର ରାଜା ରୁଦ୍ରଦାସ
ଅନେକ ଦୂରୁଂ ଗୋସାମଣୀ ଅଇଲା ତୋର ପାଶ । ୧୩୩ ।
ବୀର ମଣ୍ଡଳ ରାଜା ଖ୍ୟତ୍ରେକ ଚନ୍ଦ୍ରବ୍ରହ୍ମ
ପଞ୍ଚବଂଶ ବୃନ୍ଦ ଗୋ ସ୍ୱେହାର ପାଦାନ୍ତ । ୧୩୪ ।

---

୧୨୫।୨ ଅକ୍ଷଣେକ ସନ୍ୟ ଘେନ ଅଇଲା ରାଜନ ।
୧୩୩।୧ ଚଉରୀ ମଣ୍ଡଳର ରାଜା ରୁଦ୍ରଦାସ ।

ଭୂମନ୍ଦୁ ମଣ୍ଡଳ ରାଜା ଭୂମନ୍ଦୁ ନୃପତି
ପଦ୍ମେକ ରଥ ଯେହାର ଗୃହ ପଦ୍ମ ହସ୍ତୀ । ୧୩୫ ।
ଦଶ ପଦ୍ମ ତୁରଙ୍ଗମ ପଞ୍ଚାଶ ପଦ୍ମ ସଇନ
ବହୁତ ଦୂରୁ ଅଇଲା ଯେଥିକୁ ସନ୍ୟ ଘେନ । ୧୩୬ ।
ମଧୁବନ ମଣ୍ଡଳେ ଗୋ ରାଜା ଉଗ୍ରସେନ
ତୁଲେ ଆଣିଲା ପାଞ୍ଚ ପରାଯୁଧ ସଇନ । ୧୩୭ ।
ପ୍ରଜାପତି ନାମ ଯେକଇ ମଣ୍ଡଳ
ନଉଶତ ପାରଦଣ୍ଡ ରାଜାକୁ ଖଟନ୍ତି ସର୍ବକାଳ । ୧୩୮ ।
ପାଞ୍ଚ ଅହ୍ନବ୍ରତ ପାରଦଣ୍ଡ ସଇନ
ତୋହୋର ଆଣେ ଠାକୁରାଣୀ ଅଇଲା ବଳ ଘେନ । ୧୩୯ ।
ଧ୍ରୁବ ମଣ୍ଡଳ ବୋଲି ଗୋ ଉତ୍ତର ଦିଗ ଅନ୍ତେ
ତାହାଂର ନୃପତି ଗୋ ଅଟଇ ଧୂମକ୍ଷେତ୍ରେ । ୧୪୦ ।
ନବସାଗର ସନ୍ୟ ସେହୁ ସଙ୍ଗେ ଘେନ
ତୋହୋର ସମ୍ମୁଖରେ ଗୋ ଋଜଯେ ନୃପମଣି । ୧୪୧ ।
ପଶ୍ଚିମ ପ୍ରଦେଶେ ମେରୁ ଯେ ମଣ୍ଡଳ
ତାହାଂର ନୃପତି ଗୋ ଅଟଇ ମେରୁଶୃଳ । ୧୪୨ ।
ପାଞ୍ଚ ସାଗର ଯୋଦ୍ଧା ସର୍ବେ ବ୍ୟାଘ୍ର ବାହାନ
ସମସ୍ତ ସନ୍ୟ ଦିଶନ୍ତି ଲୋହିତ ବରଣ । ୧୪୩ ।
ମନ୍ଦର ମଣ୍ଡଳ ରାଜା ଅଟଇ ବସନ୍ତ
ତୁଲେଣ ଆଣିଲା ସେ ଯେ ପାଞ୍ଚ କୋଟି ରଥ । ୧୪୪ ।
ମରୁତ ଦେଶର ରାଜା ଗୋ ମାନ ଅରଜୁନ
ପାଞ୍ଚଲକ୍ଷ ଯୋଦ୍ଧା ତୁଲେ ବସିଛି ରାଜନ । ୧୪୫ ।
କେଶରୀ ରାଷ୍ଟ୍ରେ ଯେ ରାଜା ଇନ୍ଦୁବର
ତୁଲେଣ ସନ୍ୟ ଆଣିଲା ଛଅ ଯେ ସାଗର । ୧୪୬ ।
ନରକେଶରୀ ରାଜା ଗୋ ଅଟଇ ଉଡରାଷ୍ଟ୍ରେ
ବାଆନ ଲକ୍ଷ ସନ୍ୟ ଅଟଇ ଯେହାର ଥାଟେ । ୧୪୭ ।

---

୧୩୫।୧ ଭାନୁ ମଣ୍ଡଳ ରାଜା ଭୂମନ୍ଦୁ ନୃପତି ।
୧୩୭।୨ ପରାଯୁଧ—ପଦାତି

ବଇରାଷ୍ଟ୍ର ରାଜା ବଇରେ ଧୂମାକ୍ତ
ବୈଡୂର୍ଯ୍ୟମଣି ଗୋ ଯେହାର ରାଜ୍ୟେ ହୋଇଯେ ଜାତ । ୧୪୮ ।
ହରରାଷ୍ଟ୍ର ଦେଶ ରାଜା ଯମନକ ମହାରାୟେ
କରତାର ପ୍ରସନ୍ନେ ସଖୀ ସାଂଗ୍ରାମେ ଅଭୟେ । ୧୪୯ ।
ଉତ୍ତର ଦିଗ ପ୍ରାନ୍ତେ ଦେଶ ସଉରାଷ୍ଟ୍ର
ଉତ୍ତଙ୍ଗସେନ ନୃପତି ଅସଂଖ୍ୟ ସନ୍ୟ ଥାଟ । ୧୫୦ ।
ରତ୍ନରାଷ୍ଟ୍ର ବୋଲି ଗୋ ପଶ୍ଚିମ ଦିଗରାଷ୍ଟ୍ରେ
ବିଷ୍ଣୁବଂଶେ ରାଜା ସେ ଅଟଇ ବଳଶ୍ରେଷ୍ଠେ । ୧୫୧ ।
ତାହାଲ ଦେଶର ଗୋ ନୃପତି ଦାମ୍ବୋଦର
ତୁଲେଣ ଆଣିଅଛି ରଥ ତେର ଟିଯ ସାଗର । ୧୫୨ ।
ବଂଝଗିର ଦେଶର ଗୋ ନୃପତି ବଂଝମାଳୀ
ତେର ସାଗର ସନ୍ୟ ଘେନି ସୟେଂବରେ ଚଳି । ୧୫୩ ।
ମାହିନ୍ଦ୍ର ଦେଶର ଗୋ ରାଜା ମଧୁସେନ
ଷୋଳ ଲକ୍ଷ ରଥ ଘେନ ବିଜୟେ ରାଜନ । ୧୫୪ ।
ବାରରାଷ୍ଟ୍ର ଛତିଶ ମଣ୍ଡଳ ଭୂଆଣ
କେଣିମା ଚହ୍ଲାଇଲେ ସମସ୍ତ ରାଜାଗଣ । ୧୫୫ ।
ବଂଝମାଳ ଦେଶର ଗୋ ରାଜା ଜାରା ଶବର
ଅମନାତ୍ୟ ମନ୍ତ୍ରୀ ତୁଲେ ସନ୍ୟ ତେର ସାଗର । ୧୫୬ ।
ମାହିନ୍ଦ୍ରମାଳେ ରାଜା ମଲ୍ହାର ଚନ୍ଦ୍ରବୃଷ୍ଟି
ତୁଲେଣ ଅଛି ତାର ପାଞ୍ଚଲକ୍ଷ ହାଥୀ । ୧୫୭ ।
ହେମମାଳ ରାଜା ଗୋ କୋଦାଳ ହରହର
ପାଞ୍ଚପଦ୍ମ ଅଶ୍ୱ ଘେନ ବିଜୟେ ସୟଂବର । ୧୫୮ ।
ଗିରମାଳ ଦେଶର ରାଜା କରାତ ଧ୍ୱଜମାଳୀ
ଗୃହଲକ୍ଷ ଓଟ ସୟଂବରେ ମିଳି । ୧୫୯ ।
ଦରଦ ଦେଶର ରାଜା ଗୋ ଚନ୍ଦ୍ରବଳୀସେନ
ତୁଲେଣ ଅଛି ତାର ତିନି ପଦ୍ମ ସନ୍ୟ । ୧୬୦ ।

---

୧୪୯।୨ ରାଜା—ଯବନାଧ୍ୱ, ଯମୁନାଧ୍ୱ । ୧୫୨।୧ ଦାମ୍ବୋଦର— ଦାମୋଦର
୧୫୩।୨ ଝାଣ୍ଟିମାଳୀ, କର୍ଣ୍ଣମାଳୀ, ଚନ୍ଦ୍ରମାଳୀ ( ପା )

ଦକ୍ଷିଣ କୋଶଳ ରାଜା କେତୁମାଳୀ
ମେବଣ୍ଣେକ ସୈନ୍ୟ ଘେନ ଅଇଲ୍ଲକ ଚଳି । ୧୬୧ ।
ପଶ୍ଚିମ କୋଶଳ ରାଜା ଗୋ ମୃଗସେନ
ମୁକୁଟ ବନ୍ଧୀ ଯୋଦ୍ଧା ଭୁଲେ ତେର ସାଗର ସୈନ୍ୟ । ୧୬୨ ।
ସୁରଭି କୋଶଳେ ରାଜା ଅଟେ ସୁରଜିତ
ଭୁଲେଣ ସୈନ୍ୟ ତାହାର ନଉ ଅହ୍ୱବ୍ରତ । ୧୬୩ ।
ଉତ୍ତର କୋଶଳର ଯେ ରାଜା ଲଗ୍ନାଜିତ
ଶ୍ୱେଖାର ଶ୍ୱେତ ଅଶ୍ୱ ଭୁଲେ ଚଉଦ ମର୍ଭୁନ । ୧୬୪ ।
ଗୃଣ୍ଡାଲ କୋଶଳେ ରାଜା ଗୋ ନାରକା
ଅଶୀପଦ୍ମ ସୈନ୍ୟ ଘେନ ସଂସାର ଦହଇ ଯେତକା । ୧୬୫ ।
ଈଶାନ୍ୟ କୋଶଳ ରାଜା ଅଟେ ଯମନକ
ପଞ୍ଚ ପଦ୍ମ ସୈନ୍ୟ ଘେନ ଗୋ ବିଜୟେ ରଣରଙ୍କ । ୧୬୬ ।
ଆନନ୍ଦ ପାଟଣାର ଯେ ସୁଜାଣ ଚକ୍ରବର୍ତ୍ତୀ
ଅହ୍ୱବ୍ରତେକ ନାବ ଘେନ ଅଇଲ ରାଜା ଯେତ୍ଥି । ୧୬୭ ।
ଚଇତନ ପାଟଣା ଗୋ କନ୍ଦର୍ପ ଚକ୍ରବର୍ତ୍ତୀ
ନବ ଲକ୍ଷ ନାବ ଘେନ ଗୋ ଅଇଲ ଭୂଅପତି । ୧୬୮ ।
ନିରନ୍ତର ପାଟଣା ରାଜା କର୍ଣ୍ଣାଟ ଚକ୍ରବର୍ତ୍ତୀ
କୋଟିଯେ ନାବ ଘେନ ଗୋ ବିଜୟେ କଲ ଯେତ୍ଥି । ୧୬୯ ।
କମଳାଉର ପାଟଣାର ଗୋ ଅରବିନ୍ଦ ଚକ୍ରବର୍ତ୍ତୀ
ତିରିଶ ସହସ୍ର ନାବ ଘେନ ଗୋ ବିଜୟେ କଲ ଯେତ୍ଥି । ୧୭୦ ।
ମିଥୁନ ପାଟଣା ରାଜା କର୍ଣ୍ଣେ ଚକ୍ରବର୍ତ୍ତୀ
ଅହ୍ୱବ୍ରତେକ ନାବ ଘେନ ବିଜୟେ ନୃପତି । ୧୭୧ ।
ହରିହର ପାଟଣା ରାଜା ଅଜାଣ ଚକ୍ରବର୍ତ୍ତୀ
ଲକ୍ଷେକ ନାବ ଘେନ ବିଜେ କଲ ଯେତ୍ଥି । ୧୭୨ ।
କନକାବତୀ ପାଟଣାର ମାଳଗ୍ରାମ ଦଣ୍ଡଧର
ଅଶୀ ସହସ୍ର ନାବ ଘେନ ଆସିଲା ସ୍ୱୟମ୍ବର । ୧୭୩ ।

---

୧୬୭।୧ ଅନନ୍ତ ପାଟଣାରେ ସେ ସୁଜାଣ ଚକ୍ରବର୍ତ୍ତୀ
୧୭୩ ପଦ-ପରେ ଅଧିକା ପାଠ—
ଅରବିନ୍ଦ ପାଟଣାର ମଧୁସେନ ଚକ୍ରବର୍ତ୍ତୀ
ନବ ସହସ୍ର ନାବ ଘେନ ବିଜୟେ କଲ ଯେତ୍ଥି ।

ନରପୁର ପାଟଣା ରାଜା ଗୋ ଅମରାର
ଅଶୀ ସହସ୍ର ନାବ ଘେନ ବଜଯ୍ଯେ ଦଣ୍ଡଧାରୀ । ୧୭୪ ।
କଣ୍ଟାଝର ପାଟଣା ଗୋ ଦାସସେନ ନୃପତି
ପରାର୍ଦ୍ଧେକ ନାବ ଘେନ ବଜଯ୍ଯେ କଲ୍ ଯେଥି । ୧୭୫ ।
ବେଲ୍ଲଲ ପାଟଣାର ବେଲ୍ଲଲସେନ ରାଏ
ଦଶ ଲକ୍ଷ ନାବ ଘେନ ତୋର ସମ୍ମୁଖରେ ଆଏ । ୧୭୬ ॥
ଜମ୍ବୋଦ୍ୱୀପର ମଧ୍ୟେଣ ନବ ସହସ୍ର ନବଶତ ଶତାଣୋଇ ପାଟଣା
ଲେଖନ ବାକ୍ୟେ କେତେ କରିବ ଘଟଣା । ୧୭୭ ।
ସମସ୍ତ ପାଟଣାରେ ଗୋ ଯେତେ ଚକ୍ରବର୍ତ୍ତି
କେଶିମା ମୁଦୁସୁଲୀ ଯେ ଶିହ୍ଲାଇଲ ସବୁନ୍ତି । ୧୭୮ ।
କେଶିମା ବୋଇଲ୍ ଶୁଣ ଗୋସାମଣୀ
ଦାନବ ରାଜାମାନଙ୍କ କେ କହୁ ପଟମାଣି । ୧୭୯ ।
ଶାଖାପୁର ନଗ୍ରେ ଗୋ ବଜ୍ରଲଭ ସଉଲଭ
ଯେହାଙ୍କ ଥାଠକୁ ପୃଥ୍ୱୀ ନ ଦଅଇ ଗୋ ଠାବ । ୧୮୦ ।
ଆକାଶହୁଂ ଉଚ୍ଚ ଗୋ ମଞ୍ଚହୁଂ ଉପର
ପବନ ନ ବହଇ ଗୋ ଯେହାଙ୍କର ପୁର । ୧୮୧ ।
ହିରଣ ଭୁବନେ ଗୋ ରାଜା ସଅମ୍ବର
ଶତେ ସହସ୍ର ବଳ ଯେହାର ଶତେକ କୁମର । ୧୮୨ ।
ଅସୁର କୁଳକୁ ଗୋ ନାହିଂ ପଟାନ୍ତର । ୧୮୩ ।
ଶୋଣିତ ନଗରେ ରାଜା ବାଣାସୁର ଦୈତ୍ୟ
ଚଉରାଶୀ କ୍ଷଉଣୀ ସନ୍ୟ ଯେହାର ସହସ୍ରେ ଭୂଜ ମତ୍ତ । ୧୮୪ ।
ବିରାଳ ଭୁବନେ ରାଜା କୁମ୍ଭ ଯେ ନିକୁମ୍ଭ
ମହା ମହା ଦୁରନ୍ତକ ଅଟନ୍ତି ଦାନବ । ୧୮୫ ।
ବଜସ୍ଥା ଭୁବନେ ଗୋ ଦାନବ କଞ୍ଚଣ
ଅସଂଖ୍ୟ ଥାଠ ଘେନ କଲକ ପୟାଣ । ୧୮୬ ।

---

୧୮୦।୧ ଶଙ୍ଖାପୁର, ଖଟାପୁର ଇତ୍ୟାଦି ।

ମହୀଦାସ ନଗ୍ର ରାଜା କାଲନଇମି
ବେନ ଅଙ୍କୁଶ ବଳ ଘେନ ଅଇଲକ ଭୂମି । ୧୮୭ ।
ଦେଖ ଦେଖ ସଖୀରେ ଉତ୍ତର କୋଶଳର ମଧ୍ୟେ
ସମାଗୋଷ୍ଠ ନାମ ଯେ ବହଇଟି ହାଦେ । ୧୮୮ ।
ଲେଖି ପୋଚ୍ଛିଲେଣ ହୋଅନ୍ତ ବେନଖଣ୍ଡ ଜାଣ
କାଳିକା·ଦାଢ ହଲେ ତାହାର ଦକ୍ଷିଣ ହସ୍ତେଣ । ୧୮୯ ।
ଦେଖ ଦେଖ ସଖୀ ଯେତ ଅଟେ ଦରଦସେନ
ବଡ଼ାଇ ଶକତା, ଟେକ ସଂଗ୍ରାମେ ନୋହଇ ସମାନ । ୧୯୦ ।
କୃତାନ୍ତେକ ବଳ ଅନ୍ତ ନ ଯାଇ ଗୋ ମାୟେ
ବସିଲେ ଦାନବ ବଳ ଗୋ ତୋହୋର ସଭ୍ୟେ । ୧୯୧ ।
ଯେତେହେନେକ ଜଗତମୋହିନୀ ଅଟୁ ମାହେଶ୍ୱରୀ
ସମସ୍ତେହେଂ ବଶ୍ୟ ଗଲେ ଯେ ତୋହୋର ବାକ୍ୟ କରି । ୧୯୨ ।
ଯେତେକ ନୃପତି ଦେଖାଇଲା ତୋର ଆଗେ
ଶତ୍ରୁ ମଇନ ସମସ୍ତେ ଛନ୍ତି ପ୍ରିୟ ଭାବେ । ୧୯୩ ।
ଲକ୍ଷେ ରାଜାର ଗୋ ଯେତେକ ସଇନ
ସମସ୍ତେ ହୋଇଛନ୍ତି ଗୋ ନକ୍ଷତ୍ର ଗଣମାନ । ୧୯୪ ।
ସେହି ମହାସଭାକୁ ଗୋ ତୁହି ସେ ଅଟୁ ଶଶୀ
ଉଦେ ହୋଇଲୁ ଗୋ ଭାଜିଲା ଦର୍ପ ନିଶି । ୧୯୫ ।
ବଦନ୍ତି ଅଗସ୍ତି ଶୁଣ ହୋ ମନୁ ପୁରୁଷ
ଦ୍ରୋପଦୀଙ୍କ ଆଗେ କେଶିନୀ କହିଲା ବିଶେଷ । ୧୯୬ ।
କହିଲେ ଦ୍ରୋପଦୀ ଶୁଣିଲା ରାଜାଙ୍କର ନାମ
ଯେବେ କହ କେଶିନୀ ରାଜ୍ୟ ମଣ୍ଡଳ ବିଧାନ । ୧୯୭ ।
କହଇ କେଶିନୀ ଶୁଣ ଗୋ ପାଞ୍ଚାଳୀ
ବାର ରାଷ୍ଟ୍ର ଛତିଶ ମଣ୍ଡଳ କହିବ ବିରୋଳି । ୧୯୮ ।
କଳଙ୍ଗ ଓଡଙ୍ଗ ବଙ୍ଗ ଯେ ତେଲଙ୍ଗ ଦେଶ
ଖାଞ୍ଜଣ ବିହୁତ ଭୋଟ ଘୋଟ କର୍ଣ୍ଣାଟ ଦେଶ । ୧୯୯ ।

---

୧୯୨।୨ ସମସ୍ତେ ବଶ ହୋଇଲେ ତୋତେ ଦେଖି' କରି ।
୧୮୭।୧ କାଲନଇମି—କାଲନେମି ।

ମନ୍ଦାର କାଉଂସ୍ତ ଡାହାଳ ବେଲ୍ଲାଳ ଖେଚର ଦେଶ
ଖିନଖିନା, ମାଳବ ଗୁର୍ଜର ମଗଧ ମତ୍ସ୍ୟଦେଶ । ୨୦୦ ।
କାଶ୍ମୀର ଦରଦ କୌଶିକ ବର୍ବ୍ବର ଦେଶ
କୁବୁଜ ଗାନ୍ଧାର କନାଉଜ କ୍ଷେନ ବିକ୍ଷେନ ବିଶେଷ । ୨୦୧ ।
ପାରିଜାତକ ଭୋପାଳ ମଲ୍ଲାର ନେପାଳ ଗାନ୍ଧାର
ବାରସ୍ୱନ୍ତ ବୃନ୍ଦାରକ ଲାଟ ଯେ କେଦାର । ୨୦୨ ।
ପଦ୍ମଦଳ କରଞ୍ଜ ମାଳ ଅନଳ ବଙ୍ଗାଳ
ଚୀର ମହାଚୀର କନ୍ଧ ଚୁହାଣ ବିଂଝମାଳ । ୨୦୩ ।
ଗଉଡ ଗୋବିନ୍ଦ ଚୁଡଙ୍ଗ କାଞ୍ଚୀକାବେଣ୍ଟ କଞ୍ଚଣ
ନୈଷଧ ମେଳେଚ୍ଛ ମହେଶ୍ୱର କାଶୀ ପଦ୍ମଦଳ ହିରଣ । ୨୦୪ ।
ଶାଖାମଣ୍ଡଳ ଭଗାମଣ୍ଡଳ ଶୈଳ ମଣ୍ଡଳ
ପାଣି ମଣ୍ଡଳ ଉଡଙ୍ଗ ମଣ୍ଡଳ ଭାସ୍କର ମଣ୍ଡଳ । ୨୦୫ ।
ଉଦେ ମଣ୍ଡଳ ନକ୍ଷତ୍ର ମଣ୍ଡଳ ଚନ୍ଦ୍ର ମଣ୍ଡଳ
ମାହେନ୍ଦ୍ର ମଣ୍ଡଳ ସୁବେଳ ମଣ୍ଡଳ ବିଷ୍ଣୁ ମଣ୍ଡଳ । ୨୦୬ ।
ରୁଦ୍ର ମଣ୍ଡଳ ଜାନୁ ମଣ୍ଡଳ ଭାନୁ ମଣ୍ଡଳ
ବ୍ରହ୍ମା ମଣ୍ଡଳ କରସ୍ଥଳ ମଣ୍ଡଳ ଭଦ୍ର ଯେ ମଣ୍ଡଳ । ୨୦୭ ।
ଯମ ମଣ୍ଡଳ କୌସ୍ତୁଭ ମଣ୍ଡଳ କଣସ୍ଥ ମଣ୍ଡଳ
କୋଶଳ ମଣ୍ଡଳ ପଦ୍ମ ମଣ୍ଡଳ ବାରୁଣୀ ମଣ୍ଡଳ । ୨୦୮ ।
ଇନ୍ଦ୍ରପ୍ରଶସ୍ତ ମଣ୍ଡଳ ବଜ୍ରଗିରି ମଣ୍ଡଳ ଶୋଣିତ ମଣ୍ଡଳ
ମେରୁ ମଣ୍ଡଳ ମଳୟ ମଣ୍ଡଳ ଯେ ମନ୍ଦାର ମଣ୍ଡଳ । ୨୦୯ ।
ଅମର ମଣ୍ଡଳ କୁଞ୍ଜଗଳ ମଣ୍ଡଳ ଧ୍ରୁବାଦ୍ଧ ମଣ୍ଡଳ
ମଧୁବନ ମଣ୍ଡଳ ସୁର ମଣ୍ଡଳ ଯେ ଯୋଜନ ମଣ୍ଡଳ । ୨୧୦ ।
ଯେମନ୍ତେ କେତିମା କହଇ ଛତିଶ ମଣ୍ଡଳ ନାମ ଧରି
ଶୁଣିଣ ସାନନ୍ଦ ଯେ ଦ୍ରୋପଦ କୁମାରୀ । ୨୧୧ ।

---

୨୦୪ ଚଣ୍ଡୀ, ମହାଚଣ୍ଡୀ, ଉପାଙ୍ଗ ଅଧିକା ଦେଶ ପାଠମାନଙ୍କରେ ଅଧିକା ଅଛି ।

୨୧୧ ମଣ୍ଡଳ ସ୍ଥାନରେ ପାଠାନ୍ତର—
ଗଡ, ଅନ୍ଧ, ବେଦ୍ଧ, ଶ୍ରୀଖଣ୍ଡ, ତୁରଙ୍ଗ, ସାନୁ, ବିକାଶ, ଶୈଖାର, ଶୃଙ୍ଗ, ଧୂତ, ଆକାଶ, ପାତାଳ, ଶୂନ୍ୟ, କମଳ, ସିଂହ, ଅଚଳ ଓ ପତଙ୍ଗ ପ୍ରଭୃତି ମଣ୍ଡଳ-ମାନଙ୍କର ନାମ ପୋଥିମାନଙ୍କରେ ମିଳେ । ବହୁ ପୋଥିରେ ମେଳ ହେବା ୩୬ ମଣ୍ଡଳର ନାମ ଗୃହୀତ ହେଲା ।

ଅଙ୍ଗରାଷ୍ଟ୍ର ସୋମରାଷ୍ଟ୍ର ଭଇରବ ରାଷ୍ଟ୍ର
ଅଯୋଧ୍ୟା ରାଷ୍ଟ୍ର ସିଂଘମାଳ ରାଷ୍ଟ୍ର ଶଙ୍ଖରାଷ୍ଟ୍ର । ୨୧୨ ।
ଓଡ୍ର ରାଷ୍ଟ୍ର ଅନୁପାମ ରାଷ୍ଟ୍ର ଯେ ଜମ୍ବୁ ରାଷ୍ଟ୍ର
ଗଙ୍ଗ ରାଷ୍ଟ୍ର ମହାରାଷ୍ଟ୍ର ଯେ ସଉରାଷ୍ଟ୍ର । ୨୧୩ ।
ଏମନ୍ତ ବହୁ ବାରରାଷ୍ଟ୍ର ଯେ କେଶିନୀ କହିଲା
ଶୁଣି ମହାଦେଈଙ୍କ ମନେ ସନ୍ତୋଷ ହୋଇଲା । ୨୧୪ ।
ଯାଜ ନଗ୍ର ଭଇରବେ ନଗ୍ର ଯେ ଉଜାଣି ନଗ୍ର
କାଞ୍ଚୀପୁର ବିଜୟା ନଗ୍ର କାମପୁର ନଗ୍ର । ୨୧୫ ।
କାଞ୍ଚୀପୁରୀ ଯମୁନା ପୁରୀ ମଥୁରା ପୁର
ଜେନାବଳୀ ମାଲ୍ୟବନ୍ତ ଜୟନ୍ତୀ ନଗ୍ର କାମପୁର । ୨୧୬ ।
ବାରୁଣାବନ୍ତ ନଗ୍ର ବସନ୍ତପୁର ଶିବ ନଗ୍ର
ହସ୍ତିନାପୁର ଏକଚକ୍ରା ଶଙ୍ଖମାଳ ନଗ୍ର । ୨୧୭ ।
ପଦ୍ମଦଳ ନଗ୍ର ବିଷ୍ଣୁ ନଗ୍ର କଞ୍ଚନପୁର ନଗ୍ର
କାଶୀପୁର ବ୍ରହ୍ମପୁର ନଗ୍ର ଜମ୍ବୋ ନଗ୍ର । ୨୧୮ ।
ଅନୁଭବ ନଗ୍ର ଖଡଗପୁର ନଗ୍ର ମାହେନ୍ଦ୍ର ନଗ୍ର
ଭୋଜକୁଣ୍ଡଳ ନଗ୍ର ଯେ ଖ୍ରିମାଉର ନଗ୍ର । ୨୧୯ ।
ହରଣ ନଗ୍ର କୌଶିକ ନଗ୍ର ବେଦ ନଗ୍ର
ପାଞ୍ଚାଳ ନଗ୍ର ମାଳତୀ ନଗ୍ରୀ ଗଉଡ଼ୀ ନଗ୍ର ସଉଦ ନଗ୍ର । ୨୨୦ ।
କେଶିନୀ ବୋଇଲା ଯେ ପୁର ଆଧିପତି ମାନେ
ତୋହୋର ଆଶେ ଗୋ ଅଇଲେ ସନ୍ନିଧାନେ । ୨୨୧ ।
ଭୃଥ ଖଣ୍ଡ ଲବଣ ଖଣ୍ଡ ପ୍ରଚଣ୍ଡ ଖଣ୍ଡ
ଉଦୟ ଖଣ୍ଡ କୌସ୍ତୁଭ ଖଣ୍ଡ କାଶୀ ଖଣ୍ଡ । ୨୨୨ ।
କୃତାନ୍ତକ ଖଣ୍ଡ କୌଶିକ ଖଣ୍ଡ ମଣ୍ଡଳ ଖଣ୍ଡ ରାଜା
ସମସ୍ତ ବଞ୍ଚାଇଲା ଗୋ ଦ୍ରୋପଦ ଆତ୍ମଜା । ୨୨୩ ।
ବ୍ରହ୍ମ କ୍ଷତ୍ରିୟ ବଶ୍ୟ ଶୂଦ୍ର ନୃପଜାତି
ଦଇତ୍ୟ ଦାନବ ରାକ୍ଷସ ପିଶୁଣ ନୃପତି । ୨୨୪ ।

---

୨୨୪।୨ ପିଶୁଣ—ପିଶାଚ ।

ଅସୁର ଯକ୍ଷ କନ୍ନର ହରିବଳ
ଯବନ ବଳ କୃତାନ୍ତେକ ବଳ ଯେ ବୃନ୍ଦାରକ ବଳ । ୨୨୫ ।
ସୋମସୂର୍ଯ୍ୟ ବଂଶ ଯଦୁ ବଂଶ ଭୋଜ ବଂଶ
କୁରୁ ବଂଶ ଅନ୍ଧକ ବଂଶ ହଇହସ୍ତ୍ର ବଂଶ । ୨୨୬ ।
ଚୁହାଣ ବଂଶ ବୃଷ୍ଣିକ ବଂଶ ଗୋପାଳ ଯେ ବଂଶ
କୁକ୍‌କୁର ବଂଶ ବୃନ୍ଦାରକ ବଂଶ ଦକ୍ଷ ବଂଶ । ୨୨୭ ।
ଗୈଳ ଗୈଲୁକ୍ୟ ଫୁଲୁକ ଗଙ୍ଗ ଭୋପାଳ ବଂଶ
ଯେ ରୂପେ ସର୍ଖୀ ଗୋ ଅଛନ୍ତି ଅଷ୍ଟାଦଶ ବଂଶ । ୨୨୮ ।
ଅଷ୍ଟାଦଶ ବଂଶର ମଧ୍ୟେ ସର୍ଖୀ ଗୈର ଊଣା ଲକ୍ଷେକ ନୃପତି
ତୋହୋର ପ୍ରତିଆଶେ ସଭାରେ ବିଜେ କରିଣ ଅଛନ୍ତି । ୨୨୯ ।
ପୃଥ୍ୱୀର ମଧ୍ୟେ ରାଜା ହୋଇବାକ ଯେତେକ
ମୁହିଂ ସଞ୍ଚିଯି କରି କହି ପାରିବି କେତେକ । ୨୩୦ ।
ପ୍ରସ୍ତାପ ବାକ୍ୟେ ମୁହିଂ ଯେତେକେ ଗୋ ବଞ୍ଚାଇଲି
ଊଞ୍ଚ ଊଞ୍ଚ ରାଜାମାନନ୍ତ ଗୋ ଥୋକାଯେ କହିଲି । ୨୩୧ ।
କେଶିମ୍ନ ବୋଇଲା ଶୁଣ ଗୋସାମଣୀ
ତୋହୋର ଅର୍ଥେ ଦ୍ରୋପଦେଶ୍ୱର ସବୁନ୍ତ ବରିଆଣି । ୨୩୨ ।
ରାଜାମାନଙ୍କୁ ଗୋ ମୁଣୋହି ଯୋଗାଡ଼
ଯେକ ଯେକ ରାଜାଙ୍କୁ ପଲମ ଶତେ ଶତେ ଭାର । ୨୩୩ ।
ମୁଣୋହି ସାରିଣ ରାଯେ ଆଗ୍ୱେବନ କରନ୍ତି ଯେତେବେଳେ
ସେ ରନ୍ନ ଯୋଗାଡ଼ମାନ ନେଇ ପକାନ୍ତି ଅଗାଦ ଜଳେ । ୨୩୪ ।
ପୁଣି ନବତନ ପଲମ ଯୋଗାଡ଼ କରାଇ
ଆରେକ ଦନେ ପୂର୍ଣ୍ଣ ରାଜାଯେ କରନ୍ତି ମୁଣୋହି । ୨୩୫ ।
ଲକ୍ଷେ ନୃପତିଙ୍କ ଭିଆଣ ଯେହିମତେ
ଧଂସି ହୋଇଲା ରାଜା ତୋହୋର ନିମନ୍ତେ । ୨୩୬ ।
ଦେବେଣ ଦୁର୍ଲ୍ଲଭ ଗୋ ମନୁଷ୍ୟେ ଅଗୋଚର
ଶୁଣିଲା ନାହିଂ ତ ଗୋ ଯେସନେକ ସୟଂବର । ୨୩୭ ।

---

୨୩୬।୨ ଧନ ଭଣ୍ଡାର ବିଧ୍ୱଂସିଲା ରାଜା ତୋହୋର ନିମନ୍ତେ ।

ଶତେକ ବଖରାକେ ଘରେକ ନର୍ବାଣ
ପଞ୍ଚଶ ବୃନ୍ଦ ଗୋ ଛନ୍ଦଶାଳମାନ । ୨୩୮ ।
ଗଜଶାଳ ଅଶ୍ୱଶାଳ କେହୁ ପାରିବ କଳ
ଅନ୍ନଛନ୍ଦ ବସ୍ତ୍ରଛନ୍ଦ ଯେ ମାଗନ୍ତି ଯେତେ ଭଳ । ୨୩୯ ।
ଦ୍ରୋପଦୀ ବୋଇଲେ ଶୁଣ କେଶିମା ମୃଦୁସୁଲ୍ଲୀ
କୋଟିଏ ପଦ୍ମେ ସାଗରେ କ୍ଷଉଣୀ ଯେ କାହାକୁ ଯେ ବୋଲି । ୨୪୦ ।
ପଦ୍ମେକ କେତେ ସଖି ଗୋ ସାଗରେକ କେତେ
ଏମନ୍ତ ସଞ୍ଚପିଣ କହିବା ସଖି ମୋତେ । ୨୪୧ ।
ପ୍ରଣପତ୍ୟ ହୋଇଣ ଯେ କହଇ କେଶିମା ମୃଦୁସୁଲ୍ଲୀ
ଶୁଣ ସାବଧାନେ ଗୋସାମଣୀ କ୍ଷଉଣୀଏ କେତେ ବୋଲି । ୨୪୨ ।
ରଥ ପଞ୍ଚଷଠି ସହସ୍ର ଗଜ ପଞ୍ଚଷଠି ସହସ୍ର
ଅଶ୍ୱ ପଞ୍ଚଷଠି ସହସ୍ର ପାଦାନ୍ତି ପଞ୍ଚଷଠି ସହସ୍ର । ୨୪୩ ।
ଛନ୍ଦ ପଞ୍ଚଷଠି ସହସ୍ର ଆଲମ୍ୱ ବିଲମ୍ୱ ପଞ୍ଚଷଠି ସହସ୍ର । ୨୪୪ ।
ଉଦଣ୍ଡ ପଞ୍ଚଷଠି ସହସ୍ର ପଞ୍ଚଷଠି ସହସ୍ର ମୟୂର ଝୀଲପକ୍ଷୀ
ସୂପକାର ପଞ୍ଚଷଠି ସହସ୍ର ପୋଇଲ ପଞ୍ଚଷଠି ସହସ୍ର ଯେ ଲେଖି ।୨୪୫।
ବାଦ୍ୟକାର ପଞ୍ଚଷଠି ସହସ୍ର ନର୍ବାଣ
ପଞ୍ଚଷଠି ସହସ୍ର ଫୁଙ୍କାର ବାଦ୍ୟମାନ । ୨୪୬ ।
ପଞ୍ଚଷଠି ସହସ୍ର ବଇଲ ପଲଣ । ୨୪୭ ।
ଦ୍ରୋପଦୀର ଆଗେ କହଇ କେଶିମା ମୃଦୁସୁଲ୍ଲୀ
ଏମନ୍ତେ ସନ୍ୟକୁ ଠାକୁରାଣୀ ଗୋ ଅକ୍ଷୌହିଣେକ ବୋଲି । ୨୪୮ ।
ଦଶ ଅକ୍ଷୌହିଣେ ଗୋ ପଟଳେ ନର୍ବାଣ
ଦଶ ପଟଳେ ଗୋ ସେନାମୁଖ ବଖାଣ । ୨୪୯ ।
ଦଶ ସେନାମୁଖେ ଜଳଧାରାଏ ବୋଲି
ଦଶ ଜଳଧାର ମୁଖେ ବାରୁଣୀଏ କହିଲି । ୨୫୦ ।
ଦଶ ବାରୁଣୀ ମୁଖେ ନଳେକ ନର୍ବାଣ
ଦଶ ନଳେ ଯେ ଉର୍ଦ୍ଧ୍ୱେକ ପ୍ରମାଣ । ୨୫୧ ।

---

୨୩୮।୧ ନର୍ବାଣ—ନିର୍ମ୍ମାଣ ।

ଦଶ ଊର୍ଦ୍ଧ୍ୱେ ବୃନ୍ଦେକ ଯେ ବୋଲି
ଦଶ ବୃନ୍ଦେ ଯେ ଯେୂକ ନକ୍ଷତ୍ର କହିଲି । ୨୫୨ ।
ଦଶ ନକ୍ଷତ୍ର ମୂଳେ ମନୁ ମୁଖେ ଜାଣି
ଦଶ ମନୁ ମୁଖେ ହୋଯେ ଯେୂକଇ କ୍ଷଉଣୀ । ୨୫୩ ।
ପୁଣ କେଶିମା ବୋଇଲା ଶୁଣ ଗୋ ମାହେଶ୍ୱରୀ
ଗୋଚର ନ ଗଲା ଗୋ ସଞ୍ଜପି ନୁଆରି । ୨୫୪ ।
ପଦ୍ମକର ଲେଖା ଗୋ ପଚ୍ଚରିଲୁ ମୋତେ
ଶୁଣିମା ସାବଧାନେ ଦେବୀ କହଇ ମୁହିଂ ତୋତେ । ୨୫୫ ।
ଦଶ ଦଶ ଯେୂକ ଶଯେୂକ ବୋଲି ଜାଣ
ଦଶ ଶଯେୂ ଗୋ ସହସ୍ରେ ଅଟେ ପୁଣ । ୨୫୬ ।
ଦଶ ସହସ୍ରେ ଅଟଇ ଅହିବ୍ରତେ
ଦଶ ଅହିବ୍ରତେ ଗୋ ଲକ୍ଷେକ ପ୍ରମିତେ । ୨୫୭ ।
ଦଶ ଲକ୍ଷେ ଗୋ କୋଟିଯେୂ ଯୁଗତ
ଦଶ କୋଟିଯେୂ ଗୋ ହୁଅଇ ମର୍ଦ୍ଭୂତ । ୨୫୮ ।
ଦଶ ମର୍ଦ୍ଭୂତେ ଗୋ ମେବଚ୍ଛେ ବୋଲନ୍ତି ଯୁଗତ । ୨୫୯ ।
ଦଶ ମେବଚ୍ଛେଣ ହୋଅଇ ଯେୂକ ବୃନ୍ଦ
ଦଶ ବୃନ୍ଦେ ଗୋ ଖର୍ବେକ ଜାଣ ସାଧ । ୨୬୦ ।
ଦଶ ଖର୍ବେଣ ଗୋ ନିଖର୍ବେକ ବୋଲି ଜାଣି
ଦଶ ନିଖର୍ବେ ଗୋ ଶଙ୍ଖେକ ପରମାଣି । ୨୬୧ ।
ଦଶ ଶଙ୍ଖେ ଗୋ ପଦ୍ମେକ ଜାଣ ବୋଲି
ଦଶ ପଦ୍ମେ ଗୋ ସାଗରେ କହିଲି । ୨୬୨ ।
ଦଶ ସାଗରେ ଗୋ ବୋଲନ୍ତି ଅନନ୍ତେ
ଯେୂତେକ ଗୋଚର ହୋଇଲା ଆନ ନ ଜାଣଇ ଚିତ୍ତେ । ୨୬୩ ।
ଦଶ ଅନନ୍ତେ ଗୋ ବୋଲନ୍ତି ପରାର୍ଦ୍ଧେ
ଦଶ ପରାର୍ଦ୍ଧେ ଗୋ ବୋଲନ୍ତି ମାରାପୁଦ୍ଧେ । ୨୬୪ ।
ଦଶ ମାରାପୁଦ୍ଧେ ବୋଲନ୍ତି କ୍ଷଉଣୀ
ଦଶ କ୍ଷଉଣୀରେ ସଖୀ ଲେଖ ବକ୍ଷଉଣୀ । ୨୬୫ ।
ଦଶ ବକ୍ଷଉଣୀରେ ଅଙ୍କୁଶେକ ଜାଣି
ଦଶ ଅଙ୍କୁଶେଣ ଅନଳେ ପରମାଣି । ୨୬୬ ।

ଦଶ ଅନଳେ ଗୋ କାଠପ୍ରେ ହୋଇଲା
ଦଶ କାଠିପ୍ରେ ସଖି ବକାଠି ଲଭିଲା । ୨୬୭ ।
ସ୍ୱେସନେକ ସରୂପେ ସଖି ସ୍ୱେସନେକ ଭିଆଣ
ସ୍ୱେଥେ ପ୍ରବେଶ ହେଲେ ଗୋ ତୋହୋର ସସ୍ୱେଂବରେଣ । ୨୬୮ ।
କେଶିମା ବୋଇଲା ଶୁଣ ଦ୍ରୋପଦ ଦୁଲଣୀ
ସ୍ୱେହେନେକ ଯାବତ ଲେଖା ଗୋ ସଇନ ଠାକୁରାଣୀ । ୨୬୯ ।
କେଶିମା ବୋଇଲା ନରାଧାର ବଚନେ
ଶୁଣିଣ ପାଞ୍ଚାଳୀ ଯେ ବସ୍ମୟେ ପଞ୍ଚ ମନେ । ୨୭୦ ।
ସ୍ୱେଥୁ ଅନନ୍ତରେ ଯେ ବଳଙ୍କ ଆଧିପତି
ଅଗସ୍ତିଙ୍କ ଚରଣେ ଯେ ବନୟ ଭଗତି । ୨୭୧ ।
ଭୋ ମୁନି କଥାସ୍ୱେ ଯେ ମୋତେ କହବାକ ଦେଉ
ତବ ମୁଖୁଂ ଶୁଣିଲେ ଯେ ପାତେକ ଅପହର । ୭୨ ।
ବୋଇଲ ଯେ ଦ୍ରୋପଙ୍କଙ୍କ ଆଗେ ଚନ୍ଦ୍ରାଇ ଦଅଇ କେଶିମା
କେମନ୍ତେ ଜାଣିଲା ସେ ନଗ୍ରପୁର ମଣ୍ଡଳ ରାଜାଙ୍କର ନାମ ଘେନ ।୨୭୩।
ସ୍ୱେ କଥା ମୋତେ ସଂଶୟ ଲଗିଲା ମହାମୁନି
କେଶିମା ଅଟଇ ଜାତ ମାନବ ଯେ ଯୋନି । ୨୭୪ ।
ବଦସ୍ୱନ୍ତି ଅଗସ୍ତି ଶୁଣ ମନୁ ଯେ ଧାର୍ମିକ
ସ୍ୱେ କଥା ସଞ୍ଚପି ଶୁଣିବାକୁ ତୁମ୍ଭେ ସେ ବବେକ । ୨୭୫ ।
କହନ୍ତି ଅଗସ୍ତି ଯେ ପୂର୍ବର ସ୍ୱେ କଥା
ଯେଣୁ ସେ କେଶିମା ଯେ ହୋଇଲା ମହାଗ୍ୟାଂତା । ୨୭୬ ।
ଆକାଶ ଗଙ୍ଗାରେ ସ୍ନାନ ଯେ କରନ୍ତି ନାରଦ ମୁନିବର
ତାହାଙ୍କର ତପସ୍ନାନ ବେଳେ ସ୍ୱେ ଯେ ମିଳଲା ତ୍ରୁମୁର । ୨୭୭ ।
ଅନେକ ବନୟ ହୋଇ ଶୁତିଲା ଗଡଧାଲ
ଋଷି ବୋଇଲେ ଗୋ କସ କାର୍ଯ୍ୟ କହନ ତୋହୋର । ୨୭୮ ।
କେଶିମା ବୋଇଲା ତୁମ୍ଭେ ଯେ ସର୍ବଗ୍ୟଂ ପୁରୁଷ
ତୁମ୍ଭର ଆଗରେ ମୁହିଂ କହିବଇଂ କସ । ୨୭୯ ।
ଜାଣି ଅନୁଗ୍ରହ ମୋତେ କରିବା ମୁନିବର
ତୁମ୍ଭର ହେତୁ ଦୃଶ୍ୟ ମୋତେ ହୋଇବ ଗତ ଯେ ଆଗତର । ୨୮୦ ।

ଯେହା ଶୁଣି ମୁନି ଯେ କାଢିଲେ କଳଧୋକଣ୍ଠରୁ ଅଞ୍ଜନ
ଯେହା ନୟନେ ଦେନ ଗୃହ୍ନଂଲେ ତୋତେ ହୋଇବ ଦୃଶ୍ୟମାନ ।୨୮୧।
ଆବର କହିଲେ ଯେ ମନ୍ତ୍ର ସାରସ୍ୱତ
ଯେହା ପଢି ଦେନଲେ ତୋତେ ଦିଶିବ ଯେ ତିନି ଜଗତ । ୨୮୨ ।
ସେ ମନ୍ତ୍ର ଅଞ୍ଜନ ଗୁଣ୍ଡି କେଶିମା ଦେନଲା ନୟନେ
ତେଣୁ ସେ ସମସ୍ତ ତାଙ୍କୁ ଯେ ହୋଇଲା ଦୃଶ୍ୟମାନେ । ୨୮୩ ।
ତେଣୁ ସେ ଦ୍ରୋପଦୀକ ଚହ୍ନାଇ ଦିଅଇ ସମସ୍ତ
ଶୁଣିଲୁକ ରାଜା କେଶିମାର ଅଛଇ ଯେସନେକ ଚରିତ । ୨୮୪ ।
ମନୁ ପୁଚ୍ଛା କଲେ ଅଗସ୍ତି ମହା ମୁନେ୍ୟ
ଯେଥୁଂ କସ ହୋଇଲା ଯେ ଲଖର ବିଧାନେ । ୨୮୫ ।
ଦ୍ରୋପଦୀ ବୋଇଲେ ଗୋ ମୋର ମନ୍ଦ ଭ୍ରାଂଥ ବେନି
ଅନମିତ୍ତେ ବରିଲେ କନ୍ୟା ଯେତେ ରାଜାର ସଇନ । ୨୮୬ ।
ଯେତେକ ଆରମ୍ଭେ ଯେ କଲେକ ସୟମ୍ବର
ଯେ ସଭର ମଧ୍ୟେ କେ ମୋତେ ହୋଇବାକ ବର । ୨୮୭ ॥
କେଶିମା ବୋଇଲା ଗୋ କହିବାକ ସରୂପ ତୋତେ
କେ ତୋହୋର ବର ବୋଲି ନ ଜାଣଇ ନିରୁତାନ୍ତେ । ୨୮୮ ।
ରାଜାର ବ୍ରତ ଗୋ ନିରାଧାର ଦେଖ
ଯେ ବନ୍ଧିବ ରାଧାଚକ୍ର ମହାଲଖ । ୨୮୯ ।
ଯେଥକୁ ତଳଯେ ଗୋ କରିଥିବୁ ପାଞ୍ଚାଳି
ଯେ ଲଖ ବନ୍ଧିବ, ତୁ ତାହାର ମନର କୁଆଳୀ । ୨୯୦ ।
ସୟମ୍ବର ସଞ୍ଚପି କହଇ କେଶିମା
ମେଞ୍ଚରେ ନେଇ ବିଜେ କରାଇଲେ ଜନ୍ମସେନୀ । ୨୯୧ ।
କରପଦ୍ମ ଯୋଡଣ ବୋଲଇ ଧୃଷ୍ଟଦ୍ୟୁମ୍ନ ଯେ ତୁମନେ
ସାବଧାନ ହୋଇ ଶୁଣିମା ରାଜାଗଣମାନେ । ୨୯୨ ।
କନ୍ୟାର ରୂପଗୁଣତ ନିରୋପିଲ ସମସ୍ତ
ଯେ ଲଖ ବନ୍ଧିବ କନ୍ୟା ତାହାକୁ ପରାପତ । ୨୯୩ ।

---

୨୯୧।୨ ଯାଜ୍ଞସେନୀ ସ୍ଥାନରେ ଜନ୍ମସେନୀ ପାଠ ସବୁ ପୋଥିରେ ଦେଖାଯାଏ ।

ପୁଷ୍ପମନ୍ତ୍ରର ସମୟେ ବ୍ରାହ୍ମଣମାନେ ବେଦନ
ଶୁଭ ଯୋଗେ ବିଜେକଲେ ଛପନକୋଟି ଯଦୁବଂଶ ଯେତ । ୨୯୪ ।
ଉଗ୍ରସେନ ନନ୍ଦ ଉପନନ୍ଦ ସହିତେ
ବିଜେ ଜଗମୋହନ କୁଡୋହୋଲ ଦେଖିବାର ନିମନ୍ତେ । ୨୯୫ ।
ତୀର୍ଥଯାତ୍ରା ଯେ ଉଚ୍ଚବର ସ୍ଥାନେ
କୁଡୋହୋଲେ ବିଜେ କରନ୍ତି ଯେ ବୃନ୍ଦାରକମାନେ । ୨୯୬ ।
ପୃଥିବୀକ ଅଳଂକାର ନାରାୟଣଙ୍କର ପ୍ରଭା
ଶରୀର ବସ୍ତ୍ରନେ ଅଳଂକାର କାହିଂ ଶୋଭା । ୨୯୭ ।
ଶଯ୍ୟାଳ ସଂସାରେ ନାରାୟଣ ହିଂ ବଲ୍ଲଭ
ସଭା ଶୋହିଲ ଯହିଂ ବିଜେକଲେ ବାସୁଦେବ । ୨୯୮ ।
ଦାନବ ବଳମାନେ କରନ୍ତି ବୋଲ ନାସ
ଶୂନ୍ୟେ ରୁହାଇଲେ ସ୍ୱାମୀ ରଥ ନନ୍ଦିଘୋଷ । ୨୯୯ ।
ଶ୍ରୀ ବଳରାମେ ବିଜେ କଲେ ତାଳଧ୍ୱଜ ରଥେ
ରଥରେ ବିଜୟେ ସ୍ୱାମୀ ରେବତୀ ସହିତେ । ୩୦୦ ।
ନାରାୟଣ ବିଜେ ଦେଖିଣ ଦେବ ଅମରାଧି
ବିଦ୍ୟାଧରଗଣ ଯେତ ବିଜୟେ ଜମ୍ବୁଭେଦୀ । ୩୦୧ ।
ଶ୍ରୀଭୁଜେ ବଜ୍ର ଆରୋପଣ ଆରୋହଣ ଐରାବତ ପିଠି
ହସ୍ତୀ ବେଢ଼ି ପାରୁଶେ ଖଟନ୍ତି ବିଦ୍ୟାଧରୀ ଚଉଷଠି କୋଟି । ୩୦୨ ।
ଅମରଗଣ ଛନ୍ଦ ଯେତ ଖଟନ୍ତି ଚଉପାଶେ
ଇନ୍ଦ୍ର ଗୋବିନ୍ଦ ପ୍ରେକଭି ହୋଇ ରହିଲେ ଶୂନ୍ୟ ଯେ ଆକାଶେ । ୩୦୩ ।
ଅମରାଧି ନାଥ ଯହିଂ ଅଇଲାକ ଚଳି
ରୁଦ୍ରଗଣ ଯେତ ବିଜୟେ କପାଳୀ । ୩୦୪ ।
ବୃଷଭ ଆରୋହି ବିଜେ କଲେ ଦେବ ଯେ ଈଶାନ
ଗଣପତି କାର୍ତ୍ତିକେଶ୍ୱର ଚଉଦ କୋଟି ଶିବଗଣ । ୩୦୫ ।
ହରିବରେଣ ଗିରିଜା ମଣ୍ଡଳେ ଶଶାଙ୍କ ଧବଳୀ
ଦେଖି ପ୍ରଣିପତ୍ୟ ଶ୍ରୀ ଜଗନ୍ନାଥ ଦେବ ହଳୀ । ୩୦୬ ।

---

୨୯୫।୧ ଉଗ୍ରସେନ ନନ୍ଦ ବସୁଦେବ ସହିତେ ।

୩୦୧।୨ ଜମ୍ବୁଭେଦୀ—ଜମ୍ଭଭେଦୀ—ଇନ୍ଦ୍ର ।

ମରୁତ ବଶ୍ୟାନର ଯେ ଦେବଗୁରୁ ବୃହସ୍ପତି
ଭୃଗୁ କାଶ୍ୟପ ଅଙ୍ଗିରା ନାରଦ ବ୍ରହ୍ମସନ୍ତି । ୩୦୭ ।
ବରୁଣ ନୈରୃତ କୁବେର ଚନ୍ଦ୍ର ସୂର୍ଯ୍ୟ
ଅନ୍ତରୀକ୍ଷେ ବିଜୟେ ଦେବେ ଦ୍ରୋପଦେଶ୍ୱର ରାଜ୍ୟ । ୩୦୮ ।

ଅନ୍ତରୀକ୍ଷେ ବିଜେ କଲେ ଆସି ଦେବଗଣେ
ସୟମ୍ବର ଦେଖି ପ୍ରଶଂସା କଲେ ଦେବ ନାରୀପୁଣେ । ୩୦୯ ।
ପୁଷ୍ପବୃଷ୍ଟି ହୋଇଅଛି ଆକାଶ ଭୁବନେ
ସଭାରେ ପଡୁଅଛି ଶିରିର ଗୁଣ୍ଡିମାନେ । ୩୧୦ ।
ଗନ୍ଧ ଆମୋଦଇ ଯେହ୍ନେ ମଳୟାନିଳ ବିଜେ
ସର୍ବେ ବିସ୍ମରନ୍ତି ହୋ ବିଜେ କଲେ ଦେବରାଜେ । ୩୧୧ ।
ପୁଷ୍ପବୃଷ୍ଟି ଉପ୍ତରେ ଯେ କଣପୂ ହୋଇଲା ବୃଷ୍ଟି
ଦ୍ୱାଦଶ ଯୋଜନ ପରଯନ୍ତେ ଜନେ ସୁଖେଣ ସାଉଂଟି । ୩୧୨ ।
ରାଜାମାନେ ପ୍ରଶଂସନ୍ତି ସାଧୁ ସାଧୁ ଦ୍ରୋପଦ
ତୋହୋର ପ୍ରସାଦେ ହୋ ଭଳସିଲୁ ସମସ୍ତ । ୩୧୩ ।

ବ୍ରହ୍ମାଣ୍ଡେ ଅବତର ଆସି ଦେଖନ୍ତି ପଦ୍ମଯୋନି
ସୟମ୍ବର ସ୍ଥାନେ ପ୍ରବେଶ ବଶିଷ୍ଟ ମହାମୁନି । ୩୧୪ ।
ତୁଲେଣ ଅଛନ୍ତି ନବ ସହସ୍ର ଶିଷି
ଆସ୍ଥାନ ତେଜ ରାଜାଗଣେ ଚରଣେ ନବେଶି । ୩୧୫ ।
ଅନ୍ଧବ୍ରତେକ ଶିଷ ଘେନି ଦୁର୍ବାସାୟେ
ମହାସଭାର ମଧ୍ୟେ କଲେକ ବିଜୟେ । ୩୧୬ ।

ପଉଳସ୍ତି ବଶ୍ରବା ଅଗସ୍ତି ମହାମୁନେୟ
ଦେବର୍ଷି ବ୍ରହ୍ମର୍ଷି ବିଜୟେ ସଭାର ଆସ୍ଥାନେ । ୩୧୭ ।
ସୁଦେବ ମାରକଣ୍ଡ ଉଦ୍ଧାଳେକ ପୁରୋହିତେ
ତୁଲେଣ ଶିଷ ଯେହାଙ୍କର ଅନ୍ଧବ୍ରତେ । ୩୧୮ ।

ଗଉତମ ଉତଙ୍କ ଆବର ଭରଦ୍ୱାଦଶେ
ସହସ୍ରେ ସହସ୍ରେ ଶିଷି ଯେହାଙ୍କର ପାଶେ । ୩୧୯ ।
ସନକ ସନାତନ ସନନ୍ଦନ ସନତକୁମାର ବ୍ରହ୍ମର୍ଷି ଗୃର
ଅନ୍ଧବ୍ରତେକ ଶିଷ ଘେନି ସୟମ୍ବରେ ବିଜେ କର । ୩୨୦ ।

ମାଣ୍ଡବ୍ୟ ବିଭାଣ୍ଡକ ଋଷ୍ୟଶୃଙ୍ଗ ସହିତେ
ସଭାରେ ବିଜେ କଲେ ଲକ୍ଷେଣ ଶିଷ୍ୟ ଅହିବ୍ରତେ । ୩୨୧ ।
ସୁମନ୍ତକ ବାଲମିକ ଲୋମଶ ସତ୍ୟତପା
ଯେ ତିନି ଅହିବ୍ରତ ଶିଷ୍ୟ ଘେନି ବିଜୟେ ସମୀପା । ୩୨୨ ।
ଶାଯନ୍ତନୁ ପାରେଶ୍ୱର ବିଶ୍ୱାମିତ୍ର ସଙ୍ଗ ଋଷି
ଏଯେହାଙ୍କର ଲକ୍ଷେ ପନ୍ଦର ସହସ୍ର ଶିଷି । ୩୨୩ ।
ଷାଠିଯେ ସହସ୍ର ଶିଷ୍ୟ ଘେନି ବେଦବ୍ୟାସେ
ଶୁକ ମୁନି ଜଇମିନି ବଇଶମ୍ପାୟନ ଅଛନ୍ତି ପାଶେ । ୩୨୪ ।
ଲକ୍ଷେ ବ୍ରାହ୍ମଣ ଘେନି ଧୌମ୍ୟ ପୁରୋହିତେ
ଆକାଶୁଂ ଓହ୍ଲାଇଲେ ବିଶ୍ୱଦେବାଙ୍କ ସହିତେ । ୩୨୫ ।
ଋଷିମାନନ୍ତ ଦେଖି ଦ୍ରୋପଦେଶ୍ୱର ରାଜା
ଚରଣ ଉଦକ ଘେନି କରଇ ପାଦପୂଜା । ୩୨୬ ।
କୃଷ୍ଣାଞ୍ଜିନ ଗ୍ଭଲ ଗୋଟିଯେ ଗୋଟିଯେ ବଲ୍କଳ ସବୁନ୍ତି
ସମ୍ଭାବ ଥିଲା ସେ ସବୁ ଦ୍ରୋପଦେଶ୍ୱର ନୃପତି । ୩୨୭ ।
ପ୍ରଣପତ୍ୟ ହୋଇ ଶୁଣିଲା ଦ୍ରୋପଦ ନୃପତ୍ୟ
ଋଷିମାନେ ବୋଇଲେ ତବ ବାଞ୍ଛା ହୋଉ ଯେ ପରାପତ । ୩୨୮ ।
କୁଶହସ୍ତ ହୋଇଣ ଦ୍ରୋପଦେଶ୍ୱର ରାୟେ
ଗୃହ ଭଣ୍ଡାର ଧନ ସେ ବ୍ରାହ୍ମଣଙ୍କୁ ଦାନ ଦିଯେ । ୩୨୯ ।
ସଭାର ଈଶାନ ଭାଗେ ହୋଉଛି ଗୋଦୋହନ
ଦେବାଙ୍କି ବଳଭୋଜା ଦେବଙ୍କୁ ଶୀତଳ ଦ୍ରବ୍ୟମାନ । ୩୩୦ ।
ମନୁ ପୁଛା କଲେ ଅଗସ୍ତି ମହର୍ଷି
କେତେ ଧେନୁ ଦୋହନ କଲେ କହିବା ବିଶେଷି । ୩୩୧ ।
ସହସ୍ରେକ ଗାବେ ଗୋଷ୍ଠ ଯେକ ବୋଲି
ଶତେକ ଗୋଷ୍ଠରେ ଯେ ହୋଯେ ଯେକ ପଲ୍ଲୀ । ୩୩୨ ।
ଶତେକ ପଲ୍ଲୀରେ ନଉତଯେକ ବୋଲି
ଶତେକ ନଉତରେ ମହାଖୁଣ୍ଟେ କହିଲି । ୩୩୩ ।

---

୩୩୦।୧ ଈଶ୍ୱର ଆଳରେ କରାଇଲେ ଗୋ ଦୋହନ ।

ଶତେକ ମହାଖଣ୍ଡେ ହୋଇଲା ମହାଭୋଗ
ଦ୍ୱାଦଶ ମହାଭୋଗରେ ଯେତେ ଗୋଧନ ଖଟଇ । ୩୩୪ ।
ଦ୍ୱାଦଶ ମହାଭୋଗରେ ହୋଇଲା ଯେତେ ଗାଈ
ଅପାଦ ଶାନ୍ତ ନିମନ୍ତେ ଦ୍ରୋପଦ ଯେତେ ଗାଈ ଦୋହନ କରାଇ ।୩୩୫।
କ୍ଷୀର ନଦୀ ଗୋଟିଏ ବହିଯାଇଂ ବନେ
ସୁଖେ ପିବନ୍ତି ଛନ୍ଦେ ଉଦ୍ୟାନ ଜୀବମାନେ । ୩୩୬ ।
ବଦନ୍ତି ଅଗସ୍ତି ଶୁଣ ଆଦିବ୍ରହ୍ମା
ଦ୍ରୋପଦୀ ସୟମ୍ବର ଯେସନେକ ମହିମା । ୩୩୭ ।
ଲକ୍ଷେ ଲିଙ୍ଗ ପଞ୍ଚାମୃତେ କରାନ୍ତି ସ୍ନାହାନ
ଯେତେ ଦୂରେ ଅଛନ୍ତି ଶମ୍ଭୁ ଲିଙ୍ଗମାନ । ୩୩୮ ।
ଅନେକ ଶୀତଳ ବଳଭୋଜା ଦିଅନ୍ତି ଭଦ୍ରକାଳୀ
ପୋଡୁଅ ମେଷ ଛାଗଲ ଲକ୍ଷେ ଲକ୍ଷେ ବଳି । ୩୩୯ ।
ଋକ ଯଜୁ ସାମ ଅଥର୍ବ ଚୃର ବେଦ
ଲକ୍ଷେ ଲକ୍ଷେ ବ୍ରାହ୍ମଣେ ବରଣ ସମ୍ପାଦ । ୩୪୦ ।
ମହା ଯାଗଶାଳେ ଆହୁତି ଦିଅଇ ହବ
ମହାମନ୍ତ୍ର ବାକ୍ୟେ ସ୍ୱାହା ସ୍ୱଧା ଦେବା । ୩୪୧ ।
କରନ୍ତି ନୃତ୍ୟ ଗୀତ ଅନେକ ବିଦ୍ୟାଧରୀ
ଡାକନ୍ତି ଚଣ୍ଡପୁତ୍ରେ ମଙ୍ଗଳ ସୀଉକାର । ୩୪୨ ।
ଆଦିତ୍ୟ ସୋମ ମଙ୍ଗଳ ବୁଧ ବୃହସ୍ପତି
ଶୁକ୍ର ଶନୈଶ୍ଚର ଯେ ରାହୁ କେତୁ ଗ୍ରହ ସ୍ଥିତି । ୩୪୩ ।
ତିଥି ବାର ନକ୍ଷତ୍ର ଯୋଗ କଦନ୍ତି ଗ୍ରହପୁତ୍ରେ
ମଙ୍ଗଳ ପାଠ ଉଚ୍ଚେ ପଢନ୍ତି ଋଷିପୁତ୍ରେ । ୩୪୪ ।
ଯେସନେକ ସମ୍ପଦ ଦ୍ରୋପଦ ଭୁବନ
ଯେ ଯେତେକେ ନିୃପତି ଅବଛନ୍ତେ ଦିଅନ୍ତି ଦାନ । ୩୪୫ ।
ଉପନେକ ବାଟିଲା ନେଇ ଲଖର ଚଉକତି
ଧନକୁଡମାନ ଯେ ଦେବାଙ୍ଗ ବସନ ଥୁଅନ୍ତି । ୩୪୬ ।

---

୩୩୮। { ଲକ୍ଷେ ପଳ ପଞ୍ଚାମୃତେ ମହା ସ୍ନାହାନ
{ ଯେତେ ଦୂରେ ଅଛନ୍ତି ଶିବଗଣମାନ ।

୩୪୨। ଚଣ୍ଡପୁତ୍ର—ସ୍ତୁତି ପାଠକ, ଭାଟ ।

୩୪୬। ଉପନ—ଉପଢୌକନ-ଉପହାର ।

ରାଜାକେ ମାଣିକ୍ୟ ଶତେ ଶତେକ ବର୍ତ୍ତି
ବାହୁଡ଼ ଜଗଦ୍ଦୁଳା ଆଲୁଅମୟେ ପୃଥୀ । ୩୪୭ ।
ଧନୁ ଗୋଟିଏ ଯେ ତୋଣ ଗୋଟିଏ
ବେଢ଼ିଣ ଜଳନ୍ତୁ ହୀରା ଜଡ଼ିତ ଦୀପ ଶଏ । ୩୪୮ ।
ଦାସୀନେତ ପଟ୍ଟମା କ୍ଷୀନ ବସନ କୁଚେ
ଶତେ ଶତେ ଦୀପ ଜଳନ୍ତୁ ମର୍କତ ଜଡ଼ିତ ସମ୍ମୁରେ । ୩୪୯ ।
ପୁଣି ଥାପିଲେ ଅସିପତ୍ର ଗୋଟାଏ ଫଳକ ଗୋଟାଏ
ମୁକୁତା ଜଡ଼ିତ ତହିଂ ଜଳନ୍ତୁ ଦୀପ ଶଏ । ୩୫୦ ।
ଗଦା ଗୋଟାଏ କୋନ୍ତ ଗୋଟାଏ
ନୀଳା ଜଡ଼ିତ ତହିଂ ଜଳନ୍ତୁ ଦୀପ ଶଏ । ୩୫୧ ।
ସୁବର୍ଣ୍ଣର ରୁଖା ମର୍କତ ଜଡ଼ିତ ସହସ୍ରେ
ରାଜାକେ ୟେତେକ ଦୀପ ଜଳନ୍ତୁ ଗ୍ରୁମୁରେ । ୩୫୨ ।
ନେତର ଚନ୍ଦ୍ରାତପ ଉପରେ କନେକ ପୁଷ୍ପମାଳ ଖଞ୍ଜି
ଅଷ୍ଟରନ୍ଧ୍ରେ ଖଞ୍ଜିତ ମାଣିକ୍ୟ ପୁଞ୍ଜି ପୁଞ୍ଜି । ୩୫୩ ।

---

୩୪୯। ଦାସୀନେତ ... ...ସମ୍ମୁରେ-ଏହି ପଦ ସ୍ଥାନରେ ଅନ୍ୟ ପାଠ ଅଛି—

ଦାସୀନେତ ପଟ୍ଟମା ଧନ କୁଚ କୁଚ ଅପ୍ରମିତ
ନାନା ଉପହାର ଯେ ନ ଯାଇ ଉଦନ୍ତୁ ।
ଗଦା କୋନ୍ତ ଲର୍ଙ୍କିଆ ଶାବେଳୀ କରବାଳ
ରତ୍ନ ଜଡ଼ି କରି ୟେମାନ ଥୋଇଲା ସମ୍ମୁଖର ସଭାର ।
ବାଟନ୍ତ ମଣି ଅମ୍ବର ନେତ ବସ୍ତ୍ର ଭୂଷଣ
ଉପରେ ଚନ୍ଦ୍ରାତପ ଝଟକନ୍ତୁ ରତ୍ନ କରଣ ।
କର୍ପୂର ପନ୍ନଅର କସ୍ତୁରୀ ମିଶି ଛଡ଼ା
ଅଷ୍ଟରନ୍ଧ୍ରେ ମାଳମାନ ଲମ୍ବନ୍ତୁ ତହିଂ ଝରା ।
ପାଦ୍ୟେକା ବସ୍ତାର ଗନ୍ଧ ପୁଷ୍ପ ତୋଣମାନ
ଅତି ସାନନ୍ଦେ ବସିଲେ ରାଜାଗଣମାନେ ପୁଣ ।

ଯେହ୍ନମନ୍ତ ସମ୍ଭବେ ସମ୍ବାଦ ଅଛୁ ଲକ୍ଷେକ ରାଜାଙ୍କୁ
କୋବେର ଭୁବନ ନୁହେଁ ଯେ ପଟାନ୍ତର ଦେବାକୁ । ୩୫୪ ।
ଅମର ଭୁବନ ଅବା ପଟାନ୍ତର କରନ୍ତ
କଳପି ନୁହଇ ଯେ ଯହୁଁ ପୁନର୍ଜନ୍ମ ହୁଅନ୍ତି । ୩୫୫ ।
ଯେସନେକ ସଭା ସମ୍ଭବ ଯୁଗତେ
ଜଗନ୍ନାଥେ ପୁଚ୍ଛା କଲେ ବଳରାମଙ୍କ ଅଗ୍ରତେ । ୩୫୬ ।
ଯେ ଯେ ଦୁର୍ଲଭ ଲଖେକ ପାତିଲା ଦ୍ରୋପଦେ
ଯେ ଲଖ ବିନ୍ଧିବାକୁ ସ୍ୱାମୀ କେ ଅଛୁ ସାମର୍ଥେ । ୩୫୭ ।
ବଳରାମେ ବୋଇଲେ ବାବୁ ଶୁଣ ଜନାର୍ଦ୍ଧନ
ଦୃଷ୍ଟିଭେଦୀ ଅଟଇ ଯେ ରାଧେବ ସୁତ କର୍ଣ୍ଣ । ୩୫୮ ।
ନିଷ୍ଟୟେ କର୍ଣ୍ଣ ଯେ ମହାଲଖ ବିନ୍ଧିବ
ଦ୍ରୋପଦୀ କନ୍ୟା ମାନଗୋବନ୍ଧକଇ ଦେବ । ୩୫୯ ।
ଅଶକ୍ୟ ଅଗୋଚର ହୋ ଯେ ଅଟଇ ଆନକୁ
ଯେସନେକ ବଚର ଯେ ଦିଶଇ ଆମ୍ଭର ମନକୁ । ୩୬୦ ।
ଯେତେକ ବଚର ଯହୁଁ କହିଲେ ସଙ୍କର୍ଷଣ
ଶୁଣିଣ ହାସିଲେ ଯେ ଦେବ ନାରାୟଣ । ୩୬୧ ।
ଦ୍ରୋପଦ ରାଜା ଯେ ବ୍ୟାସକୃତ ଲଖ ପାତିଲା
ତଳେ ତୀର୍ଥଜଳ ଘଟେକ ଥାପିଲା । ୩୬୨ ।
ତଳକୁ ଦୃଷ୍ଟି କଲେ ଦିଶଇ ଛାୟା ମୀନ
ଅଦୃଷ୍ଟିରେ ଦୃଷ୍ଟି ଭେଦ ପାରିବଇ କର୍ଣ୍ଣ । ୩୬୩ ।
ବଳରାମେ ଅଟନ୍ତି ଭୂତ ଭବିଷ୍ୟ ଗ୍ୟାଂତା
ନ ଜାଣି କହିଲେ କ ଯେସନେକ ବାରତା । ୩୬୪ ।
ବଳରାମଙ୍କ ତୁଲେ କଥା ହୁଅନ୍ତେ ନାରାୟଣ
ହୃଦଗତେ ଚିନ୍ତା କଲେ ଚକ୍ର ସୁଦର୍ଶନ । ୩୬୫ ।
ଆଗ୍ୟାଂ ଦିଲେ ସ୍ୱାମୀ ଦେବ ଦାମୋଦର
ତୁ ଅନ୍ତରିଛେ ଭମୁଥିବୁଟି ଗୃହତାଳ ଉକ୍ରର୍ଗର । ୩୬୬ ।
ଯେବଣ ନାରାଜ ବିନ୍ଧିବେ ଭୀଷ୍ମ ଦ୍ରୋଣ କର୍ଣ୍ଣ
ଶଲ୍ୟ ଅଶ୍ୱତ୍ଥାମା ଜଦ୍ୟରଥ କୃପବ୍ରହ୍ମ । ୩୬୭ ।

---

୩୫୪।୧ ପୁଷ୍ପଶଯ୍ୟା ଗୋଟିଏ ଗୋଟିଏ ଦିଲେ ଯେ ବଧି ଲକ୍ଷେ ରାଜାମାନଙ୍କୁ ।

ଏ ସପତ ରଥୀ ଆଦି କରି ଭୂରିସବା ମହାବୀର
ଯେତେ ନାରାଜ ବନ୍ଧିବେ ତୋହୋଠାରେ ବାଜ ପଡିବେ ଭୂମିର ।୩୬୮।
ନାରାୟଣ ଆଗ୍ୟାଂଏ ସୁଦର୍ଶନ ଚକ୍ର ଗଲା
ଗୃଦ୍ରଡାଳ ଉଚ୍ଚର୍ଗରେ ଯାଇଂଣ ରହିଲା । ୩୬୯ ।
ଦେବ ଦାନବ ମାନବ ଆଦି କରି
କାହାକଇଂ ଦୃଶ୍ୟ ନାହିଂ ଚକ୍ରକୂଟ କଲେ ଦେବ ହରି । ୩୭୦ ।
ଚକ୍ରକୂଟ ମାୟା ଯହୁଂ ଶ୍ରୀହରି ଭିଆଇଲେ
ଚକ୍ରକୂଟ ହରି ବୋଲି ବ୍ରହ୍ମା ନାମ ଦିଲେ । ୩୭୧ ।
ଏସନକ ମାୟା କଲେ ଦେବ ଦାମୋଦର
ବଳରାମ ଦେବଙ୍କୁ ସେ ନୋହିଲା ଗୋଚର । ୩୭୨ ।
ଆକାଶେଣ ଦେଖିଲେ ବ୍ରହ୍ମା ଜଗତପିତା
ମର୍ତ୍ତ୍ୟେଣ ବ୍ୟାସେ ଦେଖିଲେ ଭୂତ ଭବିଷ୍ୟ ଗ୍ୟାଂତା । ୩୭୩ ।
ଆପଣେ ଜାଣନ୍ତି ଦେବ ଦାମୋଦର
ତିନି ଜଣହ୍ନଂ ଗୃର ଜଣଙ୍କୁ ନାହିଂ ନା ଗୋଚର । ୩୭୪ ।
ବ୍ରହ୍ମା ଦେଖି ଯେ ଅନେକ ସ୍ତୁତି କଲେ
ମାୟାଧର ବୋଲି ସେ ଅନେକ ଦ୍ୱନୋମ୍ରିଲେ । ୩୭୫ ।
ଜୟ ତୁ ମାୟାଧର ମାୟା ମେଖଳୀ
ଜୟ ତୁ ମାୟାଧର ଚକ୍ରକୂଟ ବନମାଳୀ । ୩୭୬ ।
ଜୟ ତୁ ମାୟାଧର ସପୂଳ ସଂସାର ଜନବନ୍ଧୁ
ଜୟ ତୁ ମାୟାଧର ପ୍ରଳୟାନ୍ତକ ସିନ୍ଧୁ । ୩୭୭ ।
ଜୟ ତୁ ମାୟାଧର ଅନନ୍ତ କାମରୂପୀ
ଜୟ ତୁ ମାଧବ ସପୂଳ ତନୁ ବ୍ୟାପି । ୩୭୮ ।
ଜୟ ତୁ ମାଧବ ସପୂଳ ଏକ ଆତ୍ମା
ଜୟ ତୁ ମାଧବ ଯୋଗମନ୍ତ୍ର ବ୍ରହ୍ମା । ୩୭୯ ।
ଜୟ ତୁ ମାଧବ ଅନନ୍ତ ଶ୍ରୀରଙ୍ଗୀ
ଜୟ ତୁ ମାଧବ ହୃଦେ ବ୍ୟାସ କୂଟ ଭଙ୍ଗୀ । ୩୮୦ ।

---

୩୮୦।୨ ଜୟ ତ ମାଧବ ସପୂଳ ଜନ ସଙ୍ଗୀ ।

ଜୟ ତୁ ମାଧବ ସଯୂଳ ଜନସଞ୍ଜା
ଜୟ ତୁ ମାଧବ କୃତାନ୍ତକ କାଳବଞ୍ଚା । ୩୮୧ ।
ଜୟ ତୁ ମାଧବ ମାଳେନ୍ଦୀ ପୁଷ୍ପ ବର୍ଣ୍ଣ
ଜୟ ତୁ ମାଧବ ମହାପାତକ ଦହନ । ୩୮୨ ।
ଜୟ ତୁ ମାଧବ ଭଗତ ବଚ୍ଛଳା
ଜୟ ତୁ ମାଧବ ଅନନ୍ତ ରୂପ କଳା । ୩୮୩ ।
ଜୟ ତୁ ମାଧବ ଭାରଥର ବନ୍ଧିଦ୍
ଜୟ ତୁ ମାଧବ ଶରଣ ରକ୍ଷଣ ବାସୁଦେବ । ୩୮୪ ।
ଜୟ ତୁ ମାଧବ ତବ ଚରଣେ ଶରଣ ମମ
ଶୂଦ୍ରମୁନି ସାରଳା ଦାସ ଶତେ ସହସ୍ର ଦଣ୍ଡ ପରଣାମ । ୩୮୫-୧୧୭୭ ।



## ଲକ୍ଷବନ୍ଧ

ବଇବସ୍ୱତ ମନୁ ପଚାରିଲେ ଶୁଣ ଅଗସ୍ତି ହେ
ଲକ୍ଷର ଚରିଣ ମୋତେ କହିବା ସନ୍ଦେହେ । ୧ ।
ଅଗସ୍ତି ବୋଇଲେ ଶୁଣ ହେ ରାଜନ
କହିତ ଶକ୍ୟ ନୋହଇ ଦ୍ରୌପଦ ଲକ୍ଷ ବିଧାନ । ୨ ।
ଧୃଷ୍ଟଦ୍ୟୁମନ ଯାଇ ବିଜେ କଲେ ସଭା
ଯେ ପାର ଗୋସାଇଁ ଲକ୍ଷ ଯେ ବିନ୍ଧିବା । ୩ ।
ମୁହିଂ ସୟମ୍ବର କଲି ଯହିଂର ନିମନ୍ତେ
ତହିଂକ କାରଣ ସ୍ୱାମୀ କରିବା ନା ମୋତେ । ୪ ।
ସ୍ୱାମୀ ରାଜାଧିରାଜେଶ୍ୱର ମାନଚକ୍ରବର୍ତ୍ତୀ
ଲକ୍ଷେ ରାଜା ମଣ୍ଡଳମଣି ସୋମବଂଶର ଆଧିପତି । ୫ ।
ଗୁଣ ବିଦ୍ୟାୟେ ବକତା ପରାକ୍ରମେଣ ଶକତା
ଧନେଣ ଗାରିମା ତେଜେଣ ବଳବନ୍ତା । ୬ ।

---

୩୮୪ { ଜୟ ତୁ ମାଧବ କମଳା ବଲ୍ଲଭ
{ ଜୟ ତୁ ମାଧବ ଭଗତ ସୁଲଭ ।

୧।୨ ଲକ୍ଷର ଚରିତ ମୋତେ କହିବା ମୁନି ହେ ।

ବଂଶେଣ ନକଳଙ୍କ ବେଦ ମନ୍ତ୍ରେଣ ପ୍ରସିଦ୍ଧ
ସଂଗ୍ରାମେ କଇଚ୍ଛାବନ୍ତ ନେ ନକଳଙ୍କ ଯୋଦ୍ଧି । ୭ ।
ଧୃଷ୍ଟଦ୍ୟୁମନଙ୍କର ଉପହାର ବଚନେ
କର୍ଣ୍ଣର ବଦନ ଚୃହାଂଲା ରାଜା ଦୁଯୋଧନେ । ୮ ।
କାହାଂକ ମଇନ ହୋଇଅଛ ତୃମ୍ଭ
ମହାଲକ୍ଷ ବନ୍ଧ ଲଭିବା ଇଚ୍ଛସେମ୍ଭ । ୯ ।
କର୍ଣ୍ଣ ବୋଇଲା ତୁମ୍ଭେ ଅନ୍ତ ମାନେ ମାନଗୋବନ୍ଧ
ଦ୍ରୋପଦ ବୋଇଲା ତୁମ୍ଭେ ରାଜାମାନେ ଲକ୍ଷ ବନ୍ଧ । ୧୦ ।
ତୁମ୍ଭନ୍ତ ସେ ବରଅଛୁ ଦ୍ରୋପଦୀ ନିମନ୍ତେ
ଅବରଣେ ମଧ୍ୟପାନେ ପଶିବା କେମନ୍ତେ । ୧୧ ।
ରାଜାମାନେ ତୁମ୍ଭେ ଆଗ ଲକ୍ଷ ବନ୍ଧିବ ପ୍ରତକ୍ଷେ
ତୁମ୍ଭେମାନେ ବନ୍ଧ ନୁଆରିଲେ ଆମ୍ଭେ ବନ୍ଧିବୁ ଯେ ପଛେ । ୧୨
ପାର କି ନ ପାର ବନ୍ଧିବ ନା ଯୁଗତେ
ତୁମ୍ଭର ନ ବନ୍ଧିଲେ ଆବର କେ ବନ୍ଧିବ କେମନ୍ତେ । ୧୩ ।
ସୋମବଂଶ ସୂର୍ଯ୍ୟବଂଶ ପୃଥୀକି ତୁମ୍ଭେ ମୂଳ
ଆବର ରାଜାମାନେ ତୁମ୍ଭର ବାହୁତଳ । ୧୪ ।
କର୍ଣ୍ଣର ବଚନେ ରାଜା ମାନଚକ୍ରବର୍ତ୍ତୀ
ଆସ୍ଥାନର ମଧ୍ୟୁଂ ରାଜା ଉଠିଲାଇଲା ଧାଡି । ୧୫ ।
ବାବୁ ମହିମା ସେ ଯେ ଧୃତରାଷ୍ଟ୍ରର ତନୟେ
ପ୍ରତକ୍ଷେ ଦିଶୁଅଛୁ ଅମରାଧିନାଥ ପ୍ରାୟେ । ୧୬ ।
ଶୃଙ୍ଗଳନ୍ତେ ଶୋଭିବନ ବନ୍ଦମ-ସିଂହ-ଠାଣି
ଝଟକନ୍ତ ଗଜମୁକୁତା ଯେ ବଚାନ ଶୁଦ୍ଧମଣି । ୧୭ ।
ଶିରେ ଅନର୍ଘ୍ୟମଣି-ମୁକୁଟ କୋଟିଏ ମାଣିକ୍ୟ ଲଗି
କୋଟିଏ ପାଦେ କମଳଣୀ ବଜଏ ସଉଭାଗୀ । ୧୮ ।
ଶୃଙ୍ଗଳନ୍ତେ ସୁବର୍ଣ୍ଣ ଅବେଷ୍ଟ ପଦୁପୁଂଟି
ଚଉରାଶି ଗୁଣ ଲକ୍ଷଣେ ପ୍ରେ ନୃପତି ଧୃତରାଷ୍ଟି । ୧୯ ।

---

୧୯।୨ ଧୃତରାଷ୍ଟି—ଧାର୍ତ୍ତିରାଷ୍ଟ୍ରି—ଦୁର୍ଯୋଧନ

ପ୍ରତକ୍ଷେ ସେ୍ୟ ପନଙ୍ଗାନାରାୟଣ ମୂର୍ତ୍ତି
ମେଦିରେ ଥାଇ କେଶିମାକ ପଚାରଇ ଦ୍ରୋପଦୀ । ୨୦ ।
କେବଣ ଦେଶର ସଖୀ ସେ୍ୟ ଅଟଇ ରାଜା
ଅମର ସ୍ୱର୍ଗ ତେଜ କ ବଜସେ୍ୟ କଲେ ବଡୋଜା । ୨୧ ।
କୁଙ୍କୁମ ଚନ୍ଦନ ଲେପନ ଅସରଳ ସୁତା ବରବେଶୀ
ମଙ୍ଗଳ ସରୂପ ତ ବାଭାଯୋଗ ଦିଶି । ୨୨ ।
କେଶିମା ବୋଇଲା ସେ୍ୟହାର ଭାରିଯା ଭାନୁବତୀ
ଅଷ୍ଟଦିନେ ପ୍ରଦାନ ହୋଉଥାଇ ଯୁଗତି । ୨୩ ।
ପନଙ୍ଗାନାରାୟଣ ରୂପ ଅଟଇ ସେ୍ୟହାର
ପିତା ମାତା ଆଦି କରି କାହାକୁ ନାହିଁ ନମସ୍କାର । ୨୪ ।
ଅତି ସୁକୁମାର ଅଟଇ ସେ୍ୟହାର କାସେ୍ୟ
ସରୂପ ଦିଶଇ ଗୋ ତରୁଣ ଆଦିତ୍ୟର ପ୍ରାସେ୍ୟ । ୨୫ ।
ଇନ୍ଦ୍ରପ୍ରଶସ୍ତ, ଯମପ୍ରଶସ୍ତ, ଜଇନ୍ତା, ହସ୍ତିନା, ବାରୁଣା
ସେ୍ୟ ପଞ୍ଚୁ କଟକର ରାଜା ସେ୍ୟ ଜମ୍ବୁଦ୍ୱୀପକୁ ଧାରଣା । ୨୬ ।
ପାଣ୍ଡବନ୍ତ ନାଶ କଲା ସେ୍ୟ ଜତୁର ଘର ତିଆଇ
ଉପାସେ୍ୟ ଚକ୍ରବର୍ତ୍ତୀ ସେ୍ୟହାକୁ ସରସମ କେହି ନାହିଁ । ୨୭ ।
ଦ୍ରୋପଦୀ ବୋଇଲା ସେ୍ୟହାକୁ ବୟସ ଅଳପ
ସେ୍ୟତେ ବେଳହୁଁ ସେ୍ୟ ହତ୍ୟା ବିବାଦୀ ମହାପାପ । ୨୮ ।
ପଥର ଘରେ ଲଇ ନାଶ କଲା ଗାନ୍ଧାରସେନର ବଂଶ
ଜଉ ସଜଳସ ଘର ତିଆଇ ସେ୍ୟ ପାଣ୍ଡବନ୍ତ କଲା ନାଶ । ୨୯ ।
ଛର୍ମାଙ୍କ ମହିମା ଜାଣି ଶତ୍ରୁକୁ ଜିଣଇ ଯେବେ ରଣେ
ବିଶ୍ୱାସଘାତେ ସୋଦରନ୍ତ ମାଇଲା ଅକାରଣେ । ୩୦ ।
ସେ୍ୟହାର ସମାନେ ସଖୀ ନାହିଁ ନା ମନ୍ଦ ଦୋଷୀ
ସେ୍ୟତେ ପାପିଷ୍ଠକୁ କମ୍ପେ ସଭାରେ ଦିଲେ ବସି । ୩୧ ।
ବିଚ ମଉଷଧି ସଖୀ ଗୋ ମନ୍ତ୍ରର ଉପାସେ୍ୟ
ସେ୍ୟମନ୍ତ ବାଗେଣ ଯେ ପ୍ରାଣୀଙ୍କ ନାଶ କସେ୍ୟ । ୩୨ ।

---

୨୧ । ୨ ବଡୋଜା—ଇନ୍ଦ୍ର

ଇହ ଲୋକେ ତାହାର ବଦନ ନ ଗୃହ୍ନିଂ
ରଉରବ ନର୍କେ ପଡଇ ପୁନରପି ଜନ୍ମ ନାହିଂ । ୩୩ ।
ଯେହ୍ନେନେକ ପାପିଷ୍ଠ ଯେବେ ଲକ୍ଷ ବନ୍ଧିବ
ବେଦ ଶାସ୍ତ୍ର ପୁରାଣମାନନ୍ତ ମିଥ୍ୟା ଯେ ହୋଇବ । ୩୪ ।
ଯେହ୍ନସନେକ ବଚନ୍ତେ କେଶିମା ଜନ୍ମସେମା
ଲକ୍ଷର ତଳେ ପ୍ରବେଶ ଦୁର୍ଯ୍ୟୋଧନ ମହାତେଜ ଘେନ । ୩୫ ।
ଧୃଷ୍ଟଦ୍ୟୁମନକୁ ଗୃହ୍ନିଂ ବୋଲଇ ବଚନ
କହ ଲକ୍ଷ ବନ୍ଧିବାର କେବଣ ଚରିତ୍ର ବିଧାନ । ୩୬ ।
ଧୃଷ୍ଟଦ୍ୟୁମନ ବୋଇଲେ ଶୁଣ କୁରୁପତି
ଲକ୍ଷ ବନ୍ଧିବାର କଥା ଶୁଣସି ନୃପତି । ୩୭ ।
ସାତ ତାଳ ଉଚ୍ଚେ ଅଛି କନକର ମୀନ
ତହିଂ ତଳେ ରାଧାଚକ୍ର ବୁଲେ ଘନ ଘନ । ୩୮ ।
ତାଳେକ ଉପରେ ଯେ ଅପୂର୍ବ ପଟାଏ
ତଳେ ଥୋଇଲା ଅଛି ଜଳଘଟ ଗୋଟାଏ । ୩୯ ।
ଉପର ପଟାରେ ଅଛି ଧନୁ ଯେକ ଲକ୍ଷ୍ୟ
ସେ ଧନୁ ଧରି ପଟାରେ ଉଠିବ ପ୍ରତକ୍ଷ । ୪୦ ।
ଉପରକୁ ଗଣ୍ଡି ମୁଠି କରଣ ରହିବ
ତଳେ ଜଳଘଟକଇ ନିରେଖି ଗୃହ୍ନିଂବ । ୪୧ ।
ନାରାଚ ବନ୍ଧିବ ଆକର୍ଣ୍ଣ ପୂରାଇ
ମାଛର ବାମ ଚକ୍ଷୁରେ ବାଣ ବନ୍ଧିବାକ ଯାଇ । ୪୨ ।
ଡାହାଣ ଚକ୍ଷୁ ବାଟେ ରହିବ ନିକଳି ଶର
ତେବେ ସେ ଲଭିବୁ ରାଜା ଦ୍ରୋପଦୀ ଆମ୍ଭର । ୪୩ ।
ଯେହ୍ନସନେକ ବଚନ ଶୁଣି କୁରୁପତି
ମହାଲକ୍ଷ ପଟାରେ ଯାଇଂ ଉଠିଲା ତତ୍ତତି । ୪୪ ।
ଦ୍ରୋପଦୀର ବଦନ ଗୃହ୍ନିଂଲା ମାନ ଯେ ଗୋବିନ୍ଦ
ମଦନେ ବେଭଲ ହୋଇଲା ଚକ୍ଷୁ ଥାଉଂ ଅନ୍ଧ । ୪୫ ।
ହବସେଣ କଛି ନ ଦଶିଲ ତାହାକୁ
ଲକ୍ଷର ତଳେ ରାଜା ଯେ ଦରଶିଇ ଧନୁକୁ । ୪୬ ।

ଧନୁ ବୋଲଣ ଯେ ବଢାଇଲା କର
ହସ୍ତ ପଶିଲା ଯାଇ ଜଳଘଟର ଉପର । ୪୭ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମନେ ଯେ ଉପହାସେ ବୋଲି
ପଳା ଯା ପଳା ଯା ବୋଲଣ ହଲେ ତାଙ୍କୁ ପେଲି । ୪୮ ।
ଧୃତରାଷ୍ଟ୍ର ପରାୟେ ହୋଇଲୁ କି ତୋହୋର ଚକ୍ଷୁ
ଚକ୍ଷୁ ଥାଉଂ ଥାଉଂ ତୁ ଅନ୍ଧ ହୋଉ ଅଛୁ । ୪୯ ।
ଧନୁ ଜଳଘଟ ତୁ ଯେବେ ନୁଆଁଇଲୁ ବାରି
ତୁ କସ ବନ୍ଧବୁ ଲଜ୍ଜା ଯାଅ ଯା ବାହୁଡି । ୫୦ ।
ବହୁତ ହିଂହାସ ଯେ ବୋଇଲା ଶିଖଣ୍ଡୀ
ବରବେଶ ହୋଇ ତୁ ରେ ସଂସାର ଜନ ଭଣ୍ଡି । ୫୧ ।
ଲାଜ ପାଇଣ ବସିଲା ମାନଗୋବିନ୍ଦ
ଆଡ଼ୋ ଆଡ଼ୋ ବୋଲି ବାହାଇଲା ଜାରାସନ୍ଧ । ୫୨ ।
ଲିଖର ତଳେ ଉଭା ହୋଇଲା ମଗଧେଶ୍ୱର ନାଥେ
ଲକ୍ଷେବଳ ଧନୁ ଧଇଲା ବାମ ହାଥେ । ୫୩ ।
ହ୍ୟୁଳକ ତୋଳି ଯେ ନୁଆଁଇଲା ଗୁଣ ଦେଇ
କରତାଳ ମାରି ହସିଲେ ସକଳ ନୃପସାଇଂ । ୫୪ ।
ଲାଜେଣ ବାହୁଡ଼ିଲା ସେ ମଗଧେଶ୍ୱର ରାୟେ
ମୁକୁଟ ପକାଇ ଯାଇ ସେ ବସିଲା ସଭାୟେ । ୫୫ ।
ତାହାର ଅଭିମାନ ଦେଖିଣ ନରପତି
ଶିଶୁପାଳ କୁମାର ଯେ ବାହାର ହୋଇଲା ଝାନ୍ତି । ୫୬ ।
ପ୍ରତଗ୍ୟାଂ ଆରମ୍ଭେ ସେ ଦମଘୋଷର ତନୁ
ଆକ୍ଷେଡି ଶିଶୁପାଳ ଧଇଲା ବେଗେ ଧନୁ । ୫୭ ।
ଦୁଇ ହାଥେ ଧରି ଆକ୍ଷେଷିଣ ତୋଳି
ନାସିକା ବାଟେ ରୋଧିର ପଡେ ତାର ଗଳି । ୫୮ ।

---

୪୭।୨ ହସ୍ତ ପଶିଲା ଯାଇ ସ୍ୱବର୍ଣ୍ଣ ଘଟ ଭିତର ।
୫୦।୧ ତୁ କସ ବନ୍ଧବୁ ଲକ୍ଷ ଯାଅ ଯା ଅପସରି ।

କୋପେଣ ଶିଖଣ୍ଡୀ ଯେ ଧଇଲା ପଛକତି
ଗଳଥା ଦେଇଣ ଯେ ସଭାକୁ ନେଲା ଝାଡି । ୫୯ ।
ଶିଶୁପାଳ ଅଭିମାନ ଦେଖିଣ ରୁକ୍ମଣ
ରେ ରେ କାର କରିଣ ସଭାରୁ ବାହାର ତତକ୍ଷଣ । ୬୦ ।
ଆକ୍ରଷଣ କରିଣ ଧନୁ ଯେ ଧଇଲ
ଭୂମିରୁ ଧନୁକୁ ସେ ଛଡାଇ ନ ପାରିଲା । ୬୧ ।
ପଳା ଯା ବୋଲିଣ ଅନେକ ଝିଙ୍ଗାସ ବୋଲି
ଶିଖଣ୍ଡୀ ତାଆଙ୍କ ବାଳକ ଯେ ପେଲି । ୬୨ ।
ସଭାରେ ଲାଜ ପାଇ ବସିଲା ରୁକ୍ମଣ ମହାଛନ୍ଦୀ
ସଭାରୁ ବାହାର ହୋଇଲା ନର୍ଥ୍ୟର ଗଣପତି । ୬୩ ।
ଲଖର ତଳେ ଯାଇଂ ପ୍ରବେଶ ହୋଇଲା
ଧନୁ ତୋଳି ସେ ଗୁଣ ଦେଇ ନୁଆଁଇଲା । ୬୪ ।
ଲଖର ତଳେ ସେ ପାଇଲା ମହାଲାଜ
ସଭାକୁ ଆସି ତ ସେ ନୁଆଁରଇ ମହାରାଜ । ୬୫ ।
ଶିଖଣ୍ଡୀ ହସ୍ତ ଧରି ନେଲାକ କୁଣ୍ଡିଆଇଂ
ସଭାର ଭିତରେ ଗୁଡିଲା ତାକୁ ନେଇଂ । ୬୬ ।
କାଶୀ ଦେଶର ରାଜା ଯେ କାଶୀଶ୍ୱର
ଲଖ ବନ୍ଧିବ ବୋଲି ସଭାରୁ ବାହାର । ୬୭ ।
ଧାଇଂ ଯାଇଣ ଧନୁ ଯେ ଧଇଲା ଆକ୍ରୋଷି
ଟାଳି ନୁଆଁରି ସେ ଅଭିମାନେ ବସି । ୬୮ ।
ଶିଖଣ୍ଡୀ ତାହାକୁ ବେଗେ ଧରି ତହୁଂ ନେଲା
ଗଳାରେ ହାଥ ଦେଇଣ ସଭାରେ ଗୁଡିଲା । ୬୯ ।
କାଶୀଶ୍ୱର ଅଭିମାନେ ରାଜା କଳିଙ୍ଗସେନ
ସଭାରୁ ବାହାର ହୋଇଲା କୋପମନ । ୭୦ ।
କଳିଙ୍ଗସେନ ଟାଳି ନୁଆଁଇଲା ଧନୁ
ପଳା ଯା ବୋଲି ପେଲି ଦିଲା ଦ୍ରୋପଦର ତନୁ । ୭୧ ।

---

୬୨ । ଶିଖଣ୍ଡୀ—ଶ୍ରୀଖଣ୍ଡୀ ।

କଳଙ୍ଗସେନ ଅପମାନେ ନୃପତି ଶଅମ୍ବର
ପ୍ରତଗ୍ୟାଂ କରଣ ରାଜା ସଭାରୁ ବାହାର । ୭୨ ।
ମହାପ୍ରତାପୀ ସେ ନୃପତି ବଳବନ୍ତା
ଅସୁରେଶ୍ୱର ମହାରାଜା ଯେ ସଂଗ୍ରାମେଣ ଶକତା । ୭୩ ।
ଲଖର ତଳେ ଯାଇଂ ହୋଇଲା ପରବେଶ
ପ୍ରତଗ୍ୟାଂ ସାରଥେ ଧନୁକୁ କରଇ ଆକର୍ଷ । ୭୪ ।
ଶତେସିଂଘର ଯେ ବଳ ତାହାର ପରାକ୍ରମ
ପୃଥିର ରାଜା ହୋଇ ସଂଗ୍ରାମେ ତାକୁ ନାହିଂ ସମ । ୭୫ ।
ଆକ୍ଷେଷିଣ ଧନୁ ଯେ ଧଇଲା ନୃପମଣି
ଆକାଶ କମ୍ପିଲା ତାହାର ଗର୍ଜନ ନାଦ ଶୁଣି । ୭୬ ।
ଭୁଜେଣ ଧନୁ ଧରି ଉଭା ହୋଇଲା ରାୟେ
କୋପେଣ ଗର୍ଜଇ ସେ ମତ୍ତ ନାଗ ପ୍ରାୟେ । ୭୭ ।
ଗୁଣ ଦେବାକୁ ବାମ ଭୁଜେ ଧନୁ ତୋଳ
ଆକ୍ରଷଣ ଘାୟେ ମୁଖୁଂ ରୋଧିର ତାହାର ପଡିଲା ନିକଳି । ୭୮ ।
ଲଜେ ପାଇ ବସିଲା ଅସୁରାଧି ନୃପତି
ସଭାରୁ ବାହାର ହୋଇଲା ବଜ୍ରଲଭ ମହାରଥୀ । ୭୯ ।
ଲଖ ସନଧେ ପ୍ରବେଶ ହୋଇଲା ମହାରାୟେ
ଧନୁ ଆକ୍ରଷଇ ରାହୁର ତେଜ ପ୍ରାୟେ । ୮୦ ।
ଧନୁ ଧରି ତୋଳ ନୁଆରିଲା ଭୁଜବଳେ
ମାଡି ପଡିଲା ଧନୁ ବଜ୍ରଲଭର ବଛଥଳେ । ୮୧ ।
ଉନ୍ମନସାହା ହୋଇ ପଡିଅଛି ଅସୁରାଧି
ଭୁଜତୋଳ ଧଇଲା ଶିଖଣ୍ଡୀ ମହାଯୋଧୀ । ୮୨ ।
ଶଅମ୍ବର ବଜ୍ରଲଭ ଯହୁଂ ପାଇଲେ ଅଭିମାନ
ସଭାରୁ ବାହାର କେହି ନୋହିଲେ ଅସୁର ରାଜନ । ୮୩ ।
ଅନେକ ଦେଶର ଯେ ରାଜାଗଣ ଉଠି
କେହି ଟୁଳ ନୁଆରିଲେ ଶିବର ଧନୁ ଗୋଟି । ୮୪

୭୭।୨ କୋପେଣ ଗର୍ଜଇ ସେ ମତ୍ତବ୍ୟାଘ୍ର ପ୍ରାୟେ ।
୭୨।୧ ସମ୍ବମ୍ବର—ଶମ୍ବର । ୭୪।୨ ସାରଥେ—ସାର୍ଥକେ ।
୮୧।୨ ବଛଥଳେ—ବକ୍ଷସ୍ଥଳେ ।

ବସୁଧାର ନନ୍ଦନ ନାରକା ମହାବୀର
ରେ ରେ କାର ଶବଦ କରି ସଭାରୁ ହୋଇଲା ବାହାର । ୮୫ ।
ଲକ୍ଷର ତଳେ ଯାଇଂ ପ୍ରବେଶ ହୋଇଲା
ବାମ ଭୁଜେ ଧନୁ ଧରି ଊର୍ଦ୍ଧଗତେ ତୋଳିଲା । ୮୬ ।
ହ୍ମଲେଣ ପାଦ ଦେଇ ମାଡ଼ିଲା ଶିବଧନୁ
ହ୍ନଲେ ଗୁଣ ଦେଇ ନୁଆରଇ ସେ ବସୁଧାର ତନୁ । ୮୭ ।
ଲୋଭେଣ ନାରକା ଧନୁ ନ ଛାଡ଼େ ହାଥରୁ
ଶିଖଣ୍ଡୀ ବୋଇଲା ଆବର ଥାଇ କସ କରୁ । ୮୮ ।
ମଲା ଯା ସଭାକୁ ବୋଲି ବୋଇଲା ଧୃଷ୍ଟ ଯେ ଦୃମନ
ଲଜ୍ଜେଣ ବାହୁଡ଼ିଲା ସଭାକୁ ଯାତୁଧାନ । ୮୯ ।
ସମସ୍ତ ରାଜାମାନେ ବସିଲେ ହେଠ ମାଥ
ଦେଖିଣ ବିଷାଦ ହୋଇଲା ଦ୍ରୋପଦ ନୃପତ୍ୟ । ୯୦ ।
ସଭାରେ ବିଜେ କଲେ ରାଜାନ୍ତ ସମାର୍ଜି
ସମାଧାନ କରି ରାଜା ଅଭିମାନ ପରିତ୍ୟାଜ୍ଞ । ୯୧ ।
ଦ୍ରୋପଦ ବୋଇଲା ଗୋସାଇଂ ଛତ୍ରୀଙ୍କର ବିଧାନ
ଏଥୁ କଥାକୁ କେହ୍ନି ନ କରିବା ଅଭିମାନ । ୯୨ ।
ଯେହୁ ପାରି ଲକ୍ଷ ବିନ୍ଧସି ନୃପମଣି
ଓହୋ କୁଳେ ଲଜ୍ଜା ଉପୁଜୁଅଛୁ ଜାଣି । ୯୩ ।
ରାଜାମାନେ ଯତ୍ନଂ ହୋଇଲେ ମଉନବ୍ରତ
ଯୋଦ୍ଧା ଅମନାତ୍ୟଙ୍କୁ ବୋଇଲା ଦ୍ରୋପଦ ନୃପତ୍ୟ । ୯୪ ।
ଛତ୍ରୀ ହୋଇ କରି କେହୁ ଅଛ ସାମରଥ
ଯେ ଲକ୍ଷ ବିନ୍ଧିବ କନ୍ୟା ଦେବଇ ଏଥୁ ମୋର ସତ୍ୟ । ୯୫ ।
ଦ୍ରୋପଦର ବଚନେ ମାନଚନ୍ଦ୍ରବ୍ରଣ୍ଣ
କର୍ଣ୍ଣର ବଦନ ରାଜା ଗୃହିଂଲା ତଡ଼ିତ । ୯୬ ।
କାହିଂକ ବିଲମ୍ବ କରୁଅଛ ମଇନ୍ଦ୍ର
ଏଥୁ ବଚନ ଶୁଣି ଯେ ଆଦିତ୍ୟର ସୁତ । ୯୭ ।

---

୯୧।୨ ସନମାନ କରି ରାଜା ଅଭିମାନ ପରିତ୍ୟାଜ୍ଞ ।

୮୭।୨ ତନୁ—ପୁତ୍ର

ସଭାରୁ ବାହାର ହୋଇଲା ବୀର କର୍ଣ୍ଣ
ଧାର୍ମିକ ବିବେକ ସେ ସୁନ୍ଦର ଲୋହିତ ବର୍ଣ୍ଣ । ୯୮ ।
ଅମୃତ କୁଣ୍ଡଳ ଶୋଭିତ ବେନି କର୍ଣ୍ଣ
ବାଲ ଅର୍କ ଜାତ ହୋଇଲା କ ପ୍ରେ ମଞ୍ଚ ଭୁବନ । ୯୯ ।
ଶିରେ ମଣି ମୁକୁଟ ଗୃଳନ୍ତେ ସିଂହଠାଣି
ଦ୍ରୌପଦୀ ବୋଇଲେ ପ୍ରେ କେବଣ ଦେଶର ନୃପମଣି । ୧୦୦ ।
କେଶିମା ବୋଇଲା ତୁ ଗୋ ଶୁଣସି ପାଞ୍ଚାଳୀ
କୋଇନ୍ତାପ୍ରେ ବୀର୍ଯ୍ୟ ହଲେ ଅଂଶୁମାଳୀ । ୧୦୧ ।
ଆଦିତ୍ୟର ବୀର୍ଯ୍ୟେ ଜାତ ପ୍ରେ କର୍ଣ୍ଣ ମହାବଳୀ
ଅବିଭାଇତ କାଳେ ବିଦ୍ୟା ପରୀକ୍ଷ କଲେ ଭୋଜର ଦୁଲାଳୀ । ୧୦୨ ।
ଲାଜେ ଦେବୀ ଗର୍ଭେ ନ ଧଇଲେ ଆଦିତ୍ୟଙ୍କ ବୀର୍ଯ୍ୟ
ସଇନ୍ଦ୍ କର୍ଣ୍ଣବାଟେ ଉପୁଜିଲା ଆତ୍ମଜ । ୧୦୩ ।
କର୍ଣ୍ଣେ ଜାତ ହୋଇଲା କର୍ଣ୍ଣ ପ୍ରେହାର ନାମ
ନତ୍ୟାପତ୍ତ ବିଧଂସଇ ଶତେ ଭାର ସୁବର୍ଣ୍ଣ । ୧୦୪ ।
ଗାତେ ଗୃଳନ୍ତେ ଯେ ବସୁଧା ମୁଖରୁ ରୁଧିର ବହି
ତରେଣ ନତ୍ୟାପତ୍ତ ଶତେ ଭାର ସୁବର୍ଣ୍ଣ ଲଞ୍ଚ ହଅଇ ମହି । ୧୦୫ ।
ଦାନେ ଶୂରବନ୍ତା ମାନେ ଶୂରବନ୍ତା ବଳେଣ ବଳବନ୍ତା
ଦୁର୍ଯୋଧନର ମଇତ୍ର ପ୍ରେ ସାଂଗ୍ରାମେ ଶକତା । ୧୦୬ ।
ଲଖର ତଳେ ଯାଇଂ ପ୍ରବେଶ ବୀର କର୍ଣ୍ଣ
ବଳରାମ ବୋଇଲେ ହୋ ଦେଖ ଜନାର୍ଦ୍ଦନ । ୧୦୭ ।
ପ୍ରେହିକ୍ଷଣି କର୍ଣ୍ଣ ଯେ ମହାଲଖ ବିନ୍ଧିବ
ଦ୍ରୌପଦୀ ଦେନି ରାଜା ମାନଗୋବିନ୍ଦ ଯିବ । ୧୦୮ ।
ଗୋବିନ୍ଦେ ବୋଇଲେ ତୁମ୍ଭେ ଗ୍ୟାମୀ ମହାଦ୍ୱିଜ୍ଞି
ତୁମ୍ଭର ବଚନ ମିଥ୍ୟା ହୋଇବ କି ସ୍ୱାମୀ । ୧୦୯ ।
ପ୍ରେମନ୍ତର ସମପ୍ରେ କର୍ଣ୍ଣ ମହାରଥୀ
ବାମ କରେ ଧନୁ ତୋଳି ଧଇଲା ତତକ୍ଷଣାନ୍ତ । ୧୧୦ ।
ହୁଡଳେ ପାଦ ଦେଇ ମାଡିଲା ବେଗେ ଧନୁ
ଅବହାଳେ ଗୁଣ ବସାଇଲା ରାଧେବର ତନୁ । ୧୧୧ ।

---

୧୦୪ । ୨ ନତ୍ୟାପତ୍ତ—ନତପ୍ରତ୍ତ-ନତ ନତ । ୧୧୧ । ୨ ଅବହାଳେ-ଅବହାଳେ-ଅନାୟାସରେ

ଗୁଣ ଦେଇ ଧନୁ ଆମଞ୍ଜନ କଲା
ସାଧୁ ସାଧୁ କର୍ଣ୍ଣ ବୋଲି ସଭାସ୍ତେ ଧ୍ୱନୟେ ଶୁଭିଲା । ୧୧୨ ।
ଧୃଷ୍ଟଦ୍ୟୁମନକୁ ପଚାରଇ ବୀର କର୍ଣ୍ଣ
ଲଖର ଚରିତ କହ ତୋର କେଉଂଣ ବିଧାନ । ୧୧୩ ।
ଧୃଷ୍ଟଦ୍ୟୁମନ କହଇ ଶୁଣ କର୍ଣ୍ଣ ମହାଛତ୍ରୀ
ଯାନ୍ତ ତାଳ ଉଚ୍ଚର୍ଗ ଲଖ ଉଦ୍ଧର୍ଗତ । ୧୧୪ ।
ରାଧାଚକ୍ର ଅଛି ସହସ୍ରେକ ଧାର
ଶୂନ୍ୟେଣ ଭ୍ରମଇ ସେ କୁଲାଲ ଚକ୍ର ଆକାର । ୧୧୫ ।
ତହିଂର ଉପରେ ଅଛି ସୁବର୍ଣ୍ଣର ବୋହି
ସେ ରୂପ ନରେଖିବୁ ଜଳ ଘଟଇ ଗୃହ୍ନିଂ । ୧୧୬ ।
ଗୁହି ନରେଖପନ୍ତେ ତଳକୁ ହୋଇବ ଦୃଷ୍ଟି
ନାରାଜ ବନ୍ଧିବ ଉପରକୁ କଟିବ ମୁଷ୍ଟି । ୧୧୭ ।
ଚକ୍ର ନକଳ ମାଛର ଫୁଟିବ ବାମ ଆଖି
ଯେସନେକ ସରୂପେ ବନ୍ଧିଲେ ଦେବଇଂ ଚନ୍ଦ୍ରମୁଖୀ । ୧୧୮ ।
କୁମାର ବଚନ ଶୁଣି କର୍ଣ୍ଣ ମହାରଥୀ
ଲଖ ପଟା ଉପରେ ଯାଇ ଉଠିଲେ ତତକ୍ଷଣାନ୍ତ । ୧୧୯ ।
କୋଡା ଆମଞ୍ଜନ କଲା ଗୁଣ ଟଙ୍କାର ଶବଦ
ବିଦ୍ୟାଧର ହାସିଲେ ଶବଦ ଘୋର ନାଦ । ୧୨୦ ।
ତଳକୁ ଦୃଷ୍ଟି ଯେ ଉପରକୁ ମୁଷ୍ଟି
କର୍ଣ୍ଣର ତହିଂକ ଯେ ସବୁଙ୍କର ଦୃଷ୍ଟି । ୧୨୧ ।
ଆନ୍ନେଷି କର୍ଣ୍ଣବୀର ବନ୍ଧିଲା ନାରାଜଇ
ଯୃତିତାଳ ଉଚ୍ଚର୍ଗେଣ ଚକ୍ରରେ ଅନ୍ତରୀକ୍ଷେ ବାଜଇ । ୧୨୨ ।
ବାହୁଡି ନାରାଜ ପଡଇ ଭୂମିଗତେ
ନୋହିଲା ନୋହିଲା ବୋଲି ବୋଇଲେ ସମସ୍ତେ । ୧୨୩ ।
ଲାଜ ପାଇ କର୍ଣ୍ଣ ବାହୁଡଇ ତଡନ୍ତ
ସଭାନ୍ତ୍ର ବାହାର ହୋଇଲେ ଦ୍ରୋଣ ମହାରଥୀ । ୧୨୪ ।
ପ୍ରଚଗ୍ୟାଂ କରି ଭାରଦ୍ୱାଦଶଙ୍କର ତନୁ
ଆନ୍ନେଷି ଧଇଲେ ଦୁଷ୍ଟ ପିନାକୀ ଧନୁ । ୧୨୫ ।

---

୧୨୦।୧ କୋଡା—ଗୁଣଟଣୀ
୧୨୫।୨ ପିନାକୀ ଧନୁ—ପିନାକ ଧନୁ । ପିନାକ ଅର୍ଥରେ ପିନାକୀ ଓଡ଼ିଆରେ

ନାରାଜ ପୂରେଇ ପଟା ଉପରେଣ ଉଠି
ତଳକୁ କରି ଦୃଷ୍ଟି ପଟା ଉପରକୁ ମୁଷ୍ଟି । ୧୨୬ ।
ଆକର୍ଷି ନାରାଜ ବନ୍ଧିଲେ ଦ୍ରୋଣଗୁରୁ
ସୁଦର୍ଶନ ଚକ୍ରେ ବାଜି ନାରାଜ ପଡ଼ିଲାକ ଦୂରୁ । ୧୨୭ ।
ସଭାରେ ଲଜ ପାଇଲେ ଗୁରୁ ମହାତମା
ପିତାର ଅଭିମାନେ ବାହାର ଅଶ୍ୱତ୍ଥାମା । ୧୨୮ ।
ପ୍ରତିଜ୍ଞାଂ କରିଣ ସେ ଦ୍ରୋଣଙ୍କର ତନୁ
ଗୁଣ ଟଙ୍କାର କରି କରେ ଧଇଲେକ ଧନୁ । ୧୨୯ ।
ପଟାର ଉପରେ ଉଠିଲେ ଯାଇଂ କୋପେ
ଆକର୍ଷି ନାରାଜ ବନ୍ଧିଲେ ପରତାପେ । ୧୩୦ ।
ଗୃରତାଳ ଉଛର୍ଗେ ସୁଦର୍ଶନ ଚକ୍ରେ ବାଜି
ବେନିଖଣ୍ଡ ହୋଇଲେ ନାରାଜ ଭୂମିରେ ପଡ଼ଇ ଭାଜି । ୧୩୧ ।
ଲଜ ପାଇ ବସିଲେ ଅଶ୍ୱତ୍ଥାମା ମହାରଥୀ
ସଭାରୁ ବାହାର ହୋଇଲେ ଧୃଷ୍ଟ ସେନାପତି । ୧୩୨ ।
ଲକ୍ଷରେ ସନ୍ନିଧେୟ ମିଳିଲେ ଗାଙ୍ଗେବ
ଆକର୍ଷଣ କରି ଘେନିଲେ ଶିବ ଗୃପ ବେଗ । ୧୩୩ ।
ଧୃଷ୍ଟେ ପଚାରିଲେ ଦ୍ରୁପଦର ବାଳେ
ଆମ୍ଭେ ଯେବେ ଲକ୍ଷ ବିନ୍ଧିବୁ ଧର୍ମବଳେ । ୧୩୪ ।
ଦାରା ସମ୍ବରଣ ଆମ୍ଭେ କରିଅଛୁ ବାବୁ
ଆମ୍ଭେ ଲକ୍ଷ ବିନ୍ଧିଲେ କନ୍ୟା ଦୁର୍ଯୋଧନକୁ ଦେବୁ । ୧୩୫ ।
ଶିଖଣ୍ଡୀ ବୋଇଲେ ବିନ୍ଧ ଯେ ତୋହୋର ଆଜ୍ଞାଂ
ଯେବେ ଧୃଷ୍ଟ ତୋହୋର ଦେଖିବା ପ୍ରତିଜ୍ଞାଂ । ୧୩୬ ।
ଧନୁ ଧରି ଧୃଷ୍ଟେ ପ୍ରତିଜ୍ଞାଂ କରୁଥିଲେ
ଶିଖଣ୍ଡୀକି ଦେଖି ସେ ବାହୁଡ଼ି ଆଇଲେ । ୧୩୭ ।
ଦୁର୍ଯୋଧନ ବୋଇଲା ତାତ ବାହୁଡ଼ିଲ କିସ ଅର୍ଥେ
ଧୃଷ୍ଟେ ବୋଇଲେ ହୋ କଷଣ ପଡ଼ିଲାକ ମୋତେ । ୧୩୮ ।
ସଭାରେ ମଣ୍ଡନ ବ୍ରତେ ବସିଲେ ମହାମଲ୍ଲ
ସଭାରୁ ବାହାର ହୋଇଲେ ରାୟଗୁରୁ ଶଲ୍ୟ । ୧୩୯ ।

ଲୋଖର ତଳେ ଯାଇଂ ହୋଇଲେ ପରବେଶ
ଧନୁ ବାମ କରେ ଧରି କଲେ ଗୁଣ ଘୋଷ । ୧୪୦ ।
ପଟାର ଉପରେ ଉଠିଲେ ନାରାଜେକ ପ୍ରବେଶ
ତଳକୁ ଦୃଷ୍ଟି ଉପରକୁ ମୁଷ୍ଟି କରି ବାନ୍ଧିଲେ ନଠାଇ । ୧୪୧ ।
ଛିନତାଳ ନାରାଜ ଯେ ଉପରକୁ ଉଠି
ଭୂମିରେଣ ନାରାଜ ଯେ ପଡ଼ିଲା ଲେଉଟି । ୧୪୨ ।
ରାଜାମାନେ ହସିଲେ କରତାଳ ଦେଇ
ଶଲ୍ୟ ମହାରଥୀ ବସିଲେ ଅପମାନ ପାଇ । ୧୪୩ ।
ରାମ୍ଭୁରୁ ଶଲ୍ୟ ଯହୁଂ ବସିଲେକ ଲାଜେ
ଆସ୍ତାନୁ ଓହ୍ଲାଇଲେ କୃପ ଯେ ଆଗୃର୍ଯ୍ୟ । ୧୪୪ ।
ଆଡୋ ଆଡୋ ବୋଲି ଯାଇଂ ଧନୁକୁ ଧଇଲେ
ପଟାର ଉପରେ ଉଠି ନାରାଜ ବାନ୍ଧିଲେ । ୧୪୫ ।
ସର୍ବେଣ ନାରାଜ ଯେ ଉଠିଲା ତାଳ ଭେଦ
ବାହୁଡ଼ି ନାରାଜ ପଡ଼ିଲା ମେଦନୀ । ୧୪୬ ।
ଦେଖି କରି ସମସ୍ତେ ହୋଇଲେ ବ୍ୟାଜ ବ୍ୟାଜ
ଲାଜେଣ ବାହୁଡ଼ିଲେ କୃପ ଯେ ଆଗୃର୍ଯ୍ୟ । ୧୪୭ ।
ମଉନବ୍ରତ ହୋଇ ବସିଲେ ମହାଋଷି
ସଭାରୁ ବାହାର ହୋଇ ଭୂରିସବା ମହାରଥୀ । ୧୪୮ ।
ରେ ରେ କାର କରି ପଟାରେ ଉଠିଲେ
ଲକ୍ଷେ ବଳ ଧନୁ ଧରି ହସ୍ତରେ ଆମଞ୍ଚିଲେ । ୧୪୯ ।
ମହା ଖିଷ୍ଟମୂର୍ତ୍ତି କରି ନାରାଜେକ ସନ୍ଧି
ରୋଷଭରେ ମହାବୀର ନାରାଜ ଧରି ବାନ୍ଧି । ୧୫୦ ।
ଗୃରିତାଳ ପରିଯନ୍ତେ ଉପରକୁ ବାଣ ଗଲା
ଚନ୍ଦ୍ରେଣ ହାବୋଡ଼ି ବାଣ ବାହୁଡ଼ି ଅଇଲା । ୧୫୧ ।
ନୋହିଲା ନୋହିଲା ବୋଲି ବୋଇଲେ ସମସ୍ତ ରାଜ ଦେବା
ତହୁଂ ଲାଜ ପାଇ ଆସ୍ତାନେ ବସିଲେ ଭୂରିସବା । ୧୫୨ ।

---

୧୪୬।୧  ସର୍ବେଣ—ସର୍ବେ ମାନ ।

ଆସ୍ତାନୁ ଡେଇଂଣ ପଡିଲା ଜଦ୍ୟରଥ
ଲଖର ତଳେ ପରବେଶ ଦୁଶୀଳା ପ୍ରାଣନାଥ । ୧୫୩ ।
ଧନୁ ଧର ପଠା ଉପରେଣ ଉଠି
ତଳକୁ ଦୃଷ୍ଟି ଯେ ଉପରକୁ କଲା ମୁଷ୍ଟି । ୧୫୪ ।
ଆନ୍ୱେଷଣ କର ନାରାଜ ପୂରେଇ ଉଚ୍ଛୁଡିଲା
ବେକର ଉପରେ ଧନୁ ମାଡଣ ପଡିଲା । ୧୫୫ ।
ମୁହଁ ମାଡ ତଳେ ପଡିଲା ନୃପତି ଜଦ୍ୟରଥ
ନାସିକା ମୁହଁ ବାଟେ ବହଇ ଶୋଣିତ । ୧୫୬ ।
ପଡଣ ଅସାଷ୍ଟମ ଯେ ହୋଇଲା ନୃପମଣି
ଧୃଷ୍ଟଦ୍ୟୁମନେ ଧନୁ ଉପରୁ କାଢି ଆଣି । ୧୫୭ ।
ପଳା ଯା ବୋଲି କର ପେଲି ଦେଲା ଶିଖଣ୍ଡୀ
ପୁଣ ଥୋକାଏ ଦୂରେ ପଡିଲା ମୁହଁ ମାଡ । ୧୫୮ ।
କର୍ଣ୍ଣାଟ ଦେଶର ରାଜା କନ୍ଦର୍ପ ନୃପତି
ଲଖ ବନ୍ଧିବାକୁ ଆସଇ ମହାଛତ୍ରୀ । ୧୫୯ ।
ଆନ୍ୱେଷିଣ ଧନୁ ରାଜା କରେଣ ଧଇଲା
ପଠା ଉପରେ ଉଠି କୋଡା ଆମଞ୍ଚନ କଲା । ୧୬୦ ।
ମାଡଣ ଧନୁ ଯେ ପଡିଲା ହୃଦଗତେ
ପଠାର ଉପରେ ରାଜା ପଡିଲା ମୋହଗତେ । ୧୬୧ ।
ଧାଇଂ ଯାଇଂ ପାଖେ ମିଳିଲା ଶିଖଣ୍ଡୀ
ଦୁଇ ହାଥେ ଧନୁ ଧର ହୃଦରୁ ତାର କାଢି । ୧୬୨ ।
ଯେମନ୍ତେ ଅପାର ରାଜା ବାହୁଡି ଅଇଲେ
ଲଖ ବନ୍ଧ ନ ପାର ଅଭିମାନେ ବସିଲେ । ୧୬୩ ।
ଲବଦ ହୋଇ ସଭାରେ ବସିଲେ ସମସ୍ତ ନୃପତି
ଲଖ ବନ୍ଧିବାକୁ କାହାର ନ ବଳଇ ମତି । ୧୬୪ ।
ସଭାରେ ପ୍ରବେଶ ହୋଇଲେ ଧୃଷ୍ଟଦ୍ୟୁମନ
ଦେଖେ ଦେବ ରାଜାଗଣମାନେ କମ୍ପେ ହୋଇଲ ମଉନ । ୧୬୫ ।

---

୧୫୩।୧ ଜଦ୍ୟରଥ—ଜୟଦ୍ରଥ ।

ଲଖ ବନ୍ଧିବାକୁ ଆସିବ ନା ଗୋସାଇଂ
ଯେତେକେ ଆର୍ଦ୍ଧେ ଲ ମୁଂ ସମ୍ଭଳ ଯହିଂର ପାଇଂ । ୧୬୬ ।
ଅନ୍ତେ ଆସି ଯେ ହୋଉଛ ନିଷ୍ଫଳ
ତୁମ୍ଭଙ୍କୁ ଲଜ୍ଜା ତ ହୋଉଛି ସର୍ବକାଳ । ୧୬୭ ।
ପୁଣ ପୁଣ ପଚ୍ଚରଇ ସେ ଦ୍ରୋପଦର ବଚ୍ଛ
ଲଖ ବନ୍ଧିବାକୁ କାହାର ନାହିଂ ନା ଇଚ୍ଛା । ୧୬୮ ।
ଲଖର କଉକ ନ କରନ୍ତି ନା ନମୂନ
କନ୍ୟା ନେମାକୁ ଯେ ସବୁଙ୍କର ମନ । ୧୬୯ ।
ରାଜାଏ ବୋଇଲେ ତୁମ୍ଭେ ଶୁଣସି ଶିଖଣ୍ଡୀ
ଦେବଙ୍କୁ ଦୁର୍ଲଭ ଯେବଣ ଲଖ ଖଣ୍ଡି । ୧୭୦ ।
କାହିଂ ତୋର ଚକ୍ର କାହିଂ ତୋର ମଧ୍ୟ
ଆବର ଅଶକ୍ୟ ଦେଖ ଧନୁବଳ ପ୍ରେକଲକ୍ଷ । ୧୭୧ ।
ଅଦୃଷ୍ଟିକୁ ନାରାଜ ହୋ ବନ୍ଧିତ କ ପାର
କେବଣ କେବଣ ରାଜା ଅଇଲେ ବାହୁଡ । ୧୭୨ ।
ଦ୍ରୋପଦୀ ବୋଇଲା ସଖୀ ସବଲ୍ଲ ସ୍ୱୟମ୍ବର
ଲଖ ବନ୍ଧିବାକୁ ରାଜା କେହି ନୋହିଲେ ବାହାର । ୧୭୩ ।
କେଶିମା ବୋଇଲା ବଡ ବଡ ରାଜାମାନେ ବନ୍ଧି ନୁଆରିଲେ
ସାମାନ୍ୟ ରାଜାଏ ଡରେ ବାହାର ନୋହିଲେ । ୧୭୪ ।
ଦ୍ରୋପଦୀ ବୋଇଲେ ଯେ ଯେତେବେଳେ ଆରମ୍ଭିଲେ ସ୍ୱୟମ୍ବର
ମୁହିଂ ବୋଇଲି ଯେ ଲଖ ଦେବଙ୍କୁ ଅଗୋଚର । ୧୭୫ ।
ଦୁଷ୍ଟ ଭାଇଙ୍କର ବୁଦ୍ଧି ଯେତେକ ଚରପଞ୍ଚ
ଲଖ ପାତିଲା ଦେବତାଳେ ସାତତାଳ ଉଞ୍ଚ । ୧୭୬ ।
ମାନବତାଳକୁ ଅଣଗୃଣ ତାଳ ଅଟଇ
ନରେପି ଗୃହିଂଲେ ଦଶଇ ଅର୍ଦ୍ଧ ଆକାଶଇ । ୧୭୭ ।
ଚନ୍ଦ ଉପରକୁ ବନ୍ଧିବେ ନା ପ୍ରତକ୍ଷ
କେମନ୍ତେ ଦୃଷ୍ଟି ପାଇବ ଅଟଇ ନା ବଡ ଉଞ୍ଚ । ୧୭୮ ।
ମାନବତାଳେ ସାତତାଳ ଯେବେ ହୁଅନ୍ତା ଯୁଗତେ
ତାହା ବନ୍ଧିବାକୁ ଅପାର ରାଜା ହୁଅନ୍ତେ । ୧୭୯ ।

ଦେବତାଳେ ସାତତାଳ ଉଚ୍ଚର୍ଗ କଲ
ତହିଂର ଉପରେ ନେଇ ଚକ୍ରେକ ପାତିଲ । ୧୮୦ ।
ସେ ଚକ୍ର ପୁଣ ନ ଥାଇ ସ୍ଥିର ହୋଇ
ଅନୁବରତେ ଭ୍ରମୁଥାଇ କୁଲାଳ ଚକ୍ର ପ୍ରାୟେ ହୋଇ । ୧୮୧ ।
ଆବର ବିପଶ୍ଚିତ ଦେଖ କନକର ମତ୍ସ୍ୟ
ଚକ୍ର ଉପରକୁ ସେ ବାନ୍ଧିବ ନା ପ୍ରତକ୍ଷ । ୧୮୨ ।
ତାହା ନ କରି ଗୋ ପୁଣ ମାଚ୍ଛେକ ଭିଆଇଲ
ସେ ମାଛର ଦେହକୁ କମ୍ପେ ଲଖ ଗୋ ନ କଲ । ୧୮୩ ।
ସେ ମାଛର ପୁଣ କଲ ବାମ ଆଖି
ଯେହ୍ନେହେନେକ ପରପଞ୍ଚ କଲ ବିଗୃରନ୍ତି ସଖୀ । ୧୮୪ ।
ଭୂମିରେ ଥାଇ ସିନା ବାନ୍ଧିବାକ ଶର
ତାହା ନ କରି ପଟାୟେକ କଣ୍ଟିଲ ତାଳେକ ଉପର । ୧୮୫ ।
ତହିଂ ଉପରେ ଉଠି ଧନୁକୁ ଧଇଲେ
ମୁଣ୍ଡ ବୁଲଇ ପଡନ୍ତ ତଳକୁ ଦୃଷ୍ଟି ଦଲେ । ୧୮୬ ।
ଯେ ଯାହାର ଧନୁ ତାହାକୁ ସେ କଲ
ତାହା ଛାଡ ଶିବଧନୁ କଲ ଲକ୍ଷେକ ବଲ । ୧୮୭ ।
ଯେମାନ ସବୁ ଯେବେ କଲକ ଅଶକ୍ୟ
ନାରାଜ ବାନ୍ଧିବେନା ଉପରକୁ କରି ମୁଖ । ୧୮୮ ।
ଆବର ବିପଶ୍ଚିତ ଦେଖ ଉପରକୁ ଥିବ ମୁଷ୍ଟି ତଳକୁ ଥିବ ଦୃଷ୍ଟି
ଚକ୍ର ଭେଦ ମାଛର ବାମ ଚକ୍ଷୁ ଯିବ ଫୁଟି । ୧୮୯ ।
ଯେହ୍ନେହେନେକ ଅଗୋଚର ଲଖ କାହିଂ ଅଛୁ
ଯେତେ ଧଂସି ହୋଇଲ କାର୍ଯ୍ୟ ନୋହିଲ କଛୁ । ୧୯୦ ।
ଯେତେ ସୟଂବର ସଖୀ ଗୋ ନିଷ୍ଫଳ ହୋଇଲ
କରପଦ୍ମ ଯୋଡ କେଶିମା ମୃଦୁସ୍ବନ୍ତି କହିଲ । ୧୯୧ ।
ମୋହୋର ବୁଦ୍ଧିଯେକ କରିବୁ କ ଗୋ ମାୟେ
ଯେ ତୋହୋର ଇଚ୍ଛା ବରିବୁ କ ରାଜା ଗୋଟିୟେ । ୧୯୨ ।

---

୧୮୩।୨ ସ୍ବେମନ୍ତେ ବିଶ୍ୱପତି ଗୋ ଗୃଶଯୁଗେ ନାହିଂ ଦେଖି ।

ପୂର୍ବେ ସୟମ୍ବର କଲା ଖ୍ୟାତ୍ମକ ନୃପତି
ଦେବତାନ୍ତ ଗୁଡ଼ ନଳକୁ ବରିଲା ଦମୟନ୍ତୀ । ୧୯୩ ।
ଚନ୍ଦ୍ରଧ୍ୱଜ ରାଜାର ଦୁହିତା ଇନ୍ଦୁମତୀ
ଇଚ୍ଛାୟେ ବରିଲା ସେହୁ ଅଜ ନରପତି । ୧୯୪ ।
ଇଚ୍ଛାୟେ ବରିଲେ ସୀତା ଦେବ ରଘୁପତି
ଲକ୍ଷ୍ମୀ ଦେବୀ ଇଚ୍ଛାୟେ ବରିଲେ ଶ୍ରୀପତି । ୧୯୫ ।
ସମୁଦ୍ର ମନ୍ଥନୁଂ ଜାତ ବରୁଣର ଦୁହିତ
ବ୍ରହ୍ମା ରୁଦ୍ର ଗୁଡ଼ ବରିଲେ ଜଗନ୍ନାଥ । ୧୯୬ ।
ପଦ୍ମମାଧବ ଦୁହିତା ବରିଲା ଇନ୍ଦ୍ରଙ୍କୁ
ସୁମିତ୍ରା ବରିଲା ଯେ ଦଶରଥ ରାଜାଙ୍କୁ । ୧୯୭ ।
ସୂର୍ଯ୍ୟ ସୟମ୍ବର କଲା ନାହଂକ ତପତୀ
ଦେବତାନ୍ତ ଗୁଡ଼ ବରିଲା ଶମ୍ବରଣ ନୃପତି । ୧୯୮ ।
ରୁକ୍ମଣୀ ଯେ ଶିଶୁପାଳକୁ ବରିଥିଲେ
ସେ ପୁଣି ଗୁପତେ ନାରାୟଣଙ୍କୁ ବରିଲେ । ୧୯୯ ।
ତୋହୋର ବଚନରୁ ସ୍ୱେୟୁ ରାଜା ସ୍ୱେକ ବର
ସ୍ୱେ ମୋହୋର ବାକ୍ୟ ଦେବୀ ନିରାଧାର କର । ୨୦୦ ।
ଦ୍ରୌପଦୀ ବୋଇଲେ ଗୋ ଯାହା ବୋଇଲୁ ଏ ସତ
ସ୍ୱେ ରାଜାମାନଙ୍କୁ କାହାକଇଂ ନ ବଳଇ ମୋହୋର ଚିତ୍ତ । ୨୦୧ ।
କେହେନେକ ଭିଆଣ ଗୋ କରିଅଛି ଚକ୍ରଧର
ସେହି ସେ ଜାଣନ୍ତି ସଖୀ ଆଶା ଯେ ମୋହୋର । ୨୦୨ ।

---

୧୯୩।୧ ପୂର୍ବେ ସ୍ୱୟମ୍ବର କଲା ଭୀମ ନରପତି
ତାହାର ଦୁହିତା ନାମ ଅଟେ ଦମୟନ୍ତୀ ।
ତା ଇଚ୍ଛାରେ ସେହି ସଭା ମଧ୍ୟରେ ବାଛିଲା
ଦେବତାଙ୍କୁ ଗୁଡ଼ି ନଳରାଜାଙ୍କୁ ବରିଲା ।। (ଛାପା ବହି)

୧୯୫।୨ ନଦୋଷ, ରଘୁ ନରପତି ପ୍ରଭୃତି ପ୍ରାମାଦିକ ପାଠ ପୋଥିମାନଙ୍କରେ ଦେଖାଯାଏ ।

୧୯୭।୧ ପଦ୍ମାଳୟ ଦୋହିତା, ଚକ୍ରମାଧବ ଦୋହିତା, ଚନ୍ଦ୍ରମାଧବ ଦୁହିତା, ପ୍ରଭୃତି ପାଠ କେତେକ ପୋଥିରେ ଅଛି—ଅପପାଠ ।

ଅଭୟେ ମାହେଶ୍ୱରୀ ଗୋ ଅନାଦ୍ୟ ଶକତି
ସହସ୍ରେକ ଭୁଜେଣ ଯେ ଅଗ୍ନିରୁ ଉତପତ୍ତି । ୨୦୩ ।
ଖଟ୍ୱାଙ୍ଗ ଡମ୍ବରୁ ପିନାକ ଶୂଳ ହସ୍ତର
ଶଙ୍ଖ ଚକ୍ର ଗଦା ପଦ୍ମ ଶାରଙ୍ଗ ଧନୁ ଧର । ୨୦୪ ।
ଅଦୃଶ୍ୟେ ସୁଦ୍ରିଶେନ ମାଲ ଚନ୍ଦ୍ରଧାରୀ
ଛେଲ ବାବଲ କୋନ୍ତ ନାରାଜ କରେ ଧର । ୨୦୫ ।
ଗଦା ମୁଦ୍‌ଗର ଯେ କୋଦଣ୍ଡ ପିନାକା
ମଡୁଆଲ ତାଲେ ବାଜଇ ନବଲକ୍ଷ ଡାକ । ୨୦୬ ।
ଶୂଳ ଶକତି ଅମୋଘ ଶକତି ବଜ୍ର ଶକତି
ହିମ ଅସ୍ତ୍ର ସୂର୍ଯ୍ୟଅସ୍ତ୍ର ଅନଳ ତେଜ କାନ୍ତି । ୨୦୭ ।
କାଲଫାଶୀ ନାଗଫାଶୀ, ଜଲଫାଶୀ ପରମାଣି
ଅଭୟା କାଲ୍ତାମ୍ନା ମାତାଙ୍ଗୀ ମାର ଘୋର ଖଣ୍ଡଣୀ । ୨୦୮ ।
କୋଦଣ୍ଡ ଅଜଙ୍ଗ ଧନୁ ଆଦ୍ରାବଲୀ ଧନୁଧାରୀ
ନାରାପୂଣ ଶହସ୍ର ମୋହନା ଶହସ୍ର ବଜ୍ର ଶହସ୍ର ଉଭାର । ୨୦୯ ।
ମାନନୀ ମାନବନ୍ତି ଗୋ ଅଭୟେ ମହାଘୋରରୂପା
ଅନନ୍ତ ନାଗ ଭୂଷଣୀ ଗୋ ଚରଣେ ଗଗନ କ୍ଷେପା । ୨୧୦ ।
ପାତାଳେ ପାଦ ଯାହାର ଆକାଶେ ମୂର୍ଦ୍ଧନା
ଭସ୍ମ ବିଲେପନ, ଅଙ୍ଗେ ଶୋହେ ବଜ୍ରସେହ୍ଳା । ୨୧୧ ।
ପଟହ କୁଣ୍ଡଳୀ ଅଧାଟି ମରଗୁଣା
ପିନାକ୍ଷ ଖଟ୍ୱାଙ୍ଗ ଅଭୟ ବ୍ରହ୍ମସ୍ୱର ବୀଣା । ୨୧୨ ।
ଚଞ୍ଚପୁଟ ଗୃଞ୍ଚପୁଟ ଘଟି ଯେ ଉତ୍କଟି.
ହରହର ତାଣ୍ଡବ ଯେ ପଞ୍ଚତାଳେ ଖଟି । ୨୧୩ ।
ବଂଶୀ ମନ୍ଦର ଝର୍ଝର ବାଜେ ପୁଣି ପୁଣି
ମର୍ଦ୍ଦିଲୁ ଦଇତ୍ୟବଳ ମୋହନୀ ଗୋସାମଣୀ । ୨୧୪ ।
ଡବ ଡବ ଡମ୍ବରୁ ମାତାଙ୍ଗୀ ମଡୁଆଳୀ
ଗାବନ୍ତ ନାଚନ୍ତ ମନ୍ଦର ରସ ଭେଳୀ । ୨୧୫ ।

---

୨୧୩ { ଭରହର ରସେ ଭବାନୀ ପଞ୍ଚମ ତାଳ ଖଟି
ଚଞ୍ଚପୁଟ ଗୃଞ୍ଚପୁଟ କୋଟି ଯେ ଭ୍ରୁକୁଟି ।

ଭୈରବ ରସେ ମତୁଆଳୀ ସୁରଙ୍ଗ ରସ ସଙ୍ଗିତା
ସର୍ବ ଭୟ ଭଞ୍ଜନୀ ଗୋ ଜଗତ ଜନଚିନ୍ତା । ୨୧୬ ।
ଅରିଷ୍ଟି ଅପାଦ ଗୋ ପାତକ ମୋର ଖଣ୍ଡି
ପର ଦୁଖେ କାତରୀ ଗୋ ଚନ୍ଦ୍ରିକା ଚୂଳ ମଣ୍ଡି । ୨୧୭ ।
ଚଣ୍ଡୀ ମୁଣ୍ଡୀ ଭୈରବୀ ମିଳଣ ସକଳେ
ଭୂତ ପ୍ରେତ ପିଶାଚୁଣୀ ନାଚନ୍ତି କୁତୋହଳେ । ୨୧୮ ।
ସ୍ତମ୍ଭନ ମୋହନ ବଶ ଉଚାଟନ ଭଜ
ମହାରସେ ବୁଡ଼ାଇ ଯେ ମଦ୍ୟମାଂସ ଭୋଜୀ । ୨୧୯ ।
ଅମାର୍ଗ ମାର୍ଗ ଯାହାର ତୈଲୋକ୍ୟ ଯେତେକ ଖଣ୍ଡ
ତୁହି ଗୋସାମଣୀ ମଣୁ ମନୁକୁ ଗୃହଦଣ୍ଡ । ୨୨୦ ।
ଚଞ୍ଚଳା ଚର୍ଚ୍ଚିକା ମେଖଳା ଯେ ମହାଖଳା
ପ୍ରସନ୍ନେ ଅଭୟ ବର ଦେଉ ଗୋ ସର୍ବମଙ୍ଗଳା । ୨୨୧ ।
ଯେ କଳକାଳ ପାତକ ତୁହି ପାରୁ ଖଣ୍ଡି
ଶୂଦ୍ରମୁନି ସାରଳ ଦାସକୁ ପ୍ରସନ୍ନ ହୋଇବା ସିଦ୍ଧ ସାରଳ ଚଣ୍ଡୀ ।୨୨୨।
ଯେସନେକ ସ୍ତୁତି ଯତ୍ନଂ କଲେକ ପାଞ୍ଚାଳୀ
ସଦୟେ ପ୍ରସନ୍ନ ହୋଇଲେ ଭଦ୍ରକାଳୀ । ୨୨୩ ।
ଧର୍ମ ଉଦିତ ଯେ ହୋଇଲା ପାଞ୍ଚାଳୀକ
ଆଗେ ଦୃଶ୍ୟ ହୋଇଲା ଶଙ୍ଖଚିଲ ଭଦଳଆ ପକ୍ଷୀ । ୨୨୪ ।
ବାମ ନୟନ ଦେବୀର ଯେ ଘନ ଘନ ଫୁରି
ଶୁଭ ଶକୁନ୍ୟ ଯେ ଦେଖାଇଲେ ଶାକାମ୍ଭରୀ । ୨୨୫ ।
ଯେମନ୍ତର ସମୟେ ଯେ ସ୍ୱାମୀ ବଳରାମ
କଥାଏ ପୃଚ୍ଛା କରିବା ଶୁଣ ହେ ପୁରୁଷୋତ୍ତମ । ୨୨୬ ।
ଅସମ୍ଭବ ଲକ୍ଷ ଯେ କଲକ ଦ୍ରୋପଦ
ଲକ୍ଷ ବିନ୍ଧି ନ ପାରିଲେ ରାଜଗଣ ବୃନ୍ଦ । ୨୨୭ ।
ନାରାୟଣ ବୋଇଲେ ଶୁଣିମା ବଳଦେବ
ତୁମ୍ଭେ ଯେ ବୋଇଲ କର୍ଣ୍ଣ ମହାଲକ୍ଷ ବିନ୍ଧିବ । ୨୨୮ ।
ବଳରାମେ ବୋଇଲେ ସେ ଅଟେ ଦୁଷ୍ଟ ବେଧୀ
ତେଣୁ ବିଚାରିଲୁ ଅବା କର୍ଣ୍ଣ ପାରେ ଲକ୍ଷ ବିନ୍ଧି । ୨୨୯ ।

ଏତେ ଲକ୍ଷ ବନ୍ଧିବାକୁ ହରି କେ ଅଛି ସାମରଥ
ଏହା ସଞ୍ଜପି ମୋତେ କହସି ବାରତ । ୨୩୦ ।
ସହ୍ରଂ କଷ୍ଟୋରେଣ ପଚ୍ଛରିଲେ ସଂକର୍ଷଣ
ବଳରାମଙ୍କ ଅଗ୍ରତେ କହନ୍ତି ନାରାୟଣ । ୨୩୧ ।
ସାବଧାନେ ଶୁଣ ଦେବ ବଦନ୍ତି ଶ୍ରୀବକ୍ଷି
ତିନି ଭୁବନେ ବଳବନ୍ତା ଦେବ ତିନିଜଣ ଅଛି । ୨୩୨ ।
ବଳରାମ ବୋଇଲେ ଶୁଣ ଜଗନ୍ନାଥ
ସରୂପ କହ କିମା କେ ବନ୍ଧିବ ମହାଲକ୍ଷ । ୨୩୩ ।
ଜଗନ୍ନାଥେ ବୋଇଲେ ଆକାଶେ ବନ୍ଧି ପାରଇ ସୁରପତି
ପାତାଳେ ବନ୍ଧି ପାରଇ ବାସୁକି ଯୁଗତି । ୨୩୪ ।
ମର୍ତ୍ତ୍ୟେ ବନ୍ଧି ପାରଇ ବୀର ଫାଲଗୁନି
ତ୍ରୈଲୋକ୍ୟର ମଧ୍ୟେ ସର୍ବେ ଅଛନ୍ତି ଜଣ ତିନି । ୨୩୫ ।
ହଳୀ ବୋଇଲେ ଇନ୍ଦ୍ର ଦେବତା ଲକ୍ଷ ବନ୍ଧି ପାରଇ ଯେବେ
ଅମରପୁର ନେଇ କନ୍ୟା ନଇଲା ବାସବେ । ୨୩୬ ।
ଜଗନ୍ନାଥେ ବୋଇଲେ ଶୁଣ ଦେବ ହଳମତି
ପୁରନ୍ଦରକୁ ଅଯୋଗ୍ୟ ଅଟଇ ଦ୍ରୌପଦୀ । ୨୩୭ ।
ବଇବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତିଙ୍କି
ପ୍ରତକ୍ଷେ ପାଞ୍ଚାଳୀ ଅନଳୁଂ ଜାତ ଟିକ । ୨୩୮ ।
ଏତେ କଥା କହିଲେ ଜଗନ୍ନାଥେ ବଳଦେବଙ୍କ ଆଗେ
ଇନ୍ଦ୍ର ଦେବତାଙ୍କୁ ଯିଦ୍ମସେନୀ ହୋଇଲା ଅଯୋଗ୍ୟେ । ୨୩୯ ।
ପ୍ରତକ୍ଷେ ଦ୍ରୌପଦ ରାଜା ବ୍ରାହ୍ମଣ ନୃପତି
ମହାଯାଗ ଭେଦ କନ୍ୟା ଅନଳୁଂ ଉତପତ୍ତି । ୨୪୦ ।
ଅଗସ୍ତି ବୋଇଲେ ଶୁଣ ବଇବସ୍ୱତ ମନୁ
ମିଥ୍ୟା ବଚନ ନୁଆସଇ ନାରାୟଣଙ୍କର ବଦନୁଂ । ୨୪୧ ।
ଅର୍ଜୁନର ଭାରିଯା ସେ ହୋଇବ ଯୁଗତେ
ଇନ୍ଦ୍ର ଦେବତାଙ୍କର କୁଳବଧୂ ସେ ଅଟଇ ତେମନ୍ତେ । ୨୪୨ ।
ବଳରାମଙ୍କୁ ବଞ୍ଚାଇଣ କହିଲେ ଦାମୋଦର
ଇନ୍ଦ୍ରକଇ ଅଯୋଗ୍ୟ ବୋଲି ବୋଇଲେ ନୀଳାମ୍ବରଙ୍କ ଆଗର । ୨୪୩ ।

ଶ୍ରୀବଳରାମେ ତାହା ନୁଆଁରେଲେ ଜାଣି
ଅଯୋଗ୍ୟ ହୋଇଲରୁ ତ ନୁଆଁସିବ ବଜ୍ରପାଣି । ୨୪୪ ।
ଭୁ ଯେବେ ଲଖ ବନ୍ଧ ପାରବୁ ବନମାଳୀ
ଦ୍ୱାରକାକୁ ଅବଶେଷ୍କା ସ୍ୱେ ତ ଯୋଗାଇ ପାଞ୍ଚାଳୀ । ୨୪୫ ।
ପ୍ରତକ୍ଷେ ଉତପତ୍ତି ଅଦାରା ଅଯୋନ
ମହାଯାଗୁଂ ଜାତ କଲେ ବ୍ୟାସ ମହାମୁନ । ୨୪୬ ।
ନୀଳାମ୍ବରଙ୍କ ଅଗ୍ରତେ ବଦନ୍ତି ଜଗନ୍ନାଥେ
ମୁହିଂ କାହିଂ ବନ୍ଧିବ ମୋତେ ଦ୍ରୋପଦୀ ଅପ୍ରାପତେ । ୨୪୭ ।
ମନଭେଦୀ ନାରଜ ତ ମୋହୋର ତହିଂ ନାହିଂ
ତେଣୁ ସେ ଅପ୍ରାପତ ଶୁଣ ହଳସାଇଂ । ୨୪୮ ।
ବଳରାମ ବୋଇଲେ ଶୁଣ ମଧୁହାରି
ଇନ୍ଦ୍ରକୁ ଅଯୋଗ୍ୟ ତୋତେ ଅପ୍ରାପତ କୁମାରି । ୨୪୯ ।
ଯୁଧିଷ୍ଠିର ଭୀମ ଅର୍ଜୁନ ନକୁଳ ସହଦେବ
ଜତୁର ଘରେ ଦହନ ହେଲେ ପଞ୍ଚୁ ଯେ ପାଣ୍ଡବ । ୨୫୦ ।
ଆବର ଯେତେଂ କନ୍ୟା ଥିବାକ ଦୁଖ ପଡ
ସଞ୍ଚୟେ ଦ୍ରୋପଦୀ ହୋଇଲ ଅବେହାଡୀ । ୨୫୧ ।
ଉଠ ବାବୁ ବାସୁଦେବ ଦ୍ୱାରକାକୁ ଯିବା
ଖରା କାକର କୁହୁଡ ଶୀତରେ କମ୍ପାଇଂ ପଡଥିବା । ୨୫୨ ।
ଶ୍ରୀ ଜଗନ୍ନାଥ ବୋଇଲେ ସ୍ୱାମୀ ରହିବା ଆଜକ
କାଲ ଅବଶ୍ୟ ଦେବ ବନ୍ଧବ ଜଣେ ଲଖ । ୨୫୩ ।
ବଳରାମ ବୋଇଲେ ମୋତେ କହୁ ଜନା କହ୍ନାଇ
ଆପଣେ ବନ୍ଧିବୁ ଯେବେ ଆବର କନ୍ୟା ଆନ୍ନନ୍ତ ଲୁଚାଇ । ୨୫୪ ।
କରପଦ ଯୋଡଣ ବୋଲନ୍ତି ଜନାର୍ଦ୍ଦନ
କାଲ ପ୍ରଭାତେ ବନ୍ଧିବ ଲଖ ଅରଜୁନ । ୨୫୫ ।
ନାରାୟଣଙ୍କ ବଦନୁ ସ୍ନେହନକ ବଚନ ଶୁଣି
ଆମ୍ଭା ଉତ୍କର୍ଷିଲ ପ୍ରାୟେ ବରସ ଦେବ ହଳପାଣି । ୨୫୬ ।
ଜତୁର ଘରେ ପାଣ୍ଡବେ ହୋଇଲେ ଦହନ
ଦ୍ୱାବନୀ କୃଷ୍ଣ ଭୁହି କ ଦେଖିଲୁ ସ୍ୱପନ । ୨୫୭ ।

ଆମ୍ଭେ ସମସ୍ତେ ପାଣି ଦରଶନେ ଗଲୁ
ପାଣ୍ଡବେ ଦହନ ହୋଇ ଅଛନ୍ତି ପ୍ରତକ୍ଷେ ଦେଖିଲୁ । ୨୫୮ ।
ପଞ୍ଚ ପାଣ୍ଡବେ କୋଇନ୍ତା ବ୍ରାହ୍ମଣ ପୁରଞ୍ଜନ
ଦହନ ହୋଇଲଠାରେ ଯେ ଦେଖିଲୁ ବର୍ଣ୍ଣ ଚିହ୍ନ । ୨୫୯ ।
ଅଗୋଚର କଥା ବାବୁ କହିଲୁ ବାସୁଦେବ
ଆବର କ୍ରୁଡ କାହିଁ ଅଛନ୍ତି ପାଣ୍ଡବ । ୨୬୦ ।
ନାରାୟଣ ବୋଇଲେ ସ୍ୱାମୀ ଶୁଣିମା ହଳହସ୍ତେ
ପାଣ୍ଡବେ ଉତପତ୍ତି ଭାରାଭର ନିବାରିବା ଅର୍ଥେ । ୨୬୧ ।
ଦେବକୁଳେ ଅଛନ୍ତି ଦେବ ସୁରପତି
ଋଷିକୁଳେ ଅଛନ୍ତି ବ୍ୟାସ ମହାଯତି । ୨୬୨ ।
ରାଜାକୁଳେ ସପକ୍ଷ ଅଛନ୍ତି ବିଦୁର
ମନ୍ତ୍ରୀଚୂଡ଼ାମଣି ସହଦେବ ସଙ୍ଗତର । ୨୬୩ ।
ଯେହାଙ୍କର ଥାନ୍ତେ ପାଣ୍ଡବଙ୍କର ନାହିଁ ମୃତ୍ୟୁ
ମତ୍ତଭୋଳ ନାଥ ନ ଜାଣ ତୁମ୍ଭେ ତତ୍ତ୍ୱ । ୨୬୪ ।
ସଞ୍ଚୟେ ଯେବେ ପାଣ୍ଡବଙ୍କର ହୋଇନ୍ତା ନା ମୃତ୍ୟୁ
ମୋତେ କାମପାଳ ସ୍ୱାମୀ କାହିଁ ତୁ ଦେଖନ୍ତୁ । ୨୬୫ ।
ପାଣ୍ଡବଙ୍କର ମୃତ୍ୟୁପିଣ୍ଡକୁ ମୁହିଁ ଅଟଇ ସମିଧ
ଛଡ଼ ଜଣ ଆମ୍ଭେ ଉତପତ୍ତି ହୋଇଛୁ ଯେ ଭୁବନର ମଧ୍ୟ । ୨୬୬ ।
ଜଗନ୍ନାଥଙ୍କର ତହିଁ ଶୁଣି ନିଷ୍ଠୁର ବାଣୀ
ବଳରାମ ବସରିଲେ ନାରାୟଣ ବଚନ ଶୁଣି । ୨୬୭ ।
ମୁଂ ତୋର ସୋଦର ହରି ମୋତେ ତୋର ମାୟା
ଆମ୍ଭନ୍ତ ଲୁଚାଇ ପାଣ୍ଡବଙ୍କୁ ତୋହୋର ଯେତେ ଦୟା । ୨୬୮ ।
ପାଣି ଦର୍ଶନେ ଯେ ମୋତେ ଘେନି ଗଲୁ
ମୃତ୍ୟୁପିଣ୍ଡ ଦେଖି ଯେ ମୂର୍ଚ୍ଛାଗତ ହୋଇଲୁ । ୨୬୯ ।
ଅନେକ ବାରେ ତୋତେ ମୁହିଁ କଲି ସମାର୍ଜନ
ଭୂମିରେ ଲୋଟି ଯେ କରୁଥିଲୁ ତୁ ରୋଦନ । ୨୭୦ ।

---

୨୫୯।୧ ପୁରଞ୍ଜନ—ପୁରୋତନ ।

ସେହିଟେ କଥା ହରି କାହ୍ନଂକ ଚୋର ଗଲା
କାଳେ ଆସି ପୁଣ ବାବୁ ସେହିମନ୍ତ ହୋଇଲା । ୨୭୧ ।
ମୋତେ ହରି ହିଆରେ ତୋହୋର ସେହିଟେ କଇତବ କଥା
ତୋହୋର ସଙ୍ଗରେ ହରି ନ ଥାଇ ସର୍ବଥା । ୨୭୨ ।
ସେହିନ୍ତେ ବୋଲି ବଳରାମେ ରାଗେ ଉଠି ଗଲେ
ମୁହିଂ ଚୋର ନ ଖୁହିଂବି ବୋଲଣ ବୋଇଲେ । ୨୭୩ ।
କାଦମ୍ବରୀ ପାନେ ଭୋଳ ଯାହାର ମତି
ଥୋକାଏ ଦୂର ଯାଇ ଭାଳନ୍ତି ଶାନ୍ତ ମୂର୍ତ୍ତି । ୨୭୪ ।
ଆମ୍ଭେ ଯେବେ ଯେଥୁ ରାଗେ ଯିବା ଆଜ
ପାଣ୍ଡବଙ୍କୁ ଅଭାବ ବୋଲି ବୋଲିବେ ଦେବରାଜ । ୨୭୫ ।
ଥୋକାଏ ଦୂରୁଂ ବାହୁଡିଲେ ଦେବ ବଳେବର
ପୁଣିହିଂ ଆସି ବସିଲେ ଜଗନ୍ନାଥଙ୍କ କତିର । ୨୭୬ ।
ପରମ କଲ୍ୟାଣ ବାବୁ ହୁଅସି ଶ୍ରୀପତି
ସତ୍ୟେ ହେଂ କି ପାଣ୍ଡବେ ଅଛନ୍ତି ନା ବ୍ରତି । ୨୭୭ ।
ପାଣ୍ଡବେ କୁଶଳେ ଯେବେ ଅଛନ୍ତି ପାଞ୍ଚଭାଇ
ଜତୁର ଘରେ ଆନ କେ କେ ହୋଇଲେ ଯେ ଦହି । ୨୭୮ ।
ଗୋବିନ୍ଦେ ବୋଇଲେ ସ୍ୱାମୀ ଶୁଣିମା ନୀଳାମ୍ବର
ପାଣ୍ଡବଙ୍କ ମାରିବା ନିମନ୍ତେ ତିଆଇଲେ ଜତୁର ଘର । ୨୭୯ ।
କକଡା ମାସ ଶୁକ୍ଳପକ୍ଷ ପଞ୍ଚମୀ ଭୂମିବାର
ମହା ବରଷଣ କଲେକ ଦେବ ଅତି ଘୋର । ୨୮୦ ।
ଅଜର ନାମେଣ ଦେବ ଯେ ସେକଇ କରାତ
କଉଶିକ ବନେ ଗୁହାବାସ ତାର ସ୍ଥିତ । ୨୮୧ ।
ସେ କରାତ ନାଶ ଗଲା ବଜ୍ରର ଘାତେ
କରାତୁଣୀ ପଳାଇଲା ତୁଲେ ଘେନି ପଞ୍ଚଗୋଟି ପୁତ୍ରେ । ୨୮୨ ।

---

୨୭୧।୧ ସେହିଟେଜ ପରପଞ୍ଚ ରଞ୍ଜନା କଥା କାହ୍ନିଂ ହରି ଚୋର ଥିଲା ।
୨୭୩।୨ ନ ଗୃହିଂବି ବୋଲି ବଇରାଗ ପାଇଲେ ।
୨୭୨।୧ କଇତବ କଥା—କପଟ କଥା ।
୨୮୦।୧ ଭୂମିବାର—ଭୌମବାର, ମଙ୍ଗଳବାର ।

ଜଦୁର ଘରେ ଯାଇ ଆଉଜିଲେ ନିଶାରାତ୍ତି
ଜୟନ୍ତା ନାମ ଶୁଣି କୋଇନ୍ତାପ୍ୟେ କଲେକ ପୀରତି । ୨୮୩ ।
ପଞ୍ଚଗୋଟି ପୁତ୍ର ଯେନ ରହିଲେ ଜଦୁର ଘରେ
ପୁରଞ୍ଜନ ପଣ୍ଡା ଥିଲେ ତାହାଙ୍କର ସଙ୍ଗରେ । ୨୮୪ ।
ସେହି ରାତ୍ତି ପଞ୍ଚୁ ପାଣ୍ଡବେ ବାହାର ହୋଇଲେ
ଭୀମସେନ ପୁର ଦହିଲେ ସମସ୍ତେହେଂ ନାଶ ଗଲେ । ୨୮୫ ।
ତହୁଂଣ୍ଟ ସୁରନଦୀ ପାର ହୁଅନ୍ତେ ପଞ୍ଚୁବୀରେ
କୁମ୍ଭୀର ଦୈତ୍ୟ ମାଇଲେ ଭୀମସେନ ଜଳର ଭିତରେ । ୨୮୬ ।
ଶବରୁଣୀ ପଞ୍ଚପୁତ୍ରେ ପୁରଞ୍ଜନ ପଣ୍ଡା ଲଇ
ସେ ସାତେହେଂ ଜଦୁର ଘରେ ହୋଇଲେକ ଦହି । ୨୮୭ ।
ପୂର୍ବର ଦୋଷେ ତାଙ୍କୁ ପଡିଲେ ପ୍ରମାଦ
ପାଣ୍ଡବେ ମଲେ ବୋଲି ଶୁଭିଲେ ଶବଦ । ୨୮୮ ।
ବିଦୁର ବୁଦ୍ଧିରେ ପାଣ୍ଡବେ ଗଲେ ବିମ୍ବରେ ଗଳି
ସୁର ନଦୀରେ ନାବ ଚଢି ହୋଇଲେକ ପାରି । ୨୮୯ ।
କୁମ୍ଭୀର ଦଇତକୁ ଭୀମ ମାଇଲେ ସୁର ନଦୀ ଭିତରେ
କୋଇନ୍ତା ଆଦି କରି ତହୁଂ ଚଳିଗଲେ ଖରେ । ୨୯୦ ।
କନ୍ଧର ଦଇତକୁ ମାଇଲେ ମଧୁବନେ
ହିଡମ୍ବକ ବଧ୍ୟ କଲେ ହିଡମ୍ବକ ବନେ । ୨୯୧ ।
ହିଡମ୍ବିକାକ ବିଭା ହୋଇଲେ ଭୀମସେନ
ତାହାର ହୋଇଲେ ଘଟଉତ୍କଚ ନନ୍ଦନ । ୨୯୨ ।
ଓଡାଦି ଶିବପୁରେ ଯେକଚନ୍ନା ନଗ୍ର କଲେ
ଗୃଣ୍ଡାଳ ବଳ ମାରି ବିଷ୍ଣୁକରକୁ ରାଜ୍ୟ ଦିଲେ । ୨୯୩ ।
ଯେକଚନ୍ନା ନଗ୍ରେ ମାଇଲେ ବକ ରାକ୍ଷସ
ଅଙ୍ଗାରପନଙ୍ଗ ଯୁଦ୍ଧରେ ଜିଣିଲେ ବିବଶ । ୨୯୪ ।
ଗୋବିନ୍ଦେ ବୋଇଲେ ସ୍ୱାମୀ ଶୁଣିମା ବଳେବର
ଯେ ବ୍ରାହ୍ମଣ ସଭାରେ ଅଛନ୍ତି ଯୁଦ୍ଧେଷ୍ଟି ଠାକୁର । ୨୯୫ ।

---

୨୯୩। ଓଡାଦି ଶିବପୁର ଯେକଚକ୍ର କଲେ ।
୨୯୫। ଯେ ବ୍ରାହ୍ମଣ ସଭରେ ଅଛନ୍ତି ପାଣ୍ଡବେ ପଞ୍ଚୁବୀର ।

ନାରାୟଣ ବଚନେ ଯେ କହନ୍ତ ସଙ୍କର୍ଷଣ
କୁଶଳେ ବ୍ରତ ଥାନ୍ତୁ ଯୁଧିଷ୍ଠିର ନକୁଳ ସହଦେବ ଅର୍ଜୁନ । ୨୯୬ ।
ସେ କାଳ ମରନ୍ତା ଯେବେ ଭୀମା ବଡ ମନ୍ଦ
ଆମ୍ଭର ଭୁଲେ ସେ କରେ ଲୋକେ ଦ୍ୱନ୍ଦ । ୨୯୭ ।
ଆମ୍ଭଙ୍କୁ ଦେଖିଲେ ସେ ନ ଉଠଇ ବସଇ ପିଠି କରି
ତାହାକୁ ମାର ମୋର ହୃଦେ କନ୍ତୁ ଅଛଇ ମୁରାରି । ୨୯୮ ।
ଗୋବିନ୍ଦେ ବୋଇଲେ ସ୍ୱାମୀ ଯେବେ ଭୀମା ନାଶ ଯିବ
ପୃଥିବୀର ଭାର ଆନେ କେ ଉଶ୍ୱାସ କରିବ । ୨୯୯ ।
ଯେମାନେ ଯେ ବସିଛନ୍ତି ମହା ମହା ବୀର
ସ୍ୱାମୀ ପୃଥ୍ୱୀ ନ ସହଇ ଯେହାଙ୍କର ଭାର । ୩୦୦ ।
ବଳରାମ ବିସରିଲେ ଜଗନ୍ନାଥଙ୍କ ବଚନେ
ଧୃତରାଷ୍ଟ୍ରର ପୋଯେ ଆବର ବ୍ରତିବେ କେସନେ । ୩୦୧ ।
ପାଣ୍ଡବଙ୍କୁ ଯେବେ ତୋହୋର ଯେତେକ ସଦଯେ
ନଷ୍ଟଯେ ନାଶ ଗଲେ ଗାନ୍ଧାରୀ ଶତେ ପୋଯେ । ୩୦୨ ।
ଶ୍ରୀବଳରାମେ ପଚାରିଲେ ଶୁଣ ହୋ ଗୋବିନ୍ଦ
ଅର୍ଜୁନ କମ୍ପା ଯେବେ ନୁଆସଇ ଲଖ ବନ୍ଧ । ୩୦୩ ।
କାମପାଳ ସ୍ୱାମୀଙ୍କି ନାରାୟଣ ବୁଝାଇ
ଅର୍ଜୁନ କାହୁଂ ଆସିବ ଯୁଧିଷ୍ଠିରଙ୍କ ଆଗ୍ୟାଂ ନାହିଂ । ୩୦୪ ।
କମ୍ପାଇ ଆଗ୍ୟାଂ ତାକୁ ନ ଦିଅନ୍ତି ଧର୍ମସୁତ
ଦେଖିବା କୁତୋହୋଳ ଲଖ ବନ୍ଧୁ ପାଥ । ୩୦୫ ।
ଗୋବିନ୍ଦ ବୋଇଲେ କାହୁଂ ଆଗ୍ୟାଂ ସେ ଦେବେ ଯୁଧିଷ୍ଠି ଠାକୁର
ରାଜାଯେ ଲଖ ବନ୍ଧ ବୋଲି ବୋଇଲେ ଦ୍ରୁପଦେଶ୍ୱର । ୩୦୬ ।
ସେ ଯେତେବେଳକୁ ନୋହନ୍ତି ଅବିବେକୀ
ସେ ଦେଖି ଯୁଧିଷ୍ଠି ଅର୍ଜୁନକୁ ନ ଦିଅନ୍ତି ବାକ । ୩୦୭ ।

---

୨୯୮ । ତାହାକୁ ମାର ହୃଦେ ରାଗ ଅଛୁ ଆମ୍ଭର ।
୩୦୬ । ଅବିବେକୀ – ଅଭିଷେକୀ, ବ୍ରାହ୍ମଣବେଶୀ, ୩୦୭ । ବାକ—ବାକ୍ୟ

ଯେତେବେଳେ ଦ୍ରୋପଦ ବୋଲିବ ଆସନ ବ୍ରାହ୍ମଣ ଗୃଣ୍ଡାଳ
ଆଦ୍ଧ ଯେ ବୃଡ
ଯେ ଲଖ ବନ୍ଧିବ ତାକୁ ଦେବ ଦ୍ରୋପଣ୍ଡ ଦୁହିତୀ । ୩୦୮ ।
ତେତେବେଳେ ଆଜ୍ଞା ଦେବେ ଯୁଧିଷ୍ଠିରି
ନିମିଷକେ ଲଖ ବନ୍ଧିବ କିରୀଟୀ । ୩୦୯ ।
ଯେ ସନେକ ବଚୃରନ୍ତେ ରାମକୃଷ୍ଣ ବେନି
ଧର୍ମ ଦେବତାଙ୍କୁ ସ୍ମରନ୍ତି ଯିଦ୍ଧସେନି । ୩୧୦ ।
ସଭାର ମଧ୍ୟେ ବଜାଏ କଲେ ଦ୍ରୁପଦ ନୃପତେ
ବୋଇଲେ ଗୋସାଇଂ ରାଜାମାନେ ଲଖ ବନ୍ଧିବ ନା ଯୁଗତେ ।୩୧୧।
ରାଜାମାନେ ଯେବେ ନ ପାରିବେ ବନ୍ଧି
ପାତ୍ର ଅମାତ୍ୟ ସାମନ୍ତ ଯେତେ ଯୋଧୀ । ୩୧୨ ।
ଯେ ଲଖ ବନ୍ଧିବ ଦେବଇ କୁମାରୀ
ଏ ମୋର ବଚନ ସତ୍ୟ ସତ୍ୟ ନିରଧାରି । ୩୧୩ ।
ଦଇତ ଦାନବ ପିଶାଚ ରାକ୍ଷସ ସହିତେ
ଦେବଇଂ ପାଞ୍ଚାଳୀ ଏ ମୋହୋର ସତ୍ୟେ ସତ୍ୟେ । ୩୧୪ ।
ସମସ୍ତେ ତୁଷ୍ଟ ହୋଇଲେ ତାହା ଶୁଣି
କହିଲ ଦ୍ରୁପଦ ବୋଲଇ ପୁଣ ପୁଣି । ୩୧୫ ।
ଆଦ୍ଧହୁଂ ଆସନ ଗୃଣ୍ଡାଳ ବ୍ରାହ୍ମଣ ଆଦ୍ଧ କରି
ଯେ ଲଖ ବନ୍ଧିବ ଦେବ ଦୁହିତା ମୋହୋର । ୩୧୬ ।
ଦ୍ରୁପଦ ବୋଲଇ ଯହୁଂ ନିରଧାରି ବଚନ
ଯୁଧିଷ୍ଠିରି ଦେବେ ଗୃହ୍ନଂଲେ ଅର୍ଜୁନ ବଦନ । ୩୧୭ ।
ସ୍ୱାମୀଙ୍କ ଅନୁମତ ଦେଖିଣ ଫାଲଗୁନ
ଧାଇଁକାରେ ଉଠିଲ ସ୍ୱାମୀଙ୍କ ଦିବ୍ୟ ଆଜ୍ଞା ଘେନ । ୩୧୮ ।
ଅର୍ଜୁନ ଉଠନ୍ତେ ସଭାର ଦ୍ୱିଜମାନେ
ସମସ୍ତ ବ୍ରାହ୍ମଣେ ଆସି ଧଇଲେ ଫାଲଗୁନେ । ୩୧୯ ।

---

୩୦୮ { ଦ୍ରୋପଦ ଯେତେବେଳେ ଆଜ୍ଞା ଦେବ ବ୍ରାହ୍ମଣ ଗୃଣ୍ଡାଳ ପର୍ଯ୍ୟନ୍ତେ
ଯେ ଲଖ ବନ୍ଧିବ ଅବଶ୍ୟ ଦେବଇ ଦ୍ରୋପଦେ୍ୟ ।

୩୦୮।୧ ବୃତ୍ତ—ବର୍ତ୍ତମାନ ଅଛ ।

ଆହେ ପଣ୍ଡାମେ ତୁମ୍ଭେ ଉଠିଲ କାହିଁକି
ଲୋଭ କଲକି ସୁନ୍ଦର କନ୍ୟା ଦେଖି । ୩୨୦ ।
ମହା ମହା ରାଜାମାନେ ପାଉଛନ୍ତି ଲାଜ
ତୋହୋ ସାଦୃଶେ ବାବୁ ରେ ନାହିଁନା ନିଲ୍ଲଜ । ୩୨୧ ।
ବ୍ରାହ୍ମଣ ବିଶେଷେ ଆମ୍ଭର ଅଟଇ କୁଶ କାଇଁଶ
ରାଜକୁମାରୀକି ତୋର କିପାଇଁ ମୁହାଁଶ । ୩୨୨ ।
ଲଖ ବିନ୍ଧି ନ ପାରିବୁ ଟଳାଇବୁ ଝାଣ୍ଡି
ବ୍ରାହ୍ମଣଙ୍କୁ ମାରି ବୋଇଲେ ଯେ ମାରିବେ ସବୁନ୍ତି । ୩୨୩ ।
ଅନେକ ଦୂରୁଂ ଯେ ଅଇଲୁ କରିଅଛୁ ଆଶା
ଜୀବନ ଯାକ ଆମ୍ଭର ଦାନରେ ଭରସା । ୩୨୪ ।
ବ୍ରାହ୍ମଣ କୁଳକୁ କଣ୍ଟକ ହୋଇଲୁ ରେ ବାବୁ
ଦାନହିଁ ନ ପାଇବୁ ଆବର ପ୍ରାଣେ ନାଶ ଯିବୁ । ୩୨୫ ।
ଦଦରା ଛତା ଚୀରା ପାଣ୍ଡୋଇ ଆବର ହରିଗୋବିନ୍ଦ ମୁଣି
ତିନିକ ପକାଇ ତୁ ଯେ ଉଠିଲୁ ଶିର ଝୁଣି । ୩୨୬ ।
ସମସ୍ତ ବ୍ରାହ୍ମଣମାନେ ଅର୍ଜୁନଙ୍କୁ ଧରି ବସାଇଲେ
ପ୍ରେମନ୍ତ ଚରିତମାନ ଦ୍ରୁପଦ ଦେଖିଲେ । ୩୨୭ ।
ବ୍ରାହ୍ମଣ ଗୋଷ୍ଠିଏ ଯେ ଉଠି ଆସୁଥିଲେ
ସମସ୍ତ ବ୍ରାହ୍ମଣ ହୋଇ ତାହାକୁ ନିରୋଧିଲେ । ୩୨୮ ।
ଧୃଷ୍ଟଦୁମନକୁ ରାଇଣ ବୋଇଲେ ଦ୍ରୁପତେ
ଆଦି ଛନ୍ଦୀ ବିପ୍ରେ ଯେ ଅଟନ୍ତି ନା ଯୁଗତେ । ୩୨୯ ।

---

୩୨୧।୨ ତୋହୋ ସାଦୃଶେ ନାହିଁନା ନିଲ୍ଲଜ—ଏହା ପରେ ଦୁଇଟି ପୋଥିରେ ଅଧିକା ପାଠ ।

ପଣ୍ଡା ଭଣ୍ଡ ମିଶ୍ର ଯେ ଆବର ବାଜପେୟୀ
କମା ବ୍ରାହ୍ମଣ ଯେ ଆବର ପାଣିଗ୍ରାହୀ ॥
ତମ୍ଭା ପାତ୍ରୀ ଗଡୁ ଥୋଇ ସମସ୍ତ ବିପ୍ର ଧାଇଁ
ବ୍ରତ କରାଇବା ଆମ୍ଭେ ବିଷ୍ଣୁ ଯେ କରାଇ ॥
ବ୍ରାହ୍ମଣ ଲୋକର ଆଶା ଅଟଇ ଜିସ ଭାଷା
ରାଜକୁମାରୀକି ଦ୍ୱିଜ କିସ ତୋହୋର ଆଶା ।

ବ୍ରାହ୍ମଣ କୁଳେ ପ୍ରଭୁରାମେ ଉତପତ୍ତି
ସେହ୍ନ ସେ ଯେତ୍ରୋଇଶବାର ନିକ୍ଷତ୍ରୀ କଲା ପୃଥ୍ୱୀ । ୩୩୦ ।
କେବଣ ମହାତ୍ମା ଅବା ସେ ଅଛଇ ଗୁପତେ
ବ୍ରାହ୍ମଣ ସଭାକୁ ଗୃହ୍ନେ ବୋଲଇ ଦ୍ରୋପଦ ନୃପତେ । ୩୩୧ ।
ଗୋସାଇଁ ଯାହାର ଗୁଣ ବିଦ୍ୟା ଅଛଇ ଶରୀରେ
ଲଖ ବିନ୍ଧିବା ହୋଉ ଦ୍ରୋପଦୀଙ୍କ ଦେବଇଁ ତାହାରେ । ୩୩୨ ।
ପୁଣ ଯୁଧିଷ୍ଠିର ଗୃହ୍ନଁଲେ ଅର୍ଜୁନର ମୁଖ
ବାହାନାଦ କରି ସେ ସଭାରୁ ଉଠିଲା ବିବନ୍ଧ । ୩୩୩ ।
ପୁଣ ବେଢିଲେ ଆସି ବ୍ରାହ୍ମଣଗଣମାନେ
ବଡାଇ ନିର୍ଲ୍ଲଜ ପ୍ରକୃତି ଭୁ ରେ ବହଲୁ କେସନେ । ୩୩୪ ।
ବ୍ରାହ୍ମଣ ହୋଇ ଚୋର କର୍ମେ ଯେତେକ ଭରସା
ଇନ୍ଦ୍ର ପଦେ ବସିବାକୁ ବଳାଉ ମନସା । ୩୩୫ ।
ଆମ୍ଭେ ବ୍ରାହ୍ମଣ ଅଟୁ ଭିକ୍ଷାବାସୀ
ରାଜକୁମାରୀ ହୋ ଆମ୍ଭର ନୁଆସି । ୩୩୬ ।
ଅର୍ଜୁନର ହସ୍ତ ଧରି ବ୍ରାହ୍ମଣଗଣମାନେ
ପଚ୍ଛରନ୍ତି ବାରତା ଯୁଧିଷ୍ଠିରଙ୍କ ସନ୍ନିଧାନେ । ୩୩୭ ।
ଆହେ ପଣ୍ଡାପ୍ୟେ ଯେ ତୁମ୍ଭର କିସ ଯେ ହୁଅନ୍ତି
ଯୁଧିଷ୍ଠିର ବୋଇଲେ ଆମ୍ଭର କନିଷ୍ଠ ଭ୍ରାଥ ସେହି । ୩୩୮ ।
ଯେ ଯେବେ ପଣ୍ଡାପ୍ୟେ ଭ୍ରାଥ ଅଟନ୍ତି ତୁମ୍ଭର
ଯେତେ ଦୁଷ୍ଟକୁ କର୍ମେ ରଖିଛୁ ସାଙ୍ଗର । ୩୩୯ ।
ଅନେକ ଦୁର୍ଗ୍ରଂ ଯେ ଅଇଲୁ ଦାନ ଆଶେ
ଯେହାର ପ୍ରମାଦେ ସମସ୍ତେ ଯିବେ ନାଶେ । ୩୪୦ ।
ଯୁଧିଷ୍ଠିର ଦେବେ ବୋଇଲେ ରହ ରହ ଦ୍ୱିଜବରେ
ଲଖ ବିନ୍ଧିଲା ଲୋକହ୍ନଂ ସେ ଲଜ ପାଇବାନା ମଭାରେ । ୩୪୧ ।
ଯେ ଲଖ ବିନ୍ଧ ନ ଗଲା ନ ପାଇଲା କଛୁ ଲଜ
ତୁମ୍ଭେ କର୍ମେ ବ୍ରାହ୍ମଣେ ନିରୋଧ କର ଆଜ । ୩୪୨ ।

---

୩୪୨।¹ ତୁମ୍ଭେ କର୍ମେ ବ୍ରାହ୍ମଣେ ପଞ୍ଚାଲ କର ଆଜ ।

ଯାହା ଶରୀରେ ଅଛି ଗୁଣ ବିଦ୍ୟା
ସାଧନ ନ ଥିଲେ ସେ କି ଯାଇ ପାରଇ ସିଧା । ୩୪୩ ।
ଯୁଧିଷ୍ଠିର ଦେବ ଦେଖାଇଲେ ଭୀମସେନଙ୍କୁ
ଯେବେ ପଣ୍ଡୁପୁତ୍ର କର୍ମେ ନ ଗଲେ ଲକ୍ଷ ବିନ୍ଧିବାକୁ । ୩୪୪ ।
ଅର୍ଜୁନର ହାଥ ଧଇଲେ ଯୁଧିଷ୍ଠିର
ଦେଖ ହୋ ବେନି ଭୁଜେ ଫଳଅଛି ଗୁଣଦୃଷ୍ଟି । ୩୪୫ ।
ଯାଅ ହେ ପଣ୍ଡୁପୁତ୍ର ସୁଖେ ଲକ୍ଷ ବିନ୍ଧ
ସଭିଏଁ କଲ୍ୟାଣ କର ନ କର ନିଷେଧ । ୩୪୬ ।
ସମସ୍ତ ବ୍ରାହ୍ମଣ ତହିଂ କଲ୍ୟାଣ ଧ୍ୱନି ଘୋଷି
ଲକ୍ଷ ବିନ୍ଧ ତୋତେ ପ୍ରାପତ ହୋଉ ଶୁଭ୍ରକେଶୀ । ୩୪୭ ।
କଲ୍ୟାଣ କଲ୍ୟାଣ ବୋଲି ଶୁଭିଲାକ ଧ୍ୱନି
ଲକ୍ଷ ବିନ୍ଧ ପ୍ରାପତ ହୋଉ ସିଦ୍ଧସେନି । ୩୪୮ ।
ସୁମନେଣ ଆଗ୍ୟାଂ ଦିଲେକ ଯୁଧିଷ୍ଠିର
ଶତ୍ରୁ ମାନ ଉଭାହୁଅ ନଶୁ ତୋ ଅରିଷ୍ଟି । ୩୪୯ ।
ହମାସ୍ୟା କରନ୍ତି ବାସୁଦେବ ବଳରାମଙ୍କୁ
ଯେଣେ ଚକ୍ଷୁ ପଡଅଛି ବ୍ରାହ୍ମଣ ସଭାକୁ । ୩୫୦ ।
ଦେଖିଲେ ଅର୍ଜୁନର ବିନମ ପାଦଗତି
ଆସ୍ଥାନ ତେଜି ବାସୁଦେବ ଉଠିଲେକ ଝାଣ୍ଟି । ୩୫୧ ।
ବଦନ୍ତି ନାରାୟଣ ଆଜ ନିସ୍ତରିଲି ନିସ୍ତରିଲି
ପ୍ରାଣର ସଖା ଅର୍ଜୁନଙ୍କୁ ମୁଂ ନୟନେ ଦେଖିଲି । ୩୫୨ ।
ଯିସ ଅବା ଦୁଷ୍କୃତ ଶରୀରେ ମୋହୋର ଥିଲି
ତୋହୋର ମୁଖ ଗୃହାନ୍ତେ ସର୍ବ କ୍ଷୟ ଗଲି । ୩୫୩ ।
ଯେମନ୍ତେ କୃତ୍ୟ କୃତ୍ୟ ହୁଅନ୍ତେ ମଧୁରିପୁ
ଦେଖିଣ ବଳରାମେ ବରସିଲେ ବପୁ । ୩୫୪ ।

---

୩୫୪।୨ { ଦେଖିଣ ବଳରାମ ବରସ କଲେ ବପୁ,
{ ଦେଖିଲେ ବଳରାମ ନିରସ କଲେ ବପୁ ।

୩୪୯।୨ ନଶୁ—ନାଶହେଉ ।

୩୫୩।୧ ଦୁଷ୍କୃତ—ମନ୍ଦକାର୍ଯ୍ୟ, ପାପ

ପାଦଗଣ୍ଡ କର ଚଳଇ ଫାଲଗୁଣ
ଦେଖିଣ ସାନନ୍ଦ ହୋଇଲେ ବ୍ୟାସ ମହାମୁନି । ୩୫୫ ।
ବିଦୁରେ ବୋଇଲେ ନିସ୍ତରିଲା ନିସ୍ତରିଲ ଆଜ
ଦେଖିଲ ଅର୍ଜୁନଙ୍କୁ ସୁଫଳ ମୋର କାର୍ଯ୍ୟ । ୩୫୬ ।
କର୍ଣ୍ଣର ମୁଖ ଗୃହି ବୋଲଇ ଧୁଶାସନ
ବ୍ରାହ୍ମଣ ଚରିତ ଭ୍ରାଥ ବୁଝିଲୁ କେସନ । ୩୫୭ ।
ହୃଦର ଗୋଷ୍ଠାପ୍ୟେକ କରିଅଛନ୍ତି ବ୍ରାହ୍ମଣେ
ଉପହାସ ପାଇ ପ୍ୟେଥୁଂ ଯାଆନ୍ତି ରାଜାଗଣମାନେ । ୩୫୮ ।
ଦୁର୍ଜ୍ୟେ ବୋଇଲା ହୋ ସମସ୍ତେ ଖଣ୍ଡା ଚଢନ
ମାରିବା ସେହିଠାରେ ମରନ୍ତୁ ପ୍ୟେ ବ୍ରାହ୍ମଣ । ୩୫୯ ।
ଦୁଷ୍ଟଇ ବ୍ରାହ୍ମଣ ଅନର୍ଯ୍ୟାପୀ ଯୋଗୀ
ମନ୍ଦବାଟୀ ସ୍ତିରୀ ତପୋଧନ ବଇରାଗୀ । ୩୬୦ ।
ହଟକର୍ମ ଶାହାସ୍ରେ ହେ ପ୍ୟେସନେକ ଅଛି
ପ୍ୟେହାନ୍ତ ମାଇଲେ ପାତକ ନାହିଂ କହି । ୩୬୧ ।
ଦୃଯୋଧନ ବୋଇଲା ରେ ରହ ରହ ଧୁଶାସନ
ସେ ବ୍ରାହ୍ମଣ ଗୋଟିକି ନ ଧର ଆନ ମନ । ୩୬୨ ।
ଲଖ ବିନ୍ଧୁ ପ୍ୟେବେ ସେ ବ୍ରାହ୍ମଣ ଗୋଟି
ରାଜକନ୍ୟା କସ କରିବ ଭିକ୍ଷାଶୀ ବ୍ରାହ୍ମଣ ସେଟି । ୩୬୩ ।
ଧନ ଗୃଢାପ୍ୟେ ଆମ୍ଭେ ଯେ ପ୍ୟେହାକଇଂ ଦେବା
କନ୍ୟା ଗୋଟି ଘେନ ଆମ୍ଭେ ହସ୍ତିନାକୁ ଯିବା । ୩୬୪ ।
ପ୍ୟେସନକ ଆଗ୍ୟାଂ ଯହୁଂ ଦିଲେ ମାନଟଗୋବିନ୍ଦ
ସମସ୍ତେ ବୋଇଲେ ହୋ ବ୍ରାହ୍ମଣ ଲଖ ବିନ୍ଧ । ୩୬୫ ।
ଭୀଷ୍ମେ ପରୃରିଲେ ଦ୍ରୋଣଙ୍କ ମୁଖ ଗୃହିଂ
ଚିହ୍ନି ପାରିଲ ଠିକ ପ୍ୟେ ବ୍ରାହ୍ମଣ କେଗୋଟିକଇ । ୩୬୬ ।

---

୩୫୮ { ଇନ୍ଦୁର ଗୋଷ୍ଠାପ୍ୟେକ ନ ପାରନ୍ତି ମାରି
{ ଲକ୍ଷ ବିନ୍ଧିବାକୁ ପ୍ୟେ ଅଇଲା କି ବିଗ୍ରହ ।

୩୬୦ { ମନ୍ଦ ବାଟ ମଇନ ତପୋଧନ ବଇରାଗୀ
{ ମନ୍ଦ କାଠ ସ୍ତିରୀ ନଟଖଟ ବଇରାଗୀ ।

୩୬୦।୧ ଅନର୍ଯ୍ୟାପୀ—ବହୁ ବିଷୟରେ ଯୋଗଦେବା ।
୩୬୦।୨ ବଇରାଗୀ—ବିରାଗୀ, ବିଶେଷ ରାଗୀ—ଅତିକ୍ରୋଧୀ

ଦ୍ରୋଣେ ବୋଇଲେ ଆମ୍ଭେ ବରଯାତ୍ରୀମାନେ ଅଛୁ ବସି
ଯେତେବେଳେ ବର ଗୋଟି ମିଳିଲାକ ଆସି । ୩୬୭ ।
ମହା ସାନନ୍ଦେ ଧୃଷ୍ଟଙ୍କୁ କହିଲେ ଦ୍ରୋଣ ମହାରଥୀ
ନାଶ ଗଲେ ବୋଲି ବୋଇଲେ ଯେ ପାଣ୍ଡବେ ଛନ୍ତି ବୃତ୍ତି । ୩୬୮ ।
ଅର୍ଜୁନର ପ୍ରତଗ୍ୟାଂ ହୋ ଯେହ୍ନକ୍ଷଣି ଦେଖ
ସଭା ମଣ୍ଡିଲ ଯେ ବାନ୍ଧିବ ମହାଲକ୍ଷ । ୩୬୯ ।
ଧୃଷ୍ଟ ବୋଇଲେ ତ ବଜାଇ ଦୁନ୍ଦୁଭି
ଜତୁର ଘରେ ଦହନ ଦେଖିଲୁ ସମ୍ଭାବ । ୩୭୦ ।
ଭସ୍ମ ଗଲେ ଲୋକ ଅଙ୍କୁରିଲେ କେମନ୍ତେ
କମ୍ପିତ ମାୟା ଯେ ନ ଜାଣିଲୁ ତଥ୍ୟ । ୩୭୧ ।
ଧୃଷ୍ଟେ ବୋଇଲେ ହୋ ନୁଆଁଇଲୁ ଚିନ୍ତି
ସତେହେଂ ହୋଇବ କି ପାଣ୍ଡବ ଫାଲଗୁନ । ୩୭୨ ।
ଧୃଷ୍ଟେ ବୋଇଲେ ଦ୍ରୋଣେ ସ୍ଥିର ହୋଇ ଥିବା
ଆବର ଘଡିକେ ସତ୍ୟ ତଦନ୍ତ ଜାଣିବା । ୩୭୩ ।
ଦ୍ରୋପଦ ରାଜା ବାଛି ଅଛି ଯେ ଉପନ
ଧନୁ ଶସ୍ତ୍ର ଗଦା ମୁଦୁଗର ଧନ ମାନ । ୩୭୪ ।
ଦରିଦ୍ର ହୋଇଣ ଯେବେ ଆସଇ ଲକ୍ଷ ବାନ୍ଧିବାକୁ
ସେ ରହିଣ ଗୃହେଂବ ଧନକୁଡମାନଙ୍କୁ । ୩୭୫ ।
ବୀର ହୋଇ ଯେବେ ଲକ୍ଷ ବାନ୍ଧି ଆସିବ
କୋଲନ୍ତ ଗଦା ମୁଦୁଗର ଖଡଗ ଧନୁ ଆମଞ୍ଚିବ । ୩୭୬ ।
ଛତ୍ରୀ ହୋଇ ଯେବେ ଆସଇ ଲକ୍ଷ ବାନ୍ଧି
ଧନୁ ଧରି ଆମଞ୍ଚିବ ସେ ନରପ୍ୟେ ବଡ ଯୋଧୀ । ୩୭୭ ।
ଯେବଣ ଛତ୍ରୀ ଅଟଇ ଶ୍ରୀନାରାୟଣ ଭଗତ
ପୁରାଣ ପୁସ୍ତ ଲଯ୍ୟେ କରି ସେ ବାଖାଣିବ ଲକ୍ଷ ବାନ୍ଧିବା ତଦନ୍ତ । ୩୭୮ ।
ଯେମନ୍ତ ସନ୍ତକମାନ ଥୋଇ ଦ୍ରୁପଦ ନୃପତ୍ୟେ
ଉପହାର ଗୋଟିଯ୍ୟେ ବୋଲି ବୋଲାବେ ଲୋକତେ । ୩୭୯ ।

---

୩୭୦।୨ ଜତୁର ଘରେ ଦହନ ହୋଇଲେ ଦେଖିଲୁ ମୃତ୍ତୁ ଶବ ।
୩୭୪।୧ ଉପନ—ଉପାସ୍ଥନ, ଉପହାର

ଅର୍ଜୁନ ସେ ଠାବରେ ହୋଇଲେ ଯେ ପରବେଶ
ଧନକୁଣ୍ଡମାନ ନନ୍ଦଇ ଯେତେଂ ପିଂଗଳନ କସ । ୩୮୦ ।
ଧନକୁଣ୍ଡମାନ ଜିଣିଗଲା ପାର୍ଥ
ଧନୁ ଗୋଟି ଦେଖି ଧଇଲା ବାମ ହସ୍ତ । ୩୮୧ ।
ଆମଞ୍ଚନ କରି ବାହୁଡ଼ାଇଂ ଥୋଇ
ରାଜାପୁତ୍ର ବୋଇଲେ ଯେତ ଭିକ୍ଷୁକ ନୋହଇ । ୩୮୨ ।
ଯେ ଯେବେ ନରପୁତ୍ର ଭିକ୍ଷାବାସୀ ହୁଅନ୍ତା
ରତ୍ନଅଲଙ୍କାର ମାନ ଶରୀରେ ଆଭରଣ କରନ୍ତା । ୩୮୩ ।
ଧନୁ ବାହୁଡ଼ାଇ ଥୋଇଲା ଫାଲଗୁନ
ପୁରାଣ ପୁସ୍ତକ ଯେହେନ ନରେଶ୍ୱରଇ ମନେ ମନେ ଗୁଣି । ୩୮୪ ।
ଦ୍ରୋପଦୀ ବୋଇଲେ ସଖୀ ପାଇଲି ସନ୍ଦେଶ
ଯେତେବେଳେ ଶୁଭ ଶକୁନ ହୋଇଲା ପରବେଶ । ୩୮୫ ।
କେଶିନୀ ମୃଦୁସୁଲକ ବୋଇଲେ ଦ୍ରୋପଦୀ
ଆଗୋ ଯେତେବେଳେ ବର ଅଇଲା ଆମ୍ଭମାନେ ବରଯାତ୍ରୀ । ୩୮୬ ।
ସଖୀ ଯେହୁ ବ୍ରାହ୍ମଣ ଗୋଟି ହାଦେ ଲଖ ବାନ୍ଧବ
ଯେହୁ ସେ ନରପୁତ୍ର ଅଟଇ ମୋହୋର ବଲ୍ଲଭ । ୩୮୭ ।
କେଶିନୀ ବୋଇଲା ଗୋ ଯେହ୍ନେ ତୋର କର୍ମ
କେହେନେ ପାପ ଲକ୍ଷଣେ ଗୋ ହୋଇଲୁ ତୁ ଜନ୍ମ । ୩୮୮ ।
ଯେ ଲକ୍ଷେ ରାଜା ଯେ ମୂର୍ଧନା ଅବଶେଷେ
ଇଚ୍ଛା ନ ବଳଲା ତୋର ଯେମାନନ୍ତ ଦେଖି । ୩୮୯ ।
ଭିକ୍ଷାଶୀ ବ୍ରାହ୍ମଣର ହୋଇବୁ ମନୋହାରୀ
ରାଜାନ୍ତ ଛାଡ଼ି ଯେହାର ହୋଇବୁ ଯେ ନାରୀ । ୩୯୦ ।
ଦ୍ରୋପଦୀ ବୋଇଲେ ଗୋ ଶୁଣ ମୃଦୁସୁଲୀ
ଯେତେବେଳୁଂ ଯେହାର ମୁଂ ବଦନ ଦେଖିଲି । ୩୯୧ ।
ପଞ୍ଚଶର ଯେହେନ କ ସତେ ବାଜପୁତ୍ର ଅନଙ୍ଗ
ସେହି ସରୂପେ ମୋତେ ଦଶିଲା ଯେହାର ଅଙ୍ଗ । ୩୯୨ ।
ଯେତେବେଳୁଂ ଯେହାର ମୁଂ ଦେଖିଲି ବଦନ
କାମ ଶରଘାତେ ମୋତେ ଯେ ପୀଡ଼ିଲା ମଦନ । ୩୯୩ ।

ଆଗୋ ପ୍ରତକ୍ଷେ ଶକୁନ ଯେ ସୃଷ୍ଟି କର ଦେଖ
ଯେହ୍ନକ୍ଷଣି ବ୍ରାହ୍ମଣ ଯେ ବନ୍ଧବ ମହାଲାକ୍ଷ । ୩୯୪ ।
ପୂର୍ବେଣ ମୁହିଂ ଯେବେ ଅଛଇ ତପ କରି
ବ୍ରାହ୍ମଣର ଦୋହାଇତା ମୁଂ ବ୍ରାହ୍ମଣର ହୋଇବ ମନୋହାରୀ । ୩୯୫ ।
ଯେସନେକ ବରିଷ ସେ ପରମ ମହାସତୀ
ସୁମରଇ କାତ୍ୟାୟନୀ ଅନାଦି ଶକତି । ୩୯୬ ।
ତୁ ଦେବୀ ବଜପ୍ରେ ଗୋ କର ପ୍ରାର କନ୍ଧୁ
ଯେହ୍ନକ୍ଷଣି ଯେ ବ୍ରାହ୍ମଣ ମହାଲାଖ ବନ୍ଧୁ । ୩୯୭ ।
ଯେମନ୍ତର ସମୟେ ବୀର ଫାଲଗୁନ
ଲଖର ତଳେ ଉଭା ତାକୁ କେହି ଯେ ନ ଚହ୍ନି । ୩୯୮ ।
କ୍ଷୀଣ ଦୁର୍ବଳ ଦେଖି ଉପହାସ୍ୟ କରନ୍ତି ସମସ୍ତେ
ଧାତକାରେ ଅର୍ଜୁନ ଧନୁ ଧଇଲା ବାମ ହସ୍ତେ । ୩୯୯ ।
ଉର୍ଦ୍ଧ୍ୱ ବାହୁ କରି ଧନୁ ତୋଳିଲେକ ଯେବେ
ସାଧୁ ସାଧୁ ବିପ୍ର ବୋଲି ସଭାରେ ଉଠିଲାକ ଧ୍ୱନି । ୪୦୦ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ଅଛନ୍ତି ବେନି ଭ୍ରାତ
ଅର୍ଜୁନ ପଚାରଇ ଲଖର ଚରିତ କହନି କେମନ୍ତ । ୪୦୧ ।
ବ୍ରାହ୍ମଣଙ୍କ ଅଗ୍ରତେ କହଇ ଦ୍ୟୁମନ
ଶୁଣ ହୋ ଦ୍ୱିଜବର ଲଖର ବିଧାନ । ୪୦୨ ।
ଆନ ରାଜାମାନଙ୍କୁ ଯେ କହିଥିଲି ଗୋପ୍ୟ
ତୋହୋର ଆଗେ ଆମ୍ଭେ କହୁଛୁଂ ସରୂପ । ୪୦୩ ।
ଦେବତାଳେ ସାତତାଳ ଅଛଇ ଲଖର ଉଞ୍ଚ
ରାଧା ଚକ୍ରେକ ତହିଂ ବୁଲଇ ସୁସଞ୍ଚ । ୪୦୪ ।
ସେ ଚକ୍ର ଅଛଇ ଯେ ସହସ୍ରେକ ଧାର
ପବନୁଂ ବେଗେ ଭ୍ରମଇ କୁମ୍ଭାର ଚକ୍ର ଆକାର । ୪୦୫ ।

---

୩୯୬।୧ ସୁମରଇ କାତ୍ୟାୟନୀ ଅନାଦି ଶକତି ପରେ ଅଧିକା ପାଠ—
ତୁ ଦେବୀ କାତ୍ୟାୟନୀ ଗୋ ପରମ ମାହେଶ୍ୱରୀ
ମନର ମାନସୀ ଗୋ ସୁଫଳ କରସି ମୋହୋର ।

ତହିଁର ଉପରେ ଅଛି କନକର ମାଛ
ଦୃଢ଼ ପିନାକୀ ଜାଣ ଧନୁ ବଳ ସେ କେଲକ୍ଷ । ୪୦୬ ।
ତାଲେକ ଉପରେଣ ପଠା ସେ କ କଣ୍ଠି
ତହିଁର ତଳେ ଅଛି ଶାର୍ଥ ଜଳ ଘଟ ଗୋଟି । ୪୦୭ ।
ତଳକୁ କରିବ ଦୃଷ୍ଟି ଉପରକୁ କରିବ ମୁଷ୍ଟି
ଜଳ ଘଟେ ଛାୟା ନିରେଖିବ ମୀନର ଦୃଷ୍ଟି । ୪୦୮ ।
ଚକ୍ଷୁ ଭେଦ ମାଛର ବାମ ଚକ୍ଷୁ ପିବ ଫୁଟି
ସେତେ ସରୂପେ ଲକ୍ଷ ବାନ୍ଧିଲେ ନେମ କନ୍ୟା ଗୋଟି । ୪୦୯ ।
ଅର୍ଜୁନ ବୋଇଲା ମୁଂ ଯେବେ ଲକ୍ଷ ବାନ୍ଧିବ
ବଳ ଦୁର୍ବଳ ପଡ଼ିଲେ ମୁଂ କେମନ୍ତେ କରିବ । ୪୧୦ ।
ରାଜାମାନଙ୍କର ସନ୍ୟ ଅନନ୍ତ ଅପ୍ରମିତେ
ନ ପୁଣ ଦୁଷ୍ଟ ରାଜା ବଳାତ୍କାର କରନ୍ତି ନା ମୋତେ । ୪୧୧ ।
ଶିଖଣ୍ଡୀ ବୋଇଲା ଦ୍ୱିଜ ନ ଭାଳ ତୁମ୍ଭେ ସେହି
ସାତ ଅକ୍ଷଉଣୀ ବଳ ଘେନି ମୁଂ ତୋତେ ହୋଇବ ଯେ ସାହା ।୪୧୨।
ତୁ ସେବେ ଯାଇ ରାଜାଗଣନ୍ତ ପଚର
ଲକ୍ଷ ବାନ୍ଧିବାକୁ ମନ ଅଛିକି ତାହାଙ୍କର । ୪୧୩ ।
ଯେ ପାରନ୍ତି ଲକ୍ଷ ବାନ୍ଧନ୍ତୁ ଆସି ଆଜ
ବ୍ରାହ୍ମଣ ବାନ୍ଧନ୍ତେ ନ ପୁଣ ରାଜାମାନେ ପାଅ ବଡ଼ ଲଜ । ୪୧୪ ।
ପଶ୍ଚାତେ କୋପ ମୋତେ କର ତ ନ ଯୋଗାଇ
ଅବରଣେ ମଧ୍ୟପାନ ହୋଇଅଛି ମୁହିଂ । ୪୧୫ ।
ସେହା ଶୁଣି ଶିଖଣ୍ଡୀ ଯେ ବେଗେ ଚଳି ଗଲା
ସଭା ମଧ୍ୟେ ଶବଦାଇ ରାଜାଙ୍କୁ କହିଲା । ୪୧୬ ।
ଯେ ପାରିବ ଲକ୍ଷ ଆସି ବାନ୍ଧ ରାଜାଗଣ
ନୋହିଲେ ଲକ୍ଷ ଗୋଟିକି ବାନ୍ଧୁଛି ବ୍ରାହ୍ମଣ । ୪୧୭ ।

---

୪୧୧। ୨ ନ ପୁଣ ଦୁଷ୍ଟ ରାଜାସ୍ତେ ଗୋଳ କରନ୍ତି ଅନମିତ୍ତେ ।
୪୦୬। ୨ ଦୃଢ଼ ପିନାକୀ—ଦ୍ୱିତୀୟ ପିନାକ ଧନୁ ।

ନ ଶୁଣିଲା ପ୍ରାୟ ରାଜା କିଛି ନ କହିଲେ
ଶିଖଣ୍ଡୀ ବେଶ ଯାଇ ବ୍ରାହ୍ମଣ ଅର୍ଜୁନଙ୍କୁ କହିଲେ । ୪୧୮ ।
ଧନୁ ଧରି ମନେ ବିଚାରଇ ଫାଲଗୁନ୍ୟ
ଯେ ଧନୁରେ ଗୁଣ ଦେଇ ଅଛଇ ବୀର କର୍ଣ୍ଣ । ୪୧୯ ।
ଗୁଣ ଦିଲା ଛନ୍ଦୀଙ୍କି ଅଧେକ ଅଛି ଭାଗ
ଛନ୍ଦୀଙ୍କର ଧର୍ମ ଯେ ପୁରୁଷଙ୍କର ଅନୁରାଗ । ୪୨୦ ।
ବାମ ପାଦ ଦିଲା ପାର୍ଥ ଡାହାଣ ଜାନୁ ଉପରେ
କଞ୍ଚିତ ମାତ୍ରେ ଧନୁ ଧଇଲା ବାମ କରେ । ୪୨୧ ।
ଆଣ୍ଠୁର ଉପରେ ଧନୁହିଲ ବସାଇ
ବାମ କରେ ଦୃଢ ମୁଷ୍ଟି କରି ଧନୁରୁ ଗୁଣ ଯେ ଓହ୍ଲାଇ । ୪୨୨ ।
ଦେଖିଣ ଆଶ୍ରିଯ ଯେ ସକଳ ନୃପତି
ମାନବେ ତ ଗୋଚର ନୋହଇ ଯେସନେକ କୃତି । ୪୨୩ ।
ଗୁଣ ଓହ୍ଲାଇ ପାର୍ଥ ଭୂମିରେ ଧନୁହିଲ ଦେଇ
ଧନୁ ସଲଖିଲା ବାମ ଆଣ୍ଠୁ ଯେ ପେଲିଇ । ୪୨୪ ।
ପୁଣ ବିକାଶଇ ଯେ ଭଇରୋବ ମୂରତି
ଯେକା ଚରଣକେ ଉଭା ହୋଇଲାକ ପୃଥୀ । ୪୨୫ ।
ଡାହାଣ ଆଣ୍ଠୁ ଉପରେ ବାମ ପାଦ ଦିଲା
ଅବହେଳେ ବାସବ ଯେ ଧନୁରେ ଗୁଣ ଚଢାଇଲା । ୪୨୬ ।
ଶୂନ୍ୟେଣ ସହିତଂ ଗୁଣ ଦିଲାକ ଫାଲଗୁନି
ସଭାରେ ଉଠିଲା ସାଧୁ ସାଧୁ ଧ୍ୱନି । ୪୨୭ ।
ପଣ୍ଡିତ ଜନେ ବିଚାରନ୍ତି ମନେ
ଲଖ ବିନ୍ଧନ୍ତା ନୋହିଲା କେହି ଯନ୍ତ୍ରଂ ମଧ୍ୟ ଯେ ଭୁବନେ । ୪୨୮ ।
ଅଗ୍ନିରୁ ଜାତ ଅଟଇ ପାଞ୍ଚାଳୀ
ଗୋପ୍ୟ ରୂପେ ଅବା ବିଜେ କଲେ ଅଂଶୁମାଳୀ । ୪୨୯ ।
ଆଦିତ୍ୟ ଯେବେ ନୋହିବେଟି ହାଦେ
ଅମରାଧିନାଥ ବିଜେ କଲେ ଦେବ ଇନ୍ଦ୍ର । ୪୩୦ ।

---

୪୨୬।୨ ଅବହେଳେ ବାସବ ଯେ ଧନୁରେ ଗୁଣ ବସାଇଲା ।

ବରି ମତେ ସେ ଯେବେ ନୋହିବ ସହସ୍ର ଯୋନ
ଆଦ୍ୟହୁଂ ହରିଲା ଯେ ଗଉତମ ପତନୀ । ୪୩୧ ।
ବ୍ରାହ୍ମଣ ରୂପ ଧରି ଭଜେ ସୁନାସୀର
ଇନ୍ଦ୍ର ଦେବତା ନୋହିଲେ କ ଯେ ଅଟଇ କୁବେର । ୪୩୨ ।
ଯେସନେକ ବୁଦ୍ଧି ଭାଳନ୍ତ ସଭାରେ ରାଜାଯେ
ଧନୁରେ ନାରାଜ ପୂରେଇଲା ଧନୁର୍ଜୟେ । ୪୩୩ ।
ମାନଗୋବନ୍ଦ ସଭ୍ୟେ ଯେ ଦ୍ରୋଣଗୁରୁ ଅଛନ୍ତି
ନମସ୍କାର କରନ୍ତେ ନ ପୁଣି ସମସ୍ତେହିଂ ଜାଣନ୍ତି । ୪୩୪ ।
ନାରାଜ ପୂରେଇ ପାଥ ଯେ ଭୂମିକି ବନ୍ଧିଲା
ଦ୍ରୋଣଙ୍କର ନାମ ଧରି ସେ ମଥାରେ ହାଥ ଦେଲା । ୪୩୫ ।
ସଭାରେ ଥାଇଣ ଯେ ଦ୍ରୋଣଗୁରୁ ଦେଖିଲେ
କରପଦ୍ମ ପ୍ରସାରିଣ ଯେ କଲ୍ୟାଣ ବାଞ୍ଛିଲେ । ୪୩୬ ।
ବଦ୍ୟାଳକ୍ଷ ହୋଉ ତୋତେ କନ୍ୟା ପ୍ରାପତ ହୋଉ
ଯେସନେ ବାଞ୍ଛା ତୋହୋର ସେହୁ ସିଦ୍ଧ ହୋଉ । ୪୩୭ ।
ଆମ୍ଭର ଆଖ୍ୟ ଯେନ ବୃତ ଶତ୍ରୁ ନିପାତି
ପଞ୍ଚ କଟକ ମାଝ ତୁମ୍ଭେ ହୋଅସି ଯେକଛତ୍ରୀ । ୪୩୮ ।
ଅମର ସ୍ୱର୍ଗରେ ଯେ ଅଛନ୍ତି ମଘବାନ
ତହିଂକି ନମସ୍କାର କରଇ କୋଇନ୍ତୀଙ୍କର ନନ୍ଦନ । ୪୩୯ ।
ଦେଖି ଆଶିଷ ଯେ ବାଞ୍ଛା କଲେ ପୁରନ୍ଦରେ
ବଦ୍ୟାଳକ୍ଷ ହୋଉ କନ୍ୟା ପ୍ରାପତ ହୋଉ ଯେ ତୋହୋରେ ।୪୪୦।
ଶତ୍ରୁମାନଙ୍କ ସମସ୍ତ ନିପାତନ ସମୟେ କରି
ପଞ୍ଚ କଟକେ ତୁମ୍ଭେ ହୋଅସି ଦଣ୍ଡଧାରୀ । ୪୪୧ ।
ଦକ୍ଷିଣକୁ ମୂର୍ତ୍ତି କରିଣ ଫାଲଗୁନ
ଶ୍ରୀଜଗନ୍ନାଥଙ୍କ ନାମ ଧରି ସେ କରଇ ଦଇନ । ୪୪୨ ।
ଗୋବନ୍ଦେ ବୋଇଲେ ସ୍ୱାମୀ ଶୁଣିମା ହଳଧରସ୍ତେ
ତୁମ୍ଭଙ୍କୁ ନମସ୍କାର କରଇ ବୀର ପାଥେ । ୪୪୩ ।
ତୁମ୍ଭେ ତାହାକୁ ଦେବ କଲ୍ୟାଣ ବାଞ୍ଛା କରି
ବାଞ୍ଛା ସିଦ୍ଧ ସ୍ୱାମୀ ହୋଉ ଯେ ତାହାର । ୪୪୪ ।

କଲ୍ୟାଣ ବଚନ ମୁଁ ଆସଇ କହୀଣ୍ଟିତେ
ଅକଲ୍ୟାଣ ବାଞ୍ଛା ସେ ଆସଇ ହୃଦଗତେ । ୪୪୫ ।
ଗୋବିନ୍ଦଙ୍କର ଭୟେ ସେ ବୋଇଲେ କଲ୍ୟାଣ ତୋତେ ହୋଉ
ତୁ ଲଖ ବିନ୍ଧ ରେ ବାବୁ କନ୍ୟା ଆନ.ନେଉ । ୪୪୬ ।
ବଳରାମଙ୍କର କନ୍ତୁ ମନ ଯେ ଜାଣିଲେ ଜଗମୋହନ
ଆପଣେ ଆଶୀଷ ବାଞ୍ଛା କରନ୍ତ ଜନାର୍ଦ୍ଦନ । ୪୪୭ ।
ବିଦ୍ୟାଲବ୍ଧ ହୋଉ କନ୍ୟା ଯେ ପ୍ରାପତ ତୋତେ ହୋଉ
ଶତ୍ରୁ ମାର ଉଭା ହୋଅ ବାଇର ଭସ୍ମ ଯାଉ । ୪୪୮ ।
ପୃଥୀ ଭାର ଉଶ୍ୱାସ କର ସମସ୍ତ ରଜାନ୍ତ ନପାଣ୍ଡ
ପଞ୍ଚୁ କଟକେ ତୁ ହୋଅ ଯେ ଚକ୍ରବର୍ତ୍ତୀ । ୪୪୯ ।
ବ୍ରାହ୍ମଣଙ୍କର ସଭାରେ ଯେ ଅଛନ୍ତ ଯୁଧିଷ୍ଠି
ତାହାଙ୍କ ନମସ୍କାର କରଇ କରିଣ୍ଠୀ । ୪୫୦ ।
ଯୁଧିଷ୍ଠି ବୋଇଲେ ଗୋସାଇଂ ବ୍ରାହ୍ମଣଗଣମାନେ
ସେ ଲକ୍ଷବନ୍ଧା ପଣ୍ଡା ଗୋଟିକ ହୋଇବା ସାବଧାନେ । ୪୫୧ ।
ସେ ନମସ୍କାର କରୁଅଛି ବ୍ରାହ୍ମଣ ସଭାକୁ
ସମସ୍ତେ ହେଂ କଲ୍ୟାଣ କରିବା ତାହାକୁ । ୪୫୨ ।
ସମସ୍ତ ବ୍ରାହ୍ମଣମାନେ କର ପ୍ରସାରିଲେ
ମନ ବାଞ୍ଛା ସିଦ୍ଧ ହୋଉ ବୋଲଣ ବୋଇଲେ । ୪୫୩ ।
ବିଦ୍ୟାଲବ୍ଧ ହୋଉ କନ୍ୟା ହୋଉ ତୋତେ ପ୍ରାପତ
ତୋତେ ପ୍ରାପତ ହୋଉ ଦ୍ରୋପଦର ଦୋହିତ । ୪୫୪ ।
ଯେସନେକ ଆଗ୍ୟାଂ ଯହୁଂ ଦେଲେ ବ୍ରାହ୍ମଣ ସଭା
ଜ୍ୟେଷ୍ଠ ଭ୍ରାଥମାନଙ୍କ ମନେ ଧରି କରଇ ସେବା । ୪୫୫ ।
ଋଷିଙ୍କ ସଙ୍ଗତେ ଅଛନ୍ତ ବ୍ୟାସ ମହାମୁନି
ତାହାଂକ ପ୍ରଣପତ୍ୟ କରଇ ଫାଲଗୁନି । ୪୫୬ ।
ମାରକଣ୍ଡେ ବୋଇଲେ ବ୍ୟାସେ ସେ ଲଖବନ୍ଧା ବ୍ରାହ୍ମଣ
କେ ଟି ତୁମ୍ଭେ ତାକୁ ଜାଣ କ ନ ଜାଣ । ୪୫୭ ।
ବ୍ୟାସେ ବୋଇଲେ ଆଗତ କହିତ କ ପାରି
ଭୂପତ କଥାନ୍ତ ଯେଉ ଲୋକେ ନ ବିସ୍ତାରି । ୪୫୮ ।

ଯାହାକୁ କାମ ଅର୍ଥ କଲାକ ଦ୍ରୁପଦ ନୃପତି
କାଳେ ପାଇଲା ସେ ଦେଖ ଯେ ଦ୍ରୋପଦୀ । ୪୫୯ ।
ପ୍ୟେତେକ ବର୍ଗର ସମସ୍ତ ମହାମୁନି
କଲ୍ୟାଣ କଲ୍ୟାଣ ଶୁଭିଲାକ ଗରୁ ଧ୍ୱନି । ୪୬୦ ।
ଅର୍ଜୁନ ବୋଇଲ ଲକ୍ଷେ ରାଜାର ଯେତେକ ସଇନ
ଅଷ୍ଟାଦଶ ବଂଶର ବ୍ରାହ୍ମଣ ସର୍ବ ମହାମୁନି । ୪୬୧ ।
ପ୍ୟେ ମହାସଭରେ ମୋହୋର ସବୁନ୍ତ ଦଇନ ସେବା
ପ୍ୟେବେହେଂ ଯେ ପାର ଗୋସାଇଂ ଲଖ ଯେ ବନ୍ଧିବା । ୪୬୨ ।
ସତ୍ୟ ନ ପାର ଦ୍ରୋଣେ ବୋଇଲେ ପଣ୍ଡା ହୋ ଲଖ ବନ୍ଧ ଯା ବହନ
ପୋଡନ୍ତା ଘାଆ ଉପରେ କେତେ ଦେଉଅଛ ହୋ ଚୂନ । ୪୬୩ ।
ସାଧୁ ସାଧୁ ଜୟେ ଜୟେ ଲକ୍ଷେ ରାଜାଙ୍କର ମୁଖେ
ଅଦୃଷ୍ଟିକ ନାରାଜ ବନ୍ଧୁଚ୍ଛି ପ୍ରତକ୍ଷେ । ୪୬୪ ।
ସମସ୍ତ ଲୋକଙ୍କର ବେନି ଯେ ନୟନ
ପ୍ୟେକ ଲୟେ କର ଦେଖନ୍ତି ପ୍ୟେକା ଅର୍ଜୁନର ବଦନ । ୪୬୫ ।
ପ୍ୟେ ମହା ସଭାକୁ ମୋହୋର ଶତେ ସହସ୍ରବାର ଦଣ୍ଡବତ ସେବା
ବନ୍ଧୁଅଛି ଲଖ ସ୍ୱାମୀ ଆଗ୍ୟାଂ ମୋତେ ଦେବା । ୪୬୬ ।
ମହା ସଭାର ମଧ୍ୟେ ଉଠିଲା ଘୋର ଧ୍ୱନି
ସବୁଙ୍କର ବାଞ୍ଛା, ତୋତେ ପ୍ରାପତ ହୋଉ ଯିଜ୍ଞସେନୀ । ୪୬୭ ।
ପଣ୍ଡିତ ଜନମାନେ ଯେ ଜଗନ୍ନାଥଙ୍କର ଦାସ
ତେଣୁ ସେମାନେ କରନ୍ତି ଜନ ମାନଙ୍କର ମଙ୍ଗଳ ଅଭ୍ୟାସ । ୪୬୮ ।
ଦୁଷ୍ଟ ରାଜାମାନେ ବନ୍ଧ ବୋଲି ମଙ୍ଗଳ ଅଦ୍ୟାପି
ଦରିଦ୍ର ବ୍ରାହ୍ମଣକଇ ଧନ ଦେଇ ନେମା ଶୁଭକେଶୀ । ୪୬୯ ।

୪୬୦ "ପ୍ୟେତେକ...ଗରୁ ଧ୍ୱନି"—ଏହା ପରେ ଦୁଇଟି ପୋଥିର ଅଧିକା ପାଠ—
ଅର୍ଜୁନ ନମସ୍କାର କଲେ ଦୁର୍ଯୋଧନକୁ
ସେ ପିତାର ସମାନ ଜ୍ୟେଷ୍ଠଭ୍ରାଥ ଆମ୍ଭଙ୍କୁ ।
ସଭାରେ ଯେତେ ବଡ ବଡ ଲୋକ ଥିଲେ
ସବୁଙ୍କୁହିଂ ଅର୍ଜୁନ ନମସ୍କାର କଲେ ।
୪୬୭। ସବୁଙ୍କର କଲ୍ୟାଣ ତୋତେ ପ୍ରାପତ ହୋଉ ଯିଜ୍ଞସେନୀ ।

କଉଂ ଦୁଷ୍ଟ ରାଜା ବରୁଥିରନ୍ତି କନ୍ୟା ନେମା ବଳେ
ବ୍ରାହ୍ମଣ ଲାଖ ବନ୍ଧୁ ବୋଲି ଭାଷନ୍ତି ସକଳେ । ୪୭୦ ।
ସନ୍ଥ ଦୁଷ୍ଟ ରାଜାଙ୍କର ସବୁଙ୍କର ମୁଖେ
ମଙ୍ଗଳ ଧ୍ୱନି ଯେ ଶୁଭିଲା ପ୍ରତକ୍ଷେ । ୪୭୧ ।
ଢାଳକ ଉଚ୍ଛର୍ଗେ ପଞ୍ଚାଯେ଼ ପାର୍ଥ ଉଠି
ଜଗନ୍ନାଥ କାଢି ନେଲେ ସୁଦ୍ରିଶେନ ଚକ୍ରଗୋଟି । ୪୭୨ ।
ଧନୁ ଧରି କୋଡ଼ା ଆମଞ୍ଜନ କଲା
ଇନ୍ଦ୍ର ଦେବନ୍ତାକଇ ସୁମରି ମନଭେଦୀ ନାରାଜ ମାଗିଲା । ୪୭୩ ।
ମାତଳି ଆଣି କରେ ଦିଲାକ ନାରାଜ
ଧନୁଗୁଣେ ବସାଇଲା ବାସବ ଆତ୍ମଜ । ୪୭୪ ।
ନାରାଜ ପୂରେଇ ପାର୍ଥ ଉଭା ଠିଆ ଠାଣ
ବାବୁ ମୋର ଆଦ୍ୟ ଯେନ ବ୍ରତ ବୋଲି ବୋଇଲେ ଗୁରୁ ଦ୍ରୋଣ ।୪୭୫।
ଗୋବିନ୍ଦେ ବୋଇଲେ ଗୋସାଇଂ ଗୃହ୍ନିଂବାନା ହଳପନ୍ତ
ଶ୍ରୀର ଙ୍କର ପ୍ରତକ୍ୟାଂ ଦେଖ ଅର୍ଜୁନର ଠିଆ ଠାଣି ମୂର୍ତ୍ତି । ୪୭୬ ।
ପିଠି କଣ୍ଡକ ଯେ ବଦନ ଲେଉଟି
ଡାହାଣକୁ ଅଙ୍ଗ ସାରିଦେଇ ଯେ ତଳକୁ କଲା ଦୃଷ୍ଟି । ୪୭୭ ।
ଉପରକୁ ମୁଷ୍ଟି କରି ରହିଲା ଫାଲଗୁନ
ସର୍ବମଙ୍ଗଳ ହୋଉ ବୋଲି ଭାଷିଲେ ଯିଦ୍ଧସେନା । ୪୭୮ ।
ମନଭେଦୀ ନାରାଜ ପାର୍ଥ ଧନୁରେ ବସାଇ
ଛଆରଇ ବାସବ ଶହସ୍ରକୁ ଲୟ ଦେଇ । ୪୭୯ ।
ଯେତେ ଦୂରେ ଅବା ଅଛି ଲାଖ ମୀନ
ଯାଇଂ ଭେଦ ତାହାର ବାମ ଯେ ନୟନ । ୪୮୦ ।
ଉଚ୍ଛବ ଆନନ୍ଦ କନ୍ୟା ଶବ ହରଷେ
ମହାସଭା ଦେଖି ପ୍ରତଗ୍ୟାଂ ଗାତ୍ର ରୋଷେ । ୪୮୧ ।
ଦ୍ରୋଣେ ପ୍ରଶଂସା କଲେକ ପାର୍ଥକୁ
କଉଂକ୍ଷଣେ ଯେ ବିଦ୍ୟା ପାଇଲା ଗୁରୁ କହନ୍ତି ଖୋଷ୍ଟଙ୍କୁ । ୪୮୨ ।
ସାତ ଉତ୍ତର ସତେ ଶିଷ୍ୟଙ୍କର ହୋଇଲୁ ଆମ୍ଭେ ଗୁରୁ
ପୁଣି କାହାକଇଂ ଶକ୍ୟ ନାହିଂ ଯେହାର ଧନୁ ଧରୁ । ୪୮୩ ।

ଆମ୍ଭ ପିତା ପୁତ୍ରଙ୍କର କମ୍ପଇ ବେନି ଭୁଜ
ଦର୍ପ ଭଞ୍ଜଇ ଶହସ୍ର ହୋଅଇ ନିସ୍ତେଜ । ୪୮୪ ।
ଭୀଷ୍ମଙ୍କର ଶିର କମ୍ପଇ କର୍ଣ୍ଣର କମ୍ପଇ ଜାନୁ
ହୃଦୟ କମ୍ପଇ ଦୁର୍ଯୋଧନର ଦୁଃଶାସନର ତନୁ । ୪୮୫ ।
ଯୁଧିଷ୍ଠିର ଭୀମସେନ ଶଲ୍ୟଙ୍କର କମ୍ପଇ ମୁଷ୍ଟି
କୃପ ଭୂରିଶ୍ରବାଙ୍କର କମ୍ପଇ ଗୁଣଦୃଷ୍ଟି । ୪୮୬ ।
କେସନେକ କ୍ଷଣେ ବିଧାତା ନିର୍ବାଣ କଲ୍ଲିକ ତୋତେ
ନକଲଙ୍କ ନକମ୍ପ ଅଛଇ ତୋର ଗାତ୍ରେ । ୪୮୭ ।
ଯେତ୍ତେନେକ ବିଗୁର କରନ୍ତେ ଭୀଷ୍ମ ଦ୍ରୋଣ ବେନି
ଅର୍ଜୁନ ଡଳସ୍ତେ କରି ସୁମରଇ ଭବାନୀ । ୪୮୮ ।
ନାରାଜ ପୂରାନ୍ତେ ବିକାଶଇ ଭୀଷ୍ମ ମୂର୍ତ୍ତି
ତ୍ରୈଲୋକ୍ୟ ବିକାଶିଲ୍ଲ ବିଷ୍ଣୁର ତେଜକାନ୍ତି । ୪୮୯ ।
ନାରାୟଣ ସପକ୍ଷ ଯାହାକୁ ବାସବ ସପକ୍ଷ
ବ୍ୟାସ ଦ୍ରୋଣ ସପକ୍ଷ ରୁଦ୍ର ଯେ ସପର୍କ୍ଷ । ୪୯୦ ।
ଶତ୍ରୁ ମିତ୍ର ମୁଖେ ଭାଷନ୍ତି ଶୁଦ୍ଧ ଧ୍ୱନି
ତେବେ ସେ ମହାଲାଖ ବିନ୍ଧଇ ଫାଲଗୁନି । ୪୯୧ ।
ଲକ୍ଷେ ରାଜାର ମଧ୍ୟେ ଅର୍ଜୁନ ଯେତ୍କା ଯୋଧୀ
ରେ ରେ କାର ଶବଦ କରି ଅର୍ଜୁନ ଲାଖ ବିନ୍ଧି । ୪୯୨ ।
ଆହୋ ବହୁତ କାଳୁ ଯେ ଧଇଲ୍ଲ ନାହିଁ ଧନୁ
ଗାତ୍ର ରୋଷେ ଗୁଡ଼ିଲା ବାସବର ତନୁ । ୪୯୩ ।
ଦେବତାଳେ ସାତତାଳ ମାନବେ ଅଣଗୁଣ
ବିସ୍ତୃର ନରୋପିଲେ ଲାଖ ଅର୍ଦ୍ଧ ଯେ ଆକାଶ । ୪୯୪ ।
ରାଧା ଚକ୍ର ଭେଦି ମାଛର ବାମ ଚକ୍ଷୁ ଗଲା
ଡାହାଣ ଚକ୍ଷୁ ବାଟେ ଶର ହୋଇଲା ନିକଳ । ୪୯୫

୪୯୫ ରାଧାଚକ୍ର.....ନିକଳ ସ୍ଥାନରେ ଦୁଇଟି ପୋଥିର ଅଧିକ ପାଠ—
ରାଧାଚକ୍ର ଭେଦି ମାଛର ବାମଚକ୍ଷୁ ଫୁଟି
ବାହାର ହୋଇ ନାରାଜ ଗଲା ବେଗେ ଉଠି ॥

ବାହାର ହୋଇ ନାରାଚ ଗଲା ଅତି ବେଗେ
ଛଡ ଲକ୍ଷ ଯୋଜନେ ବିଶ୍ରାମିଲା ଅମର ସ୍ୱର୍ଗେ । ୪୯୬ ।
ସମସ୍ତ ରାଜାଗଣେ କଲେ ସାଧୁ ସାଧୁ ଧ୍ୱନି
ହୁଳହୁଳି ଶବଦ କଲେ ସମସ୍ତ କାମିନୀ । ୪୯୭ ।
ସେ ମାଛର ବାମ ଚକ୍ଷୁରେ ଯେ ପୁଷ୍ପ ମାଳାୟେ ବନ୍ଧାଥିଲା
ସେ ପୁଷ୍ପ ମାଳ ଛିଣ୍ଡିଣ ସଭା ମଧ୍ୟରେ ପଡ଼ିଲା । ୪୯୮ ।
ଆକାଶେ ବୃନ୍ଦାଅର୍କେ କଲେ ପୁଷ୍ପ ବୃଷ୍ଟି
ଶ୍ରୀଜଗନ୍ନାଥେ ବାଦ୍ୟ କଲେ ପଞ୍ଚଜନ୍ୟ ଶଙ୍ଖ ଗୋଟି । ୪୯୯ ।
ପଞ୍ଚଜନ୍ୟ ଶଙ୍ଖ ଶବଦର ଗହ୍ୱ ଗହ୍ୱ ଘୋଷ ବାଣୀ
ଦୁଷ୍ଟ ରାଜାମାନଙ୍କର ହୃଦୟ କମ୍ପିଲା କମ୍ବୁ ଶବଦ ଶୁଣି । ୫୦୦ ।
ଶୁଣି ରାଜାମାନେ ଆସ୍ତାନୁ ଉଠିଲେକ ଧାଇଁ
ବୋଇଲେ ଜଗନ୍ନାଥେ ବିଜୟେ କାହିଁ କରିଛନ୍ତି ଯେଥି । ୫୦୧ ।
ଅସୁର ରାଜାମାନେ କେହି ନ ରହିଲେ ଭୟେ
ପଳାବନ୍ତ ରାଜାୟେ ଅସମ୍ଭାଳ କାୟେ । ୫୦୨ ।
ମାଳୋତ୍ପଳ ରତ୍ନମାଳା କରେ ଘେନିଣ ଦ୍ରୋପଦୀ
ବିଜୟେ ମାହେଶ୍ୱରୀ ଅର୍ଜୁନର କଣ୍ଠ । ୫୦୩ ।
ଜୟେ ମଙ୍ଗଳ ଧ୍ୱନି ଶୁଭିଲା ତ୍ରୈଲୋକ୍ୟେ
ସଞ୍ଜୟେ ବିଜେ କଲେ କି ପିନାକ ଘେନି ତ୍ର୍ୟମ୍ବକେ । ୫୦୪ ।
ଦୁର୍ଯୋଧନ ବୋଇଲେ ଧୃଷ୍ଟଦ୍ୟୁମନ ରୁହାସି ବାଳୀ
ଆଗହୁଂ ବ୍ରାହ୍ମଣକୁ ନ ଦିଅ ବରଣ ସେ ମାଳ । ୫୦୫ ।

---

ଛଡ ଲକ୍ଷ ଯୋଜନ ଆକାଶକୁ ଉଠିଗଲା ନାରାଚ
ରାଜାଗଣମାନେ ଦେଖି ହୋଇଲେ ଆଶ୍ଚର୍ଯ ॥
ଆକାଶ ମାର୍ଗକୁ ବୋଲି ନାରାଚ ଚଳି ଗଲା
ବାସବ ଦେବତାଙ୍କୁ ଯାଇ ଦରଶନ କଲା ॥
ଦେଖି ଚହିଲେ ଇନ୍ଦ୍ର ଅର୍ଜୁନର ବାଣ
ଅନେକ ହରଷ ଯେ ହୋଇଲେ ମଘବାନ ॥
ତହୁଂ ବାଣ ଯେ ଲେଉଟି ଅଇଲା
ସାଧୁ ସାଧୁ ଧ୍ୱନି ଆକାଶରେ ଶୁଭିଲା ॥

ସମସ୍ତ ରାଜାମାନେ ବସୁଛ କର ଗୃହିଂ
ମାଛର ଚକ୍ଷୁରେ ନାରାଜ ରହି ନାହିଂ । ୫୦୬ ।
ସରୂପେ ଦ୍ୱଜବର ନାରାଜ ବନ୍ଧିଲ
ଚକ୍ଷୁରେ ନ ବାଜଣ ଯେ ପାରୁଶେ ଲଗି ଗଲ । ୫୦୭ ।
ଯେବେ ବନ୍ଧିଲା ବ୍ରାହ୍ମଣ ସରୂପ ହୁଅନ୍ତା
ମାଛର ଚକ୍ଷୁରେ ଯେବେ ନାରାଜ ରହିଥାନ୍ତା । ୫୦୮ ।
ତାହା ସେ ସରୂପ ବୋଲ ବୋଲଇ ଯୁଗତେ
ଚନ୍ଦ୍ର ବର୍ଣ୍ଣ ନାହିଂ କନ୍ୟା ନେବ ହୋ କେମନ୍ତେ । ୫୦୯ ।
ଦ୍ରୋପଦେ ବୋଇଲେ ଯେବେ ଦ୍ୱଜବର ଲଖ ନ ବନ୍ଧିଲ
ମାଛର ବାମ ଚକ୍ଷୁରୁ କମ୍ପା ପୁଷ୍ପମାଳ ଛୁଡଣ ପଡିଲ । ୫୧୦ ।
ମାନଗୋବନ୍ଦ ବୋଇଲ ସୂନ୍ୟେ ଲାଗିଥିଲା
ନାରାଜ ହାବୋଡନ୍ତେ ସେ ଛୁଡଣ ପଡିଲା । ୫୧୧ ।
ଶିଖଣ୍ଡୀ ବୋଇଲା ଗୋସାଇଂ ଦେଖିଲ ପ୍ରତକ୍ଷ
ଆକାଶୁଂ ପୁଷ୍ପ ବୃଷ୍ଟି ହେଲା କେ ଯେହା କହପାରବ ମିଛ । ୫୧୨
ଦୁଷ୍ଟ ରାଜାମାନେ ସମସ୍ତେ କଲେ ନାସ୍ତି
ବ୍ରାହ୍ମଣ ଲାଖ ନ ବନ୍ଧିଲା କେମନ୍ତେ ବରବ ଦ୍ରୋପଣ୍ଡୀ । ୫୧୩ ।
ଦ୍ରୁପଦ ବୋଇଲେ ଗୋସାଇଂ ପଞ୍ଚଜନ୍ୟ ଶଙ୍ଖଧ୍ୱନି
ଆପଣେ ନାରାୟଣ ଶ୍ରୀକରେ ଶଙ୍ଖ ଧେନି । ୫୧୪ ।
ଜରାସନ୍ଧ ବୋଇଲା ତୁମ୍ଭେ କଛିହିଂ ନ ଜାଣ
ନନ୍ଦ ଗଉଡ ପୁଅ କୃଷ୍ଣ ଅଟ୍ଟି ହୀନ । ୫୧୫ ।
ତୁମ୍ଭେ ତାହାନ୍ତ ବୋଲ ଗୋବନ୍ଦ ଗୋବନ୍ଦ
ଗଉଡ କୁଳେ ଜନ୍ମ ସେ ଅଟଇ ବଡ ମନ୍ଦ । ୫୧୬ ।
ଅଗ୍ୟାନ ଗଉଡ ସେ ଗ୍ୟାନ ତାର ନାହିଂ
ଶଙ୍ଖ ଗୋଟିଏ ଧେନ ଅବଚ୍ଛନ୍ନେ ବାଉଥାଇ । ୫୧୭ ।
ସେ ଯେବେ ନାରାୟଣ ଆସୁନ୍ତ ମୋର ଆଗେ
ଅଷ୍ଟାଦଶ ବେଳ ଧାଡ ଦେଲ ଜୁଆଇଂର ରାଗେ । ୫୧୮ ।
ଗୋପପୁର ତେଜ ସେ ମଥୁରା ରହିଲା
ମୋହୋର ଭୟେ ପୁଣ ମଥୁରା ଛାଡିଲା । ୫୧୯ ।

ମଧୁବନ ନଗ୍ରେ ସେ ନୁଆରିଲା ରହି
ତାହା ସ୍ଥିର କଥା କମ୍ପେ ସେ ସର୍ବରେଣ କହି । ୫୨୦ ।
ଧ୍ରୁବିଷ୍ଣୁ ବୋଇଲେ ତୁ କମ୍ପେ ନନ୍ଦ ନାରାୟଣ
ପରେ ମରାଇବେଟି ତୋତେ ନ ମାରିବେ ଆପଣ । ୫୨୧ ।
ଅଗସ୍ତିଙ୍କ ଆଗେ ବଇବସୁତ ମନୁ କହିଲା
ଅର୍ଜୁନ ଲାଖ ବନ୍ଧିବାର ତ ନିଷ୍ଫଳ ହୋଇଲା । ୫୨୨ ।
ପୁଣ ଆବର ହୋଇଲା କେବଣ ଚରିତ
ସେହିହା ସମ୍ପ୍ରତି ମୋତେ କହିବା ତପୋବନ୍ତ । ୫୨୩ ।
ଶୁଣ ହୋ ଯୋଗେଶ୍ୱର ବଦନ୍ତି ଅଗସ୍ତି
ଦୁଷ୍ଟ ରାଜାମାନେ ଭାଞ୍ଜିଲେ ଅସଂଖ୍ୟ କାରତି । ୫୨୪ ।
ମହା ଗୋଳ ଶବଦ ସେ ଶୁଣିଲେ ସର୍ବରେ
ନାସିକାରେ ହସ୍ତ ଦେଇ ହସିଲେ ବଳେଦରେ । ୫୨୫ ।
ଗୋବିନ୍ଦ ବୋଇଲେ ଦେବ ହସିଲ କସ ଅର୍ଥେ
ଉପହାସ୍ୟ ପରାୟେ ସ୍ୱାମୀ ଦିଶିଲିକ ମୋତେ । ୫୨୬ ।
ବଳଦେବ ବୋଇଲେ ତୁ ଶୁଣସି ଅଚ୍ୟୁତ
ଶଙ୍ଖଧ୍ୱନି ଶବଦ ତୋର ଅଛଇ କେମନ୍ତ । ୫୨୭ ।
କ ତୋତେ ପାଣ୍ଡବେ ଆଣିଲେ ଧନ ଦେଇ
ଲଖ ନ ବନ୍ଧୁ ଶଙ୍ଖ ବାଉ ତୁ କସ ପାଇଂ । ୫୨୮ ।
ଗୋବିନ୍ଦ ବୋଇଲେ ସ୍ୱାମୀ ଶୁଣିମା ନୀଳାମ୍ବର
ଅର୍ଜୁନର ମହିମା ଦେବେ ମାନବେ ଅଗୋଚର । ୫୨୯ ।
ଯଦ୍ୟପି ଗୋଳ ଆଜ କରିବେ ରାଜାଗଣେ
ପୁନରପି ଲଖ ବନ୍ଧିବ ସେ ବୀର ଫାଲଗୁନେ୍ୟ । ୫୩୦ ।
ଦୁଷ୍ଟ ରାଜାମାନେ ଗୋଳ ଯେ କରିବେ ଶତେବାର
ଅର୍ଜୁନନ୍ତଂ ଦ୍ରୌପଦୀକ ନୋହିବ ଆନ ବର । ୫୩୧ ।
ଗାଢ ବାକ୍ୟ ଯହୁଂ ବୋଇଲେ ନାରାୟଣ
ସେ କଥା ବହିମିଲା ଅର୍ଜୁନ କର୍ଣ୍ଣେଣ । ୫୩୨ ।

---

୫୨୪।୨ ଅସଂଖ୍ୟ କାରତ—ଅଗଣନୀୟ କୀର୍ତ୍ତିକର କାର୍ଯ୍ୟ ।

ଗୋଳ ଶବଦ ଶୁଣି ଦ୍ରୁପଦସୁତେ ସିଦ୍ଧସେନା
ସୁମରଇ କାତ୍ୟାୟିନୀ ଗୋ ଦୁରିତ ନାଶନା । ୫୩୩ ।
ତୁ ଦେବୀ ଜଗତତାରଣୀ ମହାମାୟେ
ଭଗତ ମଙ୍ଗଳୀ ଗୋ ଖଣ୍ଡୁ କନା ଅପଦ ଅପଚୟେ । ୫୩୪ ।
ତୋହୋର ପରସନ୍ନେ ମୁଂ ଲଭିବି ନିଜ ପତି
ତୋହୋର ସଙ୍କଳ୍ପ ମାଗୋ ଲଭନ୍ତି ଅମିତ । ୫୩୫ ।
ଶ୍ରୀହସ୍ତେ ଧେନନ୍ତି ଦେବୀ କନକ ପୁଷ୍ପମାଳ
ଦୁର୍ଗାକଇ ଲୟ କରି ସୁମରଇ ପାଞ୍ଚାଳୀ । ୫୩୬ ।
ଦ୍ରୋପଦୀର ବଇକୁଳ୍ପ ଅର୍ଜୁନ ଯେ ଦେଖି
ବନ୍ଦନ ନିରେପଇ ଶରଦ ଶଶୀମୁଖୀ । ୫୩୭ ।
ଅର୍ଜୁନ ବୋଇଲେ ଗୋ ରହ ରହ ସିଦ୍ଧସେନା
ଅନମିତେ କ୍ରୋଧ କମ୍ପେ କରୁ ରେ ମାନିନୀ । ୫୩୮ ।
ଯଦ୍ୟପି ଦୁଷ୍ଟେ ଗୋ କରିବେ ଆଜ ଗୋଳ
ମ୍ୟେ ମହାଲଖ ଗୋ ବିନ୍ଧିବି ଶବ୍ଦେ ବେଳ । ୫୩୯ ।
ଶୁଣିଣ ଦ୍ରୋପଦୀ ଯେ ପରମ ସାନନ୍ଦେ
ଅନେକ ହରଷ ବାଳୀ ହୋଇଲା ତାର ହୃଦେ । ୫୪୦ ।
ଅର୍ଜୁନ ବୋଇଲେ ଶୁଣ ଧୃଷ୍ଟଦ୍ୟୁମନ
ରାଜାମାନଙ୍କୁ ଯେ ଯାଇ କର ସମାଧାନ । ୫୪୧ ।
ମ୍ୟେ ଯାନ୍ତ ଆରବେଳେ ଗୋ ବିନ୍ଧିବି ମହାଲଖ
ଚକ୍ର ସହିତେ ଛିନାଇବି ସମସ୍ତେହେଂ ଦେଖ । ୫୪୨ ।
ବାସବର ବଚନେ ଧୃଷ୍ଟ ଯେ ଦ୍ୟୁମନ
ସଭାରେ ସମ୍ବୋଧନା କରନ୍ତି ରାଜାଗଣମାନ । ୫୪୩ ।
ଭୋ ରାଜାଗଣମାନେ ଶୁଣିମା ସାବଧାନେ
ପୁଣିହିଂ ଲଖ ଯେ ବିନ୍ଧିବି ବିପ୍ରଜନେ । ୫୪୪ ।
ପ୍ରତକ୍ଷେ ଧର୍ମବଳ ଦେଖିବା ମ୍ୟେହକ୍ଷଣି
ଧୃଷ୍ଟଦ୍ୟୁମନ ମେ ଯେ କହନ୍ତି ପୁଣ ପୁଣି । ୫୪୫ ।
ସ୍ଥିର ହୋଇ ତୁମ୍ଭେ ଲଖକୁ କରିବା ନୟନ
ମ୍ୟେଯାନ୍ତ ଲଖ ଯେ ବିନ୍ଧୁ ଅଛଇ ବ୍ରାହ୍ମଣ । ୫୪୬ ।

ଧୃଷ୍ଟଦ୍ୟୁମନ ବଚନ ରାଜାଗଣେ ଶୁଣି
ଯେ ଯାହାର ଆସ୍ଥାନେ ବସିଲେ ନୃପମଣି । ୫୪୭ ।
କରେଣ ଧନୁ ଧର ବୀର ଅର୍ଜୁନ ଆମଞ୍ଚ
ବିଚାରଇ ବାସବ ଧନୁରେ ବଳ ନାହିଁ କିଛି । ୫୪୮ ।
ବଳହୀନେ ଯେବେ ମୁଁ ସୁମରିବି ମୋର ଧନୁ
ପୁଣିହିଁ ନାସ୍ତି ଭାଷିବେ ରାଜାଗଣମାନୁଁ । ୫୪୯ ।
ଦ୍ରୋପଦର ପୁତ୍ରକୁ ସନ୍ନଧ୍ୟେ ହକାରି
ପ୍ରିୟଭାବ କରଣ ଯେ ଅର୍ଜୁନ ବୀର । ୫୫୦ ।
ଆହୋ ଧୃଷ୍ଟଦ୍ୟୁମନ ଶୁଣିମା ସାବଧାନେ
ଏହୁ ଧନୁ ବଳହୀନ ହୋଇଲା ବିନ୍ଧିବ ଟିକ ଆନେ । ୫୫୦ ।
ଧୃଷ୍ଟଦ୍ୟୁମନ ବୋଇଲା ଅବା ମୁଁ କରିବ ସନମତ
ରାଜାମାନଙ୍କୁ ପଚାରି ତହିଁର ତଦନ୍ତ । ୫୫୨ ।
ଏହୁତେ ବୋଲି ଧୃଷ୍ଟଦ୍ୟୁମନ ସଭା ମଧ୍ୟେ କହି
ସାବଧାନ ହୋଇ ଶୁଣ ଆହୋ ନରସାଇଁ । ୫୫୩ ।
ଏହୁ ଧନୁରେ ବଳ ନାହିଁ ଆରେକ ଧନୁରେ
ବିନ୍ଧିବାକୁ ବ୍ରାହ୍ମଣ କରନ୍ତୁ ସ୍ୱଇଚ୍ଛାରେ । ୫୫୪ ।
ରାଜାମାନେ ବୋଇଲେ ଏହୁ ନୁହଇ ଯୁଗତ
ତୋହୋର ଆନ ସିନା ହୋଇବ ସତ୍ୟବ୍ରତ । ୫୫୫ ।
ଏହୁହା ଶୁଣି ଅର୍ଜୁନ ବିଚାରେ ମନେ ଗୁଣି
ଦୁସହ ସଙ୍କଟ ମୋତେ ନାରାୟଣ ବିହିଲେକ ଆଣି । ୫୫୬ ।

---

୫୪୯।¹ ରାଜାଏହୁ ନାସ୍ତି କରିବେ ମନ୍ଦ ଗ୍ୟାଂନୁ ।
୫୫୫।² ତୋହର ଆନ ସିନା ହୋଇବ ସତ୍ୟନତ"—ଏହାପରେ ଗୋଟିଏ ପୋଥିର ଅଧିକା ପାଠ—

ଏହୁ କଥା ଶୁଣି ଅର୍ଜୁନ ବିଚାରଇ ମନେ
ସଙ୍କଟରୁ ମୋତେ ନାଥ ତାରିବୁ କେସନେ ।
ଦୁସହ ସଙ୍କଟ ମୋତେ ଲଗିଲକ ଆସି
କର ପ୍ରତିକାର ମୋତେ ବଇକୁଣ୍ଠବାସୀ ।
ଅର୍ଜୁନର ଦାଇନ ଶୁଣିଲେ ନାରାୟଣ
ଦରହସିତେ ଅର୍ଜୁନକୁ କରନ୍ତୁ କଲ୍ୟାଣ ।

ଫଟାର ଉପରେ ଥାଇ ସୁମରଇ ମଘବା
ଭୋ ପିତା ଗାଣ୍ଡୀମ ଧନୁ ମୋତେ ଦେବା । ୫୫୭ ।
ଅର୍ଜୁନର ସଙ୍କେତ ଜାଣି ପୁରନ୍ଦର
ଅନ୍ତରୀକ୍ଷେ ଗାଣ୍ଡୀମ ଆଣି ଦେଲେ ଅର୍ଜୁନର କର । ୫୫୮ ।
ଯେସନେକ ଚରିତ୍ର କାହାକୁ ନାହିଂ ଦୃଶ୍ୟ
ଇନ୍ଦ୍ର ଆଣିଦେବା ଜାଣନ୍ତି ନାରାୟଣ ବେଦବ୍ୟାସ । ୫୫୯ ।
ଅର୍ଜୁନ ବୋଇଲା ଯେ ଧନୁ ଥୋଇବଇଂ କାହିଂ
ରାଜାଏ ପୁଣ ଗୋଳ କରିବେ ଯେହା ଗୃହିଂ । ୫୬୦ ।
ଯେତେକ ବିଚାରି ସେ ବାସବର ତନୁ
ଆକେଷି ଅର୍ଜୁନ ଯେ ଧଇଲା ବେନି ଧନୁ । ୫୬୧ ।
ଗୋବିନ୍ଦେ ବୋଇଲେ ସ୍ୱାମୀ ଶୁଣ ବଳରାମ
ଅର୍ଜୁନ ପ୍ରତଗ୍ୟାଂ ହାଦେ ଯେସନ ଉତକର୍ମ । ୫୬୨ ।
ଦୁଷ୍ଟ ପିନାକରେ ମନଭେଦ୍ୟା ଶର ସନ୍ଧି
ଅର୍ଜୁନ ବିନୋପ୍ରି ଭଗତ ହୋଇ ଶହସ୍ରକୁ ବନ୍ଧ । ୫୬୩ ।
ଚକ୍ର ଭେଦ ମାଛର ବାମ ନୟନେ ଗଳିବୁ
ଡାହାଣ ଚକ୍ଷୁ ବାଟେ ଝଲକ ନିକଳ ରନ୍ଧ୍ରବୁ । ୫୬୪ ।
ଆପଣାର ଗାଣ୍ଡୀମରେ ବସାଇଲା ଖାକ୍ଷଶର
ତୁ ଯାଇ ପଡିବୁ ରାଧାଚକ୍ରର ଉପର । ୫୬୫ ।
ଚକ୍ର ଛିନାଇ ପକାଇବୁ ଭୂମିଗତେ
ରାଜାଗଣମାନେ ଦେଖନ୍ତୁ ସମସ୍ତେ । ୫୬୬ ।
ଦୁଇ ଧନୁରେ ଅର୍ଜୁନ ଦୁଇ ଶହସ୍ର ଧରି
ଆକେଷି ଗୁଡିଲା ଗୁଣ ଆମଞ୍ଜନ କରି । ୫୬୭ ।
ତଳକୁ କଲା ଦୃଷ୍ଟି ଉପରକୁ କଲା ମୁଷ୍ଟି
ବିଶ୍ୱରୂପ ପ୍ରକାଶ କଲାକ କରିଷ୍ଠୀ । ୫୬୮ ।
ଅନ୍ତରୀକ୍ଷ ମାର୍ଗେ ଚଳିଗଲା ବେନି ଶର
ଦୁଇ ଲକ୍ଷ ବଳ ଅଟଇ ଯେ ସେ ବେନି ଧନୁର । ୫୬୯ ।

---

୫୫୮।୧ ଅର୍ଜୁନର ସଂକେତ ଜାଣିଣ ପୁରନ୍ଦର ।
୫୬୮।୨ ବିଷ୍ଣୁର ତେଜ ରୂପ ପ୍ରକାଶିଲା କରିଷ୍ଠୀ ।
୫୬୮।୨ ବିଶ୍ୱରୂପ—ଜିଷ୍ଣୁରୂପ ।

ସଭାର ଅଭିମାନେ ଅର୍ଜୁନ କୋପେ ଶର ସନ୍ଧି
ଶ୍ରୀଜଗନ୍ନାଥ ସୁମର ଆନ୍ଦେଷି ନାରାଜ ବନ୍ଧି । ୫୭୦ ।
ମନଭେଦୀ ନାରାଜ ଗଲ୍‌କ ଶୂନ୍ୟପଥେ
ଝାଡିକାରେ ପଡିଲା ମାଛର ବାମ ନେତେ । ୫୭୧ ।
ଡାହାଣ ଚକ୍ଷୁ ବାଟେ ନିକଳି ରହିଗଲା ଶର
ଆଗ୍ୟାଂ ପ୍ରମାଣେ ରହିଲା ମାଛର ବାମ ଚକ୍ଷୁର । ୫୭୨ ।
ଆବୋ ପଶୁପତ ନାରାଜ ଯେ ଗଲା ପଛକତି
ଚକ୍ର ଉପରେଣ ପଡିଲ୍‌କ ଯାଇଂ ଝାଡି । ୫୭୩ ।
ମାଛ ଘେନି ରାଧାଚକ୍ର ଭୂମିରେ ପଡଇ ଛିଡି
ଆସ୍ଥାନ ସନ୍ନିଧେ ରାଜାଙ୍କ ସମ୍ମୁଖରେଣ ଯାଇଂ ପଡି । ୫୭୪ ।
ଶ୍ରୀହସ୍ତେ ତୋଳି ଘେନଲେ ଦ୍ରୋପଦେଶ୍ୱର ରାୟେ
ଦୁର୍ଯୋଧନ ସମ୍ମୁଖରେ ନେଇ ପ୍ରତକ୍ଷେ ଦେଖାୟେ । ୫୭୫ ।
ତୁ ଯେ ନାସ୍ତି କର ବାବୁ ପାଡିଲୁ ମହାଗୋଳ
ଭୀଷ୍ମ ଦ୍ରୋଣ ଆଦି କରି ଦେଖ ହେ ସକଳ । ୫୭୬ ।
କରେଣ ଘେନଲେ ଶିଖଣ୍ଡୀ ଧୃଷ୍ଟ ଯେ ଦ୍ୟୁମନ
ଦୁହେଁ ଦେଖାଇଲେ ନେଇ ଜାରାସନ୍ଧ ରାଜାର ସନ୍ନିଧାନ । ୫୭୭ ।
ମନଭେଦୀ ନାରାଜ ମାଛର ବାମ ଚକ୍ଷୁରେ ଭେଦିଅଛି ।
ଦେଖି ରାଜାଗଣମାନଙ୍କର କଣ୍ଠୁ ନ ଫୁଟଇ ବାଚ । ୫୭୮ ।
ଶଙ୍ଖଧ୍ୱନି ଶବଦ ଯେ କଲେ ଦେବହରି
ତ୍ରୈଲୋକ୍ୟ କମ୍ପିଲା ପାଞ୍ଚଜନ୍ୟ ଶଙ୍ଖ ଶବଦରେ କରି । ୫୭୯ ।
କରେଣ ସୁନ୍ଦରୀ ଘେନଣ ରତ୍ନମାଳୀ
ଅର୍ଜୁନ ସନ୍ନିଧ୍ୟେ ଯାଇଂ ବଜାୟେ ପାଞ୍ଚାଳୀ । ୫୮୦ ।
ମାଳା କଣ୍ଠେ ଦିଅନ୍ତେ ବୋଲଇ ଫାଲଗୁନ
ମୁକୁ ବରଣ ନ କର ଗୋ ଯିଦ୍ଧସେନୀ । ୫୮୧ ।
ଯେହୁଂ ଅର୍ଜୁନ ଦ୍ରୋପଦୀଙ୍କ ବରତ ନ ଦିଲା
ମାନଗୋବିନ୍ଦ ଶକୁନିଙ୍କ ହକାରି ପୁଚ୍ଛା କଲା । ୫୮୨ ।
ବ୍ରାହ୍ମଣର ଆଶା ଦେଖିଲୁଟିକି ମାତୁଳ
ଧନ ଆଶେ ବ୍ରାହ୍ମଣ ନ ଘେନିଲା ବରଣମାଳ । ୫୮୩ ।

ଚଳସି ମାତୁଳ ହୋ ଦ୍ୱିଜବର ପାଶ
ଦ୍ରୋପଦୀଙ୍କ ବ୍ରାହ୍ମଣଙ୍କୁ ସନ୍ନିଧିଙ୍କୁ ଘେନଆସ । ୫୮୪ ।
ଧନଙ୍କୁ ବ୍ରାହ୍ମଣ କଲ ଯେବେ ଇଚ୍ଛା
ଦେବା ଯେତେକ ସେ ରତ୍ନ କରଇ ମନେ ବାଞ୍ଛା । ୫୮୫ ।
ରାଜାର ଆଜ୍ଞାଂରେ ଗାନ୍ଧାରସେନର ସନ୍ତତି
ତତକ୍ଷଣେ ମିଳିଲା ଯାଇ ବ୍ରାହ୍ମଣର କତି । ୫୮୬ ।
ଏମନ୍ତେ ବ୍ରାହ୍ମଣଙ୍କୁ ସନ୍ନିଧେଣ ହକାରି
ସାଧୁ ଧନ୍ୟ ବ୍ରାହ୍ମଣ ହୋ ଜୀବନ ତୋହୋର । ୫୮୭ ।
ଯେବଣ ଲକ୍ଷ ବନ୍ଧ ନ ପାରିଲେ ସଇଲୋକ୍ୟେ
ତୁ ତାହା ଜୟେ କଲୁ ଲକ୍ଷେ ରାଜାର ସନମୁଖେ । ୫୮୮ ।
କୁଞ୍ଜଗଳ ଆଧିପତି ରାଜା ମାନ ଯେ ଗୋବନ୍ଦ
ତାହାର ସନ୍ନିଧିଙ୍କୁ ଆସିବୁ ତୋତେ ଆଜ୍ଞାଂ ଦେଇଛି ସାନନ୍ଦ । ୫୮୯ ।
ତୁ ତ ବ୍ରାହ୍ମଣ ହୋ ଅଟୁ ଭିକ୍ଷାବାସୀ
କର୍ମେ ପ୍ରାପତ ତୋତେ ହୋଇଲା ଶୁଭ୍ରକେଶୀ । ୫୯୦ ।
ରାଜାର କୁମାରୀ ସେ ଅଟଇ ପୂର୍ଣ୍ଣ୍ୟମାମୀ
ତୋହୋର ଚହୁଂ କନ୍ୟା ଯିବେଟି ବଳେ ଘେନି । ୫୯୧ ।
ଯେତେ ଧନ ଇଚ୍ଛା ତୋତେ ତେତେ ଧନ ଦେବା
ଶତେ ବଳାସୁଣୀ ତୋତେ ପ୍ରଦାନ କରାଇବା । ୫୯୨ ।
ବେହେରା ମାହାପାତ୍ର ପଣେ ତୋତେ ଦେବା ଶାଢ଼ୀ
ତୁହି ସେ ପଞ୍ଚ କଟକେ ହୋଇବୁ ଅଧିକାରୀ । ୫୯୩ ।
ଏସନଙ୍କ ବଚନ ଶୁଣି ବୋଲଇ ଅର୍ଜୁନ
ଏ କଥାମାନ ମୋର ନ ପଶଇ କର୍ଣ୍ଣ । ୫୯୪ ।
ଆହୋ ମନ୍ତ୍ରୀ ଶକୁନ ତୋହୋର ସବୁ କଥା ମିଛ
ମୁଂ ପଞ୍ଚୁ ରାଜ୍ୟେ ଅଧିକାରୀ ଏ କଥା ପ୍ରତ୍ୟକ୍ଷ । ୫୯୫ ।
ଆଜ ଅବଶ୍ୟ ତୁମ୍ଭେ ଆମ୍ଭର ତୁଲେ ଦ୍ୱନ୍ଦ ଯେ କରିବ
ସଂଗ୍ରାମ କଲେ କେହି ଜଣେ ଆଜ ବ୍ରତି ଯେ ନ ଯିବ । ୫୯୬ ।
ଏସନ କରି ତୁମ୍ଭଙ୍କୁ ନିର୍ବାଣ କଲା ବିଧାତା
ପଞ୍ଚାଳ ରାଜ୍ୟେ ହୋ ତୁମ୍ଭର ମୃତ୍ୟୁ ସମାଗତା । ୫୯୭ ।

ଆବର ଧନକଇ ଇଚ୍ଛା ଯେବେ ବଳଇଲା ଭୂମ୍ଭର
ଘନୁମଣ୍ଡିକ ଆନ କାହାକୁ ନଦେଇ ଧନ କାମ୍ୟ କର । ୫୯୮ ।
ଯେ଼ସନେକ ବଚନ ମନ୍ତ୍ରୁଂ ବ୍ରାହ୍ମଣ ବୋଇଲା ଉଚ୍ଚ ସ୍ୱରେ
ଭୂଚସବ ଗାଙ୍ଗବେ ହସିଲେ ନାସାରେ ଦେଇ କରେ । ୫୯୯ ।
କୋପେଣ ବୋଇଲା ସେ କୁମାର ଧୂଶାସନ
କ୍ଷତ୍ରୀ ହୋଇ ସହିବା କ ଯେ଼ସନେକ ଅଭିମାନ । ୬୦୦ ।
ସମୋଦ୍ର ଲଙ୍ଘିଲେ କ ରକ୍ଷା ହୁଅଇ କୂଳ
ମେରୁ ଟଳିଲେ କ ପୃଥୀକି କାହିଂ ଥଳ । ୬୦୧ ।
ଭିକ୍ଷାଶୀ ବ୍ରାହ୍ମଣକୁ କାହିଂକ ଯେ଼ତେକ ବଚନଯେ଼
ଲେଞ୍ଚନ୍ତ ଗଉଡ଼ବେବ କଲେ ଯେ଼ମନ୍ତ କଥା ହୋଯେ଼ । ୬୦୨ ।
ଯେ଼ ଗ୍ରର ଭିକ୍ଷାଶୀକି କମ୍ପେ ଆମ୍ଭେ ଧନ ଦେବା
ବ୍ରାହ୍ମଣକୁ ହାବୋକା ମାରି କନ୍ୟା ଘେନ ଯିବା । ୬୦୩ ।
ଯେ଼ତେ ବୋଲି ଧୂଶାସନ ଧାଇଂଲା ଆସ୍ତାନୁ
ଚଉଷଠୀ ଭାର ଗଦା ଘେନ ଧାମଇଂ ଗାନ୍ଧାରୀର ତନୁ । ୬୦୪ ।
ପ୍ରତଗ୍ୟାଂ ସାମରଥ ରେ ରେ କାର କରି ମୂର୍ତ୍ତି
ଶିଖଣ୍ଡୀ ଧୃଷ୍ଟଦ୍ୟୁମନେ ଅଛନ୍ତ ପାଥ କଣ୍ଡ । ୬୦୫ ।
ଆପଣେ ଦ୍ରୋପଦ ଧୂଶାସନକୁ ପ୍ରବୋଧି
ସତ୍ୟ ଲଙ୍ଘିଲେ ବାଭ୍ୟେ଼ ହୋଉଛୁ ଅବଧି । ୬୦୬ ।
କୋପେଣ ଧୂଶାସନ ଗୃପୋଡ଼େକ ମାରି
ପଡ଼ିଲା ଦ୍ରୋପଦେଶ୍ୱର ରୁଧିର ଉଦୁଗାରି । ୬୦୭ ।
ରାଜାର ଅସାଷ୍ଟମ ଦେଖି ଶିଖଣ୍ଡୀ ବାହୁଡ଼ିଲା
ଧୃଷ୍ଟଦ୍ୟୁମନ ଯାଇ ଧୂଶାସନକୁ ଓଗାଳିଲା । ୬୦୮ ।
ଶିଖଣ୍ଡୀ ବୋଇଲା ହୋ ଶୁଣ ଦ୍ୱିଜବର
ଦ୍ରୋପଞ୍ଜିକ ଘେନ ହୋ ଯାଅ ଆନ୍ତ ପୁର । ୬୦୯ ।
ଧୂଶାସନ ସହୁଂ ଆହେଷିଲା ଧୃଷ୍ଟଦ୍ୟୁମନକୁଂ
ଅଶୀ ସହସ୍ର ଯୋଦ୍ଧା ଯାଇଂ ଆବୋରିଲେ ତାହାକୁ । ୬୧୦ ।

---

୬୦୩।୨ ବ୍ରାହ୍ମଣଙ୍କୁ ଘଉଡ଼ାଇ କନ୍ୟା ଘେନଯିବା ।

୬୦୨।୨ ଲେଞ୍ଚ—ନୀଚ ।

୬୦୩।୨ ହାବୋକା—ଗଳା ଧକ୍କା ।

ସାଷ୍ଟାଙ୍ଗ ହୋଇଣ ଯେ ଦ୍ରୋପଦେଶ୍ୱର ଉଠି
ଆଶ୍ୱାସିଲେ ଯାଇଂଣ ଅର୍ଜୁନ ମୁଖ ଗୋଟି । ୬୧୧ ।
ମୁହିଂ ତୋର ଅପାଦ ଘେନଇଂ କନା ବାବୁ
ଅପସର ଯାଅ ବାବୁ ଯେବେଥେ ଥିଲେ ନାଶ ଯିବୁ । ୬୧୨ ।
ଦ୍ରୋପଦି ପ୍ରଣପତ୍ୟ ଅର୍ଜୁନ ପାଦ ବେନ
ଘୁଞ୍ଚସି ପଣ୍ଡାପେ ସବୁର ଦଇନ ଘେନ । ୬୧୩ ।
କୋପେଣ ଆସୁଅଛୁ ଯେ ଧୂଶାସନ ମନ୍ଦ
ଭାଇ ମୋହୋର ନ ସହିବେ ଯେବେ ହୋଇବ ଦ୍ୱନ୍ଦ । ୬୧୪ ।
ଦୂଭାର ରଜାପେ ଅଛଇ ମାନଗୋବନ୍ଦ
କର୍ଣ୍ଣ ଜୟଦ୍ରଥ ଶିଶୁପାଳ ଆବର ଜରାସନ୍ଧ । ୬୧୫ ।
ପୁଣ୍ଡରିକ ଦନ୍ତବକ୍ର ବାଣାସୁର ନାରକା
ଭାଇମାନେ ଭାଞ୍ଜିବେଟି ସଙ୍ଗେ ଥିବୁ ତୁ ଯେବେକା । ୬୧୬ ।
ମୁହିଂ ସ୍ୱାମୀ ତୋର ଅପାଦ ଘେନଯାଇଂ
ଶରୀର ନାଶ ନ କର ମୁହିଂ ଅନାସ୍ତିମା ପାଇଂ । ୬୧୭ ।
ସ୍ୱାମୀ ଯେବେକା ପ୍ରାକର୍ମେ କାହିଂ ଧର ହୋଅଇ ପୃଥୀ
ଯେବେକା କଇବ୍ରତେ କ ସମୋଦ୍ର ହୋଏ ମନ୍ଥି । ୬୧୮ ।
ପର୍ବତ ଟଳଇ କ ଯେବେକା ଜଣକର ବଳେ
ବଜ୍ରତ କ୍ଷୟ ଯାଇ କ ଯେବେକା ଜଣକର କୋପ କଲେ । ୬୧୯ ।
ଦେବତାହିଂ ହୋଇଲେ ନ ଶୋହଇ ଯେବେକା
ଯେବେକା ଜଣକର ଥିଲେ ସ୍ୱାର୍ଥ ନୋହେ ଲେଖା । ୬୨୦ ।
ନାଶଯିବୁ ନା ସ୍ୱାମୀ କାର୍ଯ୍ୟ ନୋହିବ କାହୁଁ
ଯେବେକା ସରଜନନ୍ତ କାହିଂରେ ନ ପୁଛି । ୬୨୧ ।
ଯହୁଂ କଥାଳ ଆସି କଲକ ଧୂଶାସନ
କଚରେଣ ଶହସ୍ର ଧଇଲେ ଧୃଷ୍ଟ ଯେ ଦୁମନ । ୬୨୨ ।
ଦ୍ରୋପଦି ବଇକୁଳ ହୋଇ ସୁମରିଲେ ଭଦ୍ରକାଳୀ
ମା ଗୋ ଦୁଯୋଧନ ପାମର ତ ସତ୍ୟକୁ ନ ପାଳ । ୬୨୩ ।
ଆରେ କଉରବେ ଆମ୍ଭନ୍ତ ଦଅ କଷ୍ଟ
ସତ୍ୟ ନ ପାଳ ଯେ ଲଂଘୁଛ ପାପିଷ୍ଟ । ୬୨୪ ।

---

୬୨୧।୨ ଯେବେକା ସରଜନନ୍ତ—ଜଣେ ହୋଇ ସୃଷ୍ଟହେବା ବ୍ୟକ୍ତିକୁ କାହିଁରେ ଗଣନ୍ତି ନାହିଁ ।

ମୁହିଂ ଯେ ନୋଧେ ତ ହୋଇଅଛି ବଇକୁଳ
ଯେଣୁ ମୋହୋର ଲୁଅ ତୁମ୍ଭଙ୍କୁ ହୋଇବ କି ଭଲ । ୬୨୫ ।
ଯଦ୍ୟପି ମୁହିଂ ନଷ୍ଟେ ଅଟଇ ଯିଘ୍ନସେଣୀ
ଅଗ୍ନିରୁ ଉପୁଜିଲ ଅଦାଗ୍ର ଅଯୋନି । ୬୨୬ ।
ଯଦ୍ୟପି ମୁହିଂ ଅଟଇ ସତ୍ୟବନ୍ତୀ
ମହାମନ୍ତ୍ରେ ଜାତ କଲେ ବ୍ୟାସ ମହାଯତି । ୬୨୭ ।
ଯେଣୁ ମୋହୋର ଶାପ୍ୟ ପ୍ରତକ୍ଷେ ତୁମ୍ଭଙ୍କୁ ପଡୁ
ଯେଣୁ ସ୍ୱାମୀଙ୍କର ହାଥରେ କଉରେବନ୍ତ କନ୍ଧ ଛିଡୁ । ୬୨୮ ।
ଶୁଣିଣ ବାସବ ଯେ ପାଇଲେ ମନେ ହାସ
ନ ପୁଣ ଦ୍ରୋପଦୀ ବୋଲେ ତୁମ୍ଭର ବଂଶ ଯାଉ ନାଶ । ୬୨୯ ।
ବେଳେ ବେଳେ ବଢାଇ ଆସୁଅଛି କୋପ
ଆମ୍ଭର କଣ୍ଟକ ଯେଣୁହାର ଆସିବ ଅଭିଶାପ । ୬୩୦ ।
ଯେଣୁ ମହାସତୀର ଶାପ ନ ଯିବ ମେଣ୍ଟଣ
ଅର୍ଜୁନ ବୋଇଲେ ଦେବୀ ମୋହୋର ବାକ୍ୟ ଶୁଣ । ୬୩୧ ।
ତୁ ଯେ ବୋଇଲୁ ଦେବୀ ମୁକୁ ଯେଣୁକା
ଯେଣୁକା ହନୁମନ୍ତେ ଦହନ କଲା ଲଙ୍କା । ୬୩୨ ।
ଯେଣୁକା ମନ୍ଦରକେ ଖିରୋଦ୍ର ହାଦେ ମନ୍ଥି
ନଦାଢ ବଳ ଧଂସିଲାଟି ଯେଣୁକା ନାରାୟଣ ମୂର୍ତ୍ତି । ୬୩୩ ।
ବିନତାର ନନ୍ଦନ ଗରୁଡ ଅଟଇ ଯେଣୁକା
ଧଂସିଲା ନାଗବଳ ନ କଲା କଛି ଶଙ୍କା । ୬୩୪ ।
ଇଛାକୁର ବଂଶେ କୁମର ଭଗ୍ୟରଥି
ଯେଣୁକାଯେଣୁ ଆକାଶ ଗଙ୍ଗା ଆଣି ବୁହାଇଲା ପୃଥୀ । ୬୩୫ ।
ଯେଣୁକା ନାଗ ରାଜା ଯେ ଅଟଇ ଅନନ୍ତ
ଫେଣୁରେ ଧଇଲା ଅଛି ନବଦ୍ୱୀପ ସିନ୍ଧୁ ସାତ । ୬୩୬ ।
ଯେଣୁକା ପ୍ରଶୁରାମ କଲେ କ୍ଷତ୍ରି ଦୃତ୍ତ
ଯେଣୁକୋଇଶ ବାର ପୃଥୀ କଲେ ନିଛନ୍ଦ । ୬୩୭ ।

---

୬୩୩।୧ ଖିରୋଦ୍ର—କ୍ଷୀରୋଦ୍ର—କ୍ଷୀରସମୁଦ୍ର
୬୩୫।୧ ଇଛାକୁ—ଇକ୍ଷ୍ୱାକୁ, ଭଗ୍ୟରଥି—ଭଗୀରଥ ।
୬୩୭।୨ ନିଛନ୍ଦ—ନିକ୍ଷତ୍ର ।

ଆମ୍ଭର ଉପର ବଂଶେ ନୃପତି ଯଯାତି
ସେ୍ୱକା ଜଣକେ ଭୁଆଇଲା ନବଖଣ୍ଡ ପୃଥ୍ୱୀ । ୭୩୮ ।
ସେ୍ୱକା ଅଗସ୍ତି ଋଷି ବାଳ ବିନୋଦ ଖେଳନ୍ତେ
ସମୋଦ୍ର ଚଳୁପେ୍ୱ କଲେଟି ସନ୍ତୋଷେ । ୭୩୯ ।
ତୁ ମୋତେ ସଙ୍ଗାଭୁଣୀ ନ ବୋଲନ୍ତି ସେ୍ୱକା
ଗମ୍ଭୀର ସମୋଦ୍ରେ କାହ୍ନଂ ଦେଉ କାଠି ଯୋଖା । ୭୨୦ ।
ସେ୍ୱହ୍ମକ୍ଷଣି ଦେଖ ମୋର ସେ୍ୱକାର ଚରିତ
ମାରିବ ଦୁଷ୍ଟନ୍ତ ଆଜ କଟିବ ଜଗନସ୍ତ । ୭୨୧ ।
ଲକ୍ଷେ ଯୋଦ୍ଧା ଘେନି କୁମାର ଶିଖଣ୍ଡୀ
ପବନ ଗତି ଯୋଦ୍ଧାପେ୍ୱ ଗଜ ଅଶ୍ୱନ୍ତ ମଣ୍ଡି । ୭୪୨ ।
ଶ୍ୱେତାର ତୁରଙ୍ଗ ତୁଲେ ଯୋଦ୍ଧାପେ୍ୱ ପାଞ୍ଚ ଲକ୍ଷ
ଶଦ୍ରସ୍ତ୍ରନ୍ତ ବୁଲାଇ ଅର୍ଜୁନକୁ ଦେଖାଇଲା ସାହାପକ୍ଷ । ୭୪୩ ।
ହସ୍ତେ ଧନୁ ଧରି ଗୁଣ ଟଙ୍କାର କରି
ଲକ୍ଷେପ୍ରର କରି ସେ ଧୃଷ୍ଟଦ୍ୟୁମ୍ନକୁ ବେଢି । ୭୦୪ ।
ଧୃଷ୍ଟଦ୍ୟୁମ୍ନକୁ ବେଢିବା ଦେଖି କୁରୁପତି
ଆସ୍ଥାନ ତେଜି ଉଠିଲା ମାନଚନ୍ଦ୍ରଗ୍ରଣ୍ଡି । ୭୦୫ ।
ମଣିନାଗ ନାମେ ସେ୍ୱକଇ ମତ୍ତ ଗଜେ
ଧାଡକାରେଣ ତାହାର ପିଠିରେ କଲା ବିଜେ । ୭୦୬ ।
ସନ୍ତୁରି ସନ୍ତୁରି ଭାରି ବେନି ଗଦା ହସ୍ତେ
ଯୋଦ୍ଧା ଅମନାତ୍ୟ ମାନେ ବସିଲେ ଯାଇ ରଥେ । ୭୪୭ ।
ଗଜ ରଥ ଅଶ୍ୱ ଯୋଦ୍ଧା ନ ଯାଇ ପରିକଳି
ଦୁନ୍ଦୁଭି ଶବଦେ ସେ କମ୍ପଇ ମହୀଆଳୀ । ୭୪୮ ।
ପଶୁପତି ଗଦା ମୁଦ୍ଗର ଛେଲ ଚନ୍ଦ୍ର କାଡି
କୁନ୍ତ ଖଡଗ ଅସିବର ମୂଷଳ ଶକ୍ତି । ୭୪୯ ।
ଧନୁଫଳା ଆଡଣ ଅସିପତ୍ର ପାଠି
କମାଣ ଗ୍ରୁରୁଜ ଉଦ୍ଦଣ୍ଡ ଖଡଗ ପାଟି । ୭୫୦ ।
ଧାମରେ ଧାମରେ ମାରି ବେଗ ବେଗ ସାଜ
ଘଣ୍ଟାର ଶବଦେ ଗର୍ଜ ଧାମନ୍ତ ଗଳଗାଜି । ୭୫୧ ।

ଜାରା ନାରକା ଶିଶୁପାଳ ରୁକ୍ମଣ
ରେ ରେ କାର ଶବଦେ ଉଠିଲେ ସମସ୍ତ ରାଜାଗଣ । ୬୫୨ ।
ପଣ୍ଡିତ ଧାର୍ମିକ ବିବେକ ଯେତେ ରାଏ
ଦୁଷ୍ଟ ରାଜାମାନନ୍ତ ସମାର୍ଜନା କଏ । ୬୫୩ ।
ଅନମିତ୍ତେ ଦ୍ୱନ୍ଦ ତୁମ୍ଭେ ନ କର ବ୍ରାହ୍ମଣକୁ
ସାମାନ୍ୟ ପ୍ରାଏକ ତୁମ୍ଭେ ନ ମଣ ତାହାକୁ । ୬୫୪ ।
ତୁମ୍ଭମାନଙ୍କୁ କମ୍ପେ ଦୃଶ୍ୟ ହୋ ନୋହିଲ
ବ୍ରାହ୍ମଣ ନୋହିଇ ସେ ନାରାୟଣ ବିଜେ କଲ । ୬୫୫ ।
ଅସମ୍ଭବ ଲଖ ବନ୍ଧିଲ ଯୁଗତେ
ତୁମ୍ଭେ ତାହାକୁ ଦୂଷିତ କର କୋଉଣସି ମତେ । ୬୫୬ ।
ଯେ ଯେ ଅପଣ୍ଡିତ ମୂର୍ଖ ଦୁଷ୍ଟ ଯେ ପ୍ରକୃତି
ପଣ୍ଡିତଙ୍କ କଥା ସେ ଶ୍ରବଣେ ନ ଶୁଣନ୍ତି । ୬୫୭ ।
ଦୁର୍ଯୋଧନ ବୋଇଲ ତୁମ୍ଭେ ନ ଜାଣ ହୋ କିଛି
ଆକାଶର ଜନ ଯେବେ ସରୂପ କାହିଁ ଅଛି । ୬୫୮ ।
ସେହୁ ଯେହୁ ବିଷ୍ଣୁ ଶଙ୍ଖ ଚକ୍ର ଗଦା କାହିଁ
ହୃଦରେ ଯେହ୍ନାର ଯେ ଶ୍ରୀବତ୍ସ ଚିହ୍ନ ନାହିଁ । ୬୫୯ ।
ମର୍ତ୍ତ୍ୟ ଭୁବନରେ ବିଷ୍ଣୁ ଜନମ ହୋଇଲେ
ଗୋପେ ଜନ୍ମ ହୋଇ ନନ୍ଦ ସୁତ ବୋଲାଇଲେ । ୬୬୦ ।
ମଧୁପୁରେ ପଶି କଂସାସୁରକୁ ମାଇଲେ
ଅଷ୍ଟଦକ୍ଷ ଆଦି କରି ସର୍ବ ସଂହାରିଲେ । ୬୬୧ ।
ଉଗ୍ରସେନକୁ ତହିଁ ନୃପତି ପଦ ଦିଲେ
ସେହି ପୁଣି ଜାରାସନ୍ଧ ଭଏ ପଳାଇଲେ । ୬୬୨ ।
ଶ୍ରୀଜଗନ୍ନାଥେ ଜାତ ହୋଇଲେ ମଧ୍ୟ ଭୁବନେ
ଜାରାସନ୍ଧ ଡରେ ପଳାଇ ପଶିଲେ ଦ୍ୱାରିକା ଭୁବନେ । ୬୬୩ ।
ଯଦ୍ୟପି ସମ୍ମୁଖେ ଆସିବ ଦେବରାଜ
କାହାର ଦର୍ପେ ମୈଥୁ କନ୍ୟା ନେଉ ଆଜ । ୬୬୪ ।
କେତେ ସାଂଗ୍ରାମ କରିବ ଏ ବ୍ରାହ୍ମଣ ବଳବନ୍ତା
ମୋହୋର ହସ୍ତରୁ କନ୍ୟା କେଉଁ ରେ ନିଅନ୍ତା । ୬୬୫ ।

ଯେତେ ବୋଲି କୋପ କଲା ଗାନ୍ଧାରୀର ସୁତ
କଦଳୀପତ୍ର ପ୍ରାୟେ କମ୍ପଇ ତାର ଗାତ୍ର । ୬୬୬ ।
ସୁବୁଦ୍ଧି ପଣ୍ଡିତ ରାଜାମାନେ ଛଆରୁଣ ଥିଲେ
ତାହାଙ୍କୁ ମାନଗୋବିନ୍ଦ କୋପେଣ ବୋଇଲେ । ୬୬୭ ।
ଯେତେକ ରାଜାମାନେ ସାଂଗ୍ରାମକୁ କର ଅବା ଭୟେ
ଓପ୍ରୋଧ ଘେନ ତୁମ୍ଭେ ଚଳ ସର୍ବ ରାୟେ । ୬୬୮ ।
ପ୍ରତକ୍ଷେ ଦେଖିଲ ସେ ଅଇଲା ଦ୍ୱିଜବର
ଦେଖୁଂ ଦେଖୁଂ ବଣା କମ୍ପା ଅନ୍ଧ ପରକାର । ୬୬୯ ।
ଦଦରା ଛତା ଖଣ୍ଡିଆ ପାଣ୍ଡୋଇ ହରିଗୋବିନ୍ଦ ମୁଣି
ଛନକ ପକାଇ ବ୍ରାହ୍ମଣ ଅଇଲା ଯେହ୍ନକ୍ଷଣି । ୬୭୦ ।
ଲଖଖଣ୍ଡ ଅବା ବାନ୍ଧିଲା ଧର୍ମବଳେ
ତାହା ଗୁରୁକୁ ବୋଲ ତୁମ୍ଭେ କେବଣ ଦିଗପାଳେ । ୬୭୧ ।
ସଜ୍ଜନ ରାଜାମାନେ ହୋଇଲେ ଅନ୍ତର
ଜାଣିମା ଯେହ୍ନକ୍ଷଣି ପ୍ରତଗ୍ୟାଂ ତୁମ୍ଭର । ୬୭୨ ।
ଧର ଧର ମାର ମାର ପଡୁଅଛି ବୋବ
ଚରଣ ଚାପାତେ କମ୍ପୁଅଛି ପୃଥୀଦେବୀ । ୬୭୩ ।
ରଥ ଗଜ ଅଶ୍ୱ ପାଦାନ୍ତ କଳନା ନ ଯାଇ
ଭେରୀ ମହୁରୀ ତାଳ କଂସାଳ ମୁରଜ ବାଜଇ । ୬୭୪ ।
ମହୀକ ଘୋଟିଲା ଉଚ୍ଛୁଳଣ ନଦୀରାଜ
ଶବଦ ଶୁଭିଲା ଶୂନ୍ୟେ ଥାଠ ସାଜ ସାଜ । ୬୭୫ ।
ଯେସନେକ ଶବଦ ଯହୁଂ ଶୁଣିଲେ ବ୍ରାହ୍ମଣେ
ସର୍ବେ ସଭାରୁ ଉଠିଲେ କୋପଭର ମନେ । ୬୭୬ ।
ଭୀମ ନକୁଳ ଯେ ସହଦେବ ଅଛନ୍ତି ବସି
ଠାକୁରଙ୍କ ଆଗ୍ୟାଂକୁ ସେ ଅଛନ୍ତି ଉଦ୍ଦେଶି । ୬୭୭ ।
ବ୍ରାହ୍ମଣମାନେ ତହୁଂ ଧାଇଂଲେ ଧାଡିକାରେ
ଆମ୍ଭର ପ୍ରତଗ୍ୟାଂ ଭ୍ରଷ୍ଟ କରି ଲୋଡଇ କେ ରେ । ୬୭୮ ।
କେହ୍ନ ପୀତାନ୍ତ ଘେନଲେ ଡାହାଣ ହସ୍ତରେ
କେହ୍ନ ଗଡୁ କପୋରା ଘେନଲେ ବାମ କରେ । ୬୭୯ ।

---

୬୭୪।୨ ମୁରଜ—ମୃଦଙ୍ଗ, ପଖୋଜ ।

ଶ୍ରୁବ ଡାଙ୍ଗ ପ୍ରୋକ୍ଷଣୀ କେ ବୁଲାଇ କୋପଭରେ
ମାର ମାର ବୋଲି ଧାଇଁଲେ ଦ୍ୱିଜବରେ । ୬୮୦ ।
ଛତାନ୍ତ ଭାଙ୍ଗିଣ କେ ବେଣ୍ଟମାନନ୍ତ ବୁଲାଇ
ଖଣନ୍ତା କରଯଷ୍ଟି ଯେନ ବିପ୍ରେ ବେଗେ ଧାଇଁ । ୬୮୧ ।
ରେ ରେ କାର କରି ବ୍ରାହ୍ମଣେ ମାଡ଼ ପଡ଼ିଲେ ତହିଁ । ୬୮୨ ।
ବ୍ରାହ୍ମଣଙ୍କର ମୂର୍ତ୍ତି ସନ୍ୟଙ୍କର ଉଚ୍ଚବାଚେ
ଭୀମସେନ ଶରୀର କମ୍ପଇ ରୋମାଞ୍ଚେ । ୬୮୩ ।
ଶରୀର କମ୍ପନ୍ତେ ଯେ ଯୁଧିଷ୍ଠିର ଦେଖିବେ ତହିଁ
କେମନ୍ତ ହେ ପଣ୍ଡିତେ ତୁମ୍ଭେ ଲୋଡ଼ କନ୍ୟା ଯାଇ । ୬୮୪ ।

---

୬୮୦ "ମାର ମାର ବୋଲି ଧାଇଁଲେ ଦ୍ୱିଜବରେ" ପାଦାନ୍ତ ପରେ ଗୁପ୍ତପାଡ଼ାର ଅଧିକା ପାଠ—

ଅନ୍ୟାୟ କରି କନ୍ୟାକୁ ନେବେ ଯେବେ ଆଜ
କାଲେ କାଲେ ଆମ୍ଭେମାନେ ପାଇବା ନା ଲାଜ ।
ମାର ମାର କ୍ଷତ୍ରିୟଙ୍କୁ ଉପରୋଧ ଛାଡ଼
ମାଡ଼ ପଡ଼ିଲେ ବ୍ରାହ୍ମଣେ ଧରି ଛତା ବାଡ଼ ।
ରେ ରେ କାର କରି ଡେଇଁ ପଡ଼ିଲେ ବ୍ରାହ୍ମଣେ
କ୍ଷତ୍ରିୟ କୁଳରେ ଆମ୍ଭେ ନ ରଖିବା ଜଣେ ।
ଏହା ଦେଖି ଯୁଧିଷ୍ଠିର କଲେ ମହାଭୟ
ବିପ୍ର ବଧେ ମହାପାପ ହୋଇବ ନିଶ୍ଚୟ ।
କରଯୋଡ଼ି ବୋଇଲେ ହେ ବ୍ରାହ୍ମଣ ଗୋସାଇଁ
ସଭାରୁ ଉଠିଲ ତୁମ୍ଭେମାନେ କାହିଁପାଇଁ ।
ବିପ୍ରେ ବୋଇଲେ ଦୁଷ୍ଟଙ୍କୁ କରିବୁ ସଂହାର
ଯୁଧିଷ୍ଠିର ବୋଇଲେ ତୁମ୍ଭେ କୋପକୁ ସମ୍ଭର ।
ଲକ୍ଷବିନ୍ଧା ଦ୍ୱିଜବର ସାମାନ୍ୟ ନୁହଇ
କଉତୁକେ ଦେଖିବା ନା ଆମ୍ଭେ ଏଥେ ଥାଇ ।
ଏକମୁଖେ ଆଶୀର୍ବାଦ କର ସେ ଦ୍ୱିଜକୁ
କନ୍ୟା ନେଉ ଜିଣି ଆଜ କ୍ଷତ୍ରୀୟ କୁଳକୁ ।
ଯୁଧିଷ୍ଠିରଙ୍କ କଥା ଶୁଣି ବସିଲେ ବ୍ରାହ୍ମଣେ
ବୋଇଲେ ମରନ୍ତୁ ଆଜ ଦୁଷ୍ଟ ରାଜାଗଣେ ।

୬୮୩ { ବ୍ରାହ୍ମଣଙ୍କ ଉଚ୍ଚବାଚ ମୁଖରବ ଶୁଣି
ଭୀମ କମ୍ପଇ ବାତରେ ରମ୍ଭା ପତ୍ର ଜାଣି ।

କାଞ୍ଚିତ ଆଗ୍ୟାଂ ଭୀମା ଲୋଡୁଥିଲା ମନେ
ଯାଇଂ ଲୋଡ଼ କ ବୋଲନ୍ତେ ଧାଇଂଲା ଭୀମସେନେ । ୬୮୫ ।
ଆଗେଣ ଦେଖିଲା ଯେ ତେନ୍ତୁଳ ବେନ ବୃକ୍ଷ
ଧାଡକାରେ ଉପାଡ଼ଲା ତାହା ପବନର ବଚ୍ଛ । ୬୮୬ ।
ବଳରାମେ ବୋଇଲେ ତୁ ଦେଖ ଦେଖ ଜଗନ୍ନାଥ
ଅର୍ଜୁନ ଚରଣ ହୋଇଲା କେମନ୍ତ । ୬୮୭ ।
ଗୋବିନ୍ଦେ ବୋଇଲେ ସ୍ୱାମୀ ଦେଖ ହୋ ବଳରାମ
ବେନ ବୃକ୍ଷ ବୁଲାଇ ରଣେ ବିଜେ କଲା ବୀର ଭୀମ । ୬୮୮ ।
ଉଗ୍ର ହୋଇଣ ଗୃହ୍ନିଂଲେ ଦେବ ହଳପତି
ଦେଖିଲେ ଭୀମସେନର ବୃକୋଦର ମୂରତି । ୬୮୯ ।
ନୃସିଂହ ମୂରତି ଯେହ୍ନେ ହିରଣ୍ୟ ବିଦାରଣ କାଳେ
ତମ୍ଭାଚନ୍ଦ ଜାଣି ଭୀମର ଭ୍ରମଇ ବେନ ଡୋଳେ । ୬୯୦ ।
ପୋଡଲାର ପର୍ବତ ଯେହ୍ନେ ଆସଇ ଉପୁଡି
ଆଗେଣ ପଡଲାକ ଆସି କୃତାନ୍ତକ ଧାଡି । ୬୯୧ ।
ଆରେ ଆରେ ବୋଲ ଭୀମ ରଡ଼ଯେ ଗୁଡ଼ଲା
ମଧ ଭୁବନ କ ହାଦେ ଲେଉଟି ପଡ଼ଲା । ୬୯୨ ।
ପାଞ୍ଚ ଲକ୍ଷ ଯୋଜନ ଯେ ସଯମନୀ ପୁର
ଆସନ ଛେକଣ ଯେ ହାସିଲେ ଦେବ ନାଶକର । ୬୯୩ ।
କୃଷ୍ଣ ବୋଇଲେ ଯେବଣ ବୃକ୍ଷ କରେ ଉପାଡଲା ଭୀମ
ସେ ବୃକ୍ଷ ଆଜ୍ଞୁଂ ହୋଇଲା ପାଣ୍ଡବ ତରୁ ନାମ । ୬୯୪ ।

---

୬୮୪ ପଦ ପରେ ଭିନ୍ନପାଠ—
ପୁନଶ୍ଚ କାଞ୍ଚିତ ଆଗ୍ୟାଂକୁ ଭୀମ ଲୋଡୁଥିଲ ମନେ
ଯାଅ ବୋଲୁଂ ଉଠି ଧାଇଂ ଗଲା ତତକ୍ଷଣେ ।
ବ୍ରାହ୍ମଣେ ବୋଇଲେ ଦ୍ୱିଜ ସ୍ନେହ କିସ ତୁମ୍ଭର
ଧୃଷ୍ଟେଦ୍ୟୁମ୍ନି ବୋଇଲେ ମୋର ସ୍ନେହ୍ନ ସହୋଦର
ଲକ୍ଷବିନ୍ଧା ବିପ୍ରଠାରୁ ସ୍ନେହ ଅଟେ ବଡ଼
ବିପ୍ରେ ବୋଇଲେ ମରନ୍ତୁ ଦୁଷ୍ଟ କ୍ଷତ୍ରୀ ମୂଢ଼ ।
୬୯୩।୧ ସଯମନୀ—ସଞ୍ଜୀବନୀ ।

ଭୀମସେନ ମୂର୍ତ୍ତି ସହୁଂ ଦେଖିଲେ ଯୁଧିଷ୍ଠିର
ଲଲାଟେ ତାଡଲେ ନେଇ ବେନ କର ଗୋଟି । ୬୯୫ ।
ଶରୀର କମ୍ପନ୍ତେ ବୋଇଲେ ଲୋତକ କରେ ଯାଇ
ଯେତେକ ମାରକେ ଧାଇଂଲା ଗର୍ଜନ ନାଦ ଦେଇ । ୬୯୬ ।
ଆବର ଆଶ୍ଚର୍ଯ୍ୟ ଦେଖ କରେଣ ବେନ ବୃକ୍ଷ
ପ୍ରତକ୍ଷେ ଦେଖିଲୁଂ ମାଇଲା ବକା ହିଡମ୍ବକ । ୬୯୭ ।
ବନସ୍ତରୁ ଅଭିମାନ ଶରୀରେ ଅଛି ଧରି
ଧାଇନ୍ତ ମାରିବ ମୋର ସେ ରାଗ ସୁମରି । ୬୯୮ ।
ବାବୁ ନକୁଳ ରେ ଯାଅ ବେଗ ହୋଇ
ମୋହୋ ଆନ ପାଣ୍ଡ ଭୀମକୁ ଯାଇ ଆଣ ବାହୁଡାଇ । ୬୯୯ ।
ଧାମଇଂ ନକୁଳ ଯେ ସ୍ୱାମୀର ଘେନ ଆଗ୍ୟାଂ
ଭୀମହୁଂ ବଳନ୍ତି ଯେ ନକୁଳର ପ୍ରତଗ୍ୟାଂ । ୭୦୦ ।
ଭୀମର ଭୁଲେ ନକୁଳ ହୋଇଲାକ ସଙ୍ଗ
ସେହି ପୁଣି ବେନ ବୃକ୍ଷ ଉପାଡ ଧାମଇଂ ଅତି ବେଗ । ୭୦୧ ।
ନିର୍ଧୂମ ଅଗ୍ନି ଜାଣି ଦିଶଇ କାୟେ
ପ୍ରତକ୍ଷେ ଦିଶନ୍ତ ସେ କେତୁ ମଙ୍ଗଳର ପ୍ରାୟେ । ୭୦୨ ।
ଯୁଧିଷ୍ଠିର ବିଷାଦ ହୋଇଲେ କପୋଳେ ଦେଇ ନିଜ ହସ୍ତ
ସହଦେବକୁ ବୋଇଲେ ବାବୁ ହୋଇଲା କେମନ୍ତ । ୭୦୩ ।
ଯେତେକରୁ ହୋଇଲେ ଦୁଇ ଦୁଇରୁ ହୋଇଲେ ତିନ
ମହାଯେ ବୁଡଲା ଦ୍ରିଯୋଧନ ଆଜ ଯିବ କ ଦେହ ଘେନ । ୭୦୪ ।
ରାଗେଣ ଭୀମସେନ ଆଜ ସବୁନ୍ତ ମାରିବ
ଅନ୍ଧରାଜା ଗୋଟି ମୋର ଆଜ ଅନାସ୍ତ ହୋଇବ । ୭୦୫ ।
ବାବୁ ଯେ କଥା ନ ଯୋଗାଇ ରେ ମୋହୋର ମନକୁ
ସ୍ତିରି ଗୁରୁ ପାଇଂ କମ୍ପା ମାରିବା ସୋଦରଙ୍କୁ । ୭୦୬ ।
ବାବୁ ନୋହୁ ନୋହୁ ଦ୍ରୋପଦୀ ରେ ଆମ୍ଭର ତେଣେ କାର୍ଯ୍ୟ ନାହିଂ
ତୁ ଯାଇ ସହଦେବ ଯେ ସବୁନ୍ତ ଆଣ ବାହୁଡାଇ । ୭୦୭ ।
ବାବୁ ତୁ ତ ଧାର୍ମିକ ଭଗ୍ୟଂବନ୍ତ ପଣ୍ଡିତ ମନ୍ତ୍ରୀ ଚୂଡାମଣି
ସହୋଦ୍ର ମାରି କ ବାବୁ ଆଣିମା ରମଣୀ । ୭୦୮ ।

---

୬୯୯। ଆନ—ରାଣ, ଶପଥ ।

ନୋହଇ ଜନା ସେ ରେ ସ୍ତିଗ୍ଧ ମାନ୍ଧ ସ୍ଥିର
ସୋଦର ଥିଲେ ସ୍ତିଗ୍ଧ ପାଇବା ଅପାର । ୭୦୯ ।
ଆମ୍ଭର ଶପତ ବାବୁ ରେ ବେଗେ ଘେନ ଆସ ଯାଇ
ସହଦେବ ଧାଇଂଲା ଯୁଧେଷ୍ଠିଙ୍କ ଆଗ୍ୟାଂ ପାଇ । ୭୧୦ ।
ବେଗେଣ ଯନ୍ତ୍ରଂ ଧାଇଂଲା ମନ୍ତ୍ରୀ ଚୂଡାମଣି
ଯୁଧେଷ୍ଠି ବଗୃରନ୍ତ ଯେ ବାହୁଡାଇ ଆଶିମ ଯେହ୍ନକ୍ଷଣି । ୭୧୧ ।
ସହଦେବ ଯେ ସେ ନୋହଇ ଦ୍ୱନ୍ଦକାଖି
ଯେହାର ବଚନ ଆମ୍ଭେ ନ ଲଙ୍ଘୁ ଭାଇ ଗୃର । ୭୧୨ ।
ବନସ୍ତର କଷ୍ଟ ଯେ ସୁମର ଅନୁରାଗେ
ଭୀମ ନକୁଳ ସହଦେବ ଧାଇଂଲେ ଅତି ବେଗେ । ୭୧୩ ।
ଦେଖିଣ ଆଶ୍ରିଯ ହୋଇଲେ ଯୁଧେଷ୍ଠି
ସବୁହ୍ମଂ ବଳଲା ତ ସହଦେବର ଅରଷ୍ଟି । ୭୧୪ ।
ଯୁଧେଷ୍ଠି ବୋଇଲେ ଯେକା ଆମ୍ଭେ ମନ୍ଦକୃତ୍ୟ କଲୁ
ଗୋଟିଯେ ଗୋଟିଯେ କର ସବୁନ୍ତ ବରଗିଲୁ । ୭୧୫ ।
ଯେକୁଂ ଦୁଇ ଦୁଇରୁ ତିନ ତିନରୁ ହୋଇଲେ ଗୃର
କରବେ ମହାଯୁଦ୍ଧ ବନସ୍ତ କଷ୍ଟାନ୍ତ ସୁମର । ୭୧୬ ।
ଯେକମୁଖ ହୋଇ ଯେ ଧାମଇଂ ବୃକୋଦର
ରାହୁ ଘୋଟିଲା କ ଜାଣି ନଶାକର । ୭୧୭ ।
ଚନ୍ଦ୍ର ଯେହ୍ନେ ଲୀନ ଯାଇ ରାହୁର ତେଜ ଦେଖି
ଭାଞ୍ଜିଲେ ଯୋଦ୍ଧାଯେ ସମର ଉପେଖି । ୭୧୮ ।
ଧୂଶାସନ ଧାମଇଂ ଗଦାକୁ ବୁଲାଇ
ବ୍ରାହ୍ମଣଙ୍କ କଟକ ସେ ଯେକମୁଖ ହୋଇ । ୭୧୯ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ଯେ ଅର୍ଜୁନ ପାରୁଶେ ଥିଲେ
ଧୂଶାସନକୁ ଦେଖିଣ ଭାଞ୍ଜି ପଳାଇଲେ । ୭୨୦ ।
ଅର୍ଜୁନ କଟରେ ସେ ହୋଇଲେ ପରବେଶ
ନ ରହନ ପଣ୍ଡା ହେ ଧୁଞ୍ଜୁଣ ବେଗେ ଆସ । ୭୨୧ ।
ସମୋଦ୍ର ପୋତା ହୋଇ କ ଧୂଳ ପକାଇଲେ
ପର୍ବତ ଭାଞ୍ଜନ୍ତ କ ଟେଳା ଯେ ମାଇଲେ । ୭୨୨ ।

---

୭୧୦।୧ ଶପତ—ଶପଥ

ଅର୍ଜୁନ ବୋଇଲେ ତୁମ୍ଭେ ରାଜାର କୁମର ଅଟ
ରାଜ୍ୟ ଭୋଗ ଅଛି ପାଇବ କର୍ମେ କଷ୍ଟ । ୭୨୩ ।
ତୁମ୍ଭେ ତ ରାଜକୁମର ଆମ୍ଭେ ଅଟୁ ବ୍ରାହ୍ମଣ ଜନ
ଘୁଞ୍ଚିଯାଅ ତୁମ୍ଭେ ହୋ ନ କର ସାଂଗ୍ରାମ । ୭୨୪ ।
ଭିକ୍ଷାଶୀ ବ୍ରାହ୍ମଣ ଆମ୍ଭେ ଜୀବନକୁ କସ ଆଶ
ପାଇଲୁ ସାଂଗ୍ରାମ ଆମ୍ଭେ ରଣେ ଦେବୁଂ ଝାସ । ୭୨୫ ।
ଜଣିଲେ ଉପୁଜିବ ସାଧୁ ସାଧୁ ଧୁନି
ମଲେହେଁ ଜଣିମା ନା ଭୁବନ ସଞ୍ଜୀବନୀ । ୭୨୬ ।
ଏମନ୍ତେକ ବଚନରନ୍ତେ ଧାମଇ ଧୁଶାସନ
ଗଦା ବୁଲାଇ ପ୍ରବେଶ ଅର୍ଜୁନ ସନ୍ନିଧାନ । ୭୨୭ ।
ଆରେ ଆରେ ବ୍ରାହ୍ମଣ ତୋର ଏମନ୍ତେକ ସାହସ
ଜଳନ୍ତା କୁଇରେ ଆସି ଦେଉଅଛୁ ଝାସ । ୭୨୮ ।
ବହନ ଦ୍ରୋପଦୀଙ୍କ ଗ୍ରୁଡ଼ ରେ ବ୍ରାହ୍ମଣ
ହତ୍ୟା ନ ବଚ୍ଛର ମୁଣ୍ଡ ମୋଡ଼ିବ ଏହିକ୍ଷଣ । ୭୨୯ ।

---

୭୨୬।୨ "ମଲେହେଁ ଜଣିମା ନା ଭୁବନ ସଞ୍ଜୀବନୀ" ପାଦାନ୍ତ ପରେ ଗ୍ରୁପା ବହିରେ ଅଧିକା ପାଠ—

ଧୃଷ୍ଟଦ୍ୟୁମନ ବୋଇଲେ ଗୋ ଆସ ଯିବା ବେଗେ
ସମୁଦ୍ର ପରାଏ ଯୋଦ୍ଧା ଆସୁଛନ୍ତି ବେଗେ ।
ଦ୍ରୋପଦୀ ବୋଇଲେ ଭାଇ ହେଲକ ଅଗ୍ୟାନ
କରିବ କି ତୁମ୍ଭେ ସତ୍ୟ ବଚନ ଲଙ୍ଘନ ।
ଯେ ବିନ୍ଧିଲା ଲକ୍ଷ ଜାଣ ସେହି ମୋର ବର
ସେହି ମୋ ଜୀବନ ଧନ ମୁଂ ଦାସୀ ତାହାର ।
ସେ ମଲେ ତାହାର ସଙ୍ଗେ ମରଣ ମୋହୋର
ଆଉ କାହିଂ ପାଇଂ ମୁହିଂ ଯିବି ତୁମ୍ଭ ଘର ।
ପିତାଙ୍କୁ ସଙ୍ଗରେ ଘେନ ଯାଅ ବେଗକରାଇ
ନଗରକୁ ରକ୍ଷାକର ସନ୍ୟ ସଙ୍ଗେ ନେଇ ।
ଏତେ ଦୁଷ୍ଟ ରାଜାଏ ନିଜ ବାହାନ୍ତି ପୁରକୁ
ମୁହିଂ କେବେ ନ ଛାଡ଼ିବି ଏ ଦ୍ୱିଜବରକୁ ।
ଏମନ୍ତେ କଥାବାର୍ତ୍ତା ହେଉଂ ଧୁଶାସନ ବୀର
ଗଦା ବୁଲାଇ ପ୍ରବେଶ ଅର୍ଜୁନ ଛାମୁର ।

ଅର୍ଜୁନକୁ ଧୂଶାସନ ଯେମନ୍ତ ବୋଲିବାର ସମୟେ
ରେ ରେ କାର କରି ପଛେ ପ୍ରବେଶ ପବନର ତନୟେ । ୭୩୦ ।
ଧୂଶାସନର ଗ୍ୟାନ ନାହିଂ ବ୍ରାହ୍ମଣ କରି ବୋଲି
ପାଞ୍ଚାଳୀକି ଧରିବ ବୋଲି ଆସୁଅଛି ପେଲି । ୭୩୧ ।
ଆରେ ଆରେ ବୋଲି ବେନି ବୃକ୍ଷେ ବୁଲାଇଲା ଭୀମେ
ପିଠି କରି ଧୂଶାସନକୁ ପିଟିଲା ଗରୁ ତମେ । ୭୩୨ ।
ଗର୍ଜିଣ ଧୂଶାସନ ପଡିଲା ଭୂମିଗତେ
ନାସିକା ବାଟେ ଶୋଣିତ ବହଇ ଅପ୍ରମିତେ । ୭୩୩ ।
ଯାଇଣ ପ୍ରବେଶ ହୋଇଲା ଭୀମ ଅର୍ଜୁନର କତି
ପଡିଅଛି ଧୂଶାସନ ଡେଇଂଗଲା ଝାନ୍ତି । ୭୩୪ ।
ଦ୍ରୋପଦୀ ବୋଇଲେ ଗୋସାଇଂ ତୁମ୍ଭେ ଶୁଣିମା ପଣ୍ଡାୟେ
ଯେ ପଣ୍ଡାୟେ ତୁମ୍ଭର କିସ ହୋଅନ୍ତ ମହାପ୍ରଚଣ୍ଡ କାୟେ । ୭୩୫ ।
ଦ୍ରୋପଦୀର ଅଗ୍ରତେ କହନ୍ତ ଫାଲଗୁନ
ଯେ ଆମ୍ଭର ଜ୍ୟେଷ୍ଠ ଭ୍ରାଥ ଶୁଣସି ଯିଦ୍ଧସେନୀ । ୭୩୬ ।
ଗର୍ଜିଣ ମାରୁତି ପୁଣ ଧାଇଂଲା କୋପ କରି
ଦକ୍ଷିଣ ବାମ କରେ କେଶ ତାହାର ଧରି । ୭୩୭ ।
ମୁଣ୍ଡ ମୋଡିବାକୁ ଲୋଡଇ ମାରୁତି
ଅର୍ଜୁନ ବୋଇଲା ଦେବ କୋପ କର ଶାନ୍ତ । ୭୩୮ ।
ଯୁଧିଷ୍ଠି ଠାକୁରେ ଯେହାଙ୍କୁ ସୋଦର ବୋଲନ୍ତ
କଞ୍ଚିତ ଦୋଷକୁ ହାଦେ ବନ୍ଧୁତ ନୋହଇ ଶାସ୍ତି । ୭୩୯ ।
ଅର୍ଜୁନ ଛଡାଇ ଦିଲା ଧୂଶାସନ ବାଳ
ଭୀମସେନ ଫିଙ୍ଗି ଦିଲା ଗଳାଇ ଜାନୁ ତଳ । ୭୪୦ ।
ଦୁର୍ଯୋଧନ ଅଗ୍ରତେ ଶକୁନି କହିଲା
ବ୍ରାହ୍ମଣ ଦର୍ପେ ତୋର ଧୂଶାସନ ନାଶ ଗଲା । ୭୪୧ ।
ଶକୁନିର ତହ୍ନଂ ନରାଧାର ବଚନ ଶୁଣି
କୋପେ ଶିର ଝୁଣି ଉଠିଲା କୁରୁମଣି । ୭୪୨ ।
କୋପେଣ ହସ୍ତୀ ଯେ କମ୍ପାଇ କୁରୁପତି
ବ୍ରାହ୍ମଣ ବୋଲି ସେ ଗ୍ଲୁଡିଥିଲା କୋପମୂର୍ତ୍ତି । ୭୪୩ ।

---

୭୩୫।୨ ଯେ ପଣ୍ଡାୟେ ତୁମ୍ଭର କିସ ହୁଅନ୍ତ ମହାଜଙ୍ଗମ ଯେହାଙ୍କର କାୟେ ।

ଧୃଶାସନ ଅପମାନ ଦେଖିଣ ସର୍ବଭ୍ରାଥେ
ଗର୍ଜି ଧାଇଂଲେ ସେ କୋପାନଳ ଚିତ୍ତେ । ୭୪୪ ।
ନକୁଳ ସହଦେବ ଆସୁଛନ୍ତି ଧାଇଂ
ଦୁର୍ଜୟେ ଦୁର୍ଦ୍ଦାନ୍ତକ ମୁଖେ ପଡିଲେକ ଯାଇଂ । ୭୪୫ ।
ନକୁଳଙ୍କୁ ଦୁର୍ଜୟ ମାଇଲା ନେଇ କୋନ୍ତେ
ବଞ୍ଚାଇ ନକୁଳ ତା ଧଇଲା ବାମ ହସ୍ତେ । ୭୪୬ ।
କୋନ୍ତ ଧରିଣ ଦୁର୍ଜୟଙ୍କୁ ମାଇଲା ପାଦଘାତେ
ଉତ୍ତାନସାହ୍ମି ହୋଇ ପଡିଲା ଧୃଶାସନ ସାନ ଭ୍ରାତେ । ୭୪୭ ।
ସେହି କୋନ୍ତ ଘେନ ମାଇଲା ତା'ର ହୃଦେ
ହାଥୀରେ ଥାଇ ଦେଖଇ ରାଜା ମାନଗୋବିନ୍ଦେ । ୭୪୮ ।
ଦୁର୍ଜୟେ ଅସାଷ୍ଟମ ଦେଖି ଧାଇଂଲା ଦୁର୍ବିଷ୍ଟଇ
ସହଦେବ ବୃକ୍ଷ ଘେନ ଉପରେ ତାହାର ପିଟଇ । ୭୪୯ ।
ଘାୟେଣ କଉରେବ ପଡିଲା ମୁହଂ ମାଡି
ରୋଧିରମୟେ ହୋଇଲା ପାଷାଣରେ ପଡି । ୭୫୦ ।
ସଂଗ୍ରାମେ ବ୍ୟର୍ଥ ସହୁଂ ହୋଇଲେ ଭାଇ ତିନ
ସମର ଆବୋରିଲା ମନ୍ତ୍ରୀ ଯେ ଶକୁନ । ୭୫୧ ।
ଶକୁନକ ଦେଖି ଧାଇଂଲା ସହଦେବ
ରେ ରେ କାର କରି ବୃକ୍ଷେ କଲା ପରାଭବ । ୭୫୨ ।
ବୃକ୍ଷର ବଘାତେଣ ପଡିଲା ସାରଥୀ
ଭୂମିରେ ରଥ ବସିଲା ତତକ୍ଷଣାନ୍ତେ । ୭୫୩ ।
ରଥ ଉପରୁ ବେଗେ ଡେଇଂ ପଡିଲା ଶକୁନ
ସହଦେବକଇ ବିନ୍ଧିଲା କରେଣ ଧନୁ ଘେନ । ୭୫୪ ।
ନାରାଚ ବଞ୍ଚାଇଲା ମନ୍ତ୍ରୀଚୂଡାମଣି
ଶକୁନକ ବୃକ୍ଷେକ ପ୍ରହାର କଲା ଆଣି । ୭୫୫ ।
ଘାୟେଣ ନିଚେଷ୍ଟ ଯେ ଶକୁନ ମହାମନ୍ତ୍ରୀ
ଶକୁନର କେଶ ସହଦେବ ଧଇଲାକ ଝାଡି । ୭୫୬ ।
ଡାହାଣ ପାଦ ସହଦେବ ବଡାଇଂ ଉର୍ଦ୍ଧ୍ୱେ କରି ତୋଳିଲା
ଜାନୁ ତଳେ ତାଙ୍କୁ ଗଳାଇଂ ଫିଙ୍ଗି ପକାଇ ଦେଲା । ୭୫୭ ।

ଶକୁନିର ରଥ ଘେନି ଗଲେ ଭାଇ ବେନି
ନକୁଳ ସହଦେବ ଯାଇଂ ଅର୍ଜୁନର ପାଦତଳେ କରନ୍ତି ବନ୍ଦନ ।୭୫୮।
ଅନେକ ରତ୍ନ ମଣି ଯେ ମଣ୍ଡିଣ ଅଛି ରଥେ
ଦେଖିଣ ସାନନ୍ଦ ଯେ ଦ୍ରୌପଦୀଙ୍କ ଦୋହ୍ଵଚିତେ । ୭୫୯ ।
ଯେମାନେ ସ୍ୱାମୀ ତୁମ୍ଭର କସ କସ ହୋଅନ୍ତି
ଯେ ମୋହୋର ସାନୁଜ ଭାଇ ଶୁଣ ଗୋ ଦ୍ରୌପଦୀ । ୭୬୦ ।
ଦେଖିଣ ପାଞ୍ଚାଳୀ ପ୍ରଶଂସନ୍ତି କାଯ୍ୟେ
ଗୃହେଁ ବଶନ୍ତି ତ ମକରକେତନ ପ୍ରାୟେ । ୭୬୧ ।
ବହୁମ ମୂର୍ତ୍ତି କଲେ କେତୁ ମଙ୍ଗଳ ଜାଣି
ଦେଖି ଅନେକ ସାନନ୍ଦ ଦ୍ରୌପଦ ଦୁଲଣୀ । ୭୬୨ ।
ଭୀମ ବୋଇଲେ ତୁମ୍ଭେ ହେ ବସ ରଥେ
ରଥେ ବସିଲେ ଦ୍ରୌପଦୀ କେଶିନୀ ମୃଦୁସୁନ୍ଦ୍ରୀ ସହିତେ । ୭୬୩ ।
ଯେସନେକ ସମୟେ କର୍ଣ୍ଣ ମହାରଥୀ
ଦୁଇ ପାଖେ ଅଛି ତାର ଗୃହ ଅନ୍ତରେ ହାଥୀ । ୭୬୪ ।
କର୍ଣ୍ଣର ମୂରତ ଦେଖି ସାନନ୍ଦ ପାବନ
ଗର୍ଜିଣ ଉଠିଲା ବୁଲାଇଣ ବେନି ବୃକ୍ଷ ଘେନି । ୭୬୫ ।
ଅର୍ଜୁନ ପ୍ରଣପତ୍ୟ ଭୀମସେନର ପାଦ
ସମ୍ଭାଳ ଯୁଦ୍ଧ କର ସ୍ୱାମୀ ନ କର ପ୍ରମାଦ । ୭୬୬ ।
ଦର୍ପନ୍ତି ଚୂର କର ଭଙ୍ଗାଇ ଦେବା ଥାଠ
ପଳାନ୍ତି କଉରବେ ସାଂଗ୍ରାମେ ପାଇଣ ମହା ଘାଟ । ୭୬୭ ।
ଶତ୍ରୁ ଦର୍ପ ମର୍ଦ୍ଦନ ବାନା ଦେବ ବଜାଇଲେ ବାଦ୍ୟମାନ
ଯୁଦ୍ଧେଷ୍ଟି ଠାକୁରଙ୍କର ହରସ ନୋହୁ ମନ । ୭୬୮ ।
ଯେସନକ ବୃହର ସବୁର ମନେ ଗୁଣି
ଯେମନ୍ତର ସମୟେ କର୍ଣ୍ଣ ନାଗଜ ବନ୍ଧାଲାକ ଆଣି । ୭୬୯ ।

---

୭୬୭।୨ ପଳାନ୍ତି କଉରବେ ଯୁଦ୍ଧେ ପାଇଣ ମହାକଷ୍ଟ ।
୭୬୭।୨ ଘାଟ—ଦୁର୍ଘଟଣା, କଳଙ୍କ ।

ଭୀମସେନ ଦୁଃଶାସନକୁ ସମରେ ଜିଣିଥିଲା
ଚଉଷଠୀ ଭାର ଗଦା ତାର ତହୁଂ ଉଚ୍ଛୁଡ଼ି ଯେନଗଲା । ୭୭୦ ।
ସେ ଗଦା ବେନିକ ଧରି ଅଛି ବେନି ହାଥେ
ଦ୍ରୋପଦ ରାଜାର ଧନୁ ଧରିଅଛି ବୀର ପାଥେ । ୭୭୧ ।
ଆଦ୍ୟେ ଯେବଣ ଧନୁ ରଚିଲେ ବିଶ୍ୱକର୍ମା
ତ୍ରେତାରେ ବହିଲେ ତାହା ଈଶ୍ୱର ମହାତମା । ୭୭୨ ।
ନକୁଳ ଯେ ଜିଣିଲା ଦୁର୍ଜୟେ ବଳବନ୍ତ
ତାହାର ହାଥରୁ ଉଚ୍ଛୁଡ଼ି ଯେନିଲାକ କୁନ୍ତ । ୭୭୩ ।
ସେହି କୁନ୍ତ ନକୁଳ ଧରିଅଛି କରେ
ଯୋଦ୍ଧାମାନନ୍ତ ଦେଖି ଦନ୍ତ ଚୂପଇ ଅଧରେ । ୭୭୪ ।
ଦୁରଷ୍ଟକୁ ସଂଗ୍ରାମେ ଜିଣିଲା ସହଦେବ
କରେଣ ମନ୍ତ୍ରୀବର ଧରି ଅଛି ତାର ଚୂବ । ୭୭୫ ।
ବିକଚ୍ଛ ବସନ ଫେଡ଼ି ମାଲ କାଛେଣି ପିନ୍ଧ
ଲମ୍ବିତ ଜୂଡ଼ା ଫେଡ଼ି ନାଗବନ୍ଧେଣ ବାନ୍ଧ । ୭୭୬ ।
ବାମ କରେଣ ବାନ୍ଧିଲା କନ୍ଧର ପଇତା
ଅଧରେ ଦନ୍ତ ଚୂପି ରକତ-କୁମ୍ଭ-ନେତା । ୭୭୭ ।
ତ୍ରିଦଣ୍ଡ ଛତ୍ରୀ ସେ ଛଦ୍ରମେଣ ପଣ୍ଡା
ଉତ୍କଣ୍ଠିତ ରୋମାବଳୀ କରେଣ ଆୟୁଧ ଖଣ୍ଡା । ୭୭୮ ।
ରେ ରେ କାର ଶବଦେ ଚୂରିହେଂ ଉଠିଲେ ଗଳଗାଜ
ପବନହୁଂ ପାଦଗତି ବହଇନ୍ତ ଦ୍ରପିଷ୍ଟ ବଳ ଗଞ୍ଜି । ୭୭୯ ।
ବଦୁରେ ଦେଖିଲେ ଯେ ପାଣ୍ଡବଙ୍କର ମୁଣ୍ଡ
ବନସ୍ତେ ପୋଷ୍ୟେ ମୋର ପାଇଲେ ଅନ୍ନ ଶାନ୍ତି । ୭୮୦ ।
ଭୀଷ୍ମେ ବୋଇଲେ ଦ୍ରୋଣେ ଯେମାନେ କେମନ୍ତ
ଦ୍ରୋଣେ ବୋଇଲେ ନକୁଳ ସହଦେବ ଭୀମ ପାର୍ଥ । ୭୮୧ ।

---

୭୭୮।୧ ଛତ୍ରୀ—ଛତ୍ରିସ୍ଥ ବା ଛତ୍ରଧାରୀ ।
୭୭୮।୨ ତ୍ରିଦଣ୍ଡ—କାୟଦଣ୍ଡ, ମନଦଣ୍ଡ ଓ ବାକ୍‌ଦଣ୍ଡ (କାୟ, ମନ ଓ ବାକ ଜୟୀ)

ଶୁଣ ଭ୍ରାଥେ ଆସି ହୋଇଲେକ ଏକ
ସଞ୍ଜୟେ କଉରବେ ବଳ ହୋଇବେ ନରେଖ । ୭୮୨ ।
ଭୀଷ୍ମେ ବୋଇଲେ ଶୁଣ ସମାଧାନ କରିବା
ଦ୍ରୋଣେ ବୋଇଲେ ରହ ସଂଗ୍ରାମ ଦେଖିବା । ୭୮୩ ।
ଆମ୍ଭେହେଂ ସଂଗ୍ରାମ କରିବା ନପ୍ରୋଧି
ଜାଣିମାନା ପାଣ୍ଡବେ କେତେମାନ ଯୋଧି । ୭୮୪ ।
ଶୁଣ ଅହ୍ନିବ୍ରତ ମୁକୁଟବନ୍ଧା ଯୋଦ୍ଧା ଧେନଣ ବୀର କର୍ଣ୍ଣ
ଦୁର୍ଯୋଧନକୁ ଚୁହାଇ ଧାଇଂଲା ରାଧେବନନ୍ଦନ । ୭୮୫ ।
କର୍ଣ୍ଣର ରଥେ ଯେ ବିକର୍ଣ୍ଣ ସାରଥୀ
ବାହଇ ତୁରଙ୍ଗମ ସେ.ପବନହୁଂ ବେଗ ଗତି । ୭୮୬ ।
ଭୀମସେନ ଧାଇଂଲା କରେ ଗଦାନ୍ତ ବୁଲାଇ
କର୍ଣ୍ଣର ରଥବରେ ହାଦେ ପିଟିଲା ବେଗେ ନେଇ । ୭୮୭ ।
ଭାଙ୍ଗିଣ ରଥ ଯେ ହୋଇଲା ଶତେ ଚୂନା
ନାଶକର ପ୍ରାୟେ ଭେଟିଲା ବୃକୋଦର ଜେନା । ୭୮୮ ।
କର୍ଣ୍ଣ ବିରଥି ଦେଖି ଶଲ୍ୟ ଅଶତ୍ଥମା
ରଥେ.ରଥେ ଚଢି ଆବୋରିଲେ ଦେଖଇ ବୀର ଭୀମା । ୭୮୯ ।
ଧନୁଯ୍ୟେ ଧନୁଯ୍ୟେ ଧରି ପୂରେଇଲେ ନାରାଜ
ଭୀମକୁ ବିନ୍ଧିଲେ ଅଶତ୍ଥମା ଶଲ୍ୟ ମହାରାଜ । ୭୯୦ ।
ଅନ୍ତରୀକ୍ଷେ ଗଦା ବୁଲାଇଂ ଭୀମସେନା
ମାରୁତିର ହୃଦେ ପଡି ସବୁ ନାରାଜ ହୋଇଗଲା ଚୂନା । ୭୯୧ ।
ଗର୍ଜିଣ ବୃକୋଦର ଦିଅଇ ଘୋର ରଡ଼ି
ଶଲ୍ୟଙ୍କର ରଥ ଭୀମ ଧରିଲା ଦଉଡ଼ି । ୭୯୨ ।
ଧରିଣ ରଥ ବୁଲାଇଲା ଅନ୍ତରୀକ୍ଷେ
ଅଶତ୍ଥମା ରଥେ ନେଇ ପିଟିଲା ପ୍ରତକ୍ଷେ । ୭୯୩ ।
ଭାଙ୍ଗିଣ ବେନି ରଥ ହୋଇଲା ମସ୍ତୀଗୁଣ୍ଡା
ରଣ ରଙ୍ଗେ ନାଚଇ ମାରୁତି ପରଚଣ୍ଡା । ୭୯୪ ।
ଗଜଙ୍କର ଉପରେ ଯେ ଅଛନ୍ତି ମାହୁନ୍ତେ
ମାରନ୍ତି ଲାଙ୍କିଆ ଯେ ପ୍ରହାର କରନ୍ତି ଲାଖ କୋନ୍ତେ । ୭୯୫ ।

ବାମ ଅଙ୍ଗ ପାଣ୍ଡ ଭୀମସେନ ନ କରଇ ଘାତ
ଦରଣ୍ଡି ବେନି ଭୁଜେ ଧଇଲା ବେନି ହାଥୀ । ୭୯୬ ।
ମହା ମତ୍ତ ନାଗ ଦଶନ୍ତ ମଦକଳ ପରାୟେ
କଣ୍ଠରେ ବୁଲାୟେ ତାହା ପବନ ତନୟେ । ୭୯୭ ।
ଦୁଇ ହାଥେ ଧରି ଅନ୍ତରୀଛେ ବୁଲାଇ
ଗଜ ଯୋଦ୍ଧାଙ୍କର ଉପରେ ପ୍ରହାରିଲା ନେଇ । ୭୯୮ ।
ଗଜକୁ ଗଜ ପଡନ୍ତାଳ ଭୂମିରେଣ ଲୋଟି
ହାବୋଡା ହାବୋଡ ଘାତେ ରଥେ ଯାଉଛନ୍ତି ଫାଟି । ୭୯୯ ।
ଆରେ ଆରେ ବୋଲି ଗର୍ଜଇ ମାରଇ ପାଦଘାତେ
ଚରଣ ପଡ଼ି ଚୂର୍ ହୋଉଛନ୍ତି ଅଶ୍ୱ ଯେ ରାଉତେ । ୮୦୦ ।
ପଟ୍ଟା କୁନ୍ତ ଲର୍କି ଆ ଅସିପଟ୍ଟ ମୂଷଳୀ
ଝଲକନ୍ତି ଛେଲ ଚନ୍ଦ୍ର ଶ୍ୟାମଳ ମେଘେ କି ବିଜୁଳି । ୮୦୧ ।
ବେଢିଣ ଯୋଦ୍ଧାୟେ କରନ୍ତି ପ୍ରହାର
ନାରାଜ ନ ଫୁଟଇ ବ୍ରିକୋଦର ଅଙ୍ଗର । ୮୦୨ ।
ଶତଶିଂଗ ପ୍ରସନ୍ନ ହୋଇଅଛୁ ଜନ୍ମକାଳେ
ବଜ୍ର ଶରୀର ହୋଇବ ତୋହୋର ବ୍ରିକୋଦର ରୂପ ବେଳେ । ୮୦୩
ସେ ରୂପ ବିକାଶିଛୁ ବୀରବର ପାବନି
ଯେକ ଉତ୍ତର ଶତେ ସିଂଘର ପ୍ରାକର୍ମ ଅଛୁ ଯେନି । ୮୦୪ ।
କହନ୍ତେ ଅସମ୍ଭବ ସେ ସଂଗ୍ରାମର କଥା
ଭୟେଣ ଆସ୍ଥାନ ଛୁଡଇ ନାଶକର ଦେବତା । ୮୦୫ ।
ଗହଳ ଧନ୍ଦୋଳ ଯୁଦ୍ଧ ଦେଖି ନାରଦ ମହାମୁନି
ଆରେ ଭୀମାକୁ ବେଢିଲେ ଯୋଦ୍ଧାୟେ ଧାଆଂ କନା ଫାଲଗୁନି ।୮୦୬।
ଲଗୁ ଲଗୁ ବୋଲି ନୃତ୍ୟ କରନ୍ତି ତପୋନିଷ୍ଠି
ଧାଆଂ ରେ ବୋଲି ଡାକ ଦିଅନ୍ତି ପାଣ୍ଡବଙ୍କର ଗୁପତ ନାମ ଗୋଟି ।୮୦୭।
ଧାଆଂ ରେ କୌରବେ ନ ପୂଞ୍ଜ ସଂଗ୍ରାମେ
ପଣ୍ଡାଙ୍କୁ ପଣ୍ଡାୟେ ନୋହୁ ଅଛନ୍ତି କ୍ଷମେ । ୮୦୮ ।

---

୮୦୧।୧ ପ୍ରଥମ ପାଦରେ—ଭୂଶଣ୍ଡି, ଖଣ୍ଡାଗ, କୋଠାର, ପରଶୁ, ଫଳା ଅସ୍ତ୍ର ଶସ୍ତ୍ର ପ୍ରଭୃତି ବିଭିନ୍ନ ପୋଥିରେ ଅଛି ।

ଆରେ କୋଉରେବେ କଷ୍ଟେ ହେଳୁଂହେଳ ହୋଉଅଛ
ବ୍ରାହ୍ମଣେ ସଂଗ୍ରାମେ ଭୁମ୍ନନ୍ତ ନୁହନ୍ତ ନା ଓଛ । ୮୦୯ ।
ବ୍ରାହ୍ମଣ ପରାଧେ ରେ ନ ବୁଝ ସେହିଭାଙ୍କୁ
ତୁ ଆପଣେ ଉଠ ହୋ ବୋଇଲେ ଦ୍ରୁଯୋଧନକୁ । ୮୧୦ ।
କଳ କୁତୋହୋଳ ଦେଖିବାର ନିମନ୍ତେ
ପାଣ୍ଡବକ୍ତ ବୋଲ ମୁନ ନ ବୋଲନ୍ତ ତଥ୍ୟେ । ୮୧୧ ।
ଗୃଚଗୋଟି ବ୍ରାହ୍ମଣକୁ ଲକ୍ଷେକ ନୃପତି
କାହାର ମୁଖ ଗ୍ରୀବାଂବଟି ଭଞ୍ଜି ଣ ଗଲେ ସେଥି । ୮୧୨ ।
ଲାଗୁ ଲାଗୁ ବୋଲ ଡାକନ୍ତ ବ୍ରହ୍ମାଙ୍କ ତନୁଜା
ନାରଦଙ୍କ ବଚନେ ଧାଇଂଲେ ସର୍ବ ରାଜା । ୮୧୩ ।
କୁନ୍ତ ନାରାଜ ଖଡଗ ଫଳା ଶକତି ଘେନ
ଦୁନ୍ଦୁଭି ବାଦ୍ୟେ ନାଦ ଶୁଭଇ ଘୋର ଧ୍ୱନି । ୮୧୪ ।
କରେଣ ଧନୁ ଧରି ଅର୍ଜୁନ ନକୁଳ ସହଦେବ
ମହାଘୋର ନାଦେ ଧାଇଂଲେ ସେ ତିନ ପାଣ୍ଡବ । ୮୧୫ ।
ଭିମକୁ ବେଢିଥିଲେ ଯେ ଶତେକ ମହାରାଜା
ନକୁଳ କୁନ୍ତ ଘାଏ ଦୁଇ ଭାଗେ ସନ୍ୟ ଭଞ୍ଜା । ୮୧୬
ଦୁସହ ସଂଗ୍ରାମ ଦେଖିଣ ଦେବ ସୁରପତି
ଆକାଶୁଂ ହୋଣ ଗୁଡ ଦଲେ ତତକ୍ଷଣାନ୍ତ । ୮୧୭ ।
ମାତଲ ଘେନ ଅଇଲା ଅନ୍ତରୀକ୍ଷେ
ଅର୍ଜୁନର ସମ୍ମୁରେ ସେ ଦଲାକ ପ୍ରତକ୍ଷେ । ୮୧୮ ।
ଦେବ ଶସ୍ତ୍ର ପାଇଣ ବୀର ଫାଲଗୁନ
ବାନ୍ଧିଲା ଅବଛନ୍ନେ ନାରାଜ କରେ ଘେନ । ୮୧୯ ।
ପଞ୍ଚାଶ ସହସ୍ର ରାଜା ଘେନଣ ଉଠିଲା ବୀର ଜାରା
ଅର୍ଜୁନକୁ ଶତେ ପୁର କରି ବେଢିଲା ମହାବୀରା । ୮୨୦ ।
କେ ଶତେ ନାରାଜ କେ ବେନ ଶତ ବାଣ
କେ ଶତେ ଶହସ୍ର ବାନ୍ଧନ୍ତ ଅବଛନ୍ନ । ୮୨୧ ।

---

୮୧୮।୨ କରେ ଅଗ୍ନି ଦଳ କୁମାରେ ସହସ୍ରାକ୍ଷେ ।

କେ ପାଞ୍ଚ ସହସ୍ର କେ ବିନ୍ଧନ୍ତି ଅହିବ୍ରତେ
କକଡ଼ା ବୃଷ୍ଟି ଜାଣି ଦିଶଇ ଶରପଥେ । ୮୨୨ ।
ଦୁସହ ନାରାଚ ବିନ୍ଧନ୍ତି ମହାଘୋର
ଆକାଶେ ଅଦୃଶ୍ୟ ହୋଇଲେ କରତାର । ୮୨୩ ।
ଅନେକ ଯୋଦ୍ଧା ତୁଲେ ବିନ୍ଧନ୍ତି ସର୍ବରାୟେ
ଦିବସ ଦିଶିଲା ଯେ ରାତ୍ରକାଳ ପ୍ରାୟେ । ୮୨୪ ।
ସାଧୁ ସାଧୁ ରେ ପାଣ୍ଡବ ତୁମ୍ଭର ମହିମା ଧନ ଧନ
ଗୃହଜଣ ଘୋଟିଅଛ ଲକ୍ଷେ ରାଜାର ସଇନ । ୮୨୫ ।
ଗୋବିନ୍ଦେ ବୋଇଲେ ସ୍ୱାମୀ ଦେଖ ବଳରାମ
ପାଣ୍ଡବଙ୍କର ଯୋଦ୍ଧାପଣ ଦୁସହ ସଂଗ୍ରାମ । ୮୨୬ ।
ଦଶ ସହସ୍ର ରାଜାଏ ଯେତେକ ନାରାଚ ବିନ୍ଧି
ଏକା ଅରଜୁନ ସବୁରି ନାରାଚ ଛେଦି । ୮୨୭ ।
ନକୁଳର ମହିମା ହୋ କହିବ କି ପାରି
ଏକା କୋଟିକେ ଯେ ସେ ବଧିଛି ସନ୍ୟ ମାରି । ୮୨୮ ।
ଯଦୁନନ୍ଦନ ବୋଇଲେ ଯେ ସହଦେବ ଯୁଦ୍ଧେ
ଅହିବ୍ରତକେ ରଥ ପାଡିଲା ଯେ ପହଡକର ମଧ୍ୟେ । ୮୨୯ ।
ଭୀମସେନର ସଂଗ୍ରାମ ଦେବଙ୍କୁ ଅଗୋଚର
ରଥୀ ହୟେ ସାରଥୀ ଏକା ପ୍ରହାରକେ ହୁଅନ୍ତି ଚୂର । ୮୩୦ ।
ରତ୍ନମଣି ମୁକୁଟ ସୀମନ୍ତମଣି ଶ୍ରୀଭୂଷା
ଗନ୍ଧ ଚନ୍ଦନ ଯାଇଂ ହୋଇଲା ରକତ ମିଶା । ୮୩୧ ।
ଅର୍ଜୁନ ଗ୍ରୀମୁକୁ ରାଜା ଜାରାସନ୍ଧ ଉଠି
ଶ୍ରୀକରେ ଧନୁ ଧରି ନାରାଚ କରଇ ବୃଷ୍ଟି । ୮୩୨ ।
ତୀକ୍ଷମୂନା ଶରେ ମାରିଲା ସର୍ବସାରୀ
ଅନ୍ତରାଳ ହୋଇଂ ଜାରାସନ୍ଧିକୁ ନ ଦିଶଇ କିଛି । ୮୩୩ ।
ହୃଦରେ ପଡ଼ିଲା ତା'ର ମହାନାରାଚ ଗୋଟି
ସେନ୍‌ହା ଉପରେ ଭେଦି ଛଇଗୁଡେ ଗଲା ଫୁଟି । ୮୩୪ ।

---

୮୨୨।୨  କକଡ଼ା ବୃଷ୍ଟି ଜାଣି ଶର ପଡେ ନର୍ଯାଛେ ।

ଧାଘ୍ୟେଣ ଜାରାସନ୍ଧ ଯେ ପଡ଼ିଲା ଭୂମିରେ ଢଳି
ସାଧୁ ସାଧୁ ପାର୍ଥ ବୋଲି ପ୍ରଶଂସା କରନ୍ତି ଦେବ ହାଲୀ । ୮୩୫ ।
ଆରେ ତୋହୋର ପରା ସଖା ଥାଉଂ ଆମ୍ଭେ ହୋଇଲୁ ଯେମନ୍ତ
ଯେହ୍ନ ଜାରାସନ୍ଧ ଭୟେ ଆମ୍ଭେ ଦୁଖ ପାଇଲୁ ବହୁତ । ୮୩୬ ।
ଯେତ୍ତେନେକ ମହିମା ଅଛଇ ମଗଧ ମହୀପାଳେ
ତିନି ବେଳେ ହାରିଲି ମୁଂ କୋଟିଯେ ସିଂଘର ବଳେ । ୮୩୭ ।
ଆଦ୍ୟନ୍ତୁଂ ଆମ୍ଭେ ଯେବେ ତୋତେ ବରିଥାନ୍ତୁ
ମଥୁରା ପରା ରାଜ୍ୟ ଆମ୍ଭେ କମ୍ପାଇଂ ଛାଡ଼ନ୍ତୁ । ୮୩୮ ।
ହରି ଆପଣେ ତୁ ବଳେ କର ସଂଗ୍ରାମକୁ
ଅର୍ଜୁନକୁ ବୋଲି ଶିର ଛେଦୁ ଯେ ଜାରାସନ୍ଧକୁ । ୮୩୯ ।

ଆମ୍ଭର ଭ୍ରାନ୍ତି ଯେବେ ଛାଡ଼ୁ ଜଗନ୍ନାଥ
ଗୋବିନ୍ଦେ ବୋଇଲେ ଛତ୍ରୀ ଧର୍ମ ପାଳଇ ବୀର ପାର୍ଥ । ୮୪୦ ।
ପିଠି ଦେଇ ପଳାଇଲେ ନାରାଜ ଘାତ ବକଳେ
କଷ୍ଟୀ ଜନଙ୍କୁ ସେ ନ ମାରଇଂ ସବୁକାଳେ । ୮୪୧ ।
ତୁମ୍ଭେ ଜାରାକୁ କିଛି ଭୟେ ଭ୍ରାନ୍ତି ନ କର ଦେବରାୟେ
ଯେହ୍ନ ପାଣ୍ଡବଙ୍କ ହାଥେ ତାକୁ କରାଇବ କ୍ଷୟେ । ୮୪୨ ।

ଶୁଣି ବଳରାମେ ହୋଇଲେ ପରମ ସାନନ୍ଦ ମତି
ଆବର କଉରୋବେ କ ଜୀବନ ପାବନ୍ତି । ୮୪୩ ।
ବଳରାମେ ବୋଇଲେ ହରି ଦ୍ୱାରକା ଚାଲି ଯିବା ।
ଧୃତରାଷ୍ଟ୍ର ପୁଅଙ୍କର କଷ୍ଟ ନ ଦେଖିବା । ୮୪୪ ।
ଗୋବିନ୍ଦେ ବୋଇଲେ ସ୍ୱାମୀ ଆଜ ରହିବାକ ଯେଥେ
ଯେ କନ୍ୟାକୁ ପାଣ୍ଡବେ କରନ୍ତି କେମନ୍ତେ । ୮୪୫ ।
ମହାଲଖ ପ୍ରତକ୍ଷେ ବନ୍ଧିଲେକ ଧନୁର୍ଜୟେ
ରଣ ମନ୍ଥନ କରନ୍ତି ଯେତେ ପବନ ତନୟେ । ୮୪୬ ।

---

୮୩୭ { ଯେତ୍ତେନେକ ମହିମା ଅଛି ତୋହୋର ବାଳକାଳେ
ଯେତ୍ତେନେକ ମହିମା ଅଛଇ ପଣ୍ଡୁର କୁଳେ ।

୮୪୫ { ଗୋବିନ୍ଦେ ବୋଇଲେ ସ୍ୱାମୀ ଆଜକ ଯେଥେ ଥିବା
ଯେ କନ୍ୟା ପାଣ୍ଡବେ ସେ କିସ କରନ୍ତି ଅବା ।

ଯୁଧିଷ୍ଠି ଦେବ ଅଛନ୍ତି ଯେ ଜ୍ୟେଷ୍ଠ ଅନୁକ୍ରମେ
ଅର୍ଜୁନ କନ୍ୟାକୁ ବରି ନ ହେଲା ବିଚାରିତ ଧର୍ମେ । ୮୪୭ ।
କେହ୍ନୁ ପ୍ରଦାନ ହୋଇବ ଯାଜ୍ଞସେନୀ
କେମନ୍ତେ ଭିଆଇବେ ସେ ବ୍ୟାସ ମହାମୁନି । ୮୪୮ ।
ଯେହେନେକ ବିଚାରି କେଶବ ବଳଦେବ
ବହୁତ ବହୁତ କଥା ଯେ ହୋଇଲା ପ୍ରସ୍ତାବ । ୮୪୯ ।
ଅଗାଧ ସାଗର ଯେ ଶ୍ରୀମହାଭାରତ
ସବୁ ସଞ୍ଚପନ୍ତେ ଲେଖନକୁ ହୋଇବ ଅପ୍ରମିତ । ୮୫୦ ।
ଯେ ନିମନ୍ତେ ଠିକ ଠିକ କରି ବଞ୍ଚାଇ କହିଲି
ହୃଦଗତେ ମୋର ବିଜେ କରି ହିମବନ୍ତର ଦୁଲାଳୀ । ୮୫୧ ।
ମୋତେ ଯେତେ ଦୃଶ୍ୟ ଲେଖନକୁ ଯୋଗ୍ୟ ନାହିଂ
ଅତି ଅଗୋଚର ପୁଣି ନୁଆରଇ କହି । ୮୫୨ ।
ଯେମନ୍ତେ କହଇ ଠିକ ଠିକ ଭାବେ
ଶୂଦ୍ରମୁନି ସାରଳ ଦାସ ବଦଯନ୍ତି ପ୍ରସ୍ତାବେ । ୮୫୩—୧୦୮୩୦ ।



## ରାଜାମାନଙ୍କ ସହିତ ପାଣ୍ଡବଙ୍କ ଯୁଦ୍ଧ

ଅଗସ୍ତିଙ୍କି ପୁଚ୍ଛା କଲେ ବଇବସ୍ୱତ ମନୁ
ରଣରଙ୍ଗ କୁତୋହୋଳ ମୋତେ କହିବା ମହାମନୁ । ୧ ।
ବଦନ୍ତି ମହାତମା ଯେ ମନୁ ପୁରୁଷଙ୍କୁ
ନିସତ ଦେଖି ଅର୍ଜୁନ ଗୁଣ୍ଡିଲା ଜାରାସନ୍ଧକୁ । ୨ ।
ବାଣା ନାରକା ବକ୍ରଲାଭ ଶଅମ୍ବର
ଯେ ଗୃହି ରାଜାଙ୍କ ତୁଲେ ଯୋଦ୍ଧା ଗୃହି ଯେ ସାଗର । ୩ ।
ଯେତେକ ଯେନ ଉଠିଲେକ କଉଣୋପେ
ମନ୍ଦର ଗିରି ପ୍ରାୟେକ ଦିଶନ୍ତି ସରୂପେ । ୪ ।
ଘୋଟନ୍ତି ମେଦିନୀ ଯେ ଉଲ୍କାପାତ ଜାଣି
ବିସ୍ମୟେ ହୋଇଲା ଦେଖି ଦ୍ରୋପଦ ଦୁଲଣୀ । ୫ ।

ଦ୍ରୋପଦୀ ବୋଇଲେ ଭୁ ଶୁଣ ଲୋ କେଶିନୀ
ଘୋର ଅନ୍ଧାର ପ୍ରାୟେକ ଦିଶିଲା ଯେ କାହାର ସଇନ । ୬ ।
ମୁଦୁସୁଳି ବୋଇଲା ଗୋ ଶୁଣ ଗୋସାମଣୀ
ଯାହା ପଚ୍ଚରିଲୁ ମୁଂ କହଇ ପରମାଣି । ୭ ।
ଯେ ଅସୁର ବୀରଯେ ଅଟନ୍ତି ଚ୍ଚରହେଂ ରାୟେ
ବାଣା ନାରକା ବଜ୍ରଲାଭ ଶଅମ୍ବର ପୟାଣ କରି ଆସେ । ୮ ।
ଦୁଷ୍ଟ ସମୋଦ୍ର ପ୍ରାୟେକ ଦିଶୁଅଛି ଥାଠ
ଦେବତାଯେ ଭଯେ ଗ୍ଧଡ଼ିଲେ ସ୍ୱର୍ଗବାଟ । ୯ ।
ଯେ ଯେବେ ଅସରନ୍ତ ଆଜ ଜଣିମଟି ହେଲେ
ପ୍ରତକ୍ଷେ ଜାଣିମା ଯେ ଆକାଶ ଦିଗପାଳେ । ୧୦ ।
ଦ୍ରୋପଦୀ ବୋଇଲେ ଲୋ କେଶିନୀ ମୁଦୁସୁଳି
ଯେହିକ୍ଷଣି ଜଣିମେ ମୁଂ ଶୁଭ ଶକୁନ ଦେଖିଲି । ୧୧ ।
ଦେବେ ଦାନବେ ଯାହାର ମହିମା ଦୁଲଭ
ଭୀମସେନ ବୋଇଲା ମୋହୋର ଭାଗେ ହୋଇଲା ବଜ୍ରଲାଭ । ୧୨ ।
ଅର୍ଜୁନ ବୋଇଲା ଭୀମସେନର ଆଗ
ସହସ୍ର ଭୁଜ ବାଣା ହୋଇଲା ମୋର ଭାଗ । ୧୩ ।
ନକୁଳ ବୋଇଲା ଯେ ଅସୁର ନାରକା
ଥାଠ ଯାକ ଯେହିବାର ମୁଂ ଆବୋରିଲ ଯେକା । ୧୪ ।
ସହଦେବ ବୋଇଲା ଯେ ନୃପତି ଶଅମ୍ବର
ଯେ ରାଜା ହୋଇଲା ମୋହୋର ଭାଗର । ୧୫ ।
ଚ୍ଚରି ରାଜାଙ୍କୁ ଚ୍ଚରି ଭାଗ କରି ବାଣ୍ଟି
ପ୍ରଥମେ ମାରୁତି ଯେ ଗର୍ଜନ କରି ଉଠି । ୧୬ ।
ରଥେକ ଚଢ଼ି ଅଛି ବଜ୍ରଲାଭ ମହାବଳ
ସେ ରଥେ ଯୋଚିଲ ଅଛି ସହସ୍ରେକ ଶାର୍ଦ୍ଦୂଳ । ୧୭ ।
ହସ୍ତେଣ ଘେନ ଅଛି ବଜ୍ର ଯେ ଶକତି
ଭଯେଣ ବୃନ୍ଦାଅର୍କେ ନୁଆସନ୍ତି ତାର କତି । ୧୮ ।

୮।୧ ବୀରଯେ—ବୀରମାନେ ୮।୨ ଶଅମ୍ବର—ଶମ୍ବର ।

ଆଦିତ୍ୟ ଦେବତା ଅସ୍ତ ହୋଉଅଛୁ ଯେତେବେଳେ
ଭୀମସେନ ତେଜ ପ୍ରକାଶିଲ ମହା କୋପାନଳେ । ୧୯ ।
ସାରଥୀ ରଥ ବାହୁଛୁ ଅତି ବେଗେ
ଲୌହସାର ଧନୁ ଧରି ନାରାଚ ସନ୍ଧଇ ଅତି ରାଗେ । ୨୦ ।
ନଗରୀ ଧାଇଁଲ ସେ ପବନର ବଳେ
ଅନ୍ଧାର ବେଳେ ପ୍ରବେଶ ହୋଇଲ ରଥ ପଛେ । ୨୧ ।
ଆନ୍ଦୋଳଣ କରି ସେ ଧଇଲା ରଥ ଦଣ୍ଡ
ଭୀମକୁ ସାହା ହୋଇଲା ପବନ ପରଚଣ୍ଡ । ୨୨ ।
ଅସୁରର ରଥ ଭୀମ ବୁଲାଇଲା ଅତି ବେଗୀ
ଦକ୍ଷିଣ ମୁଷ୍ଟି କରଣ ପକାଇଲା ଫିଙ୍ଗି । ୨୩ ।
କୋପେଣ ଫିଙ୍ଗି ଦେଲା ପାଣ୍ଡବ ଭୀମସେନ
ବଜ୍ରଲାଭ ପଡିଲା ଯାଇଁ ପଞ୍ଚଦଶ ଯୋଜନ । ୨୪ ।
ରାଜାର ନିଅର୍ଥେ ପଳାବନ୍ତି ସଇନ
ଧାମଇ ବୃକୋଦର କରେଣ ଗଦା ଘେନ । ୨୫ ।
ପଳାବନ୍ତି ଦୁରନ୍ତକ ବଳ ସମର ଉପେଛୁ
ସକଳେ ବୋଲନ୍ତି ଆସି ଲାଗଇ କିନା ପଛୁ । ୨୬ ।
ବାସ ଭଗ୍ନ ପକ୍ଷୀ ପ୍ରାୟେ ସକଳେ ପଳାନ୍ତି
ନିଶାଶତେ ରଥ ତିନ କୋଟି ହାଥୀ । ୨୭ ।
ଅଗଣିତ ଅଶ୍ବ ଅସଂକ୍ଷେପ ପାଦାନ୍ତି
ମାରିଲେ ନ ସରଇ ଯେ ଅସୁରବଳ ଅପ୍ରମିତି । ୨୮ ।
ଯେତେକ ସଇନ ଭୀମ ମାଇଲାକ ରୋଳେ
ପଡିଲେ ନିଶାଚର ବଳ ସଂଗ୍ରାମ କୁତୁହୋଳେ । ୨୯ ।
ବାଣା ବାସବର ଯେ ପଡିଲା ସମର
ପଞ୍ଚଶତ ଭୁଜେ ବାଣ ସନ୍ଧଇ ବାଣାସୁର । ୩୦ ।
ହାବୋଡା ଶରେକ ଯେ ମାଇଲା ବୀର ପାଥ
ବାଣାସୁର ହୃଦରେ ପଡିଲା ଯେହ୍ନେ ବଜ୍ରଘାତ । ୩୧ ।

---

୨୬। ' ସକଳେ ପଳାବନ୍ତି ପଛକୁ ନ ଦେଖି ।

ଘାଏ୍ଟେଣ ହ୍ରାସ କଲା ବଳ ରଜାର ବାଳ
ମୋହନା ଶରେକ ମାଇଲା ଛର୍ଦ୍ଦୀପ୍ତ ଅଗ୍ରର୍ଗଳ । ୩୨ ।
ମୋହେ ବାଣାସୁର ପଡ଼ିଲ ଉତ୍ତାନସାହ୍ମି ହୋଇ
ଅନ୍ତରେ ସାରଥୀ ତାର ରଥେକ ନେଲା ବାହି । ୩୩ ।
ରଜାର ହ୍ରଅର୍ଥେ ଦଣ୍ଡ ହୋଇଲାକ ଭଗ୍ନ
ଅନେକ ସନ୍ୟ ଗୋଡ଼ାଇ ମାଇଲା ଭୀମସେନ । ୩୪ ।
ପଡ଼ଲେ ଅସୁରେ ଭୂମିରେ ଲୋଟି କାଏ୍ଟେ
ବାତ ହ୍ରଘାତେ ଯେହ୍ନେ କଦଳୀ ବନ ପ୍ରାଏ୍ଟେ । ୩୫ ।
ଭୀମସେନ ଅର୍ଜୁନ ଧାଇଂଲେ ବହନ
ନାରକା ଶଅମ୍ବରକଇ ଭେଟିଲେ କୋପମନ । ୩୬ ।
ନାରକାର ରଥ ଭୀମସେନ ଧର
ଶଅମ୍ବର ନୃପତର ରଥେ ନେଇଣ କଗୃଡ଼ । ୩୭ ।
ଯେସନେକେ ମଉଦଧି ପବନ ହ୍ରଘାତେ ଉଠି
ସ୍ଥେକା ପାଣ୍ଡବକେ ଲକ୍ଷେ ରଜା ଘୋଟି । ୩୮ ।
ନାରକା ଶଅମ୍ବର ବେନ ରଥ ହାଦେ ଚୂର ଗଲ
ଭଲଲେ ଦନୁଜବଳ ଆବୋରନ୍ତା କେହ୍ନି ନୋହିଲ । ୩୯ ।
ମହାଘୋର ସଂଗ୍ରାମ ହୋଇଲା ନିଶାରତ୍ତ
ପଳାନ୍ତି ଦାନବ ବଳ ନ ରହନ୍ତି କତ । ୪୦ ।
ଆପଣେ ଆପଣେ ମାରନ୍ତି ହୋଅନ୍ତି ଅନ୍ୟା ଅନ୍ୟ
ପର ଆପଣାର ବୋଲ ନ ପାରନ୍ତି ଚହ୍ନି । ୪୧ ।
କେଶିମ ମୃଦୁସୁଳ ବାହଇ ଦ୍ରୋପଦୀର ରଥ
ଅନେକ ସଇନ ପାଣ୍ଡବେ କରନ୍ତି ନପାତ । ୪୨ ।
ଅସୁର ବଳ ଧଂସି ଧାମଇଂ ବ୍ରିକୋଦର
ତେର ଯୋଜନ ଦାନବନ୍ତ ପଡ଼ଇ ପଏ୍ଟେଡ଼ । ୪୩ ।
ରୋଧିର ନଦୀ ବହଇ ବନସ୍ତ ଭିତରେ
କଦର୍ଲା ଭେଲା ଜାଣି ଉପ୍ଲଚ୍ଚିଆଇଲେ ଅସୁରେ । ୪୪ ।
ସମର କରନ୍ତେ ଯେ ନିମ୍ନଣୀ ପାଇଲା
କୁରୁବଳ ଥାଠ ଯେନ ମାନଗୋବନ୍ଦ ରହିଲା । ୪୫ ।

ଦେଖଇ ଭୀମସେନ କଉରବେ ବଳ
ଚାହିଁଲା ମାରୁତି କଟାକ୍ଷ କୋପାନଳ । ୪୬ ।
ରକତେ କର୍ଦ୍ଦନ ଗୃଢ଼ ପାଣ୍ଡବଙ୍କ ଅଙ୍ଗ
ହିରଣ ବିଦାରଣେ ଯେସନେ ଦିଶଇ ନରସିଂହ । ୪୭ ।
ଶଲ୍ୟ ଅଶ୍ୱତ୍ଥାମା କୃପ ଆଚାର୍ଯ୍ୟେ
ଶକୁନି ଜୟଦ୍ରଥ କଳିଙ୍ଗସେନ ମହାରାଜେ । ୪୮ ।
ଯେତେମାନେ ସମସ୍ତେ ରଥେ ରଥେକ ଆରୋହି
ଗିରିବର ସମାନେଣ ଅଛନ୍ତି ବୀରେ ରହି । ୪୯ ।
ଅସୁର ବଳ ନପାନ୍ତି ଆସନ୍ତି ଗୃହ ବୀରେ
ରଥେକ ଆରୋହି ଅଛନ୍ତି ଦ୍ରୋଣଷ୍ଟି ସଙ୍ଗରେ । ୫୦ ।
ଦୂରେଣ ଦେଖିଲେ କେଶରୀ ଲାଙ୍ଗୁଡ଼ ଧ୍ୱଜ ଚିହ୍ନ
ଫର ହର ଉଡ଼ନ୍ତି ଆଲମ୍ବ ଧବଳ ବର୍ଣ୍ଣ । ୫୧ ।
ସାଂଗ୍ରାମ କରନ୍ତେ ପାଇଲା ରମ୍ଭୂର୍ଣ୍ଣ
ଦେଖିଲା ମହା ସମ୍ଭବେ କୁରୁବଳ ସଇନ । ୫୨ ।
ଧାମଇଂ କୋପଭରେ ପାଣ୍ଡବ ସୁନ୍ଦର
ଅସୁରଙ୍କ ତହୁଂ ଉଚ୍ଛୁଡ଼ି ଘେନଥିଲା ବଜ୍ର ମୁଦ୍ଗର । ୫୩ ।
ପର୍ବତ ପ୍ରାୟେକ ଦିଶଇ ବେନି ବାହୁ
ନିଶାକର ମେଲେ କିବା କ୍ରୀଡ଼ାକରେ ରାହୁ । ୫୪ ।
ତେସନ ଶୋଭିବନ ପାଣ୍ଡବ ମହାବଳୀ
ଶୋଣିତ ବର୍ଣ୍ଣ ହୋଇଛୁ ସବୁରି ମନ୍ଦାର ପୁଷ୍ପ ଭଳି । ୫୫ ।
ରେ ରେ କାର କରି ଧାମଇଂ ଭୀମସେନ
ସମ୍ମୁରେ ଓଗାଳିଲା ଆସି ମହାବଳୀ କର୍ଣ୍ଣ । ୫୬ ।
ଅନେକ ଶର ଯେ ବିନ୍ଧିଲା ମହାରୋଷେ
ଶସ୍ତ୍ର ସବୁ ଭଗ୍ନ ହୋଇଲା ମାରୁତିର ହିସେ । ୫୭ ।
କର୍ଣ୍ଣର ରଥେ ନେଇ ମାଇଲା ବଜ୍ରମୁଥେ
ମହାଭିର ପାଇ ରଥ ଭାଙ୍ଗି ହୋଇଲା ଖଣ୍ଡ ଶତେ । ୫୮ ।
ସାରଥୀ ହସ୍ତୁ ଯେ ପଡ଼ିଲେ ମହୀଲୋଟି
କର୍ଣ୍ଣର ହୃଦେ ନେଇ ମାଇଲା ବଜ୍ର ମୁଷ୍ଟି । ୫୯ ।

ଭୀମସେନର ବଜ୍ର ମୁଥ ଘାତେ କର୍ଣ୍ଣ ଯେ ଘୂର୍ଣ୍ଣାଇଂ
ଅଶ୍ୱତ୍ଥମା ରଥ ଟେକିଲା ବେଗେ ନେଇଂ । ୬୦ ।
ଅର୍ଜୁନ ମିଳିଲା ଯାଇ ଅଶ୍ୱତ୍ଥମା ପାଶେ
ଦ୍ରୋଣଙ୍କର ନନ୍ଦନ ବିନ୍ଧିଲା ବାଣ ମହାରୋଷେ । ୬୧ ।
ସହସ୍ରେ ନାରାଜ ଯେ ମାଇଲା ରୋଷଭରେ
ପଡନ୍ତି ନାରାଜ ଯାଇଂ ପାଥର ଉପରେ । ୬୨ ।
ତିନ ଭୁବନ କମ୍ପିଲା ଅଶ୍ୱତ୍ଥମାର ବାଣେ
ଦେଖିଣ ଫାଲଗୁନ ଯେ କଲାକ ଆବରଣେ । ୬୩ ।
ପୁଣ ଅର୍ଦ୍ଧବୃତେକ ନାରାଜ ପୂରେଇଣ ଦ୍ରୋଣି
ଅର୍ଜୁନ ଉପରକୁ ବିନ୍ଧିଲାକ କୋପେ ଟାଣି । ୬୪ ।
ଜଳଧାରା ପ୍ରାୟେକ ହୋଇଲା ଶର ବୃଷ୍ଟି
ଦେଖିଣ ବଞ୍ଚାଇଲା ତାହା ଖରବର କରାଟୀ । ୬୫ ।
ପୁଣି ଅଶ୍ୱତ୍ଥମା ଲକ୍ଷେ ନାରାଜ ଘେନି
ଦ୍ରୋଣଙ୍କର ନନ୍ଦନ ଯେ ବିନ୍ଧିଲା ବେଳ ତିନି । ୬୬ ।
ଅର୍ଜୁନ ସହିଲା ଅଶ୍ୱତ୍ଥମାର ଶର
ନାରାଜ ପୂରେଇଲା ପାଣ୍ଡବ ସୁନ୍ଦର । ୬୭ ।
ଅର୍ଦ୍ଧବୃତେ ନାରାଜ ପୂରେଇ ଅଶ୍ୱତ୍ଥମାକୁ
ଚାରି ଅର୍ଦ୍ଧବୃତ ଶର ବିନ୍ଧିଲା ରଥ ଉପରକୁ । ୬୮ ।
ଚାରି ଅଶ୍ୱକୁ ଚାରି ଅର୍ଦ୍ଧବୃତ ଶର
ଅର୍ଦ୍ଧବୃତେକ ଶର ପେଷିଲା ସାରଥୀ ଉପର । ୬୯ ।
ସେହିକାବେଳକେ ସମସ୍ତ କରୋଧି
ଅନ୍ଧାର ଘୋର କରି ଅର୍ଜୁନ ଶର ବିନ୍ଧି । ୭୦ ।
ପଡିଲେ ନାରାଜ ଅବଚ୍ଛିନ୍ନେ ମୁଣ୍ଡି
ପ୍ରଥମେ ଛିଣ୍ଡି ପଡିଲେ ହସ୍ତ ଯେ ସାରଥୀ । ୭୧ ।
ଦୁଜେଣ ଅଶ୍ୱତ୍ଥମା ରଥ ପଡଇ ଛିଣ୍ଡି
ଦ୍ରୋଣିର ଉପରେ ରଥ ପଡିଲାକ ମାଡି । ୭୨ ।
ଘାୟେଣ ଅଶ୍ୱତ୍ଥମା ପଡଇ ଅସାଷ୍ଟମେ
ଶଲ୍ୟ ରଥ ଧରି କଗୃଡଇ ବୀର ଭୀମେ । ୭୩ ।

ନକୁଳ କୁମାର ନେଇ ମାଇଲା ବଜ୍ର କୁନ୍ତେ
କୃପଙ୍କର ରଥ ଭାଙ୍ଗି ପଡ଼ିଲା ସାରଥୀ ସହିତେ । ୭୪ ।
ସହଦେବ ଶକୁନିକି ମାଇଲା ମୁଦ୍‌ଗରେ
ରଥ ଭାଙ୍ଗି ପଡ଼ିଲା ଶକୁନି ଉପରେ । ୭୫ ।
ଅଶ୍ୱତ୍ଥାମା କୃପାଚାର୍ଯ୍ୟ ଶଲ୍ୟ ଯେ ଶକୁନି
ଗୃହକୁ ପଳାଇଲେ ଅସାଧ୍ୟ ମଣିଷେ ଘେନି । ୭୬
ଆଠ ଆବୋର ଯେ ଥିଲେ ଗୃହ ଦ୍ୱାରେ
ଉଗ୍ରଶସ୍ତ୍ର ହୋଇ ପଶିଲେ ସୈନ୍ୟର ଭିତରେ । ୭୭ ।
ଆରେ ଆରେ ବୋଲି ଯେ ଡାକଇ ଭୀମସେନ
ପଶିଲା ରଣରଙ୍ଗେ ସୋହୋଡ଼ ଆଠ ମଣ୍ଡନ । ୭୮ ।
ଅଠାଶୋଇଂ ଖାଇ ଭୁଲେ ମାନଚନ୍ଦ୍ରଙ୍କ
ସମସ୍ତେ ଚଢ଼ିଅଛନ୍ତି ମଦ୍ୟେମତ୍ତ ହାଥୀ । ୭୯ ।
ହସ୍ତେଣ ଗଦା ପରଶୁ ମୁଦ୍‌ଗର
ବେଢ଼ିଣ ପ୍ରହାର କଲେ ଭୀମସେନର ଉପର । ୮୦ ।
ଗହଳ ସମର ଦେଖି କୋପେ କାଳେବର
ଧାଇଁଲ ରଣରଙ୍ଗେ ପାଣ୍ଡବ ସୁନ୍ଦର । ୮୧ ।
ଅନ୍ତରାଳ ନୟନ ସେ ବଦନ ବିକଟା
ଭଇରବ ମୂର୍ତ୍ତି ସେ କଂକାଳ ରୁଦ୍ରପେଟା । ୮୨ ।
ବାହୁଡ଼ ଦାଢ଼ କରାଳ ବିକଟ ବିକରାଳ
ଖାଂକର କେଶ ନୟନ ଭ୍ରମଇ ଅନ୍ତରାଳ । ୮୩ ।
ବେନି ଭୁଜେ ଦରାଣ୍ଡି ଧଇଲା ଗଜ ବେନି
ଅନ୍ତରୀକ୍ଷେ ବୁଲାଇଲା ଉର୍ଦ୍ଧ୍ୱ ବାହୁ ଘେନି । ୮୪ ।
ଘୋର ରଡ଼ ଶବଦ କରି ଭୀମସେନ ଉଠି
ଭାଜିଲେ କଉରବେ ବଳ ଅନ୍ତରାଳ ଦୃଷ୍ଟି । ୮୫ ।
ଗଜେ ଗଜ ଧରି ବୀର କୋପେଣ କରୁଛି
ରାଜା ଆରୋହନ୍ତେ ଗଜ ତହୁଂ ଭୀମ ବାମ ଭୁଜେ ଧରି । ୮୬ ।
ଡାହାଣ କରେ ନେଇ ମାଇଲା ବଜ୍ରମୁଠେ
ଅସ୍ଥି ମାଂସ ଧୂଳି ହୋଇଲା ହାଥୀ ମସ୍ତକେ । ୮୭ ।

ପାଦଗତ ହୋଇଣ ଦୁର୍ଯୋଧନ ପଳାଇ
ହାକ ଦିଅଇ ଭୀମସେନ ରହ ରହ ଭାଇ । ୮୮ ।
ରାଜାକୁ କଟାଳ ପଡୁଂ କଲା ପାଣ୍ଡବ ପଞ୍ଚାଣ
ରଥେ ରଥେ ଚଢ଼ିଣ ଧାଇଂଲେ ଭୀଷ୍ମ ଦ୍ରୋଣ । ୮୯ ।
ପବନର ନନ୍ଦନ ଭୀଷ୍ମ ଦ୍ରୋଣଙ୍କୁ ଦେଖି
ଧାମଇଂ ଗର୍ଜିଣ ଗଜରେବ ଉପେକ୍ଷି । ୯୦ ।
ମାତଙ୍ଗ ପର୍ବତ ଜାଣି ଭୀମସେନ ଶରୀର
ଭୂଭ ଭୁବନ କମ୍ପିଲା ଯାହାର ପାଦଭର । ୯୧ ।
ଦ୍ରୋଣ ଗୁରୁ ଦେଖିଲେ ପବନର ନନ୍ଦନ
ଭୀଷ୍ମେ ବୋଇଲେ ଦ୍ରୋଣେ ବଳେ କଲା ଭୀମସେନ । ୯୨ ।
ଶତଶିଙ୍ଗ ପର୍ବତ ଭୁଟିଲା ଯାହାର ପାଦ ଲାଗି
ବନସ୍ତ କଷ୍ଟ ସୁମର ଧାମଇ ମହାରାଗୀ । ୯୩ ।
ମୂର୍ଖ ଅଗ୍ୟାନ ଯେ ଦୁର୍ଯ୍ୟୋର ଦୁଷ୍ଟ ମନ୍ଦ
ଜାଣି ପାରିବା ଟିକ ଯେହାର ଭୁଲେ କଲେ ଦ୍ୱନ୍ଦ । ୯୪ ।
ଦ୍ରୋଣେ ବୋଇଲେ ଆମ୍ଭେ ସଂଗ୍ରାମ ନ କଲେ
ଦୁର୍ଯୋଧନ କୋପ କରିବ ନା ଯେହ୍ନମତେ ବାହୁଡ଼ିଲେ । ୯୫ ।
ଭୀଷ୍ମ, ଦ୍ରୋଣ ଦୁର୍ଯୋଧନକୁ ଆବୋରି ହୋଇଛନ୍ତି ଆଗେ
ଧାମଇ ମାରୁତି ଯେ ପବନହୁଂ ଅତିବେଗେ । ୯୬ ।
ନୟନ ବିକାଶିଲା ରକତ କୁମୁଦ ଦୃଷ୍ଟି
କୋପେଣ ପାଣ୍ଡବ ଲୋହାର ବେନି ଗଦା ଘେନି ପିଟି । ୯୭ ।
ଭୀଷ୍ମେ ଚଢ଼ିଥିଲେ ରୂପା ରଥ କଣୟ ଗୁଯେଣି
ଗଦା ବିଘାତେ ଭଗ୍ନ କଲା କାଳଦଣ୍ଡପାଣି । ୯୮ ।
ଭୀଷ୍ମଙ୍କର ରଥ ପଡୁଂ ଭାଜ ଚୂର୍ ଗଲା
ଆରେକ ରଥ ଚଢ଼ି ପୁଣିହିଂ ଆବୋରିଲା । ୯୯ ।
ଯେକମୁଖ ହୋଇଣ ଭୀଷ୍ମ ଦ୍ରୋଣ ବେନି ଯୋଧୀ
ଅବିଛନ୍ନେ ବାଣ ଘେନି ଭୀମସେନ ଉପରକୁ ବିନ୍ଧି । ୧୦୦ ।

---

୮୯।୧ ପଞ୍ଚାଣ—ପଞ୍ଚାନନ—ସିଂହ ।

ଯେସନେକେ ଜଳ ପର୍ବତୁଂ ପଡଇ ଖସି
ମାରୁତର ଶଗ୍ଧରେ ଜୁଳୁଜୁଳା ପୋକ ପ୍ରାୟେ ଦିଶି । ୧୦୧ ।
ଭୀଷ୍ମ ଦ୍ରୋଣଙ୍କର ଶହସ୍ତ୍ରକୁ ତାର କଛି ନାହିଂ ଭୟେ
ଶହସ୍ତ୍ର ପଡି ଚୂର ହୋଉଛନ୍ତି ପର୍ବତେ ଟେଳା ପ୍ରାୟେ । ୧୦୨ ।
ଦୁସହ କଟାଳ ଦେଖି ପାଣ୍ଡବ ମହାତେଜୀ
କୋପଭରେ ଭୀଷ୍ମଙ୍କର ରଥ ଧଇଲା ଗଳଗାଜି । ୧୦୩ ।
ଭୁଜଦଣ୍ଡେ ତୋଳି ରଥ କୋପେଣ ବୁଲାଇ
ଦ୍ରୋଣଙ୍କର ରଥେ ତାହା କଚାଡିଲା ନେଇ । ୧୦୪ ।
ଭାଙ୍ଗିଣ ବେନି ରଥ ହୋଇଲା ଭଗନସ୍ତି
ଅସାଷ୍ଟମ ହୋଇ ପଡଲେ ବେନି ମହାରଥୀ । ୧୦୫ ।
ଦୂରେ ରହି ଦେଖି କ୍ରୋଧ କରଇ ମାନଗୋବିନ୍ଦ
କମର୍ଥେ ବୁଡାଇଲି ମୁଂ ଯେତେକ ସମ୍ପଦ । ୧୦୬ ।
କର୍ଣ୍ଣ ଅଶସ୍ତ୍ରମା କୃପ ଭୂରିସବା ଶଲ୍ୟ
ବିନା କାର୍ଯ୍ୟେ ଦେହ ଗଞ୍ଜାଇଲେ ମହା ମହା ମଲ୍ଲ । ୧୦୭ ।
ଶକୁନି ଆଦି କରି ଭୀଷ୍ମ ଦ୍ରୋଣ ପଡଲେ
ଯେତେକ ବିପଦ ମୋତେ କେଉଣ ପୁରୁଷ ବିହିଲେ । ୧୦୮ ।
ଶତେ ଭ୍ରାଥ ସେନ ମୁଂ ପ୍ରାଣ ପାଇଲି ଯେ ଧର୍ମେ
ବୁଡାଇଲି ରାଜ୍ୟ ମୁହିଂ କେବଣ ବିଧାତାର କର୍ମେ । ୧୦୯ ।
ଭୀଷ୍ମ ଦ୍ରୋଣଙ୍କୁ ଆନେଷି ଅଛି ଭୀମ ଊର୍ଦ୍ଧ୍ୱବାହୁ
ଦୁର୍ଯୋଧନ ବିଚାରଇ ସେ ପ୍ରତକ୍ଷେ ଅଟେ ରାହୁ । ୧୧୦ ।
ଗଦା ପିଟନ୍ତେ ନେଇ ଦ୍ରୋଣଙ୍କ ଉପରେ
ଅର୍ଜୁନ ନକୁଳ ସହଦେବ ଆସି ଧଇଲେ ତିନି ଙ୍କରେ । ୧୧୧ ।
ଅର୍ଜୁନ ବୋଇଲି ରହ ରହ ଗୋସାଇଂ
ଯେହାଙ୍କୁ ନାଶ କରିବାକୁ ଠାକୁରଙ୍କର ଆଗ୍ୟାଂ ନାହିଂ । ୧୧୨ ।
ଅର୍ଜୁନ ବୋଇଲେ ସ୍ୱାମୀ ମନେ କ୍ଷମ ନ ଭାଳ
ପିଅର ଗୁରୁ ଯେମାନେ କର୍ମେ ଧର୍ମକୁ ନ ପାଳ । ୧୧୩ ।
ଅର୍ଜୁନ ବଚନେ ଭୀମସେନ ଶାନ୍ତ କଲା କୋପ
ସାଷ୍ଟମ ହୋଇ ଦ୍ରୋଣ ବୋଇଲେ ସାଧୁ ସାଧୁ ମୋହୋର ବାପ ।୧୧୪।

ତବ ଜୀବନ ଧନ୍ୟ ପିତା ତୁମ୍ଭର ଧନ
ଧନ ଧନ ସାଧବୀ ଅଟଇ ତୁମ୍ଭର ଜନନୀ । ୧୧୫ ।
ଅନେକ ପ୍ରଶଂସା ଯହୁଂ କରନ୍ତ ଭୀଷ୍ମ ଦ୍ରୋଣେ
ନମସ୍କାର କରି ବାହୁଡଲେ ଗୃହ ଜଣେ । ୧୧୬ ।
ଶାଲୁ ପୁଣ୍ଡରୀକ ଦମଘୋଷ ରୁକ୍ମଣ ଶିଶୁପାଳ
ଯେତେମାନେ ରହିଅଛନ୍ତ ଆବୋରଣ ବଳ । ୧୧୭ ।
ଭୀମସେନ ଧାମଇଂ ତାହାଙ୍କ ଉପରକୁ
ସିଂହ ଦେଖି ଯେହ୍ନେ ପଯୈତ ପଡଇ ବନଜୀବମାନଙ୍କୁ । ୧୧୮ ।
ବିକଟ ଦୃଷ୍ଟି ଦେଖି ପଳାନ୍ତ ଥାଠ ଭାଙ୍ଗି
ପଞ୍ଚ ରଥେ ଯେକ ହୋଇ ନାରାଜ ବନ୍ଧଲେ ଗଳଗାଜ । ୧୧୯ ।
ଶସ୍ତ୍ରକୁ ବୃକୋଦର ନ କରଇ କଛି ଭୟେ
ପାଞ୍ଚ ରାଜାଙ୍କର ଶର ଛେଦଇ ଧନୁର୍ଜୟେ । ୧୨୦ ।
ଭୀମସେନ ଗଦା ମିଟେ କରି ଘୋର ରଡ
ବେଳ ହୋଇଲାନ ଆସି ଚତୁର୍ଦ୍ଦଶ ଘଡ । ୧୨୧ ।
ଗୋଲ ଯୁଦ୍ଧ ହୋଇଲାନ ରାତ୍ର ଦେନ ତିନ ଯେ ଦିବସ
ନାରାଜ ବନ୍ଧ ନ ପାରନ୍ତ ଜନେ କରାଣ ଉପବାସ । ୧୨୨ ।
ଭୀମ ଅର୍ଜୁନର ସଂଗ୍ରାମେ ଶାନ୍ତ ନାହିଂ
ଅନ୍ୟେଣ ଇଚ୍ଛା ନାହିଂ ସଂଗ୍ରାମେ ଝାସ ଦେଇ । ୧୨୩ ।
ଯେସନେକ ମହିମା ପାଣ୍ଡବ ପଞ୍ଚାଣ
ପଞ୍ଚଗୃଳଣ ଷଡଣୀ ବଳେ ପଶି କଲେ ମହାରଣ । ୧୨୪ ।
ମେରୁ ପ୍ରଦକ୍ଷଣେ ବିଜୟେ ଦିନକର
ଉଦେନାଥ ଅସ୍ତ ଯେ ହୋଇଲା ଅନ୍ଧାର । ୧୨୫ ।
ଭୀଷ୍ମ ଦ୍ରୋଣେ ପଳାବନ୍ତ ଶ୍ରୋଣିତ ବର୍ଣ୍ଣ ଅଙ୍ଗ
କିଂଶୁକ ପୁଷ୍ପ ଜାଣି ଦିଶନ୍ତ ବିରଙ୍ଗ । ୧୨୬ ।
ଦୁଯୋଧନ ରହିଥିଲା ଯୋଜନେକ ଅନ୍ତରେ
ଭୀଷ୍ମ ଦ୍ରୋଣେ ପ୍ରବେଶ ହୋଇଲେ କୁରୁନାଥ ସମ୍ମୁରେ । ୧୨୭ ।

---

୧୨୫।୧ ପ୍ରଦକ୍ଷଣେ—ପ୍ରଦକ୍ଷିଣେ ।

ଗଙ୍ଗାକୂଳେ ପର୍ବତ ଗୋଟିଏ ନାମ ରଣଜୟେ
ଭଗ୍ନବଳ ଯେନ ତହିଂ ରହିଛି କୁରୁରାୟେ । ୧୨୮ ।
ଯେଉଣେ ଗହଳ ଧନ୍ଦୋଳ କହିତ କା ପାରି
ବ୍ରହ୍ମାଣ୍ଡ ଉଚ୍ଛୁଳୁ ଅଛି ଭୀମସେନର ଘୋର ରଡ଼ି । ୧୨୯ ।
ଭୀଷ୍ମେ ଦ୍ରୋଣେ ବୋଇଲେ ହୋ ଯେତ୍ଥି ନ ଥିବା
ବନ ଗହନ ଭିତରକୁ ଚାଲ ଅପସରି ଯିବା । ୧୩୦ ।
ଏବେ ଥାଠ ଭାଙ୍ଗି ଆସିବ ଆମ୍ଭର କଟକ
ନ ପାରିବା କେହି ରହି ସବୁ ବୁଡ଼ାଇବା ନାକ । ୧୩୧ ।
ତହୁଂ ଘୁଞ୍ଚି ବନସ୍ତେ ପଶିଲେ କୁରୁରାୟେ
ଜାଗର ଥାଠ ପଳାଇ ନ ପାରନ୍ତି ଗଦାଘାୟେ । ୧୩୨ ।
କାହାର ଅଙ୍ଗ ଭାଙ୍ଗି ଅଛି କାହାର ଚରଣ ଶ୍ରେଷ୍ଠା
ଗଜ ଅଶ୍ୱ ଚଳି ନୁଆରନ୍ତି ସବୁହେଂ ଶରପୁଷ୍ଠା । ୧୩୩ ।
କଦଳୀ ବନେ ଯେହ୍ନେ ପଶିଲା ମତ୍ତନାଗ
ଖଗେଶ୍ୱରେ ଦେଖି ବମ୍ବରେ ଯେହ୍ନେ ପଶଇ ଉରଙ୍ଗ । ୧୩୪ ।
ବିଶେଷେଣ ମହାମତ୍ତ ଆବର ନିଶାକାଳ
ଭାଙ୍ଗିଲା ଦମନ ବଳ କରିଣ ମହାଗୋଳ । ୧୩୫ ।
କେ ପର କେ ଅପର ଅଟଇ ଆପଣା
କେ ଶତ୍ରୁ ମିତ୍ର ବୋଲି ନ ହେଲା କଳଣା । ୧୩୬ ।
ପଯେତ୍ତର ଘାୟେ ଲିଭିଲା ବିହୁତର ହୁଳା
ଦୁଗୁଣ ପ୍ରହାର କଲା ପବନର ବଳା । ୧୩୭ ।
ଅର୍ଜୁନର ସଂଗ୍ରାମ କହିତ କା ପାରି
ଉଭୟ ମୁଖେ ସେ ସନ୍ଧ୍ୟନ୍ତି ସଂଗ୍ରାମେଣ ମାରି । ୧୩୮ ।
ବିରଥ ବିଶହସ୍ତ ସଂଗ୍ରାମେ ହୁଅଇ ପିଠ
ନ ମାରଇ ରଣେ କଇଛା ଜଗଜ୍ଜେଠି । ୧୩୯ ।
ଭୀମସେନ ସଇନ ମାଇଲା ବହୁତ
ଦୁଇ ହସ୍ତେ ଧରି ପିଟଇ ରଥେ ରଥ । ୧୪୦ ।
ବଜ୍ରଲିଭ ରଥ ଶତେ ନଳ ଆୟୁତନ
ଅହିବ୍ରତେକ ଶାର୍ଦ୍ଦୂଳ ଯୋଚିଲା ଅଛି ବିଦ୍ୟମାନ । ୧୪୧ ।

ଦାଶଲକ୍ଷ ଭାର ପାଣିଦ୍ରବ୍ୟ ଲାଗିଥିଲା
ସେ ରଥ ଫିଙ୍ଗିଦେଲା ଯୁଣକେ ପଡ଼ିଲା । ୧୪୨ ।
ରଥଭଗ୍ନ ଦେଖି ଗ୍ରସ୍ତ ଦ୍ରୋଣେ ପଳାଇଲେ
ଆବର କେବଣ ବାପୁଡ଼ା ରହିବ ତାହାର ସମ୍ମୁଖରେ । ୧୪୩ ।
ଯେସନେକେ କ୍ଷୀରସିନ୍ଧୁ ମନ୍ଥିଲା ମନ୍ଦର
କାଳଦଣ୍ଡ ଯେନ ବଜ୍ରସ୍ତେ କ ନାଶକର । ୧୪୪ ।
ଦୁସହ ସଂଗ୍ରାମେ ପଶିଲେ ବୃକଭାଇ
ସୈନ୍ୟବଳ ନ ମାରନ୍ତି ଠାକୁରଙ୍କ ଆଗ୍ୟାଂ ନାହିଂ । ୧୪୫ ।
ସେହିକା ବୃକୋଦର ମାଇଲା ଅନେକ ସଇନ
ଶସ୍ତ୍ରସ୍ତ୍ର ପକାଇଂ ସଇନ ଦେନ୍ତେ ତରଣ ଯେନ । ୧୪୬ ।
ରଥ ଗଜ ଅଶ୍ୱ ଗୁଡି ପଳାନ୍ତି ମହାଦୁଃଖେ
ରଖ ରଖ ସ୍ୱାମୀ ବୋଲି ଦନ୍ତନହ ଭରି ମୁଖେ । ୧୪୭ ।
ନିର୍ଦ୍ଧସ୍ତ ନିଗପକ୍ଷ ଯାହାର ଶରୀର
ଶରଣ ବୋଇଲେ ଦୁଗୁଣ କରଇ ପ୍ରହାର । ୧୪୮ ।
ଅର୍ଜୁନ ବଇକୁଳ୍ୟ ସୈନ୍ୟର କଷ୍ଟ ଦେଖି
ସ୍ୱାମୀ ସେହିାନ୍ତ ମାଇଲେ କ ହେବ ସଭିହେଂ ନିରମାଖି । ୧୪୯ ।

ତିନନ୍ତ ଠେଂସି ବୀର ମହାଯୁଦ୍ଧ କଲା
ପଞ୍ଚଦଶ ଯୋଜନ ଯାସ୍ତେ ପାସେଡ଼ା ପଡ଼ିଲା । ୧୫୦ ।
ଦମନକ ଶାଲୁ ପୁଣ୍ଡ୍ରଗ୍ଧକ ଶିଶୁପାଳ ରୁକ୍ମଣ
ସେହିକା ପ୍ରହାରକେ ବିରଥୀ ହୋଇଲେ ପାଞ୍ଚଜଣ । ୧୫୧ ।
ଦମନକ ଶାଲୁ ପୁଣ୍ଡ୍ରଗ୍ଧକ ରୁକ୍ମଣ ଶିଶୁପାଳ
ବେନି ହସ୍ତେ ଧଇଲା ପାଞ୍ଚଙ୍କର ବାଳ । ୧୫୨ ।
ଆନ୍ଦୋଳିଣ ଆଣୁଅଛି ପବନର ବାଳେ
ଊର୍ଦ୍ଧ୍ୱବାହୁ କରି ଆଣନ୍ତେ ଚରଣ ନ ପଡ଼ଇ ତଳେ । ୧୫୩ ।
ଯୁଧିଷ୍ଠି ଦେବ ବଜେ କରଅଛନ୍ତି ଦକ୍ଷିଣ ଜଗତୀ ଉପରେ
ସନ୍ନିଧେ ପ୍ରବେଶ ହେଲେ ଯାଇଂ ବୃକ ବୀରେ । ୧୫୪ ।

ମକର ମାସ କୃଷ୍ଣପକ୍ଷ ଦଶମୀ ଦିନର
ଚନ୍ଦ୍ର ଦେବତା ଉଦେ ହୋଇଅଛି ଅଡ଼ାଇ ପ୍ରହର । ୧୫୫ ।

ଯୁଧିଷ୍ଠିର ଦେବ ଦେଖିଲେ ଭୀମସେନର ମୂରତି
ଜଗତୀ ଉପରୁ ଓହ୍ଲାଇ ଅଇଲେ ତତକ୍ଷଣ । ୧୫୬ ।
ପ୍ରଣପଢ଼ି ହୋଇ ଯୁଡିଲେ ଗୁରୁ ଭ୍ରାତେ
ଦେଖିଲେ ପାଞ୍ଚ ଜଣଙ୍କ କେଶ ଭୀମସେନ ହାତେ । ୧୫୭ ।
ଯୁଧିଷ୍ଠିର ଦେବ ବୋଇଲେ ଶୁଣିମା ପଣ୍ଡୁସୁତେ
ଗୁଣ୍ଡଦିଅ ପଳାନ୍ତୁ ସେ ପାଞ୍ଚ ରଜାସୁତେ । ୧୫୮ ।
ଆମ୍ଭେ ବ୍ରାହ୍ମଣ ଆମ୍ଭର କସ ହତ୍ୟାବାଧା
ବେଦ ଶାସ୍ତ୍ରେ ଆମ୍ଭର ଶଙ୍କର ସମ୍ବାଦ । ୧୫୯ ।
ସେ ପାଞ୍ଚ ରଜାନ୍ତ ଗଳାଇ ଦିଲ ଜାନୁ ତଳେ
ଗୁଣ୍ଡଲ ମାଥକେ ପଳାଇଲେ ଭାଣ୍ଡର ବଜଲେ । ୧୬୦ ।
ସେ ଭଗ୍ନ ବଳ ପଳାଇ କୁରୁ ଆଠେଣ ପଶି
ପଳାନ୍ତି ସମସ୍ତେ ରହିତ ନୁଆରନ୍ତ ଭରସି । ୧୬୧ ।
ସେକଲୁ ଆଚରିକ କେହି ପ୍ରତେ ନାହିଂ ରସେ
ଅସମ୍ଭାଳେ ପଳାବନ୍ତ କେହି କେଉଁଠି ନ ଗୃହାଂନ୍ତ ଭସେ । ୧୬୨ ।
ସେ ପାଞ୍ଚ ରଜାସେ ଯେ ଗଲେକ ପଳାଇ
ରଜନୀ ପ୍ରଭାତେ ଥାଠେ ଭେଟିଲେକ ଯାଇଂ । ୧୬୩ ।
ମନ୍ଦାଅଗ୍ନି ନଦୀ ତୀରେ ରହି ଅଛନ୍ତି ସଇନ
ସନ୍ନଧ୍ୟେ ପ୍ରବେଶ ହୋଇଲେ ନିଜ ଆତ୍ମା ଘେନ । ୧୬୪ ।
ଦୁର୍ଯୋଧନ ରଜା ତହିଂ ନତ୍ୟ କର୍ମ ସାରି
ବନସ୍ତେ ପଶି ସଇନ କନ୍ଦମୂଳ ଆହାର କରି । ୧୬୫ ।
ସଇନ ସମୀକ୍ଷା କରନ୍ତି ରଜାମାନେ
କାହାର ପାଆକ ପଡିଲ କାହାର ଦୁଇ ଭାଗ ନିଧନେ । ୧୬୬ ।
ଦୁର୍ଯୋଧନ ରଜାର ଯେ ଅଷ୍ଟାଦଶ କ୍ଷଉଣୀ
ସାତ କ୍ଷଉଣୀ ପଡିଲେ ପଳାଇଲେ ଏଗାର କ୍ଷଉଣୀ । ୧୬୭ ।
ଯେତେକ ସଇନ ଅଇଲେ ଉବୁରି
ସାଷ୍ଟମ ହୋଇ ଆତ୍ମା ନାହିଂ ନା କାହାରି । ୧୬୮ ।

---

୧୬୪ { ମନ୍ଦାକିନୀ ନଦୀ ତୀରେ ରହି ଅଛନ୍ତି ସଇନ
ସନ୍ନିଧ୍ୟେ ପ୍ରବେଶ ହୋଇଲେ ନିଜ ଆତ୍ମା ଘେନ ।

ଦୁର୍ଯୋଧନ ପୁଚ୍ଛା କଲା ସେ ପାଞ୍ଚ ରାଜାନ୍ତ ରାଉ
ଭୁମ୍ଭନ୍ତ ଯେ ବ୍ରାହ୍ମଣ ଧରି ନେଲା ଗୁଡ଼ଉଲା କସ ପାଇଂ । ୧୬୯ ।
ରୁକ୍ମଣ ବୋଇଲା ସ୍ୱାମୀ ଶୁଣିମା ଧୃତରାଷ୍ଟ୍ରି
ଆମ୍ଭନ୍ତ ଆବୋରିଲା ତାହାର ଭାଇ ଗୋଟି । ୧୭୦ ।
ଦୁର୍ଗ୍ୱର ଦ୍ୱଜବର ସେ କଇଗ୍ଭ ଜଗଜ୍ଜେଠି
ଧର୍ମ୍ମବଳେ ନ ମୋଡ଼ିଲା ସେ ପାଞ୍ଚଙ୍କର ମୁଣ୍ଡ ଗୋଟି । ୧୭୧ ।
ତାହାଙ୍କର ପିଅର କ ସେ ଜ୍ୟେଷ୍ଠଭ୍ରାଥ ବ୍ରାହ୍ମଣେକ ଅଛି
ମହା ଭଗ୍ୟଂବନ୍ତ ସେ ଯେହାନ୍ତ କଲା ବାଚ । ୧୭୨ ।
ଗୁଣ୍ଡ ହେ ପଣ୍ଡାଯେ ବୋଲ ଦୟା ଭାବ କଲା
ତାହାର ବଚନେ ସେ ଆମ୍ଭନ୍ତ ଗୁଡ଼ଦଲା । ୧୭୩ ।
ଦୁର୍ଯୋଧନ ବୋଇଲା ଯେହା ନ ଗଲା ବୁଝିତ
ଭିକ୍ଷୁକ ବ୍ରାହ୍ମଣ ହୋଇ କାହୁଂ ହୋଇଲା ଯେମନ୍ତ । ୧୭୪ ।
ଭୀଷ୍ମେ ବୋଇଲେ ତୁ ରାଜାଧିରାଜ ଶିରୋମଣି
ଯେତେବେଳ ପରଯନ୍ତେ କର୍ମେ ତାହାନ୍ତ ନ ଚହ୍ନି । ୧୭୫ ।

ପୁଣ ପୁଣ ଗାଙ୍ଗେବନ୍ତ ପୁଚ୍ଛେ ଦୁର୍ଯୋଧନ
ସେ କେ ଠି ତାହାଙ୍କୁ ତ ନାହିଂ ମୋର ଗ୍ୟାନ । ୧୭୬ ।
ରାଜାର ବଚନେ କହନ୍ତ ଗଙ୍ଗାର ନନ୍ଦନ
ଯାହା ତୁ ପଚ୍ଛିଲୁ ଶୁଣ ହୋ ଦୁର୍ଯୋଧନ । ୧୭୭ ।
ଇନ୍ଦ୍ର କ ଗୋବିନ୍ଦ କହ ଅର୍ଜ୍ଜୁନ ଯେ ତିନ
ଆନ କେ ଜିଣନ୍ତା ନାହିଂ ଲକ୍ଷେ ରାଜାର ସଇନ । ୧୭୮ ।

ଇନ୍ଦ୍ର ଦେବତାର ଆମ୍ଭେ ନୋହୁ ନା ବଇରି
ଅର୍ଜ୍ଜୁନ ଲେଖାଯେ ତ ପିତାମହ ଆମ୍ଭରି । ୧୭୯ ।
ଆମ୍ଭର ଗଦାଗୁରୁ ଅଟନ୍ତ ବଳଭଦ୍ରେ
ତାହାଙ୍କ ଦେଖନ୍ତେ ଆମ୍ଭଙ୍କୁ ଦୟା କରନ୍ତ ଗୋବିନ୍ଦେ । ୧୮୦ ।
ପାଣ୍ଡବେ ତ ମଲେ ଜତୁର ଘରେ ଜଳ
ଆମ୍ଭନ୍ତ ଜିଣିମାକୁ କେ ସାମର୍ଥ ଅଛି ଆନେ ଭଲ । ୧୮୧ ।

ଭୀଷ୍ମେ ବୋଇଲେ ବାବୁ ବୁଡ଼ିଲା ତୋହୋର ଗ୍ୟାନ
ଲଖ ଯେ ବନ୍ଧିଲା ସେହୁ ପ୍ରତକ୍ଷେ ଅରଜୁନ । ୧୮୨ ।

ବେନି ବୃକ୍ଷ ବୁଲାଇ ଯେ ଧାଇଂଲା ପ୍ରଥମେ
ପବନର ନନ୍ଦନ ସେ ଯେ ପାଣ୍ଡବ ଭୀମସେନେ । ୧୮୩ ।
ତାହାର ପଛେ ଯେ ବେନି ବୃକ୍ଷ ଧରି କରେ
ନକୁଳ ସହଦେବ ସେ ମାଦ୍ରୀର କୁମରେ । ୧୮୪ ।
ଯୁଧିଷ୍ଠିର ମାତ୍ର ନ ଥିଲେ ତାହାଙ୍କର ତୁଲେ
ଗୁରୁ ପାଣ୍ଡବେ ଲକ୍ଷେ ରାଜାନ୍ତ ଜିଣିଲେ । ୧୮୫ ।
ଦୁର୍ଯୋଧନ ବୋଇଲା ଏହୁତ ଅତି ଅଗୋଚର
ପଞ୍ଚ ପାଣ୍ଡବେ କୋଇଲ୍ତାଏହୁ ମଲେ ଜତୁର ଘର । ୧୮୬ ।
ପ୍ରତକ୍ଷେ ଦେଖିଲୁ ସାତଜଣ ମଲା
ପୁରଞ୍ଜନ ସହିତେ ପ୍ରତକ୍ଷେ ନାଶ ଗଲା । ୧୮୭ ।
ଭୀଷ୍ମେ ଦ୍ରୋଣେ ବୋଇଲେ ସେମାନ ସର୍ବ ମିଥ୍ୟା
ପୁରଞ୍ଜନ ନାଶ ଗଲା ସେହି ସେ ସତ କଥା । ୧୮୮ ।
କହିଲେ ଶକୁନି ଦୁଃଶାସନ କର୍ଣ୍ଣ ଶଲ୍ୟ
ଆଦ୍ୟହୁଂ ଜାଣୁନି ନା ତୁମ୍ଭେ କୁରୁବଳଙ୍କୁ ନ କହ ଭଲ । ୧୮୯ ।
ଜତୁର ଘରେ ଯେ ପ୍ରତକ୍ଷେ ନାଶ ଗଲେ ପାଣ୍ଡବେ ।
ସୋଦ୍ରମାପଣ ତୁମ୍ଭେ ନ ଗୁଡ଼ କେବେହେଂ ଗାଙ୍ଗବେ । ୧୯୦ ।
ଦ୍ରୋଣଙ୍କୁ କହନ୍ତି ଏହୁ ଲାଘବ ଚରିତ
ମରନ୍ତା ଲୋକଙ୍କୁ ଏହାଙ୍କର ଶୋଗ ଯେ ବହୁତ । ୧୯୧ ।
ପ୍ରଶୁରାମ ଅବା ଦୟା କଲେ ଅନୁରାଗେ
ଯେ ସେ ଭିକ୍ଷାଶୀ ସେହି ସେ ତାହାଂର ସଂଯୋଗେ । ୧୯୨ ।
ଗୁରୁ ତୋଷି ଅବା ବିଦ୍ୟା ପାଇଲେ
ବ୍ରାହ୍ମଣ ଜନମୁ କି ଆନ ଜନମ ହୋଇଲେ । ୧୯୩ ।
ଭୀଷ୍ମେ ବୋଇଲେ ବାବୁ ଆମ୍ଭର ଭାଞ୍ଜିଲ
ଦେହ ଗଞ୍ଜାଇଲ ପ୍ରାଣେ ନାଶ ନ ଗଲ । ୧୯୪ ।
ଅଜାତଶତ୍ରୁ ସେ ଯେ ଧର୍ମରାଜ ଯୁଧିଷ୍ଠିର
ତାହାଙ୍କର ବଚନ ଅଲଙ୍ଘିତ ସେ ଭାଇ ଗୁରୁଗୋଟି । ୧୯୫ ।
ତେଣୁ କରି ନାଶ ନ କଲେ ତୁମ୍ଭନ୍ତ ରଣେ
ଜନ୍ମ କଲଙ୍କ ଯେଉଁ ତୁମ୍ଭେ ହୋଇଲ ଜଣେ ଜଣେ । ୧୯୬ ।

ଆରେ ମନ୍ଦ ମତ୍ତ ଗଜ ଭାବେ ତୁମ୍ଭେ ବୁଡ଼ାଇଲ ଆମ୍ଭନ୍ତ
ସେହି ଧନା ଦୁଇ ଗୃହରେ ଜାଣିମାନା ସତ ମିଛ ତଦନ୍ତ । ୧୯୭ ।
ଭଗ୍ନ ବଳ ଘେନ ଚଳଇ ମାନଗୋବନ୍ଦ
ପାଞ୍ଚାଳୀକ ଦେଖି ଯୁଦ୍ଧେଷ୍ଟି ଅନେକ ସାନନ୍ଦ । ୧୯୮ ।
ଯାହା ସେ ବୋଇଲେ ବ୍ୟାସ ମହାତ୍ମନ
ମହନ୍ତଙ୍କର ବାକ୍ୟ ଘେନ ଲଭ୍ଭିଲୁ ଯିନ୍ଦ୍ରସେନା । ୧୯୯ ।
ମଦନଗିରି ପର୍ବତେ ସଇନ ନବ୍ରତ କଲ
ଦ୍ରୋପଦ ପୁଅଙ୍କର ଚିହ୍ନ ବର୍ଣ୍ଣ ନ ଦଶିଲ । ୨୦୦ ।
ଭୀମସେନ ବୋଇଲ ଦେବ ଦ୍ରୋପଣୀ ଘେନଣ ସଙ୍ଗରେ
ଗୃଲ ବଜେ କରିବା ଦ୍ରୋପଦ ଜଗଣ୍ଡି ଉପରେ । ୨୦୧ ।
ତେବେ ସେ ଦ୍ରୋପଦର ଜାଣିମାନା ତଇଥ
ଯୁଦ୍ଧେଷ୍ଟି ଦେବେ ବୋଇଲେ ବାବୁ ନୋହୋଇ ସ୍ୱେମନ୍ତ । ୨୦୨ ।
ଆରେ ଆମ୍ଭେ ଅଇଲାଇ ବପତ୍ତିର କାଳେ
ଦୂଗଣ୍ଡ ବଞ୍ଚ ରହିଲାଇ ବାବୁ କୁମ୍ଭଳର ଶାଳେ । ୨୦୩ ।
ସମ୍ପଦର କାଳେ ଆନ ଠାବେ କେମ୍ପେ ଯିବା
ସେହି କୁମ୍ଭଳଶାଳେ ରହି ହୋଇବାକ ବଭା । ୨୦୪ ।
ବପଦର କାଳେ ଆମ୍ଭନ୍ତ ଠାବ ଦଲ ଚର୍ମୀ
ମୁକତ ହୋଇବ ନା ଆମ୍ଭର ବଭା ଦେଖି । ୨୦୫ ।
ପାଣ୍ଡବେ ପାଞ୍ଚେହେଂ କେଶିମା ଦ୍ରୋପଣୀ
ବଇଡୁର୍ଯ୍ୟ ପର୍ବତରେ ବସିଣ ଭାଳନ୍ତ । ୨୦୬ ।
ଲକ୍ଷେକ ନୃପତ୍ତି ଭଗେନସ୍ତେ ପଳାଇଲେ
ସଭିସ୍ତେଂ ପୃେକ ହୋଇ ଲେଉଟନ୍ତି ବୋଲ ବାଟ ନରୋଧିଲେ ।୨୦୭।
ଆମ୍ଭର ଆଉଂ ପ୍ରମାଦ ପଡ଼ିବକ ଦ୍ରୋପଦକୁ
ଦୋହିତା ଗୋଟି ଦେଇ ସମର୍ପି ହୋଇଲା ଆମ୍ଭଙ୍କୁ । ୨୦୮ ।
କେଶିମା ବୋଇଲା ତୁମ୍ଭେ ମହନ୍ତ ପଞ୍ଚୁଜନେ
ଲକ୍ଷେକ ନୃପତ୍ତି ଜିଣିଲ ତୁମ୍ଭେ ବଦ୍ୟମାନେ । ୨୦୯ ।

---

୨୦୨।୧ ତଇଥ—ତଥ୍ୟ ।

ପୁରନ୍ତ ଦହନ କେଣେ ପଳାଇଲେ ଦ୍ରୋପଦ
ଅନେକ ବିକଳ ହୋଉଛନ୍ତି ଲୋଡ଼ଣ ଭୁମ୍ଭନ୍ତ । ୨୧୦ ।
ଚାଲ ଚାଲ ସ୍ୱାମୀ ଆମ୍ଭେ ନିଜ ଭୁବନକଇ ଯିବା
ପାଞ୍ଚାଳ ଦେଶ ରାଜାର ଦୋଷ ନ ଧରିବା । ୨୧୧ ।
ସ୍ୱାମୀ ଦ୍ରୋପଦୀ ଜାତକଲା ଯାହାଂର ନିମନ୍ତେ
କାଳେ ସୁକାର୍ଯ୍ୟ ଲଭିଲା ଦ୍ରୋପଦ ନୃପତେ । ୨୧୨ ।
ଯୁଦ୍ଧିଷ୍ଠି ବୋଇଲେ ଆମ୍ଭେ ଅଟୁ ଯେ ଭିଖାରି
ଆମ୍ଭନ୍ତ ଦେବ ବୋଲିକି ଦ୍ରୋପଦ ସଞ୍ଚିଲେ କୁମାରି । ୨୧୩ ।
କେଶିନୀ ବୋଇଲା ମୁଂ ଜାଣଇ ଯେତୁଥର ଭାବ
ତୁମ୍ଭନ୍ତ ବୁଝିଇ ମୁହିଂ ପଞ୍ଚୁ ଯେ ପାଣ୍ଡବ । ୨୧୪ ।
ଦ୍ରୋପଦ ରାଜାଂକୁ ଯେବେ ଦ୍ରୋଣେ ଧରି ନେଲେ
ଅର୍ଜୁନର ହାଥେ ନେଇ ବନ୍ଦୀ କରାଇଲେ । ୨୧୫ ।
ଅନିମିତ୍ତେ ଅପମାନ ହୋଇକ ଦ୍ରୁଯୋଧନ
ତାହାର ଅଭିମାନେ ରାଯ୍ୟେ ଖଟିଲା ତ୍ରିଲୋଚନ । ୨୧୬ ।
ଅଠର ବରଷେ ପ୍ରସନ୍ନ ହୋଇଲେ ଧୂର୍ଜଟୀ
ଦ୍ରୋପଦ ବୋଇଲେ ମୋତେ ଦେବା ଦୋହିତା ଯେତେକ ଗୋଟି ।୨୧୭।
ମୁହିଂ ତାହା ପ୍ରଦାନ କରିବି ଅର୍ଜୁନକୁ
ତାହାର ହାଥେ ନଶାଇବ କୌରବଙ୍କୁ । ୨୧୮ ।
ଈଶ୍ୱରେ ଆଗ୍ୟାଂ ହେଲେ ବ୍ୟାସ ଦୁର୍ବାସାଙ୍କୁ
କନ୍ୟା ଗୋଟିଯେ ତୁମ୍ଭେ ଉପୁଜାଇଂ ଦିଅ ଦ୍ରୋପଦଙ୍କୁ । ୨୧୯ ।
ସ୍ୱାମୀର ଆଗ୍ୟାଂଯେ ମହାମୁନି କଲେ ଯାଗ
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ସେ ଜାତ ହୋଇଲେ ଆଗ । ୨୨୦ ।
ପଚ୍ଛେଣ ଜାତ ହୋଇଲେ ଯେତୁ ଯିଜ୍ଞସେନୀ
ପାଣ୍ଡବେ ଜଦୁର ଘରେ ଦହନ ହୋଇଲେ ଶୁଭିଲାକ ଧ୍ୱନି । ୨୨୧ ।
ବ୍ୟାସଙ୍କୁ ପଚାରିଲେ ଯେସନେ କଲେ କଥା ପୁଂଠ
ମହା ଲଖେକ ଭିଆଇ ପାଟିଲେ ବ୍ୟାସକୁଠ । ୨୨୨ ।

---

୨୧୮।୨ { ତାହାର ହସ୍ତେ ଧଂସାଇବ କୌରବଙ୍କୁ ।
{ ତାହାର ହସ୍ତେ ଗଞ୍ଜାଇବ କୌରବଙ୍କୁ ।

ଅର୍ଜୁନନ୍ତୁଂ ଆନ ଯେହ୍ନା ନୋହିବ ବନ୍ଧନ୍ତା
ଯେ ଲଖ ଯେ ଷଣ୍ଡବ ଦେବଇଂ ତାହାରେ ଦୋହିତା । ୨୨୩ ।
ଯେସନେକ ଚରିତ ଭିଆଇଲେ ମୁନି ବ୍ୟାସେ
ସୟମ୍ବର କଲ ରଜା ତୁମ୍ଭର ପ୍ରତିଆଶେ । ୨୨୪ ।
ସଦାଶିବର ବାକ୍ୟ କେ ଆନ କଲ
ଯାହା ବାଞ୍ଛିଲ ଦ୍ରୋପଦ ତାହା ସେ ପାଇଲ । ୨୨୫ ।
ଯୁଧିଷ୍ଠିର ପୁଚ୍ଛକଲେ କେଶିନୀ ଅଗ୍ରତେ
ଆମ୍ଭେ ପାଣ୍ଡବେ ବୋଲ ତୁ ଜାଣିଲୁ କେମନ୍ତେ । ୨୨୬ ।
କେଶିନୀ ବୋଇଲା ଯେ ଆଦ୍ୟ ଅବତାରେ
କେତୁକା ନାମ ଯେହାର ଆଦ୍ୟ ସତ୍ୟ ଯୁଗରେ । ୨୨୭ ।
ମୋହୋର ନାମ ସେ ଅଛଇ ଉଗ୍ରତାରା
ଦାସୀପଣେ ଖଟଇ ମୁଂ ଯେହାର ମନୋହରା । ୨୨୮ ।
ଦ୍ଵିତୀୟ ଜନମେ ଯେ ଯେକବଳା ପାର୍ବତୀ
ମୋହୋର ନାମ ଦେବ କାଉଂଶୀ ମାଳତୀ । ୨୨୯ ।
ଜନ୍ମେ ଜନ୍ମେ ମୁଂ ଯେହାର ପରିବାରୀ ଅଛଇ
ଭୃତ୍ୟ ସଭାବେ ମୁଂ ଯେହାର ଚରଣେ ଖଟଇ । ୨୩୦ ।
ତୃତୀୟ ଜନମେ ଯେ ଅଛଇ ଶଚୀ ଦେବୀ
ମୁହିଂ ସେ ପ୍ରିୟମ୍ବଦା ଯେହାର ଚରଣେ ସେବି । ୨୩୧ ।
ଚତୁର୍ଥ ଜନମେ ଯେ ଦ୍ରୋପଦୀ ରୂପ ଅବତରି
କେଶିନୀ ନାମ ମୋହୋର ମୁଂ ଜନ୍ମେ ଜନ୍ମେ ଭୃତ୍ୟକାରୀ । ୨୩୨ ।
ତୁମ୍ଭେ ପାଞ୍ଚଇନ୍ଦ୍ର ସିନା ଅଛ ଯେକ ମୂରତି
ମୁଂ ତୁମ୍ଭନ୍ତ ଜାଣି ଅଛି ନ ତୁମ୍ଭେ ଜନ୍ମେ ଜନ୍ମେ ପତି । ୨୩୩ ।
ଅନେକ ଜନ୍ମର କଥା ସନ୍ତୁଂ କହିଲ କେଶିନୀ
ଯୁଧିଷ୍ଠିର ବୋଇଲେ ତୁ ତ ପୂଜାକୁ ଯୋଗ୍ୟ ମାନି । ୨୩୪ ।
ଅନେକ ଗଉରବେ କଲେ କେଶିନୀକ
ଅପର୍ଣ୍ଣା ବୃନ୍ଦାଅର୍କ ମେଳେ ଲେଖିଲେ ପାଞ୍ଚାଳୀକ । ୨୩୫ ।
କନ୍ୟାକୁ ଘେନ ସେ ପଣ୍ଡୁ ପଞ୍ଚପୁତ୍ରେ
କୁମ୍ଭଶାଳକୁ ଗମନ୍ତ ମାତାଙ୍କର ସମୀପେ । ୨୩୬ ।

ସେ କନ୍ୟା ଦେଖି ବିଗ୍ଭରନ୍ତି ଦେବ ଧର୍ମେ
ଲକ୍ଷ ବିନ୍ଧିଲ ଅର୍ଜୁନ ବଟ ନ ବିଲ ଜ୍ୟେଷ୍ଠ ଅନୁକ୍ରମେ । ୨୩୭ ।
ଆମ୍ଭନ୍ତ ସେ କନ୍ୟା ହୋଇବ ଯୁଗତେ
କେମନ୍ତେ ଭିଆଇଛନ୍ତି ବ୍ୟାସ ତପୋବନ୍ତେ । ୨୩୮ ।
କନ୍ୟାର ଲୋଭେ ଯୁଧିଷ୍ଠି ମନରେ ବିଗ୍ଭର
ଯୁଗତେ କନ୍ୟା ହୋଇବ ଆମ୍ଭର । ୨୩୯ ।
ଭୀମସେନ ବିଗ୍ଭରଇ ଅର୍ଜୁନ ଅବା ଲଖ ବିନ୍ଧିଲ
ଦୁଷ୍ଟରାଜାମାନନ୍ତ ଯେନ ମାନଗୋବିନ୍ଦ ଗୋଳ କଲି । ୨୪୦ ।
ମୁଂ ଯେବେ ସଂଗ୍ରାମ ନ କରି ହୋଅନ୍ତି ଭୂମି
ଅର୍ଜୁନ ଗ୍ଭରି ଦର୍ପେ କି ଆଣନ୍ତା ଯିଷ୍ଣୁସେନି । ୨୪୧ ।
ମୋହୋର ସେ କନ୍ୟା ହୋଇବ ଯୁଗତେ
ଅର୍ଜୁନ ପ୍ରେ କଥା ଅବା ଲଙ୍ଘିବ କେମନ୍ତେ । ୨୪୨ ।
ଯୁଗତେ ଯେବେ ମୋତେ ନ ଦେବେ କୁମାରୀ
ବଳାତ୍କାରେ ଅବଶ୍ୟ ମୁଂ ନେମଇଂ ଉଚ୍ଛୁଡ଼ି । ୨୪୩ ।
ସାଂଗ୍ରାମେ ଗୃହିହେଂ ତ ନୋହନ୍ତି ମୋତେ ସରି
ପାଞ୍ଚାଳୀକି ଯେନ ରହିବ ପଛେ ହିଡ଼ିମ୍ବିଙ୍କ ବନ ପୁରୀ । ୨୪୪ ।
ନକୁଳ ବିଗ୍ଭରଇ ସୁକୁମାର ମୋତେ ଦେଖି
ମୋତେ ସେ ନିଶ୍ଚେ ବରିବ ଶରଦ ଚନ୍ଦ୍ରମୁଖୀ । ୨୪୫ ।
ସହଦେବ ବିଗ୍ଭରଇ ମୁଂ ମନ୍ତ୍ରୀଚୂଡ଼ାମଣି
ମୋତେ ସେ ପ୍ରାପତ ହୋଇବ ଯେ ଦ୍ରୋପଦ ଦୁଲଣୀ । ୨୪୬ ।
ଯେସନେକ ବିଗ୍ଭର ଯେ ସବୁଙ୍କର ମନେ
ଯୁଧିଷ୍ଠି ବୋଇଲେ ଆମ୍ଭେ ଲୋଭ କରିବୁଂ କେସନେ । ୨୪୭ ।
ଆମ୍ଭର ଲୋଭ କଲେ ହୋଇବ ବହୁତ ମନ୍ଦ
ସୋଦରେ କଳଙ୍କ ଲଗିବ ହୋଇବ ବଡ଼ ଦ୍ୱନ୍ଦ । ୨୪୮ ।
ମାତାଙ୍କର ଅଗ୍ରତେ କହିବା ଗୋପ୍ୟ କରି
ଯେହ୍ନେ ଆଗ୍ୟାଂ ଦିଅନ୍ତି କୁନ୍ତିଭୋଜର କୁମାରୀ । ୨୪୯ ।
ରାଜ ଯେ ହୋଇଅଛି ଅଢ଼ାଇ ପ୍ରହାର
ସ୍ୱୟଂବର କନ୍ୟା ଘେନି ପ୍ରବେଶ କୁମ୍ଭାରଶାଳ ଦ୍ୱାର । ୨୫୦ ।

ମା ଗୋ ପାଣି କଳସାଏ୍ ଦେବା ପାଦ ଶଉଚ କରିବା
କୋଇନ୍ତାଏ୍ ବୋଇଲେ କସ ପ୍ରାପତ ହୋଇଲା ରେ ବାବା । ୨୫୧ ।
ଯୁଦ୍ଧେଷ୍ଟି ବୋଇଲେ ତୁମ୍ଭେ ଶୁଣସି ଗୋ ମାଏ୍
ପ୍ରାପତ ହୋଇଲା ବଡ ସୁସଞ୍ଜ ଫଳ ଗୋଟାଏ୍ । ୨୫୨ ।
ମାତା ବୋଇଲେ ଯେବେ ପ୍ରାପତ ଏ୍ୟକ ଫଳ ଗୋଟି
ପାଞ୍ଚ ଭାଇ ଯାକ ତୁମ୍ଭେ ଭୁଞ୍ଜ ବାବୁ ବାଣ୍ଟି । ୨୫୩ ।
ଯେସନେକେ ଆଗ୍ୟାଂ ଦଲେ ସେ ପରମ ଅପର୍ଣ୍ଣା
ତୁମ୍ଭର ଆଗ୍ୟାଂ ଆମ୍ଭନ୍ତ ପାଷାଣ ରେଖ ସିନା । ୨୫୪ ।
ଭୀମସେନ ବୋଇଲା ମା ଗୋ ସେ ସତେ ନୋହଇ ଫଳ•
ଲଖ ବନ୍ଧ ଆଣିଲୁ ଗୋ ଦ୍ରୋପଦ ଦୁଲାଳ । ୨୫୫ ।
କୋଇନ୍ତାଏ୍ ବୋଇଲେ ବାବୁ ମହନ୍ତଙ୍କର ବଚନ
ତୁମ୍ଭେ ସାଧୁ ପୁତ୍ର ମୋର ବଚନ ନ କର ଆନ । ୨୫୬ ।
ଯେହ୍ନେ ଆଗ୍ୟାଂ ମୁଂ ଦେଲି ନିରାଧାର
ପାଞ୍ଚେହେଂ ପ୍ରଦାନ ହୋଅ ଦ୍ରୋପଦ କୁମାରୀ । ୨୫୭ ।
ଯୁଦ୍ଧେଷ୍ଟି ବୋଇଲେ ମା ଗୋ ଯେହ୍ନେ ସେ ଯୁଗତ
କୋଇନ୍ତାଏ୍ ଜାଣନ୍ତ ଯେ ପାଣ୍ଡବଙ୍କର ପ୍ରକୃତ । ୨୫୮ ।
କେଶିନୀ ମୁଖ ଶୁହ୍ନିଂ ବୋଇଲେ ସିଦ୍ଧସେନୀ
କେମନ୍ତେ ବୁଲନ୍ତ ଗୋ ଭିକ୍ଷା ପାତ୍ର ଦେନ । ୨୫୯ ।
ପ୍ରବେଶ ହୋଇଲେ ଯାଇ ମହାନିଶା କାଳେ
ଚରଣ ଲେଚାଏ୍ ଜାଳିଲେ କୁମ୍ଭାରର ଶାଳେ । ୨୬୦ ।
କେଶିନୀ ବୋଇଲା ଗୋସାମଣୀ ଜାଣିଲ ଏ୍ୟହାଙ୍କର ବସା
ଦ୍ରୋପଦ ବକଳ ତେଣେ ହୋଉଥିବନ ମମିଷା । ୨୬୧ ।
ରାଜାର ଅଗ୍ରତେ ମୁଂ ବାରତ କରିଇଂ ଯାଇଂ
ଏ୍ୟଥକୁ ଦ୍ରୋପଦଙ୍କୁ ଆଣିଇ କଢାଇଂ । ୨୬୨ ।
ଏ୍ୟତେକ ତିଆରିଣ ଗଲାକ ମୁଦୁସୂଳୀ
ଦ୍ରୋପଦ ଭୁବନକୁ ସେ ବହନ ହୋଇଂ ଚଳି । ୨୬୩ ।
କୁମ୍ଭାର ଶାଳରେ ପାଉଂଶ ଶେଯ୍ୟା ଗୋଟିଏ୍ୟକ କଲେ
କରପତି ଗୋଟିଏ୍ୟ ପାଡ କୋଇନ୍ତାଏ୍ ସୁତିଲେ । ୨୬୪ ।

ତାହାଙ୍କର ପାଦତଳେ ପାଡ଼ଂଶ ଶେଯ୍ୟା ଗୋଟିଏ ପାଡ଼
ତହିଂର ଉପରେ ଯୁଧିଷ୍ଠିର ଦେବ ସେ ପହୁଡ଼ ।୨୬୫ ।
ତାହାଙ୍କର ପାଦତଳେ ପାଡ଼ଂଶ ଶେଯ୍ୟା ଚାରି ଗୋଟି
ତହିଂର ଉପରେ ପହୁଡ଼ିଲେ ଭୀମ ନକୁଳ ସହଦେବ କିରୀଟୀ ।୨୬୬ ।
ତାହାଙ୍କର ପାଦତଳେ ପାଡ଼ଂଶ ଶେଯ୍ୟା ସୁପାଖ
କୋଇନ୍ତୀଏ ବୋଇଲେ ଗୋ ସେହିଠାରେ ଶୋଅ ଦ୍ରୋପଖ ।୨୬୭ ।
ଘାର ଶେଯ୍ୟା ଦେଖି ସେ ଦ୍ରୋପଦର ଦୋହିତ
ଯେ ଦଇବ ବୋଲି ସେ କପାଳେ ଦେଲା ହାଥ ।୨୬୮ ।
କୋଇନ୍ତୀଏ ବୋଇଲେ ଗୋ ଭିକ୍ଷାଶୀ ମୋହୋର ପୋଏ
ତୋହୋର କରମେ ଏହା ପାଇଲୁ ଗୋ ମାଏ ।୨୬୯ ।
ଯାହା ଅରଜ ମାତା ତାହା ସିନା ଭୁଞ୍ଜି
ସମ୍ପଦ ବିପଦ ମା ଗୋ ସଂସାରର ମଝି ।୨୭୦ ।
ଦ୍ରୋପଖ ବଇକୁଲ୍ୟ ପାଡ଼ଂଶ ଶେଯ୍ୟା ଦେଖି
ଯେ ଦଇବ ପୁରୁଷ ମୋହୋର କପାଳେ ଏହା ସେ ଅଛୁ ଲେଖି ।୨୭୧
ହଂସୁଲି ତୂଳୀ ଗଜଦନ୍ତ ରତ୍ନ ଖଟୁଲି
ବେଢି ଇଚ୍ଛାରନ୍ତ ମୋତେ ଲକ୍ଷେକ ପୋଇଲି ।୨୭୨ ।
ସୁପାଖର ଉପରେ ଦାସୀନେତ ପାଡ଼
ତହିଂରେ ଉପରେ କର୍ପୂର ଗୁଣ୍ଡି ସେବନ୍ତି ପାଖୁଡ଼ ।୨୭୩ ।
ତହିଂରେ ରଗଡ଼ ହୋଅଇ ମୋହୋର ଶରୀର
କେମନ୍ତେ ଶୋଇବି ମୁଂ ପାଡ଼ଂଶ ଶେଯ୍ୟା ଉପର ।୨୭୪ ।
ଲକ୍ଷେକ ବ୍ରାହ୍ମଣ ଯେନ ବ୍ୟାସ ମହାଯନ୍ତ୍ର
ମହାଯାଗ କୁଣ୍ଡୁ ମୋତେ କଲେ ଉତପତ୍ତି ।୨୭୫ ।
ପାଞ୍ଚାଳ ରଜାର ମୁଂ ଅଟଇ ଦୁଲଣୀ
ଯେ ଦଇବ ପୁରୁଷ ମୋତେ ଏହା କଲୁ ଆଣି ।୨୭୬ ।
ଏ ଘାର ପାଡ଼ଂଶ ଉଡ଼ ପଡ଼ିଲେ ଦନକର ସୁକୃତ ଯାଇ
ଏହା ମାଡ଼ ଗଲେ ଆକ୍ଷ୍ୟ ଶ୍ରୀହୀନ ହୋଅଇ ।୨୭୭ ।

---

୨୭୨।୨ ବେଢି ବିଛିବନ୍ତ ସହସ୍ରେକ ମୁଦୁସୁଲୀ ।
୨୭୨।୨ ଇଚ୍ଛାରନ୍ତ—ସମ୍ଭାଳନ୍ତ, ବିଛାବନ୍ତ, ବିଶ୍ରାମନ୍ତ ।

ମୁନ୍ହିଂ ପରମ ମାହେଶ୍ୱରୀ ଶରୀରେ ଗ୍ୟାନ ଥାଉଂ ଥାଉଂ
ସ୍ୱେ ଭସ୍ମ ଶେଯ୍ୟାରେ ଶୋଇବ ମୁଂ ଆର କାହ୍ନୁଂ । ୨୭୮ ।
ଦେଖିଣ ଭୀମ ସେ କଟାକ୍ଷିଣ ଗୃହ୍ନିଂ
ବୋଲଇ ଦ୍ରୌପଦୀ ଗୋ ନ ଶୁଅ କାହ୍ନିଂପାଇଂ । ୨୭୯ ।
ଦେଖିଣା ଭସ୍ମେ କଲା ଦ୍ରୌପଦ କୁମାରୀ
ସ୍ୱେ ଦୁଷ୍ଟ ବ୍ରାହ୍ମଣ ଗୋଟି ନ ପୁଣ ମୋତେ ମାର । ୨୮୦ ।
ଭୟେଣ ପାଞ୍ଚାଳୀ ପଡୁଗଲେ ବକଲେ
ପଞ୍ଚୁ ପାଣ୍ଡବଙ୍କର ଚରଣର ତଳେ । ୨୮୧ ।
ଦେଖଇ ଚଣ୍ଡ ଭାର ଯେ ତମ୍ବା କପୋର
ଉର ଗଡୁ ପୀଡା ଯେ ଧୀମସ୍ଥାନେ ସବୁ ଢେର । ୨୮୨ ।
ଦଦରୀ ଛତା ଶରୀ ପାଞ୍ଜୋଇ ହରଗୋବନ୍ଦ ମୁଣି
ସ୍ୱାହା ପ୍ରୋକ୍ଷଣୀ ସଉରେଭ ପାଦ ପାଣି । ୨୮୩ ।
କୁଶ ତମ୍ବାପାଟୀ ପୁଇଗୃନ୍ଧଆ ପୁଷ୍ପର ମାଳୀ
ଦେଖି ମୂର୍ଚ୍ଛାଗତ ହୋଇଲା ଦ୍ରୌପଦ ଦୁଲାଳୀ । ୨୮୪ ।
ରାଜକୁମାରୀ ହୋଇ ସ୍ୱେହେନେକ କର୍ମ ମୋହୋର
ଭିକ୍ଷାଶୀ ବ୍ରାହ୍ମଣନ୍ତ ମୁହିଂ ପାଇଲଇଂ ବର । ୨୮୫ ।
ଭୋ ଦଇବ ପୁରୁଷ ତୁ ପାପ ପୁଣ୍ୟ ନ ବିଚାରୁ
ସ୍ତିରୀ ବୋଲି କରି ଜନମ କର୍ମେ କରୁ । ୨୮୬ ।
ଆନ ରାଜା ହୋଇ ଯେବେ ମୋତେ ପାଆନ୍ତା
ମଥାର ଉପରେ ବସାଇ ମୋତେ ଘରେ ନଅନ୍ତା । ୨୮୭ ।
ନିର୍ଦ୍ଧ୍ୟା ବ୍ରାହ୍ମଣ ସ୍ୱେତେ ହରସୋଗୀ
ଅନ୍ତେଣ ହୋଇଲି ମୁଂ ସ୍ୱେହାଙ୍କର ପାଦତଳକୁ ଯୋଗୀ । ୨୮୮ ।

---

୨୭୯।୨ ନ ଗୃହ୍ନୁଂ ଦ୍ରୌପଦୀ ଗୋ ନ ଶୁଅ କାହ୍ନିଂ ପାଇ—'ଦ୍ରୌପଦୀ ନ ଗୃହ୍ନୁଂ,ନ ଗୃହାନ୍ତେ ଭୀମ ବୋଇଲା, ହେ ଦ୍ରୌପଦୀ ! ତୁମ୍ଭେ କାହିଁକି ଶୋଉନାହଁ । ଏପରି ପାଠ ଅଛି ।

୨୮୮।୧ ହରସୋଗୀ—ହରଙ୍କ ପରି ସନ୍ନ୍ୟାସୀ ।

ଦ୍ରୋପଦୀର ଶୋଚନା ହୀଦେ କହିତ କ ପାରି
ରାଜାର ନନ୍ଦନୀ ସେ ବିଶେଷେ ବାଳୁତ କୁମାରୀ । ୨୮୯ ।
ବିକଳେ ପଡ଼ୁଥିଲା ସେ ଧ୍ରମରେ ହାସ କରି
ପୁଣ ପୁଣ ଦ୍ରୋପଦୀ ନାରାୟଣ ନାରାୟଣ ସୁମରି । ୨୯୦-୯୧୧୨୦ ।



# ଦ୍ରୌପଦୀର ପୂର୍ବଜନ୍ମ କଥା

ଶୁଣ ବଇବସୁତ ମନୁ ବଦସୂନ୍ତ ଅଗସ୍ତି
କୁଟୁମ୍ବ ବସାଇ ଭାଳଇ ଦ୍ରୋପଦ ନୃପତି । ୧ ।
ଅକାରଣେ କମ୍ଭେ ମୁଂ ସପୂମ୍ବର କଲି
କାର୍ଯ୍ୟ ନ ପାଇଲି ଧଂସି ହୋଇ ମଲି । ୨ ।
ପ୍ରତ୍ୟକ୍ଷେ ଲକ୍ଷ ବିନ୍ଧିଲେ ସେ ବ୍ରାହ୍ମଣ ଗୋଟି
କାଳକ ଶତ୍ରୁ ପଣ ମୋତେ କଲାକ ଧୃଷ୍ଟରଷ୍ଟି । ୩ ।
ଯେବଣ ଗୋଳ ସେ କଲେ ଦୁଷ୍ଟ ରାଜାୟେ
ମୋହୋର କଲା କୃତ ଆବର କାହାକୁ ଦୋଷ ଦିୟେ । ୪ ।
କେ କେତଣେ ମାଇଲା ସେ ବ୍ରାହ୍ମଣ ଗୋଟିକ
ଭୟେ ପଳାଇଲୁ ଆମ୍ଭେ ନୁଆଶିଲୁ ଦେଖି । ୫ ।
କେ ପାଞ୍ଚାଳୀକ ମୋର ଘେନିଗଲା ବଳେ
ରୋବଇ ଦ୍ରୋପଦେଶ୍ବର ଦୋହିତାର ବିକଳେ । ୬ ।
ଧୃଷ୍ଟଦ୍ୟୁମନର କଷ୍ଟ କହିତେ କେହ୍ନ ତାରି
ଅନେକ ରୋଦନ କରଇ ସେ ଭୂମିରେଣ ପଡ଼ି । ୭ ।
ଦୋହିତାର ବିକଳେ ରୋବଇ ପଦ୍ମାବତୀ
ମା ଗୋ କାଳକ ପ୍ରତିପାଳି ତୋତେ ମୁଂ ପ୍ୟେବେ ହୋଇଲି ବିଅର୍ଥୀ । ୮ ।
କେ ପ୍ରାଣେ ମାଇଲା କେବା କେଣିକି ଘେନି ଗଲା
ପୋଡ଼ୁ ମୋର ଦେହ ମୋତେ କମ୍ଭେ ମରଣ ନୋହିଲା । ୯ ।
ଆରେ ବାବୁ ମୋହୋର ଶିଖଣ୍ଡୀ ଧୃଷ୍ଟଦ୍ୟୁମନ
ଲୋଡ଼ କ ନା ବାବୁ ଆରେ ବ୍ରାହ୍ମଣଙ୍କର ବର୍ତ୍ତି ଚିହ୍ନ । ୧୦ ।

ଗୋଲବେଳେ ଅବା ସେ କେଣେ ଥାନ୍ତି ଲୁଚି
ଭୟେ ପଳାଇଲୁଂ ଆମ୍ଭେ ନ ଗଲ୍ଲ ବପ୍ର ପୁଞ୍ଛି । ୧୧ ।
ତାହାର ଭୁଲେ କନା ରଣ ପର୍ଯ୍ୟଂ ନ କଲୁ
ଦ୍ରୋପଗାର ପାଇଂ କମ୍ପେ ସଭୟେ ନ ମଲୁଂ । ୧୨ ।
ଦ୍ରୋପଦର ବଚନେ ସେ ଦ୍ରୋପଦର ଦେନବଳା
ଭୁଲେ କୁମାରେ ଦେନଲେ ସହସ୍ରେକ ହୁଳା । ୧୩ ।
ସଙ୍ଗର ଆପୃତନ ଯାଉଛନ୍ତି ଲେଡ
ଦେଖିଲେ ଅନେକ ରାଜା ଯୋଦ୍ଧା ଛନ୍ତି ପଡ । ୧୪ ।
ରତ୍ନମଣି ମୁକୁଟ ବଗକତ ଲଲଟେ
ରକତେ ନିପଣ୍ଡ ହୋଇ ପଡଛନ୍ତି ରଣ ଖାଟେ । ୧୫ ।
ରକତ ମାଂସ ଦେଖି ବଜୟେ ଶମଶାନ
କରନ୍ତି ରୋଧିର ପାନ ଯୋଗ୍ନୀବୃନ୍ଦ ଘେନ । ୧୬ ।
ଟହ ଟହ ହାସ୍ୟେ ହୁଳହୁଳ ଶବଦେ
ବ୍ରହ୍ମାଣ୍ଡ ଉଚ୍ଛୁଳୁ ଅଛି ଡାକ ଡମ୍ବରୁ ନାଦେ । ୧୭ ।
ମାତଙ୍ଗୀବୃନ୍ଦ ଘେନ ଦେବୀ କରନ୍ତି ଭ୍ରମଣି
ଅନେକ କ୍ରୀଡାରଙ୍ଗ କରନ୍ତି ଗୋସାମଣୀ । ୧୮ ।
ଚର୍ଚ୍ଚିକା ଗ୍ରୁମୁଣ୍ଡା ଗୃଟକେଶ୍ୱରୀ ଭଦ୍ରକାଳୀ
କଙ୍କାଳୀ ବେତାଳୀ କାଳୀ ଭୈରୋବୀ ବାସେଳୀ । ୧୯ ।
ମଡୁଆଳ ଖେଡେ ହୃଦେ ବନମାଳା
ଖେଚରୀ ଭୂଚରୀ ଦେବୀ ଚକତା ଚଞ୍ଚଳା । ୨୦ ।
କେ ବ୍ୟାଘ୍ର କେ ସିଂହ କେ ଶାର୍ଦ୍ଦୋଳ ବାହନୀ
ଗଜ ଅଶ୍ୱ ଗର୍ଦ୍ଦଭ ବଳେୟୁ ପଯ୍ୟାଣି । ୨୧ ।
ନାଚନ୍ତି ଗାବନ୍ତି ବାଦନ୍ତି କୁତୋହୋଳେ ଖେଡ
ପ୍ରେତ ଭୂତମାନେ ବଅନ୍ତି ଘୋର ରଡ । ୨୨ ।
ମହା ନଶା କାଳେ ରକତ ମାଂସେ ଭେଳା
ତୋ ରୂପ ତଲୟେ ମା ଗୋ ଉଦ୍ଧର ସର୍ବମଙ୍ଗଳା । ୨୩ ।
ସେ ନବ କୋଟି କାତ୍ୟାୟନୀ ଚରଣେ ମୋର ସେବା
ଶୂଦ୍ରମୁନ ସାରୋଳା ଦାସଙ୍କୁ ପ୍ରସନ୍ନ ହୋଇବା । ୨୪ ।

---

୧୫।୨ ରକତେ କର୍ଦ୍ଦନେ ହୋଇଛନ୍ତି ଦୁଷ୍ଟ ଦ୍ରପିଷ୍ଟେ ।

ହୁଳାନ୍ତ ଲଗାଇ ଚଳଯାନ୍ତ ଧୃଷ୍ଟଦ୍ୟୁମନେ
ସମସ୍ତ ଦେବାମାନେ ହୋଇଲେ ଅନ୍ତର୍ଦ୍ଧାନେ । ୨୫ ।
ଲୋଡନ୍ତ ମେଢ ମଣ୍ଡପ ଅଣଉହାଡ ଥାନମାନେ
ଚୋଟାପୁର ନାଟପୁର ପଶିଲେ ଗହନ ବନେ । ୨୬ ।
ସମସ୍ତ ଗୋପ୍ୟଥାନେ ଲୋଡନ୍ତ ଉପଲେସି
କେବଣ ଠାବେ ଅବା ଗୋପ୍ୟେ ଥାନ୍ତି ବସି । ୨୭ ।
ରୁଧିରେ ମୃତ୍ତୁପିଣ୍ଡ ପଡଛନ୍ତି ଅପ୍ରମିତେ
ଆସ୍ଥାନ ଆଦ୍ୟ କରି ଚଉବଂଶ ଯୋଜନ ପର୍ଯ୍ୟନ୍ତେ । ୨୮ ।
ଲୋଡ ନ ପାଇଲେ ସେ ଦ୍ରୋପଦର ଗୃହେ
ଭ୍ରମନ୍ତେ ପ୍ରବେଶ ହୋଇଲେ କୁସ୍ଳଶାଳ ନିକଟେ । ୨୯ ।
ଶିଖଣ୍ଡୀ ବୋଇଲା ଏଥୁ ଅଛଇ ଅଣଉହାଡ ଥାନ
ଏଥି ଅବା ବ୍ରାହ୍ମଣେ ହୋଇଥିବେ ଗୋପ୍ୟାନ । ୩୦ ।
ଉତ୍ସନଶାସ୍ତ୍ରୀ ହୋଇ ପଡୁଛନ୍ତି ପବନର ବାଳ
ନିଶ୍ୱାସ ଘାତେ ଆକାଶକୁ ଉଠୁଅଛି ଗୃଳ । ୩୧ ।
ପାଞ୍ଚଦିନ ପର୍ଯ୍ୟନ୍ତେ ଆହାର ନିଦ୍ରା ନାହିଂ
ଶତ୍ରୁ ମର୍ଦ୍ଦି ସୁସ୍ଥେ ନିଶ୍ଚିନ୍ତେ ଅଛି ଶୋଇ । ୩୨ ।
ନିଶ୍ୱାସ ଘାତେ ଗୃଳ ଗୋଟି ଉଠଇ
ଦ୍ୱାଦଶ ତାଳ ଉପରକୁ ସଞ୍ଚା ଗୁଡ ଉଡଇ । ୩୩ ।
ନିଶ୍ୱାସ ସଂହରନ୍ତେ ପୁଣ ବାହୁଡଣ ବସଇ
ଦୂରେ ଥାଇ ଧୃଷ୍ଟଦ୍ୟୁମନ କଲେ ମହାତ୍ରାସଇ । ୩୪ ।
ଶିଖଣ୍ଡୀ ବୋଇଲା ବାବୁ ନ ଯିବା ତହିଂର ପାଶ
ଏହିକ୍ଷଣି ଭକ୍ଷିବେଟି ଶୋଇଛନ୍ତି ରାକ୍ଷସ । ୩୫ ।
ଭୟେଣ କୁମାରେ ନ ଗଲେ ତାହାଙ୍କର କଡ
ବାହୁଡ ଯାଇଂ ପିତା ଦ୍ରୋପଦଙ୍କୁ କହନ୍ତି । ୩୬ ।
ହେ ତାତ ଅନେକ ଦୂର ଗଲୁ ଆମ୍ଭେ ଗମି
କାହାକଇଂ ଦେଖି ନୁଆରିଲୁ ଦେବ ସ୍ୱାମୀ । ୩୭ ।

---

୨୭।୧ ଉପଲେସି—ଉପନେସି, ଉପନ୍ୟାସି ।
୩୧।୧ ଉତ୍ସନଶାସ୍ତ୍ରୀ—ଉତ୍ସନଶାସ୍ତ୍ରୀ ।

ଦ୍ରୋପଦୀ ବ୍ରାହ୍ମଣଙ୍କର ଯେ ନାହିଂ ବର୍ଣ୍ଣି ଚିହ୍ନ
ଶୁଣି, ଦ୍ରୋପଦେଶ୍ୱର ବିଚ୍ଛିନ୍ନ କଲା ମନ । ୩୮ ।
ଉଚ୍ଚସ୍ୱରେ ରୋଦନ କରଇ ଭୂଅପତି
ପୁରଜନମାନେ ସମସ୍ତେ ରୋବନ୍ତି । ୩୯ ।
ମା ଗୋ ଅଦାର ଅଯୋନି ଜାତ ଅଗ୍ନିକୁମାରୀ
ପିତାର ଅଦଚ୍ଛପଣେ ହୋଇଲୁ ଦୁଃଖ ଭାରି । ୪୦ ।
ମୋର ହୃଦର କଥା କହିବ କାହା ଆଗ
ଶରୀର ବିସର୍ଜିବି ଗୋ ନ ହେଉ ଶୋକ ଯୋଗ । ୪୧ ।
କରନ୍ତି ରୋଦନ ସେ ପୁରର ସମସ୍ତ କାମିନୀ
ସେମାନଙ୍କର ସମସ୍ତେ ପ୍ରବେଶ କେଶିନୀ । ୪୨ ।
ଜଣାଇଂ ମୃଦୁସୁଳୀ ପଶିଲା ଅନ୍ତେଶ୍ୱର ପୁରେ
ସମସ୍ତେ ଥିର ହୋଇ ବୋଲନ୍ତି ଯେତେ ଥିଲା ସଙ୍ଗତରେ । ୪୩ ।
ଦ୍ରୋପଦ ବୋଇଲେ ଗୋ କେବଣ ବାରତା
କେଶିନୀ ବୋଇଲା ତୁମ୍ଭେ ଛାଡ଼ ଶୋକ ଚିନ୍ତା । ୪୪ ।
ସମସ୍ତ କୁଶଳ ଯେ କହଇ ମୃଦୁସୁଲୀ
ଦ୍ରୋପଦ ବୋଇଲେ ମୁଂ ନିସ୍ତରିଲି ନିସ୍ତରିଲି । ୪୫ ।
କେଶିନୀ କହଇ ବସି ସମସ୍ତ ବିଧାନ
ଲକ୍ଷ ବିନ୍ଧିଲା ସ୍ୱାମୀ ଯେବଣ ବିଦୁଜନ । ୪୬ ।
ତାହାଙ୍କୁ ଗୋଳ ଯହୁଂ କଲେ କୁରୁ ବୀରେ
ବଡ଼ ଭ୍ରାଥେକ ଆସି ହୋଇଲା ସଙ୍ଗତରେ । ୪୭ ।
ବେନି ବୃକ୍ଷ ଉପାଡ଼ି ଧରିଅଛି ବେନି ହାଥେ
ଦେଖିଣ ଭାଜିଲେ ଦୁଷ୍ଟ ରାଜାଏ ସମସ୍ତେ । ୪୮ ।
ବୃକ୍ଷ ବୁଲାଇ ପବନ ଗତି କରି ପିଟି
ରଥ ଗଜ ଅଶ୍ୱ ପଡ଼ିଲେ ଭୂମି ଲୋଟି । ୪୯ ।
ପୁଣି ଧାଇଂଲେ ବ୍ରାହ୍ମଣ ଜଣ ବେନି
ବୃକ୍ଷେ ବୃକ୍ଷେ ସେ କରେ ଛନ୍ତି ଘେନି । ୫୦ ।

---

୩୮ । ୨ ବିଚ୍ଛିନ୍ନ—ଅତି ଚିନ୍ତାଯୁକ୍ତ । ୪୦ । ୨ ଅଦଚ୍ଛ—ଅଦକ୍ଷ ।
୩୯ । ୨ ରୋବନ୍ତି—ରୋଦନ କରନ୍ତି ।

ଆସନ୍ତେଣ ଭେଟିଲେ ମନ୍ତ୍ରୀ ଯେ ଶକୁନ
ସେ ସ୍ୱାସେ ପଳାଇଲା ସ୍ୱେ ଅଇଲେ ତାହାର ରଥ ଘେନି । ୫୧ ।
ଅନେକ ରତ୍ନ ଯେ ମଣ୍ଡିଲା ଅଛି ରଥେ
ତହିଂର ଉପରେ ବସାଇଲେ ଦ୍ରୋପଦୀଙ୍କି ମୋତେ । ୫୨ ।
ଯେବଣ ସଂଗ୍ରାମ କଲେ ଦ୍ୱିଜବରେ.
ଦେବଙ୍କୁ ଦୁଲ୍ଲଭ ସେ ମାନବେ ଅଗୋଚରେ । ୫୩ ।
ଲକ୍ଷେ ରାଜାକଇ ସେ ବ୍ରାହ୍ମଣ ଗୃହ ଜଣେ
ତଦନ୍ତ ନାହିଂ ଦେବ ପଡିଲେ ଯେତେ ରଣେ । ୫୪ ।
ଯେତେବେଳେ ସଂଗ୍ରାମ କଲେ ରୁକ୍ମଣ ବାଣାସୁର ସଅମ୍ବର ବଜ୍ରଲଭ
ଦେଖିବାକୁ ଅବଶ୍ୟ କହିବାକୁ ଦୁଲ୍ଲଭ । ୫୫ ।
ରଥେ ରଥେ ଗଜେ ଗଜେ ପିଟିଲେ ଦେବ ଧରି
ସ୍ୱେକା ଘାନ୍ତକେ କଗୃଡନ୍ତ ଅଶ୍ୱ ଗୃହ ଗୃହ । ୫୬ ।
ଭାଜି ପଳାଇଲେ ରାଜାସ୍ୱେ ନ ରହିଲେ କେହି
ପଞ୍ଚଦଶ ଯୋଜନ ପରିଯନ୍ତେ ରୁଧିର ନଦୀ ବହି । ୫୭ ।
ମହା ବଳବନ୍ତା ସେ ଅଟନ୍ତି ବ୍ରାହ୍ମଣେ
ଲକ୍ଷେ ରାଜା ଦର୍ପ ସେ ମର୍ଦ୍ଦିଲେ ଗୃହଜଣେ । ୫୮ ।
କାଳଦମନ ଶିଶୁପାଳ ପୁଣ୍ଡରୀକ ରୁକ୍ମଣ
ଶାଲ୍ୱ ନୃପଣ୍ଡକ ଲଇ ଦୁଷ୍ଟ ପାଞ୍ଚଜଣ । ୫୯ ।
ସ୍ୱେହାଙ୍କର ସନ୍ୟ ଦେବ ଅସଂକ୍ଷେପ କରି ମାରି
ସ୍ୱେ ପାଞ୍ଚ ରାଜାନ୍ତ ଦେବ ଆଣିଲେ କେଶ ଧରି । ୬୦ ।
ଜୟଦେବ ବୋଲି କରି ସ୍ୱେକଇ ପଣ୍ଡାସ୍ୱେ
ସେହି ବସିଥିଲେ ଦେବ ଦକ୍ଷିଣ ପଞ୍ଚୁ ମଣ୍ଡୋଆସ୍ୱେ । ୬୧ ।
ତାହାଙ୍କର ଗ୍ରୀମୁରେ ନେଇ ପାଞ୍ଚନ୍ତ ପକାଇ
ସେ ଗୃହ ପଣ୍ଡାସ୍ୱେ ଯେ ଗଡଘାଲି ଶୋଇ । ୬୨ ।
ବଡ ଧାର୍ମିକ ବିବେକ ସେ ବଡ ଦୟାବନ୍ତ
ବୋଇଲେ ଗ୍ରୀଡଦିଅ ମାରି କସ ଅର୍ଜିବା ସ୍ୱେହାନ୍ତ । ୬୩ ।

---

୬୧।୨ ସେହି ବସିଥିଲେ ଦେବ ଦକ୍ଷିଣ ଜଗତୀ ଗ୍ରୀସ୍ୱା ମଣ୍ଡୋଆସ୍ୱେ ।
୫୩।୨ ଦୁଲ୍ଲଭ—ଦୁର୍ଲଭ । ୫୯।୨ ଲଇ—ସହିତ, ଲଗାଇ ।

ତାହାଙ୍କର ବଚନ ଦେବ ଅଟଇ ଅଲଙ୍ଘିତ
ଆଗ୍ୟାଂ ପ୍ରମାଣେ ଦେବ ଗୁଡ ହେଲେ ତାହାନ୍ତ । ୬୪ ।
ବେନ ଜାନୁ ତଳରେ ଦେବ ହେଲେ ତାହାନ୍ତ ଗଳାଇ
ସମସ୍ତ ରାଜାଙ୍କୁ ଯେ ଶାସ୍ତି କହଣା ନ ଯାଇ । ୬୫ ।
ସଞ୍ଚପି କେଶିନୀ ମୃଦୁସୁଳୀ କହିଲା ସମସ୍ତ
ଶୁଣି ପଞ୍ଚାଳେଶ୍ୱର ଅନେକ ଉଷତ । ୬୬ ।
ତୁ ମୋହୋର ମାତା ଗୋ ତୋହୋର ଅପାଦ ଘେନଇ ମୁହିଂ
ଯେବେ ତୁ ସେମାନନ୍ତ ଗୋ ଗୁଡ ଅଇଲୁ କାହିଂ । ୬୭ ।
କହଇ କେଶିନୀ ଯେ ଶୁଣ ନୃପରାଣ
ଯେ ମୋହୋର ବଚନ ଦେବ ଶୁଣିମା ସାବଧାନ । ୬୮ ।
ଆମ୍ଭନ୍ତ ଘେନଗଲେ ସେ ବ୍ରାହ୍ମଣ ପାଞ୍ଚ ଜାରେ
ଯାଇଂଣ ରହିଲେ କୁରାଳଶାଳ ଭିତରେ । ୬୯ ।
ସ୍ୱାମୀ ଅନେକ ବନୋସ୍ତି ମୁଂ କହିଲା ତାହାଙ୍କୁ
ବିଜେ କରିବା ଦେବ ଦ୍ରୋପଦ ଭୁବନକୁ । ୭୦ ।
ଇଚ୍ଛା କଲେ ଦେବ ତ୍ରୈଲୋକ୍ୟ ପାରନ୍ତ ସେ ଗମି
ଇଚ୍ଛା ନ କଲେ ଦେବ ସେ ମେରୁହିଂ ଅଚଳ ସ୍ୱାମୀ । ୭୧ ।
ଭେ ଦେବ ଗୋସାମଣୀ ମୋତେ ଆଗ୍ୟାଂ ହେଲେକ ଗଇ
ବୋଇଲେ ପିତାଙ୍କୁ ମୋହୋର ଘେନିଆସ ବେଗେ ଯାଇଂ । ୭୨ ।
ବହନ ବିଜେ ଦେବ କରିବା ମହାପଣ୍ଡେ
ନ ପୁଣ ଦେଖି ନ ପାରି ସେ ଚଳନ୍ତ ଶୂନ୍ୟ ପଥେ । ୭୩ ।
ଶିଖଣ୍ଡୀ ବୋଇଲା ଦେବ ବ୍ରାହ୍ମଣ ତହିଂ ନାହିଂ
କେବଣ ଦାନବେ ଦେବ ଅଛନ୍ତ ତହିଂ ଶୋଇ । ୭୪ ।
ଆମ୍ଭେ ସେହି କୁରାଳଶାଳେ ଦେଖିଲୁ ଦେବଭୟେ
ସନ୍ନିଧକୁ ନ ଗଲୁ ଦେବ ରାକ୍ଷସଙ୍କ ଭୟେ । ୭୫ ।
ଦ୍ରୋପଦ ବୋଇଲେ ଆର୍ଯ୍ୟୀ ଯାଅନ କେଶିନୀ
ଶିଖଣ୍ଡୀ ଧୃଷ୍ଟଦ୍ୟୁମନନ୍ତ ସଙ୍ଗତରେ ଘେନ । ୭୬ ।
ତିନହେଂ ଆଜ୍ଞେ ହୋଇଥିବେ ସେ ଗୁପତେ
ଅନ୍ତର ହୋଇ ଦେଖିବ ସେ ବ୍ରାହ୍ମଣ କ ଦଇତେ । ୭୭ ।
ଅଢାଇ ପ୍ରହର ହୋଇଅଛି ରଯୂଣୀ
ଚଳଲେ କେଶିନୀ ରାଜକୁମାରନ୍ତ ଘେନ । ୭୮ ।

୭୬।୧ ଆର୍ଯ୍ୟୀ—ଆର୍ଯ୍ୟା, ଆଈ ମଧ୍ୟ ହେବ ।

କୁଶଳଶାଳ ସନ୍ନିଧେଣ ସେ ଯାଇଂ
ଭୟେଣ ଦୂର ହୋଇ ରହିଲେ ବେନ ଭାଇ । ୭୯ ।
ହସ୍ତରେ ଦହୁଡ଼ଯେ ଘେନ କେଶିମା ମୃଦୁଗାମୀ
ଭିତରେ ପଶିଲା ନର୍ଭୟେ ନଭ୍ରମି । ୮୦ ।
ଦେଖିଲା ଶୋଇଅଛନ୍ତି ସାତ ଜଣେ
ତୁମା କର ହକାରିଲା ଦେଖ ହୋ ବ୍ରାହ୍ମଣେ । ୮୧ ।
ଦେଖନ୍ତି ସୀମଥାନେ ଶୋଇଅଛୁ ଯେକଇ ମହନ୍ତାଶ
ତାହାଙ୍କର ପାଦ ତଳେ ବ୍ରାହ୍ମଣେକ ଶୟନ କରି । ୮୨ ।
ତାହାଙ୍କର ପାଦ ତଳେ ଶୋଇଛନ୍ତି ବ୍ରାହ୍ମଣ ଯୁବ ଗୋଟି
ପାଉଂଶ ଗୁଡ଼ାୟେ ପାଡ ଶୋଇଛନ୍ତି ନାହିଂ କର୍ପଟି । ୮୩ ।
ତାହାଙ୍କର ପାଦ ତଳେ ଶୋଇଛନ୍ତି ଦ୍ରୋପଦୀ
ମା ଗୋ କେବଣ ପାତକ କଲୁ ପାଉଛୁ ଯେତେ ଶାସ୍ତି । ୮୪ ।
ରତ୍ନ ବେଲୁରି ଖଟ ନେତର ସୁପାଟ ଜାଡ ପାଖୁଡ଼
ତହିଂ ତୋହୋର କାୟା ଗୋଟି ହୋଅଇ ରଗଡ । ୮୫ ।
ଲକ୍ଷେ ମାତ୍ର ତୁଳ କର୍ପୂରର ଧୂଳ
ସେ ଶଯ୍ୟାର ଉପରେ ତାହା ସିଞ୍ଚନ୍ତି ତନ ଓଳ । ୮୬ ।
ଆଲଟ ଗୃମର ଧରି ଲକ୍ଷେକ ମୃଦୁସୁଲୀ
ଅହର୍ନିଶି ଇଚ୍ଛାରନ୍ତି ତୋତେ ଲକ୍ଷେକ ପୋଇଲି । ୮୭ ।
ଭିକ୍ଷାଶୀ ବ୍ରାହ୍ମଣ କ ଯେ ଅସୁର କାମରୂପୀ
ଯେହାଙ୍କର ପାଦତଳକୁ ଯୋଗ୍ୟ ହୋଇଲୁ ଅଦ୍ୟାପି । ୮୮ ।
ରାଗେଣ କୋପଭର ହୋଇଲା ଶିଖଣ୍ଡୀ
ହାଣିବି ବ୍ରାହ୍ମଣନ୍ତ ବୋଲ ଅସିପତ୍ର କାଢି । ୮୯ ।
କେଶିମା ବୋଇଲା ତୁମ୍ଭର ପେ ମରିବାର ବୁଦ୍ଧି
ଯେହିକ୍ଷଣି ବୁଡ଼ାଇବ ତୁମ୍ଭେ ଦ୍ରୋପଦର ସମୃଦ୍ଧି । ୯୦ ।
ପର୍ବତ ପଡ ଚୂରି ହୁଅନ୍ତି ଯେହାଙ୍କର କାୟେ
କସ ହୋଇବ ତୋର ଖଣ୍ଡାଗ୍ରେଟ ଘାୟେ । ୯୧ ।

---

୮୨।୧ ମହନ୍ତାଶ—ବୃଦ୍ଧା ନାଶ । ୮୭।୨ ଇଚ୍ଛାରନ୍ତି—ସେବା କରନ୍ତି, ସମ୍ଭାଳନ୍ତି ।
୯୦।୨ ସମୃଦ୍ଧି—ସମୃଦ୍ଧି ।

ଶୁଣିଲ ହୋ ଘେନ ଆସିବା ଯାଇଂ ଦ୍ରୋପଦ ରାଜାଙ୍କୁ
ଉଗନ୍ତ ହୋଇଣ ଘେନଯିବା ଯେ ସେହୁଙ୍କୁ । ୯୨ ।
ଦୁମନ ବୋଇଲା ସେ କଥାହିଂ ଅଟଇ
ଦ୍ରୋପଦ ଆସି ଦେଖନ୍ତୁ ତାହାଙ୍କର ଦୁହିତା କଷ୍ଟଇଂ । ୯୩ ।
କନ୍ୟା ଗୋଟି ଘେନ ସେ ପଳାଇ ଆସିଲେ ଗଳ
ସେଥେ ଲୁଚ ରହିଲେ ଓହାଡ ଆନ ବୋଲି । ୯୪ ।
ଦଦରା ଛତା ଛୁଣ୍ଡା ପାଣ୍ଡୋଇ ହରଗୋବନ୍ଦ ମୁଣି
ଜନ୍ମେଣ ପାତକ କରିଅଛୁ ସେ ମୋର ଭଯେଣୀ । ୯୫ ।
କେଶିମ ବୋଇଲା ବାବୁ ସେମନ୍ତ ନ ବୋଲ
ବଡଙ୍କୁ ନିନ୍ଦା କଲେ ଆପଣାକୁ ହୋଅଇ ସଲ । ୯୬ ।
ପାଂଦେଣ ଲକ୍ଷ୍ମୀ ତୁମ୍ଭେ ପେଲଅ କସ ଅର୍ଥେ
ମଣବାର ବୁଦ୍ଧି ଯେ ପାଞ୍ଚଲେ ବେନ ଭ୍ରାଥେ । ୯୭ ।
ଦେବତାନ୍ତ ନିନ୍ଦା କଲେ ନର୍କେ ହୋଅଇ ଜାତ
ବ୍ରାହ୍ମଣ ନିନ୍ଦା କଲେ ବଂଶ ହୋଅଇ ନିପାତ । ୯୮ ।
ତପୀ ନିନ୍ଦା କଲେ ଶରୀର ହୋସେ କ୍ଷତ
ନପୁଂସକ ହୋଇ ପୁରୁଷ ନିନ୍ଦା କଲେ ସତ୍ତ । ୯୯ ।
ଗୁରୁ ନିନ୍ଦା କଲେ ହୋଅଇ ଶିରଚ୍ଛେଦ
ମାତା ପିତା ନିନ୍ଦା କଲେ ପଡଇ ପରମାଦ । ୧୦୦ ।
ପାଠ ଗୁରୁ ନିନ୍ଦା କଲେ ପ୍ରାପତ ନୋହଇ ବିଦ୍ୟା
ବାଉଳ ହୋଇ ବୁଲଇ ଯେ ନିନ୍ଦଇ ଯୋଗସିଦ୍ଧା । ୧୦୧ ।
ନ ଜାଣି ନିନ୍ଦା କରନ୍ତି ଯେ ବଇଦ ଯୋଗୀ
ଜନ୍ମେ ଜନ୍ମେଣ ସେ ହୋଇଥାଇ ସଦା ରୋଗୀ । ୧୦୨ ।
କ୍ଷତ୍ରୀଙ୍କି ନିନ୍ଦା ଯେ କରଇ ନ ଜାଣି
ରାଜ ଦଣ୍ଡେ ଅପ୍ରାଧି ସେ ଅବଶ୍ୟ ହୋଅଇ ହାଣି । ୧୦୩ ।
ଶହସ୍ତ୍ର ନିନ୍ଦା କଲେ ନ ମିଳଇ କ୍ଷତ୍ରୀବଧି
ଶାହାସ୍ତ୍ର ନିନ୍ଦା କଲେ ହୁଅଇ ଗଳତ କୋଷ୍ଠ ବ୍ୟାଧି । ୧୦୪ ।

---

୯୪।୨ ଓହାଡ—ଉହାଡ । ୯୬।୨ ସଲ—ମନ୍ଦ, ଅମଙ୍ଗଳ ।
୧୦୪।୧ ଶହସ୍ତ୍ର—ଶସ୍ତ୍ର, ୧୦୪।୨ ଶାହାସ୍ତ୍ର—ଶାସ୍ତ୍ର ।

ଲକ୍ଷ୍ମୀ ନିନ୍ଦା କଲେ ଦରିଦ୍ର ହୁଅଇ ଜନ୍ମେ ଜନ୍ମେ
ଭାରତୀ ନିନ୍ଦା କଲେ ଗଜମୂର୍ଖ ଜନ୍ମ ଅନୁକ୍ରମେ । ୧୦୫ ।
ମନ୍ତ୍ର ନିନ୍ଦା କଲେ ହୁଅନ୍ତି ବଧିର
ଔଷଧ ନିନ୍ଦା କଲେ ରୋଗ ହୋଇଅଇ ଅପାର । ୧୦୬ ।
ଗୋରୁ ନିନ୍ଦା କଲେ ହାନି ହୋଇଅଇଟି କୃଷି
ପୁତ୍ର ନିନ୍ଦା କଲେ ଯେ ହୁଅନ୍ତି ନିଅଂଶୀ । ୧୦୭ ।
ସ୍ତ୍ରୀ ନିନ୍ଦା କଲେ ନୋହଇ ଗୃହବାସ
ମହନ୍ତ ନିନ୍ଦା କଲେ ଅପ୍ରମିତ ଦୋଷ । ୧୦୮ ।
ତୁମ୍ଭେ ଯେ ମହନ୍ତ ସ୍ୱେ ବ୍ରାହ୍ମଣ ଶସ୍ତ୍ରଧାରୀ
ଗ୍ୟାନବନ୍ତ ହୋଇ କମ୍ପେ ପରେ ନିନ୍ଦା କରି । ୧୦୯ ।
ତୁମ୍ଭେ ଯେ ପଳାଇଲ ମୁହିଂ ଦେଖିଲି ବେନି ଚକ୍ଷୁ
ଅଗ୍ୟାନେ ନାଶ ଯିବାକୁ କମ୍ପାଇ ଲୋଡୁଅଛୁ । ୧୧୦ ।
କେଶିନୀ ମୃଦୁସ୍ୱରୀ ସବୁଝାଇଣ କହି
ଶିଖଣ୍ଡୀ ଧୃଷ୍ଟଦ୍ୟୁମନକୁ ନେଲି ଭୟେ କରାଇ । ୧୧୧ ।
ରାତ୍ର ହୋଇଣ ଅଛି ତୃତୀୟ ପ୍ରହର
କୁମରେ ପ୍ରବେଶ ଆସି ହୋଇଲେ ପିତାଙ୍କ ଗୃହର । ୧୧୨ ।
ମହାଯାଗ କରାଇ ଦେବ ଜାତକଲୁ ଦୋହିତା
ଗୃଣ୍ଡାଳହିଂ ବଳଲି ଦେବ ତାହାଙ୍କର ଅବସ୍ଥା । ୧୧୩ ।
ଜନ୍ମେ ଦରିଦ୍ର ଭିକ୍ଷାଶୀ ବ୍ରାହ୍ମଣ ପାଞ୍ଚ ବାପୁତା
ପାଉଂଶେ ପଡିଅଛନ୍ତି ଧୂସୁରା ଧୂସୁରା । ୧୧୪ ।
ସ୍ୱେ ମାଘମାସ ଶୀତ ପାଉଂଶ ଶଯ୍ୟା ପାଡନ୍ତି ନାହିଂ ବାସ
ଚନ୍ଦ୍ର ହରିଗୋବିନ୍ଦ ମୁଣି ବ୍ରତନ୍ତି ଭିକ୍ଷାବାସ । ୧୧୫ ।
ତୁ ମହା ସ୍ୱୟମ୍ବର ଦେବ କରାଇନ୍ତୁ ଅବା
ତାହାର କର୍ମ ଗୋଟି କେ ଆନ କରିବା । ୧୧୬ ।

---

୧୦୭ ପଦ ସ୍ଥାନରେ ଅନ୍ୟ ପୁସ୍ତକର ପାଠାନ୍ତର—

{ ଶିବ ନିନ୍ଦା କଲେ ନୁହଇ ଗୃହବାସୀ
{ ଧାନ୍ୟ ନିନ୍ଦା କଲେ ନ ଉପୁଜଇ କୃଷି ।

୧୦୭।୨ ନିଅଂଶୀ—ନିରଂଶୀ, ବଂଶହୀନ ଅବସ୍ଥା । ୧୧୧।୧ ସବୁଝାଇଣ—ସମ୍ୟକ୍ ଭାବେ ବୁଝାଇବା । ୧୧୪।୨ ଧୂସୁରା—ପାଂଶୁବର୍ଣ୍ଣ, ମଳିନ, ଧୂସରବର୍ଣ୍ଣ ।

ସେସନେକ ପ୍ରପଞ୍ଚ ଦେବ ମହା ଦୁଖଭାଗୀ
ଦ୍ରୋପଦୀକୁ ଦେଖିଲୁ ଦେବ ତାହାଙ୍କର ପାଦଯୋଗୀ । ୧୧୭ ।
ମାଆ ଗଣ୍ଡେକ ଶୋଇଅଛୁ ଦେବ କୁମ୍ଭାର ପାଉଂଶର
ଆବର ବାପୁଡ଼ା ଶୋଇଛୁ ପାଦତଳେ ତାହାର । ୧୧୮ ।
ସେହାଙ୍କର ପାଦତଳେ ଶୋଇଅଛନ୍ତି ଗୃହ ବାପୁଡ଼ା
ବସ୍ତ୍ରହୀନେ ହସନ୍ତି ଦେବ ଅଗୃଗଳା ମହାଗାଗ । ୧୧୯ ।
ତାହାଙ୍କର ପାଦତଳେ ଶୋଇଅଛୁ ପାଞ୍ଚାଳୀ
ହକଳେ ଶୋଇଛୁ ଘୁର ପାଉଂଶର ଧୂଳି । ୧୨୦ ।
ଦରିଦ୍ର ଭିକ୍ଷୁକ ସେ ଅଟନ୍ତି ହୀନଜାତି
କନ୍ୟା ଗୋଟି ଘେନ ସେ ଉଦରେ ଯାଇଂ ଲୁଚିଣ ଅଛନ୍ତି । ୧୨୧ ।
ସେ ମୋତ୍ତୀ କେଣିମା ଯେ ବଡ ଅନାଗୃହୀ
ପରବାସୀ ପେଷଣକାଗୀ ସିହାଣୀ ଚତୁରୀ । ୧୨୨ ।
ଧନ କଛୁ ସେହାକୁ ଯେବେ ଲେଞ୍ଚ ଲୋକ ଦେବ
ଭୋଗୀ ଲୋକଙ୍କୁ ସେ କାମଦେବ କରିବ । ୧୨୩ ।
ଦ୍ରୋପଦ ବୋଇଲେ ରେ ଶୁଣ ପୁତ୍ର ବେନ
ତୁମ୍ଭେ କମ୍ପେ ନିନ୍ଦା କଲ ରେ ମୃଦୁସୁଲ୍ଲୀ କେଣିମା । ୧୨୪ ।
ଆରେ ଆନ ରାଜା ହୋଇ ଯେବେ ମୋ ଦୁହିତାକୁ ପାଆନ୍ତା
ଗଙ୍ଗାପ୍ରାପ୍ତେ କରି ମଥାରେ ଘେନି ଥାଆନ୍ତା । ୧୨୫ ।
ତାହାଙ୍କର ପାଦତଳକୁ ଯେବେ ଯୋଗ୍ୟ ମୋହୋର କୁମାରୀ
ନୋହନ୍ତି ବ୍ରାହ୍ମଣ ସେ ସ୍ୱର୍ଗୁଂ ଅବତରି । ୧୨୬ ।
ଦ୍ରୋପଦୀର ଭାଗ୍ୟ ମୋହୋର ବଂଶର ବଡ ପୁଣ୍ୟ
ଦେଖି ମୁକତ ହୋଇଲ ଫିଟିଲା କଷ୍ଟମାନ । ୧୨୭ ।
ବାବୁ ଦେଖି ମୁକତ ହୋଇଲ ରେ ରାଜ୍ୟ ଜନ ମୋହୋର
ବହନ କରି ମୋର ପୁରେ ଉଚ୍ଛବ କର । ୧୨୮ ।

---

୧୨୮।୨ ପାଦାନ୍ତ ପରେ ପୋଥି ବିଶେଷରେ ଅଧିକା ପାଠ—
ଅନେକ ସମ୍ଭବେ ରାଜା ଘେନିଣ କେଣିମା
ଆବର ସଙ୍ଗତେ ଅଛନ୍ତି ପୁତ୍ର ବେନ । (ଅବଶିଷ୍ଟ ପର ପୃଷ୍ଠାରେ)

୧୨୩।୧ ଲେଞ୍ଚ—ନୀଚ ।

ରାଜାର ଆଜ୍ଞାଂରେ ପୁରେ ହୁଆଇଂ ଘୋଷଣ
ବାଜିଲା ଘର ତୂର ଝମକ ନିଶାଣ । ୧୨୯ ।
ସମଦଣ୍ଡ ଘେନ ଦ୍ରୋପଦେଶ୍ୱର ରାୟେ
କୁରାଳଶାଳ ସନ୍ନିଧରେ ପ୍ରବେଶ ଆସି ହୋୟେ । ୧୩୦ ।
ଯେଣୁ ଅନନ୍ତରେ କରୁଣାକର ନାମରେ କୁମ୍ଭାର
କୋଇନ୍ତାଙ୍କୁ ଡୋଳିଲା ଗୋ କେତେ ନିଦ୍ରାକର । ୧୩୧ ।
ପୁଅନ୍ତ ଭୁମ୍ଭର ଗୋ ଡୋଳ କନା ମାୟେ
ଆପଣେ ହଜେ କରି ଆସନ୍ତ ଦ୍ରୋପଦେଶ୍ୱର ରାୟେ । ୧୩୨ ।
କୋଇନ୍ତାୟେ ଯୁଧେଷ୍ଟି ଭୀମ ଅର୍ଜୁନ ନକୁଲ ସହଦେବଙ୍କୁ ଡୋଳି
ଚଆଂଇ ଉଠିଲେ ସେ ପାଣ୍ଡବ ମହାବଳୀ । ୧୩୩ ।
ରସିତା ନାମେଣ ସେ ଅଟଇ କୁମ୍ଭାରୁଣୀ
ଦ୍ରୋପଦୀଙ୍କି ଡୋଳ ବସାଇଲା ଆଣି । ୧୩୪ ।
ନବରତନ ଘଟରେ ଗଙ୍ଗାଜଳ ଆଣି ପୂରେଇ
ସେ ଚର୍ଣୀ ଭରିଯା ଦ୍ରୋପଦୀଙ୍କି ସ୍ନାହାନ କରାଇ । ୧୩୫ ।
ଅନେକ ସୁଗନ୍ଧ ଲଗାଇ କେଶ ପଖାଳି
ଆପଣାର ତନ୍ତୁଂ ପିନ୍ଧାଇଲା ନବରତନ ପାଟୋଳି । ୧୩୬ ।
ଯୁଧେଷ୍ଟି ବୋଇଲେ ବାବୁ ଶୁଣ ଫାଲଗୁନ
ହୃଦଗତେ ସୁମର ତୁ ରାମକୃଷ୍ଣ ବେନ । ୧୩୭ ।
ହୃଦଗତେ ଅର୍ଜୁନ କଲକ ଯେତକ ଲୟେ
ନାରାୟଣଙ୍କୁ ଚନ୍ତିଲା ସେ ଛନ୍ଦୀ ଧନୁର୍ଜୟେ । ୧୩୮ ।
ହରି ବଳରାମେ ଜାଣିଲେ ଯୋଗବଳେ
ଗରୁଡ ପିଠି ଆରୋହି ଅଛନ୍ତି ଶୂନ୍ୟମଣ୍ଡଳେ । ୧୩୯ ।

---

୧୨୮ପାଦାନ୍ତର ପୂର୍ବ ପୃଷ୍ଠାର ଅଧିକା ପାଠ—
ମଙ୍ଗଳ ଧ୍ୱନି କରି ଚଳଇ ସର୍ବ ଥାଟ
କେଶିନୀ ମୃଦୁସୁନ୍ଦି ଆଗେ କଢାଉଛ୍ଛ ବାଟ ।
କୁରାଳଶାଳ ସନ୍ନିଧେ ମିଳିଲା ନୃପତ୍ୟ
ଅନେକ ସାନନ୍ଦ ଯେ ହୋଇଣ ଦ୍ରୋପଦ ।
ଡାକଇ ଗୋସାଇଂ କେ ଲିଖିବନ୍ଧା ବ୍ରାହ୍ମଣ
ଆସ ହୋ ଧାଡକାରେ ମୁଂ କରିବି ବରଣ ।

ଦ୍ୱାରକା ନାୟେକନ୍ତ ସାତବଂଶ ସହିତେ
ଅଷ୍ଟପାଟବଂଶୀ ନାୟିକାନ୍ତ ଆଣିଲେ ଯୁଧିଷ୍ଠିରଙ୍କ ବିଭା ଦେଖିବା ନିମନ୍ତେ ।
ତାଳଧ୍ୱଜ ରଥେ ବିଜୟେ ହଳାମ୍ବର
ଗରୁଡ଼ ନ ସହଇ ଯେ ବଳଦେବଙ୍କର ଭର । ୧୪୧ ।
ଛପନ କୋଟି ଯଦୁ ଯାଦବ ବୀର ଭୁଲେ
କୁଶଳଶାଳେ ଆସି ଶ୍ରୀ ନାରାୟଣେ ବିଜେକଲେ । ୧୪୨ ।
ବଇନେଇ ପିଠିରୁ·ଉତୁରି ନାରାୟଣ
ପ୍ରଲମ୍ବ କରନ୍ତି ଯୁଧିଷ୍ଠିରଙ୍କର ଚରଣ । ୧୪୩ ।
ବଳଦେବଙ୍କୁ ପୂଜା କଲେକ ଦେବ ଧର୍ମେ
ଭୀମ ଅର୍ଜୁନ ନକୁଳ ସହଦେବ ଶୃହ ପ୍ରଲମ୍ବିତ ଶ୍ରୀପୁରୁଷଙ୍କ ଉତ୍ତମେ ।
ଛପନ କୋଟି ଯାଦବଙ୍କର ସଇନି
ଯୁଧିଷ୍ଠିରଙ୍କ ଚରଣେ କରନ୍ତି ସର୍ବେ ମାନି । ୧୪୫ ।
ଯେତେବେଳେ ବିଜୟେ କଲେ ହୃଷିକେଶୀ
ଷାଠିଏ ସହସ୍ର ଶିଷ୍ୟ ଘେନି ବିଜୟେ ବ୍ୟାସ ମହର୍ଷି । ୧୪୬ ।
ଲକ୍ଷେକ ବ୍ରାହ୍ମଣ ଘେନି ଧୌମ୍ୟ ପୁରୋହିତେ
ବିଭା ଯୋଗାଡ଼ ଘେନି ବିଜୟେ ତୁରିତେ । ୧୪୭ ।
ଲକ୍ଷେ ଶିଷ୍ୟ ଘେନି ଉଦ୍ଦାଳକ ସୁମନ୍ତକ ବଶିଷ୍ଠ ବିଶ୍ୱାମିତ୍ରେ
ସହସ୍ରେ ବାଲଖିଲ୍ୟା ଘେନି ମାରକଣ୍ଡ ବାଲମିକ ଲୋମଶ ସହିତେ ।୧୪୮।
ଦୁର୍ବାସା ଭରଦ୍ୱାଦଶ ଜନକ ବିଭାଣ୍ଡକେ
ଯୁଧିଷ୍ଠିରଙ୍କ ବିବାହ ଉଚ୍ଛବେ ଆସି ପ୍ରବେଶ ଯାଗନିକେ । ୧୪୯ ।
ଗଉତମ ଶାୟଂନ୍ତନୁ ମହାଋଷି ପାରେଶ୍ୱର
ଅଷ୍ଟବ୍ରତେକ ଶିଷ୍ୟ ଘେନି ଅଇଲେ ସଙ୍ଗର । ୧୫୦ ।
ମହା ଋଷିମାନେ ସମସ୍ତେ ବିଜେ କଲେ
ଦେଖି ଯୁଧିଷ୍ଠି ଦେବେ ପାଦଅର୍ଘ୍ୟ ଢାଳେ । ୧୫୧ ।
ସମସ୍ତ ଋଷିମାନ ଘେନି ନାରାୟଣ ବିଜେ·କଲେ ଯହୁଂ
ଅମରଗଣ ଘେନି ବାସବ ମିଳିଲେକ ତହୁଂ । ୧୫୨ ।

---

୧୪୫।୨ ସର୍ବେ ମାନି—ସର୍ବେ ମାନ୍ୟ କରନ୍ତି ।
୧୪୬।୧ ହୃଷିକେଶୀ ସ୍ଥାନରେ ଋଷିକେଶୀ ପାଠ ଦେଖାଯାଏ ।
୧୪୯।୨ ଯାଗନିକେ—ଯାଜ୍ଞିକମାନେ ।

ସୁଧର୍ମା ସଭାକୁ ଆଣିଲେ ଅମର ପୁରୁ
କୁବେର ଅନେକ ରତ୍ନ ଅଳଙ୍କାର କାଢିଲା ଭଣ୍ଡାରୁ । ୧୫୩ ।
ଆକାଶୁ ଅଇଲେ ସମସ୍ତ ଦଇବତ ପୁରୁଷେ
ସମସ୍ତେ ବିଜେ କଲେ ଯେ କୁଶଳଶାଳ ପାଶେ । ୧୫୪ ।
ତହିଁ ରତ୍ନ ଭୁବନ ଗୋଟି ସଞ୍ଚିଲେ ଦେବତାପ୍ରେ
ମାନବଙ୍କୁ ଦିଶଇ ସେ କୁଶଳଶାଳ ପ୍ରାୟେ । ୧୫୫ ।
ଅଗସ୍ତିଙ୍କି ପୁଚ୍ଛା କଲେ ବଇବସ୍ୱତ ମନୁ
କୁଶଳଶାଳ କେସନେକ ହୋଇଲା କଣପୂ ଭୁବନୁଁ । ୧୫୬ ।
ଅଗସ୍ତି ବୋଇଲେ ଶୁଣ ହୋ ମନୁ ପୁରୁଷ
ଯେତେବେଳେ ଦ୍ରୋପଦ ସୟମ୍ବର ବିଧାନ କଲା ପ୍ରକାଶ । ୧୫୭ ।
ଲକ୍ଷେ ରାଜାଙ୍କୁ ସେ ଲକ୍ଷେ ଭୁବନ କଲା
ପାଣ୍ଡବଙ୍କର ନାମ ସେ ସଭାରେ ନ ପଡିଲା । ୧୫୮ ।
ଆକାଶେ ଜାଣିଲେ ଇନ୍ଦ୍ର ଦଇବତ
ବିଶ୍ୱକର୍ମା ରାଇ ଆଜ୍ଞାଂ ଦିଲେ ପୁରୁହୂତ । ୧୫୯ ।
ଆକାଶୁଂ ନିଅ ମୋର ଅନ୍ତରୀକ୍ଷ ଭୁବନ
ଦ୍ରୋପଦ ରାଜ୍ୟ ଅନ୍ତରେଣ ତ୍ରିବେଣୀ ନଦୀ ସନ୍ନିଧାନ । ୧୬୦ ।
ସେ ଭୁବନ ରକ୍ଷା କରଇ କରୁଣାକର ବିଦ୍ୟାଧର
ଅସୁର ଭୟେ ହୋଇଲେ ତହିଁ ଲୁଚଇ ପୁରନ୍ଦର । ୧୬୧ ।
ଆକାଶକୁ ଅଦୃଶ୍ୟ ସେ ଅନ୍ତରୀକ୍ଷ ଭୁବନ ଅଟଇ
ପୁରନ୍ଦର ଆଜ୍ଞାଂୟେ ତହିଁ ମାଳା ରତ୍ନ ଘଟଇ । ୧୬୨ ।
ଇନ୍ଦ୍ର ଆଜ୍ଞାଂୟେ ତାହା ବିଶ୍ୱକର୍ମା ନେଲା
ତ୍ରିବେଣୀ ଗଙ୍ଗାକୂଳେ ନେଇଣ ଥୋଇଲା । ୧୬୩ ।
କରୁଣାକର ବିଦ୍ୟାଧରକୁ ବୋଲଇ ସୁନାଶୀର
ଗୋପ୍ୟାନ ରୂପେ ତୁ ହୋଇବୁ କୁମ୍ଭାର । ୧୬୪ ।
ଅମର ବିଳାସୁଣୀ ଯେ ଯେହାର ନାମ ରୁଷିତା
ମେନକାର ଦୁହିତା ଯେ ତୋହୋର ବନିତା । ୧୬୫ ।
ଜାଲ ଅଗ୍ନି ହାଣ୍ଡି ଭୁ ଯେମାନ ଥିବୁ ସଞ୍ଚ
ମୋହୋର ହାତେ ପାଣ୍ଡବେ ହୋଉଛନ୍ତ ଦୁଖୀ । ୧୬୬ ।

କୁମ୍ଭିର କନ୍ୟା ହେଡମ୍ବକ ବକ ଗୃହ
ଅମର ଭୁବନକୁ ଯେ ନଚ୍ଛୋ ଦାନ୍ତ ଧାଡ । ୧୬୭ ।
ତାହାନ୍ତ ବଧ କରାଇବାର ନିମନ୍ତେ
ପାଣ୍ଡବନ୍ତ ବନବାସ କରାଇଅଛୁଂ ଯୁଗତେ । ୧୬୮ ।
ମୋହୋର ନିମନ୍ତେ ଯେ ପାଉଛନ୍ତ ଦୁଖ
ଦ୍ରୋପଦର ଭୁବନେ ପାଇବେ ନାହିଂକ ସୁଖ । ୧୬୯ ।
ଗହନ ଅଟବ୍ୟା ସେ ଅସୋହାଡ ଭୂମି
କଣଯୂ ଭୁବନ ଥାପିଲେ ସୁରନାଥ ସ୍ୱାମୀ । ୧୭୦ ।
ଯେହେନେକ କରି ସଞ୍ଚିତ କଲେ ଦେବରାଯେ
ସେ ବାରସ୍ୱଣ୍ଟ ଭୁବନ ଦିଶଇ କୁରଳଶାଳ ପ୍ରାଯେ । ୧୭୧ ।
ମୁକୁତା ଚୂନି ତହିଂ କର୍ପୂର ଗୁଣ୍ଡି ସିଞ୍ଚି
ବେନ ଦଣ୍ଡ ବହଳ ପକାଇଲେ ବାଞ୍ଚି । ୧୭୨ ।
ଯେହେନେକ ସଞ୍ଚିତ କଲେ ଦେବତାଯେ
ସେ ରନ୍ନ କର୍ପୂର ଗୁଣ୍ଡି ଦିଶଇ କୁମ୍ଭାର ପାଉଂଶ ପରାଯେ । ୧୭୩ ।
କରୁଣାକର ବିଦ୍ୟାଧର ଋଷିତା ନାମେ ବିଦ୍ୟାଧରୀ
ତନ୍ଦୀ ତନ୍ଦିଣୀ ପ୍ରାଯେ ଦିଶନ୍ତ ଗୋପ୍ୟକାରୀ । ୧୭୪ ।
ପାଣ୍ଡବଙ୍କର ଗୋପ୍ୟେ ସେ ଗୋପ୍ୟ ହୋଇଥିଲେ
ତାହାଙ୍କର ଗୋପ୍ୟ ସରିଲା ସେ ଉଦ୍ଧତ ହୋଇଲେ । ୧୭୫ ।
ପରିମଳ ଭୁବନ ସେ ଦୂଷ୍ଟ ବାରସ୍ୱଣ୍ଟ
ଦେଖି କାମପାଳ, ଯାଦବେ ପ୍ରଶଂସା କରନ୍ତ । ୧୭୬ ।
ବ୍ୟାସେ ପୁଚ୍ଛାକଲେ ସ୍ୱାମୀ ଶୁଣିମା ଶ୍ରୀ ବାସୁଦେବେ
ଦ୍ରୋପଟିକ ପ୍ରଦାନ ହୋଇବେ ପଞ୍ଚୁ ଯେ ପାଣ୍ଡବେ । ୧୭୭ ।
ଦ୍ରୋପଦ କିସ ବୋଲିବେ ସେ ଯେହାଙ୍କ ବଚନ ଶୁଣି
କି ଉତ୍ତର ଦେବେ ଦ୍ରୋପଦେଶ୍ୱରଙ୍କ ଦୁଲଣୀ । ୧୭୮ ।

---

୧୭୬ ପଦ ପରେ ଅଧିକା ପାଠ—

ଖଣ୍ଡ ଖଣ୍ଡ ହୋଇ ଯେ ପଡିଛନ୍ତ ଖପର
ସେମାନେ ସବୁ ଯେ ସୁବର୍ଣ୍ଣର କପୋର ।

୧୭୦।୧ ଅସୋହାଡ—ଅସୁନ୍ଦର । ୧୭୨।୨.ବେନଦଣ୍ଡ—ଗୃହଦ୍ୱାର ।

କ୍ଷଣେକ ଆମ୍ଭେ ଗୋପ୍ୟାନ ହୋଇଥିବା
ଓହୋକୁଳ ଗୋବ ବାରତା ଶୁଣିମା । ୧୭୯ ।
ଯେସନେକ ବଚ୍ଛର ସେ ରହିଲେ କୁବ୍ଲଶାଳ ଭୁବନେ
କୋଟିଯେ ମହରଷି ତହିଂ ହୋଇଲେ ଗୋପ୍ୟାନେ । ୧୮୦ ।
ସାତ ବଂଶ ଘେନ ରାମକୃଷ୍ଣ ଉଗ୍ରସେନ
ଦେବତାନ୍ତ ସହିତେ ଗୋପ୍ୟାନ ମଘବାନ । ୧୮୧ ।
ରତ୍ନ ଯୋଗାଡମାନ ଘେନ ଅଲକା ଅଧିପତ
ସେହି ଗୋପ୍ୟାନ ହୋଇଲେ ତହିଂରେ ଅନ୍ତର୍ଗତ । ୧୮୨ ।
ଯେମନ୍ତର ସମଯେ କେଶିନୀ ମୁଦୁସୁଲୀ
ରତ୍ନବାସ ଅଲଙ୍କାର ଘେନ ଅଇଲା ଦ୍ରୋପଦୀଙ୍କି ଅଲେଖ ତିଳକ କରିବ
ବୋଲି । ୧୮୩ ।
ସୂତ୍ରକାର ମାନନ୍ତ ରାଇ ଆଗ୍ୟାଂ ଦିଲେ ନୃପବର
ଦକ୍ଷିଣ ଦ୍ୱାରୁଂ କୁବ୍ଲଶାଳକୁ ବୋଲ ଛାୟାମଣ୍ଡୋପ କର । ୧୮୪ ।
ଦ୍ରୋପଦ ସିଂଘଦ୍ୱାରଠାରୁ କୁବ୍ଲଶାଳ ପାଞ୍ଚ ପୁଣ
ପାଞ୍ଚଲକ୍ଷ ବନ୍ଧାଣି ତହିଂ ଲାଗିଲେ ବହନ । ୧୮୫ ।
ସର୍ବ ସଞ୍ଚିତ ରାଜା ଯେ ଅଟଇ ଦ୍ରୋପଦ
ଆଗ୍ୟାଂଯେ ସମସ୍ତ ତହିଂ ହୋଇଲା ସମ୍ପାଦ । ୧୮୬ ।
ଅଲେଖ ଯୋଗାଡ ଘେନ ଅଇଲା କେଶିନୀ
ଦେଖିଲା ଦେବ ସଭା ପ୍ରାଯେ ଦିଶଇ ପୂରିଛଇଂ ସଇନ । ୧୮୭ ।
ଦ୍ରୋପଦୀ ବୋଇଲେ ତୁ ଶୁଣ ଗୋ କେଶିନୀ
ମୋହୋର ପିତା ମାତାର ଲୋ ଜୀବନ ଧନ ଧନ । ୧୮୮ ।
ମୁଂହିତ ଉତ୍ତମ ହୋଇଲ ସ୍ତ୍ରିରିକୁଳେ ଜନ୍ମ
ଯେ ପାଞ୍ଚେ ଆକାଶ ଦଇବତ ଆଦ୍ୟବ୍ରହ୍ମ । ୧୮୯ ।
କଣଯେ ନିର୍ମାଣ ଲୋ ଅଟଇ ଯେ ଭୁବନ
ମାନବଙ୍କୁ ଦିଶଇ କୁବ୍ଲଶାଳ ଯେସନ । ୧୯୦ ।
ସମସ୍ତ ଦେବତାଯେ ଯେହିଠାରେ ଥିଲେ
ଦ୍ରୋପଦର ମନ ଖଣ୍ଡିବାକୁ ଯେହିଠାରେ ଗୋପ୍ୟ ହୋଇଲେ । ୧୯୧ ।

---

୧୮୨।୨ ସେହି ମଧ୍ୟ ଗୋପ୍ୟ ହେଲେ କେହି ନ ଚହ୍ନନ୍ତ ।

ପାଡ଼ଂଶ ଯେଉଂଣ ଲେ ସେ କର୍ପୂରର ଗୁଣ୍ଡି
ସେମାନେ ସବୁ ହାଦେ ସୁବର୍ଣ୍ଣର ହାଣ୍ଡି । ୧୯୨ ।
ସେହୁ ଖଣ୍ଡ ଖଣ୍ଡ ଯେ ଦିଶୁଅଛୁ ଖପରା
ସେମାନେ ସବୁ ହାଦେ ଗୋ ସୁବର୍ଣ୍ଣ କପୋରା । ୧୯୩ ।
ପିତାର ଆଗରେ ମୋର କହ ଯାଇଂ ଧାଡ଼
ବ୍ରାହ୍ମଣ ପ୍ରାୟେ ବୁଦ୍ଧି ନ ପୁଣ ବୋଲଇ ଅମାନ୍ତ । ୧୯୪ ।
କେଶିନୀ ବୋଇଲା ମୋତେ ସେମାନ କର୍ମେ କହୁ
ମୁହିଂ ତାହା ସଞ୍ଚପି କହିଅଛଇଂ ଆଗହୁଂ । ୧୯୫ ।
ଅନେକ ସମ୍ଭରେ ଦ୍ରୋପଦେଶ୍ୱର ରାଏ
କୁମ୍ଭଶାଳ ଦ୍ୱାରେ ଯାଇଂ କଲେକ ବଜାଏ । ୧୯୬ ।
ଦେଖିଲେ ନାରଖାର ଦିଶଇ ଘର ପୁରା
ଦେଖିଣ ଉପହାସ୍ୟ କଲେକ ସବ ୱାରା । ୧୯୭ ।
ସେତେ ଠାବ ଥାଉଂ ସେଥେଂ କର୍ମେ ଯେ ରହିଲେ
ମନ୍ଦ ଠାବ ବୋଲି ସସ୍ତୁମ୍ବର କାଲେ କେହି ସେଥକୁ ନଇଲେ ।୧୯୮।
କଷ୍ଟିଜନମାନେ ସିନା କୁସ୍ଥାନେ ଥାଆନ୍ତି
ଜାଣିଲୁ ସେମାନଙ୍କର ଅସାର୍ଥୁକ ଜୀବନ୍ତ । ୧୯୯ ।
ବାହାରେ ଥାଇ ଡାକ ଦିଅନ୍ତି ଦ୍ରୋପଦେଶ୍ୱର ରାଏ
ବାଉସ୍ତେ ବାହାର ହୋଇ ଆସ କନା ଲଖ ବନ୍ଧା ପଣ୍ଡାସ୍ତେ । ୨୦୦ ।
ଗରୁହଂସୀ ପଣେ ନ ଶୁଣନ୍ତି ଦ୍ରୋପଦ ରାଜାର ବୋଲ
ଯୋଦ୍ଧାସ୍ତେ ବୋଲନ୍ତି ସେ ବପ୍ରେ ଅଛନ୍ତି ଅବା କାଲ । ୨୦୧ ।
ରାଜାର ପୁର ଗଣେ ଅଛନ୍ତି ବଡ ଦୁଷ୍ଟ
କ୍ଷଣେ କ୍ଷଣେ ମନ୍ଦ କହୁଅଛନ୍ତି ଦ୍ରପିଷ୍ଟ । ୨୦୨ ।

---

୧୯୭ ପଦ ପରେ ଅଧିକା ପାଠ—

ଦୁର୍ଜନ ଲୋକମାନେ ବଖଣ୍ଡ କହୁଛନ୍ତି
ସେତେ ଠାବ ଥାଉଂ କର୍ମେ କୁମ୍ଭଶାଲେ ଶୁଅନ୍ତି ।
ଦେଖିଲୁ ସେହାଙ୍କର ଅସାର୍ଥୁକ ଜୀବନ
ବାହାର ଦ୍ୱାରେ ଥାଇଂ ଭାଳନ୍ତି ଦ୍ରୋପଦ ରାଜନ ।

୨୦୦। ବାଉସ୍ତେ—ଶ୍ୱଶୁରର ଜାମାତା ପ୍ରତି ଓ ଜାମାତାର ଶ୍ୱଶୁର ପ୍ରତି ସମ୍ମାନ ସୂଚକ ସମ୍ବୋଧନ ।

ଯୋଗୀ ତପସ୍ୱୀ ସ୍ରଉଳ ପୁଣ ଭିକ୍ଷାବାସୀ
ମାଗି ବ୍ରତନ୍ତ ଯେମାନେ ମିଚ୍ଛିକା ଗରୁହଂସୀ । ୨୦୩ ।
ଯୁଧିଷ୍ଠିର ବୋଇଲେ ବାବୁ ଯାଅ ଧନଞ୍ଜୟେ
ବାକ୍ୟ ଶୁଣ କନା କସ ବୋଲନ୍ତ ଦ୍ରୋପଦେଶ୍ୱର ସ୍ରୟେ । ୨୦୪ ।
ଅର୍ଜୁନ ବୋଇଲେ ସ୍ୱାମୀ ମୁଂ ଯିବଇଂ କେଉଂଣ ମତେ
ଗଲେ ଦ୍ରୋପଦେଶ୍ୱର ଅବଶ୍ୟ ବରଣ କରିବ ମୋତେ । ୨୦୫ ।
ତୁମ୍ଭେ ଯିବା ହୋଉ ଦ୍ରୋପଧର ତହ୍ନଂକ । ୨୦୬ ।
ସାବଧାନେ ଶୁଣିମା ସେ ଆଜ୍ଞା ଦଅଇ କ କ
ଯୁଧିଷ୍ଠିର ବୋଇଲେ ସେ ସ୍ରଇଲେ ଲଖବନ୍ଧା ପଣ୍ଡାକୁ
ଆମ୍ଭେ କସ ଉତ୍ତର ଯେ କହିବା ତାହାଙ୍କୁ । ୨୦୭ ।
ଆମ୍ଭନ୍ତ ପଗୃଳବ ତୁମ୍ଭେ ଲଖ ବନ୍ଧିଲ ଠିକ
ହୋଇ ବୋଲି ଆସିବ କ ଆମ୍ଭର ମିଥ୍ୟା ବାକ । ୨୦୮ ।
ଭୀମସେନ ବୋଇଲା ତୁମ୍ଭେ ନ ଯାଅ ନ ଯାଉ ବୀର ପାର୍ଥ
ଡାକ ଦେଇ ତେଣେ ହୋଇଲେକ ସମ୍ମୁଖ ଦ୍ରୋପଦେଶ୍ୱର ନାଥ ।୨୦୯।
ମୁହିଂ ଯିବନି କ ଦ୍ରୋପଦର ତହ୍ନଂକ
କସ ବୋଲଇ ଦ୍ରୋପଦ ଶୁଣଇଂ କନା ବାକ । ୨୧୦ ।
ଯୁଧିଷ୍ଠିର ଦେବ ହସିଲେ ଭୀମସେନର ବଚନେ
ତୋହୋର ମନ ଆମ୍ଭେ ଜାଣିଛୁନା ଯେହ୍ନେ । ୨୧୧ ।
ପଞ୍ଚୁ ପାଣ୍ଡବେ ଯେ ହାତ ଧରାଧରି
ଯେକ ମୂର୍ତ୍ତି ହୋଇ ବାହାର ହୋଇଲେ ଆଗସରି । ୨୧୨ ।
ସେ ପାଞ୍ଚଙ୍କର ମୂର୍ତ୍ତି ଦେଖିଣ ପଞ୍ଚାଳ
ପାଦ୍ୟ ଅର୍ଘ୍ୟ ଦେଇ ପୂଜା କଲାକ ପାଦତଳ । ୨୧୩ ।
ବାଭୟେ କେଉଂଣ ପଣ୍ଡାୟେ ତୁମ୍ଭେ ଲଖ ବନ୍ଧିଲଟି
କାହାକୁ ପ୍ରଦାନ କରିବ ମୋହୋର ଦୁହିତା ଗୋଟି । ୨୧୪ ।
ଯୁଧିଷ୍ଠିର ଦେବ ବୋଇଲେ ଆମ୍ଭେ ପଞ୍ଚ ଭ୍ରାଥ
ଯେକାଜଣେ ଅର୍ଜିଲେ ପାଞ୍ଚେହେଂ କରୁଂ ଭୁକ୍ତ । ୨୧୫ ।
ପଦାର୍ଥେ ପାଇଲେ ପାଞ୍ଚେହେଂ ଭୁଞ୍ଜୁ ବାଣ୍ଟି
ପାଞ୍ଚଙ୍କର ହୋଇ ଆମ୍ଭର ଯେକ ଆତ୍ମା ଗୋଟି । ୨୧୬ ।

୨୦୮।୨ ବାକ—ବାକ୍ୟ ।

ଦ୍ରୋପଦ ବୋଇଲେ ସେ ଅଟଇ ମହତ
ବଡ ବଡଙ୍କର କଥା ଅଟଇ ସେମନ୍ତ । ୨୧୭ ।
ଦ୍ରୋପଦ ବୋଇଲେ ସେ ଯେ ସ୍ତିରୀ ରତ୍ନକାନ୍ତ
ଜଣକଇଂ ଭର୍ତ୍ତା ନା ହୋଇବ ଯୁଗତ । ୨୧୮ ।
ଯୁଧିଷ୍ଠି ଦେବ ବୋଇଲେ ଆମ୍ଭର ସେମନ୍ତ ବେଭାର
ସେକା ଦ୍ରୋପତୀକ ଆମ୍ଭେ ପାଞ୍ଚହେଂ ଅଟୁ ବର । ୨୧୯ ।
କର ହେ ନୃପତି ତୋର ଅଛୁ ଯେବେ କାର୍ଯ୍ୟ
ସେ ପାଞ୍ଚଙ୍କୁ ସେ କନ୍ୟା ପ୍ରଦାନ କରିବୁ ଯେ ଆଜ । ୨୨୦ ।
ଶୁଣିଣ ମୂଚ୍ଛାଗତ ହୋଇଲା ରାଜନ
ଦୁର୍ଦ୍ଧଂସ ବଚନ ବୋଇଲେ ଧୃଷ୍ଟ ଯେ ଦ୍ରୁମନ । ୨୨୧ ।
ଶିଖଣ୍ଡୀ ବୋଇଲା ତୁମ୍ଭେ ଭିକ୍ଷାସି ଜନ ଅଟ
ସତସେ ଜାଣିଲୁ ତୁମ୍ଭେ ଜନ୍ମହେଂ ଅଟ ନଷ୍ଟ । ୨୨୨ ।
ସେମନ୍ତ ବେଭାର ଅଟଇ ନଟକାର ଜାତି
ଗୋଲକୁଣ୍ଡା ଅଟନ୍ତି ତାହାଙ୍କର ଯୁବତୀ । ୨୨୩ ।
ଦ୍ରୋପଦ ବୋଇଲା ବାଭସେ କହିଲୁ ଅମାତି
ସେକ ସ୍ତିରୀକ କାହିଂ ଅଛୁ ପାଞ୍ଚପତି । ୨୨୪ ।
ସେକ ପୁରୁଷକୁ ଯେ ଯୁଗତେ ପଞ୍ଚୁ କନ୍ୟା
ଲୋକତ କର୍ମକୁ ବଶିଲା ତୁମ୍ଭର ବାକ୍ୟ ହୀନା । ୨୨୫ ।
ମହତ ହୋଇ କହିଲ ଅମହତ ବାକ୍ୟ
ପୁରୁଷମାନଙ୍କୁ ସେ କଥା ନୁହଇ ନା ଶକ୍ୟ । ୨୨୬ ।
ବେଳୁଂ ବେଳ ଦ୍ରୋପଦେଶ୍ୱର କହୁଅଛୁ ବାକ୍ୟ ଚଳ
ବ୍ୟାସଙ୍କର ବଦନ ଗୃହେଂ ବୋଲନ୍ତି ବନମାଳୀ । ୨୨୭ ।
ଭୀମସେନ ନ ସହିବଟି ଦ୍ରୋପଦର ହିଂଘାସ
ସେହିକ୍ଷଣି ଦ୍ରୋପଦର ହୋଇବ ପ୍ରାଣନାଶ । ୨୨୮ ।
ତତକ୍ଷଣେ ବ୍ୟାସେ ଯେ ବାହାର ହୋଇଲେ
ଦ୍ରୋପଦ ପାଣ୍ଡବଙ୍କ ମଧ୍ୟେ ବିଜେ କଲେ । ୨୨୯ ।
ବ୍ୟାସଙ୍କୁ ଦେଖି ଦ୍ରୋପଦେଶ୍ୱର ରାସେ
ଶତେ ସହସ୍ର ଦଣ୍ଡ ପ୍ରଲମ୍ବିତ ବ୍ୟାସଙ୍କ ପଦୁପାସେ । ୨୩୦ ।

୨୨୧।୧ ମୂଚ୍ଛା—ମୂର୍ଚ୍ଛା । ୨୨୭।୧ ଚଳ—ରାଗି ।

ଦ୍ରୋପଦେଶ୍ୱର ବୋଇଲେ ତୁମ୍ଭର ଯେ ଦୟା ମୋତେ ସର୍ବକାଳେ
ଜାଣିଣ ଅଇଲ ସ୍ୱାମୀ ମୋତେ କଷ୍ଟକାଳର ବେଳେ । ୨୩୧ ।
ଆପଣେ ତୁମ୍ଭେ ତୁଲେ ଯେନ ଦଶ ସହସ୍ର ମୁନି
ମହାଯାଗରୁ ଜାତକଲ ମୋହୋର ନନ୍ଦିନୀ । ୨୩୨ ।
ରାଜାନ୍ତ ଆଣିଲ ମୋହୋର ବରଣେ
ଲଖ ସଞ୍ଚିଲ ତୋହୋର ଆଜ୍ଞା ପରମାଣେ । ୨୩୩ ।
ସ୍ନେ ବ୍ରାହ୍ମଣ ଗୋଟି ଲଖ ବନ୍ଧିଲା ଅବରଣେ
ସ୍ନେବେ ବୋଲନ୍ତ ପ୍ରଦାନ ହୋଇବୁଂ ପାଞ୍ଚଜଣେ । ୨୩୪ ।
ଷାଠିସ୍ନେ ଲକ୍ଷ ଗ୍ରନ୍ଥ କଲ ଯେ ନର୍ଜିତେ
ସ୍ନେକା ସ୍ତ୍ରିରିକ କାହ୍ନିଂ ପଞ୍ଚ ଭ୍ରତା ଅଛୁ କ ତୋହୋର ଶାସ୍ତ୍ରେ ଯୁଗତେ
ବ୍ୟାସେ ବୋଇଲେ ବାବୁ ଶୁଣ ହୋ ଦ୍ରୋପଡ
ତୋହୋର ଦୁହିତାକୁ ପଞ୍ଚଭ୍ରତା ଅଛୁ ପୂର୍ବର ଲିଖିତ । ୨୩୬ ।
ତୁ ଯେ ପଚ୍ଛରିଲୁ ପୂର୍ବର ବାରତା
ଶୁଣ ସାବଧାନେ ତୋତେ କହୁଂ ପୂର୍ବର ଆଦ୍ୟ କଥା । ୨୩୭ ।
କୃତସର୍ବ ବୋଲି ସ୍ନେକ ପ୍ରଳୟ କାଳେ
ନାରାୟଣ ଯୋଗଲସ୍ନେ ସେ ମହାର୍ଣ୍ଣବ ଜଳେ । ୨୩୮ ।
ବିରାଲଚନ୍ଦ ନାମେ ଯେ ସ୍ନେକଇ ଉଡଙ୍ଗ
ଅନନ୍ତ ଶଯ୍ୟାରେ ବିଜେ ଦେବ ତାହା ଅଙ୍ଗ । ୨୩୯ ।
ନାହିଂ ସ୍ୱର୍ଗ ନାହିଂ ମର୍ତ୍ତ୍ୟ ନାହିଂ ଯେ ପାତାଳ
ପୃଥୀ ଆପ ତେଜ ବାୟୁ ଆକାଶ ନାହିଂ ଯେ ସକଳ । ୨୪୦ ।
ଦେବ ଦାନବ ଯକ୍ଷ କିନ୍ନର ଆଦି କରି
ନାଗଲୋକ ଆବର ଜଙ୍ଗମ କୀଟ ପତଙ୍ଗ ସମସ୍ତ ପ୍ରଳୟୁଧାରୀ । ୨୪୧ ।
ନାହିଂ ଚନ୍ଦ୍ର ନାହିଂ ସୂର୍ଯ୍ୟ ନାହିଂ ଯେ ପବନ
ନାହିଂ ଦିବା ନାହିଂ ରାତ୍ର ନାହିଂ ସନ୍ଧ୍ୟା ଅବକାଶମାନ । ୨୪୨ ।
ଦକ୍ଷିଣକୁ ଶିର କରି ମହାସର୍ପ ଅଛଇ ଶୋଇ
ସ୍ନେତେ ପ୍ରଳୟ ପାଣି ତାର ଗର୍ଭକୁ ନ ଅଣ୍ଟଇ । ୨:୩ ।
ସେ ସର୍ପ ଫଣାରେ ଦେବ ଦେଇ ସୀମଥାନ
ମହାଯୋଗ ଶୟନ ଦେବ ନାରାୟଣ । ୨୪୪ ।

ସନ୍ନିଧ୍ୟେ ବଳାସୁଣୀ ଖଟଇ ଆଦିନାଗ
ଅନାଦି ଅପର୍ଣ୍ଣା ସେ ସମସ୍ତ ଜାତ କର । ୨୪୫ ।
ସତ୍ୟଯୁଗ ସତର ଲକ୍ଷ ଅଠାଇସି ସହସ୍ର ବରଷ
ଊନପାଦ ଯେ ଚୂରିଲକ୍ଷ ବତିଶ ସହସ୍ର ବରଷ । ୨୪୬ ।
ତ୍ରେତାଯୁଗ ବାରଲକ୍ଷ ଛୟାଣୋଇ ସହସ୍ର ବରଷ
ଊନପାଦ ତିନ ଲକ୍ଷ ଚବିଶ ସହସ୍ର ବରଷ । ୨୪୭ ।
ଦ୍ୱାପର ଯୁଗ ଆଠଲକ୍ଷ ଚଉଷଠି ସହସ୍ର ବରଷ
ଊନପାଦ ଦୁଇ ଲକ୍ଷ ଷୋଳ ସହସ୍ର ବରଷ । ୨୪୮ ।
କଳିଯୁଗ ଚୂରି ଲକ୍ଷ ବତିଶ ସହସ୍ର ବରଷ
ଊନପାଦ ଯେକଲକ୍ଷ ଆଠ ସହସ୍ର ବରଷ । ୨୪୯ ।
ଗଣ୍ଡାଯେକ ବୋଲି କହି ଚୂରି ଯୁଗେ
ଯେହିରୂପେ ସର୍ପଙ୍କୁ ଯେକ ଦିନ ଭୋଗେ । ୨୫୦ ।
ଯେହିମତେ ଅଷ୍ଟଉତ୍ତର ଶତେ ବରଷ
ଯେତେକାଳ ହୋଇଲେ ଇନ୍ଦ୍ର ଦେବତା ଯାଇ ନାଶ । ୨୫୧ ।
ଇନ୍ଦ୍ର ନାଶ ଗଲେ ପିତାଙ୍କୁ ହୋଅଇ ଯେକ ଦିନେ
ଯେହିମତେ ବ୍ରହ୍ମାଙ୍କୁ ଅଷ୍ଟଉତ୍ତର ଶତେ ବରଷ ଲେଖନେ । ୨୫୨ ।
ଯେତେକେ ବ୍ରହ୍ମାର ଆୟୁଷ ଯେବେ ସରଇ
ଈଶ୍ୱର ଦେବତାଙ୍କୁ ଦିବସେ ଅପହରଇ । ୨୫୩ ।
ଯେ ବିଧିରେ ଅଷ୍ଟଉତ୍ତର ଶତେକ ବରଷ
ମହାରୁଦ୍ର ଦେବତାର ଅଟଇ ଆୟୁଷ । ୨୫୪ ।
ରୁଦ୍ର ନାଶ ଗଲେ ଆଦିତ୍ୟଙ୍କୁ ହୁଅଇ ଦିନେ
ଅଷ୍ଟଉତ୍ତର ଶତ ବରଷେ ଆଦିତ୍ୟ ହୋଯେ ଲିନେ । ୨୫୫ ।
ଶତେକ ଆଦିତ୍ୟ ଗଲେ ଚନ୍ଦ୍ରଙ୍କୁ ହୁଅଇ ଦିନେ
ଅଷ୍ଟଉତ୍ତର ଶତ ବରଷେ ଚନ୍ଦ୍ର ହୁଅଇ ନିଧନେ । ୨୫୬ ।
ଯେହି ମତେ ଶତେ ଅଷ୍ଟଉତ୍ତର ବରଷେ ଚନ୍ଦ୍ରହିଂ ନାଶଯିବ
ଚନ୍ଦ୍ରହିଂ ନାଶଗଲେ ବିଷ୍ଣୁଙ୍କୁ ଯେକ ଦିବସ ହୋଇବ । ୨୫୭ ।

---

୨୫୭।୨ ଚନ୍ଦ୍ରେକ ନାଶଗଲେ କଳ୍ପେକ ହୁଅଇ ।

ଦିବସ ସରିଲେ ରାତ୍ରେ ଯାଇ ନିଦ୍ରା
ବିଷ୍ଣୁଙ୍କର ନିଦ୍ରାଗଲେ ଭାଙ୍ଗଇ ଯୋଗମୁଦ୍ରା । ୨୫୮ ।
ଅନାଦି ପୁରୁଷ ଯେତେବେଳେ ନିଦ୍ରା ଯାଏ
ପୃଥୀ ଆପ ତେଜ ବାୟୁ ଆକାଶ ସମସ୍ତ ଯାଇ କ୍ଷୟେ । ୨୫୯ ।
ତାହାର ନିଦ୍ରା ଗଲେ କିଛିହିଂ ନ ଥାଇଂ
ଦିବସହିଂ ଯେତେ କାଳ ରାତ୍ରହିଂ ତେତେ କାଳ ହୋଇ । ୨୬୦ ।
ନିଦ୍ରା ଭାଙ୍ଗିଲେ ପ୍ରସରଇ ରଯ୍ଣୀ
ପୁଣି ଉଦେ କରିବନ୍ତ ଶ୍ରୀ ନାରାୟଣ ଚକ୍ଷୁ ବେନି । ୨୬୧ ।
ଦେଖଇ ଜଳମଧ୍ୟେ ସଚରାଚର ନାହିଂ କିଛି
ବସି ଅମୃତ ନୟନେ ଗୃହାନ୍ତି ଶ୍ରୀବଛି । ୨୬୨ ।
ଅମୃତ ଦୃଷ୍ଟିରେ ଯହୁଂ ଗୃହିଂଲେ ଅନାଦି
ପଞ୍ଚଦଶ ବ୍ରହ୍ମା ଜଳରୁ ଉପୁଜିଲେ ଶୂନ୍ୟ ଭେଦି । ୨୬୩ ।
ପୁଣ ଉଦେ କରିନ୍ତି ଶ୍ରୀ ନାରାୟଣର କାଯେ
ସେ ଧାତୁବାଦ୍ୟ ପୁରୁଷଙ୍କୁ ହୋଇଲା ଜଳ ଆଶ୍ରୁ ଆୟେ । ୨୬୪ ।
ସରସ୍ୱତୀଙ୍କି କଟାକଲେ ଯୁବାରୂପ ଦେଖି
କଟାକ୍ଷି ଗୃହିଂଲେ ସେ ଅନାଦି ଧବଳମୁଖୀ । ୨୬୫ ।
ସେ ଅନାଦି ନାରୀଙ୍କର କଟାକ୍ଷ ନୟନେ
ତ୍ରୈଲୋକ୍ୟ ମୋହିନୀ କନ୍ୟା ହୋଇଲା ଉତପନ୍ନେ । ୨୬୬ ।
ସେ ଅନାଦି ନାରୀ ଯେ ମାଗିଲା ଆଧାର
ବାକ୍ୟଦେବୀ ବୋଇଲେ ପଞ୍ଚଦଶ ବ୍ରହ୍ମାଙ୍କୁ ତୁ ମାର । ୨୬୭ ।
କେ ତୁ ବୋଲି ବୋଇଲେକ ଯହୁଂ ଆଦିନାରୀ
କେତୁକା ନାମ ଯେ ହୋଇଲା ତାହାରି । ୨୬୮ ।
ବାକ୍ୟ ଦେବୀ ବଚନେ ଧାଇଂଲେ କେତୁକା
ସହସ୍ର ବରଷେ ବ୍ରହ୍ମାଏ ମାରଇ ଏକା । ୨୬୯ ।
ଚଉଦ ବ୍ରହ୍ମା ମାଇଲା ଚଉଦ ସହସ୍ର ବରଷେ
ରୁଧିର ମାଂସେଂସ ସେ ଆପ୍ୟାନ କଲାକ ସନ୍ତୋଷେ । ୨୭୦ ।

---

୨୬୦।୨ ସୃଷ୍ଟତକେ ବିଷ୍ଣୁ ଦେବତାକୁ ଦିବସେକ ଯାଇଂ ।

କୋଟିସ୍ୱେ ବ୍ରହ୍ମାଣ୍ଡ ହୋଇଛୁ ଜଳମୟେ
ବ୍ରହ୍ମା କେତୁକାକୁ ଜଳ ହୋଇଲା ଆଶୁ ଆଣି ପ୍ରାୟେ । ୨୭୧ ।
ଶୂଦ୍ରେକ ବ୍ରହ୍ମାଙ୍କୁ ଧରି ନୁଆରି ପଛେ ଗୋଡ଼ାଇଲା
ନାରାୟଣ ଶରଣ ବୋଲିଣ ଫୁକାରିଲା । ୨୭୨ ।
ମହାରଡ଼ ଶବଦେ ଭାଙ୍ଗିଲା ଯୋଗନିଦ୍ରା
ନୟନ ମେଲିଣ ଗୃହ୍ମଂଲେ ଯୋଗସିଦ୍ଧା । ୨୭୩ ।
ପଳାଇ ଶୂଦ୍ରେକ ବୋଲଇ ନାରାୟଣ ରାହି ରାହି
ବିଷ୍ଣୁ ନାଥ ବୋଇଲେ ଗୋ ରହ ରହ ଆସି । ୨୭୪ ।
କେତୁକା ବୋଇଲା ସ୍ୱେ ମୋହୋର ନିଜ ଭକ୍ଷ
ମୁହିଂ ନିଯୁକ୍ତ ହୋଇବି ତୁମ୍ଭେ କମ୍ପେ ସ୍ୱେହା ରଖ । ୨୭୫ ।
ବିଷ୍ଣୁ ବୋଇଲେ ଆବର ବ୍ରହ୍ମାମାନେ ମୋହୋର ଗଲେ କାହିଂ
ଧବଳାଙ୍ଗୀ ବୋଇଲେ ସ୍ୱାମୀ ଜାବତେ କେହି ନାହିଂ । ୨୭୬ ।
ମୋତେ ରମିତେ ଇଚ୍ଛା କଲେ ତୁମ୍ଭର ନିଦ୍ରାକାଳେ
ସେଗେ କେତୁକା ମୁଂ ଜାତ କଲି ବେନି ଡୋଳେ । ୨୭୭ ।
ଆଗ୍ୟାଂ ଦେଲ କେତୁକାସ୍ୱେ ସ୍ୱେହାନ୍ତ ସବୁକୁଇ ଭକ୍ଷ
ସ୍ୱେ ମୋଡ଼ା ବଡ଼ାଇ ଦୁଷ୍ଟ ସ୍ୱେହାନ୍ତ କମ୍ପେ ରଖ । ୨୭୮ ।
ଶ୍ରୀ ନାରାୟଣେ ବୋଇଲେ ଶରଣ ପଶିଲା ଆମ୍ଭନ୍ତ ଯେବେ
ସମୟେକ ରଖ ସ୍ୱେହାକୁ ଭକ୍ଷ ଦ୍ୱାପର ଯୁଗେ । ୨୭୯ ।
ବାକ୍ୟେଦେବୀ ବୋଇଲେ ସ୍ୱେ ହୋଇବ କେମନ୍ତେ
ସ୍ୱେହା ବିସ୍ତାରଣ ଦେବ କହିବା ଆଦିନାଥେ । ୨୮୦ ।
ନାରାୟଣ ବୋଇଲେ ସ୍ୱେବେ ହୋଇବ ସତ୍ୟଯୁଗ
ସତ୍ୟ ଅନ୍ତରେ ହୋଇବ ତ୍ରେତୟା ଯୁଗ ଭୋଗ । ୨୮୧ ।
ତ୍ରେତୟା ଅନ୍ତେ ଯେ ହୋଇବ ଦ୍ୱାପର
ସ୍ୱେ ଶୂଦ୍ରକ ବ୍ରହ୍ମା ଦୁଃଶାସନ ରୂପେ ଅବତାର । ୨୮୨ ।
ସ୍ୱେ କେତୁକା ଜନ୍ମ ହୋଇବ ଦ୍ରୋପଦୀ ରୂପ ହୋଇ
ଦ୍ୱାପର ଯୁଗେ ଦୁଃଶାସନକୁ ଖାଉ ତହିଂ । ୨୮୩ ।
ସ୍ୱେ କେତୁକା ହେଲା ସହିଂ ବ୍ରହ୍ମାଙ୍କର ବଇରି
ତେଜଦ ବ୍ରହ୍ମା ଖାଇଲାନ ମୁଣ୍ଡ ମୋଡ଼ି କରି । ୨୮୪ ।

ଏହି ଶୂଦ୍ରକ ବ୍ରହ୍ମାର କୋପ ଏହାଙ୍କୁ ସର୍ବକାଳେ
ଏହାର କେଶ ଧରି ନେବ କଉରବେ ସଭାତଳେ । ୨୮୫ ।
ଦ୍ରୋପଦୀବଲ୍ଲଭ ହୋଇବ ଭୀମସେନ
ଭୀମ ଧୁଃଶାସନର ଯେ ହୋଇବ ସାଂଗ୍ରାମ । ୨୮୬ ।
ଧୁଃଶାସନଙ୍କୁ ସାଂଗ୍ରାମେ ମାରିବ ବୃକୋଦର
ଭୁଜ ଓପାଡି ଏହାର ମଥାରେ ନିଉଡିବ ରୁଧିର । ୨୮୭ ।
ରକତେ ସ୍ନାହାନ କରିବ ଦ୍ରୋପଦୀ
ସେ ରୁଧିର ପାନ କରିଣ ହୋଇବ ତୃପ୍ତି । ୨୮୮ ।
ଶୁଣ ହୋ ଦ୍ରୋପଦେଶ୍ୱର ଏହି ଅନାଦି ସିଦ୍ଧକଥା
ଏହିତେ ସରୂପେ ତୋହୋର ଦ୍ରୋପଦୀ ଦୁହିତା । ୨୮୯ ।
ଏହି ହାଦେ ଦ୍ରୋପଦୀ ଏହି ହାଦେ ଭୀମସେନ
ଧୁଃଶାସନ ରୁଧିର ଏହି କରିବ ଆପ୍ୟାନ । ୨୯୦ ।
ଏହା ଶୁଣି ଦ୍ରୋପଦ ଯେ ବ୍ୟାସଙ୍କୁ ପୁଚ୍ଛାକଲା
ହେତୟା ଯୁଗ ଏହି ପୁଣି କାହିଂ ପୁହାଇଲା । ୨୯୧ ।
ପ୍ରଥମେ କେଉଁକା ଦୁଜେ ଏକବଳା ପାର୍ବତୀ
ବ୍ୟାସେ ବୋଇଲେ ଶୁଣ ହୋ ଦ୍ରୋପଦ ନୃପତି । ୨୯୨ ।
ହେମବନ୍ତ ତଳେ ମାଳତୀ ନାମେଣ ଯେ ନଦୀ
ତହିଂ ଏକବଳା ପାର୍ବତୀ ଯୋଗ ସାଧି । ୨୯୩ ।
ଏକବଳାକଇଂ ଇଚ୍ଛା କଲେ ଦେବ ହର
ଆସିଣ ସଦାଶିବ ଥିଲେନ୍ତି ପାଶର । ୨୯୪ ।
ମୀନମାସ ଶୁକ୍ଳପକ୍ଷ ଶ୍ରୀ ଏକାଦଶୀ
ବସନ୍ତ ଋତୁ ହସ୍ତା ନକ୍ଷତ୍ର କନ୍ୟାରାଶି । ୨୯୫ ।
ସେ ଦିନେ ଗାପୂଳସୀ ଆସନ୍ତି ଗଙ୍ଗାକୁ ପାଣି ହେରି
ନିରଞ୍ଜନ ପୁରୁଷ ଭ୍ରଥା ଅଟନ୍ତି ତାହାର । ୨୯୬ ।
ନିରଞ୍ଜନ ପଞ୍ଚ ଆତ୍ମା ପଞ୍ଚ ଷଣ୍ଡ ହୋଇ
ସେ ଗାପୁଣ୍ଡସୀ ପଛକତି ଅଛନ୍ତି ଗୋଡାଇ । ୨୯୭ ।
ଈଶ୍ୱର ବୋଇଲେ ଦେଖ ଏକବଳା ପାର୍ବତୀ
ମାତା ତୋର ଗାପୁତସୀ ମେଣ୍ଡେକ ଅଛଟି । ୨୯୮ ।

ଏକା ଗାଣ୍ଡିକ ଗୋଡାଇ ଅଛନ୍ତି ପଞ୍ଚୁ ପଣ୍ଡୁ
ପାଞ୍ଚକଇଂ ଆଶା ଦେଖାଇ କରୁଅଛି ଲଣ୍ଡ ଭଣ୍ଡ । ୨୯୯ ।
ଯେବଣ ଷଣ୍ଢକୁ ତାର ଇଚ୍ଛା ଯେ ହୋଇବ
ବୃତ୍ତିଙ୍କି ବରଣ କରି ଏକ ଆବୋରିବ । ୩୦୦ ।
ଏ ପାଞ୍ଚକଇଂ ଆଶା ଅଛି ଯେ ଦେଖାଇ
ସ୍ତ୍ରୀଜନ୍ମର ଏ ଧର୍ମକୁ ନୁଆଇ । ୩୦୧ ।
କପିଳାକୁ ଏକବଳା ମନେ କଲା ବିକୃତି
ବୋଇଲେ ମାତାର ଏ କଥା ନ ଯୋଗାଇ ସୁଗତି । ୩୦୨ ।
ସ୍ତ୍ରୀ ଜନ୍ମ ହୋଇ ଏତେକ ଅବିଶ୍ୱାସୀ
ଈଶ୍ୱରେ ଏକବଳା ଗାପୁରୁଷଙ୍କ ଦୁଷୀ । ୩୦୩ ।

ଏସନେକ ଚରିତ ଯେ ଜାଣିଲେ କପିଳା
ବୋଇଲେ ତୁ ମନେ ବିକୃତ ଧଇଲୁ ଗୋ ଏକବଳା । ୩୦୪ ।
ଯେ ଈଶ୍ୱର ଦୃଷ୍ଟିରେ ଦେଖି ବିକୃତି ଧଇଲୁ ମନେ
ତୁ ଏହାର ଭ୍ରାତ ହୋଇ ଜନ୍ମିବୁ ଧୃଷ୍ଟ ଯେ ତୁମନେ । ୩୦୫ ।
ତୁ ଯେ ଏକବଳା ମନେ ଧଇଲୁ ବିକୃତି
ଦ୍ରୋପଦୀ ରୂପେ ଜାତ ହୁଅ ତୋର ହୋଉ ପଞ୍ଚୁ ପତି । ୩୦୬ ।
ଏତେକ ଶାପ ଦେଇ ଗଲେକ କପିଳା
ମହାଯୋଗ ଧେନ ବସିଲେ ଏକବଳା । ୩୦୭ ।
ପାଟଠୋଳ ବସନ ପଞ୍ଚାଉନ କୋଟି ମାଡି
ମହାଲୟେ ବସିଲେ ସକଳ ଜଞ୍ଜାଳ ଛାଡି । ୩୦୮ ।
ଆଦିତ୍ୟର ସୁତ ଯେ ଅଟଇ ଶନୈଶ୍ଚର
ତାହାର ଦୃଷ୍ଟି ପଡିଲେ ଯେ ଦହଇ ସଂସାର । ୩୦୯ ।

ଡରେଣ ତାହାକୁ କନ୍ୟା ଦିଅନ୍ତା କେହି ନାହିଁ
ଦଶଲକ୍ଷ ବରଷ ସେ ଅଛି ଅବିଭାଇ ହୋଇ । ୩୧୦ ।
ଅନଳସେନ ବୋଲଣ ଦକ୍ଷ ବଂଶେଣ ରାଜା
କୃତ୍ତିକାବତୀ ବୋଲଣ ତାହାର ତନୁଜା । ୩୧୧ ।
ଅନଳସେନକୁ ବୋଇଲେ ଦିନକର ଜ୍ୟୋତି
ଆମ୍ଭର ଶନୈଶ୍ଚରକୁ ଦେବୁ ତୋର ଦୁହିତା କୃତ୍ତିକାବତୀ । ୩୧୨ ।

କରତାର ବଚନ ସେ ବାଞ୍ଛି ନୁଆଁଇଲେ
ଦେବ ମୋହୋର ଦୋହିତା ନରଞ୍ଜନଙ୍କୁ ସତ୍ୟ ମନାଇଲେ । ୩୧୩ ।
ସ୍ୱାମୀ ସ୍ୱେତବର୍ଣ୍ଣ ପାଟୋଳ ବସ୍ତ୍ର ପଞ୍ଚାଉନ କୋଟି
ଦୁହିତାଙ୍କୁ ଯୋଗାଉଥିବୁ ନ ପଡ଼ିବ ତାହାଂ ଶନୈଶ୍ଚର ଦୃଷ୍ଟି । ୩୧୪ ।
ସେ ବସ୍ତ୍ର ତେଜେ ଶନୈଶ୍ଚରଙ୍କ ଆକର୍ଷଣ ହୋଇବାକ ଶାନ୍ତ
ଦେବଙ୍କ କନ୍ୟା ମୋହୋର ହୋଇଲେ ସତ୍ତ ସତ୍ତ । ୩୧୫ ।
ରାଜାର ବଚନେ ସେ ସ୍ୱାମୀ କରତାର
ଦେଖିଲେ ସ୍ୱେତବର୍ଣ୍ଣ ପାଟୋଳ ବସ୍ତ୍ର ନାହିଂ ଅନ୍ୟ ଠାବର । ୩୧୬ ।
ପଞ୍ଚାଉନ କୋଟି ପାଟୋଳ ବସ୍ତ୍ର ମାତ୍ର ବସିଅଛି ସ୍ୱେତବଳା ପାର୍ବତୀ
ତାହାଙ୍କୁ ମାଗି ଆଣିବାକୁ ହୋଅନ୍ତ ଭ୍ରାନ୍ତ । ୩୧୭ ।
ଯହିଂ ତପେ ବସିଛନ୍ତ ଅନାଦି କେତୁକା
ଦିନକରନାଥ ଯାଇ ଭେଟିଲେ ତାଙ୍କୁ ସ୍ୱେକା । ୩୧୮ ।
ଆଦିତ୍ୟ, ସ୍ୱେତବଳା ପାର୍ବତୀଙ୍କି ବହୁତ କଲେ ସ୍ତୁତି
ବିନୟ ଦେଖି ପ୍ରସନ୍ନ ହୋଇଲେ ସ୍ୱେତବଳା ପାର୍ବତୀ । ୩୧୯ ।
କେବଣ ଆଧାନ ହୋ ମାଗ କରତାର
ବରଞ୍ଚ ନାରାୟଣ ବୋଲନ୍ତ ଉତ୍ତର । ୩୨୦ ।
ଶନୈଶ୍ଚରଙ୍କୁ ବନ୍ଧି କରାଇବ ମହାମାୟେ
ତୁ ଯେ ସିଦ୍ଧଦେବୀ ମୋର ପୁତ୍ରଙ୍କୁ କରିବୁ ସଦୟେ । ୩୨୧ ।
ସ୍ୱେତବର୍ଣ୍ଣ ପାଟୋଳ ବସ୍ତ୍ର ପଞ୍ଚାଉନ କୋଟି
ସ୍ୱେତେକ ପାଇଲେ ଅନଳସେନ ଦେବ ଦୁହିତା ଗୋଟି । ୩୨୨ ।
ସ୍ୱେତବଳା ବୋଇଲେ ଶୁଣିମା ଦେବରାଜ
ସ୍ୱେ ବସ୍ତ୍ରେ ନାରାୟଣ ଅଛି ବହୁତ କାର୍ଯ୍ୟ । ୩୨୩ ।
ଆଦିତ୍ୟ ବୋଇଲେ ତୋହୋର କାର୍ଯ୍ୟକାଳେ
ସ୍ୱେ ବସ୍ତ୍ର ଦେବ ତୋହୋର କଣ୍ଠାଳର ବେଳେ । ୩୨୪ ।
ଚତୁର୍ଥ ଅବତାରେ ମୁଂ ହୋଇବ ଦ୍ରୌପଦୀ
ଗାନ୍ଧାରୀ ଶାପେ ମୋର ହୋଇ ପଞ୍ଚ ପ୍ରତ୍ତ । ୩୨୫ ।
କଷଣ ପଡ଼ିବ ମୋତେ କୁରୁସଭା ତଳେ
କଉରେବେ ମୋତେ ବିବସନ କରିବ ଯେତେବେଳେ । ୩୨୬ ।

ଯେତେ ମୋହୋର ସନ୍ତାପଣ ନାଶିବାର ନିମନ୍ତେ
ସେ କାଳରେ ବସ୍ତ୍ର ଦେବ ମାଗିବଇଂ ତୋତେ । ୩୨୭ ।
ପଞ୍ଚାଉନ କୋଟିରେ କୋଟିଏ ବସ୍ତ୍ର ଲଇଂ
ଛପନ କୋଟି ବସ୍ତ୍ର ମୋତେ ଦେବୁ ତୁ ତୁଳାଇ । ୩୨୮ ।
କରତାର ବୋଇଲେ ହୋଇଲା ମୋହୋର ସତ୍ୟ ସତ୍ୟ
ମାଗି ପଞ୍ଚାଉନ କୋଟି ବସ୍ତ୍ର ନେଲେ ଦିନକରନାଥ । ୩୨୯ ।
ଅନଳସେନ ନୃପତିଙ୍କ ବସ୍ତ୍ର ଦିଲେ ନେଇ
ବିଭାର କାଳେ ବସ୍ତ୍ର ଘୋଡାଇଲେ କନ୍ୟାର ତହିଂ । ୩୩୦ ।
ଶନିଶ୍ଚରଙ୍କୁ ପ୍ରଦାନ କରାଇଲେ କୁଣ୍ଡିକାବଣ୍ଟି
ରକ୍ତ ବସ୍ତ୍ରେ ଦୃଷ୍ଟି ଦେଇ ଶନି ହେଲେ ଶାନ୍ତ । ୩୩୧ ।
ବିବାହ ଉତ୍ତାରେ ମାଗି ନେଲେ କରତାର
ସେ ବସ୍ତ୍ର ସଂହରିଲେ ନେଇ ରଥର ଉପର । ୩୩୨ ।
ଶୁଣ ହୋ ଦ୍ରୋପଦ ବୋଲନ୍ତି ମୁନି ବ୍ୟାସେ
ଦ୍ଵିଜ ଅବତାର କଥା କହିଲୁ ଅବଶେଷେ । ୩୩୩ ।
ତୃଣାପ୍ସୁ ଅବତାରେ ଯେତେ ଶଚୀ ରୂପ ଧରି
କ୍ଷେତ୍ରାଧିପତି ପୁଷ୍କର ଘରେ ଅବତରି । ୩୩୪ ।
ଇନ୍ଦ୍ର ଦେବତାଙ୍କୁ ପ୍ରଦାନ କଲା ସେ ପୁଷ୍କର ରାଜନ
ଅଛଯେତେ ପାଟବଂଶୀ ବସିଲା ସେ ଅମର ସ୍ଵର୍ଗଥାନ । ୩୩୫ ।
ଦଶ ଲକ୍ଷ ବରଷ ପରଯନ୍ତେ ସେ ବାସବ ମନୋହାରୀ
ନିକଣ୍ଟକେ ରାଜ୍ୟକଲା ଇନ୍ଦ୍ର ଜମ୍ଭଦୈତ୍ୟ ମାରି । ୩୩୬ ।
ଶୁଣ ହୋ ବଇବସୁତ ମନୁ ବଦଯନ୍ତି ଅଗସ୍ତି
ଅନୁରଥ ବଂଶେଣ ବ୍ରାହ୍ମଣେକ ଉତପତ୍ତି । ୩୩୭ ।
ସେହି ବ୍ରାହ୍ମଣର ନାମ ଅଟଇ କେଶିରଥ
କେଶିରଥ ପୁତ୍ର ହୋଇଲା ଦାସରଥ । ୩୩୮ ।
ଦାସରଥର ପୁତ୍ର ଯେ ଅଟଇ ମନୁରଥ ନାମ
ଉଦେରଥ ବୋଲି ତାହାର ପୁତ୍ରେକ ମହାବ୍ରହ୍ମ । ୩୩୯ ।
ଯେତେହାର ନନ୍ଦନ ବିଷ୍ଣୁରଥ ଦ୍ଵିଜ ।
ଯମରଥ ବୋଲି ତାହାର ତନୁଜ । ୩୪୦ ।

ସମରଥର ପୁତ୍ର ବ୍ରହ୍ମରଥ ବୋଲି
ରୁଦ୍ରରଥ ନାମ ତାହାର ପୁତ୍ରେକ କହିଲି । ୩୪୧ ।
ରୁଦ୍ରରଥର ପୁତ୍ର ଇକ୍ଷ୍ବାରଥ ନାମ
ବେଦ ଶାସ୍ତ୍ର ପୁରାଣେ ଜାଣି ଦୁଷ୍ଟ ବ୍ରହ୍ମ । ୩୪୨ ।
ବୈଶାଖ ଶୁକଳ ଦୁଷ୍ଟପ୍ୟାର ଦିନ
ଅର୍କବାର ରୋହିଣୀ ନକ୍ଷତ୍ର ବିଦ୍ୟମାନ । ୩୪୩ ।
ସେ ଦିନ ଇକ୍ଷ୍ବାରଥ ଅମର ସ୍ୱର୍ଗକୁ ଗଲେ
ବାସବ ଦେବତା ତାଙ୍କୁ ବସିତେ ନ ବୋଇଲେ । ୩୪୪ ।
ଲଜେଣ ଆସ୍ଥାନରୁ ଅଇଲେ ତପଗୃହେ
କୋପେଣ ଆଜ୍ଞା ଦିଲେ ବୃତ୍ତ୍ରରଥଙ୍କୁ ହକାରି । ୩୪୫ ।
ଆରେ ବୃତ୍ର ! ତୁ ଯାଇଂ ରୁଦ୍ରଙ୍କୁ ସେବା କର
ଈଶ୍ୱର ଦେବତାଙ୍କୁ ସେବା କରି ବସ ଅମର ସ୍ୱର୍ଗପୁର । ୩୪୬ ।
ଇକ୍ଷ୍ବାର ଆଜ୍ଞାଂ ପାଇ ସେ ବୃତ୍ର ମହାଋଷି
କପିଳାସ କନ୍ଦରକୁ ସେ ବିଜେ ବାଳ ଶିଷି । ୩୪୭ ।
ଆନ କିଛି ନ ଜାଣଇ ସେ ଯେ ବାଳସୁତ
ବାଳଖିଲା ତପେ ସେ ଖଟଇ ବିଶ୍ୱନାଥ । ୩୪୮ ।
ସ୍ନାହାନ ଷଟକର୍ମ ନିତ୍ୟକର୍ମ ସାରି
ରାତ୍ର ଦିନ ଯତ୍ତ ଥାଉଂ ଯାଇଥାଏ ଗଡ଼ି । ୩୪୯ ।
ଶିବ ଶିବ ବୋଲି ସୁମରୁ ଥାଇ ଅନୁବ୍ରତେ
ଗଡ଼ଯାଇ ଶୁଏ ଦେଢ଼ ପ୍ରହର ପରିଯନ୍ତେ । ୩୫୦ ।
ଚଉବିଂଶ ବରଷ ପରିଯନ୍ତେ ଘୋର ତପକଲି
ଈଶ୍ୱର ଦେବତାଙ୍କର ଆସନ କମ୍ପିଲି । ୩୫୧ ।
ମେଷମାସ ଶୁକଳପକ୍ଷ ପଞ୍ଚମୀର ରାତ୍ର
ଶଉରିବାର ମୃଗଶିରା ନକ୍ଷତ୍ର ପାହାନ୍ତ । ୩୫୨ ।
ଗଡ଼ି ଯାଉଅଛି ନିତ୍ୟ କର୍ମର ବିଧାନେ
ସର୍ପ ବିଧାତ ହୋଇଲି କପିଳାସ ଈଶାନ୍ୟେ । ୩୫୩ ।
ମହା ଗରଳ ଜ୍ୱାଳା ଲାଗି ସେହି ବାଳ
ଶମ୍ଭୁର ବିସର୍ଜନ ମୁଖୁଂ ବାହାରିଲା ଗରଳ । ୩୫୪ ।

ବର ଦେବେ ବୋଲି ଆସୁଛନ୍ତି କାଶୀ
ଉମା ମହେଶ୍ୱର ଦେଖିଲେ ମରଅଛି ବାଳଶିଷି । ୩୫୫ ।
ଉମା ବୋଇଲେ ସ୍ୱାମୀ ଶିବ ସେବା ଯେମନ୍ତ
ତୁମ୍ଭଙ୍କୁ ସେବା କର ନାଶ ଗଲା ଯେ ବାକୃତ । ୩୫୬ ।
ସଦାଶିବ ବୋଇଲେ ଶୁଣ ଗୋ ଗିରିଜା
ଯେ ପୁତ୍ର ଗୋଟିକ କରିବା ସ୍ୱର୍ଗପୁରେ ରାଜା । ୩୫୭ ।
ଈଶ୍ୱର ବୋଇଲେ ନାରଦଙ୍କୁ ହକାରି
ଯେ ପୁତ୍ର ଗୋଟି ନଅ ତୁ ଯଶୋବନ୍ତପୁରୀ । ୩୫୮ ।
ବ୍ରହ୍ମାଙ୍କୁ ବୋଲିବୁ ଯେ ରୁଦ୍ରଙ୍କ ଭଗତି
ତୋହୋର ତହୁଂ ଭଲଠାବେ ଥୋଇବୁ ନେଇ ଧାତା । ୩୫୯ ।
ମୃତ୍ତୁପିଣ୍ଡ ଗୋଟି ନେଇ ବସାଇଲେ ମନ ପବନ ଦଣ୍ଡେ
ପୁତ୍ର ହେନ ପ୍ରବେଶ ହୋଇଲେ ଯଶୋବନ୍ତୀ ବ୍ରହ୍ମାଣ୍ଡେ । ୩୬୦ ।
ବ୍ରହ୍ମାଙ୍କ ଆଗେ ସମର୍ପିଲେ ବୃତ୍ର ମହର୍ଷି
ସଦାଶିବ ଆଗ୍ୟାଂ ତୋତେ ଯେହାକୁ ଭଲଠାବେ ଥୋଅସି । ୩୬୧ ।
ମୃତ୍ତୁ ପିଣ୍ଡ ଗୋଟି ହେନଗଲେ ସୃଷ୍ଟି କରତା
ନିଜ ପ୍ରାଣ ଦେଇ ଜିଆଂଇଲେ ଦେବ ଧାତା । ୩୬୨ ।
ନାରଦଙ୍କୁ ଘେଇ ସମର୍ପିଲେ ବାଳସୁତ
ମୋହୋର ତହୁଂ ଭଲ ଠାବେ ଅମରପୁର ସିନା ଯୁଗତ । ୩୬୩ ।
ବାସବ ଦେବତାର ସେ ଫିଟିଲା ଇନ୍ଦ୍ରପଦ
ବୃତ୍ର ମହର୍ଷିଙ୍କି ଇନ୍ଦ୍ର ପଦେ ବସାଅ ନାରଦ । ୩୬୪ ।
ପିତାର ଆଗ୍ୟାଂରେ ଚଳନ୍ତି କଳହପ୍ରିୟ
ଇନ୍ଦ୍ରଙ୍କୁ ଜଣାଇଲେ ଧାତା ବୋଇଲେ ଯାହା । ୩୬୫ ।
ଇନ୍ଦ୍ରଙ୍କୁ କହଲେ ତୋହୋର ତହୁଂ ହାଦେ ଫିଟିଲା ଇନ୍ଦ୍ରପଦ
ବୃତ୍ର ମହର୍ଷି ସ୍ୱର୍ଗେ ହୋଇବାକ ଇନ୍ଦ୍ର । ୩୬୬ ।
ଆଗ୍ୟାଂ ପ୍ରମାଣେ ସ୍ୱର୍ଗ ଛାଡିଲେ ମଘବା
ଯାହା ସେ ସଞ୍ଚିଲେ ପିତାମହ ରୁଦ୍ରଦେବା । ୩୬୭ ।
ଇନ୍ଦ୍ର ଦଣ୍ଡ ଛତ୍ର ମାନ ଛାଡିଲା ସମସ୍ତ
ଶଚୀକି ହେନ ଯେକା ବାହାର ହୋଇଲେ ପୁରୁହୂତ । ୩୬୮ ।

---

୩୬୪।୧ ଫିଟିଲ—ତୁଟିଲା ।

ଇନ୍ଦ୍ର ଦେବତା ଯେତେବେଳେ ଶଚୀଙ୍କ ଛାଡ଼ି ଅମର ପୁରୁଂ ଗଲେ
ବୃତ୍ର ମହର୍ଷି ଇନ୍ଦ୍ର ପଦେ ବସିଲେ । ୩୬୯ ।
ତପେ ମନାଇଲେ ସେ ଦେବ ତ୍ରିଲୋଚନେ
ଘେନଲେ ଇନ୍ଦ୍ରପଦ ରୁଦ୍ର ପରଶନେ । ୩୭୦ ।
ଦିଗପାଳେ ଚଳିଲେ ବୃତ୍ର ମହର୍ଷିର ଆଜ୍ଞାବର୍ତ୍ତୀ
ଅପକ୍ଷରାୟେ ଖଟିଲେ ବାହାନ ଅଇରାବତ ହାଥୀ । ୩୭୧ ।
ସମସ୍ତ ବ୍ରହ୍ମାଣ୍ଡ ଭଆଇଲା ମାତ୍ରନମେ
ସଚରାଚର ପାଳିଲେ ମହର୍ଷି ଅତି ଧର୍ମେ । ୩୭୨ ।
ଇନ୍ଦ୍ରଦେବତା ରାଜ୍ୟଭ୍ରଷ୍ଟ ହୋଇଗଲା
ପଦ୍ମବନେ ପଶି ନାରାୟଣଙ୍କଇଂ ଚିନ୍ତାକଲା । ୩୭୩ ।
ଚଉବଂଶ ବରଷେ ଜାଣିଲେ ଜନାର୍ଦ୍ଦନେ
ଇନ୍ଦ୍ରଦେବତାଙ୍କୁ ଭେଟିଲେ ଖଗେଶ୍ୱର ବାହାନେ । ୩୭୪ ।
ଅନେକ ବଇକୁଳ୍ୟ ହୋଇଲେ ଆଖଣ୍ଡଳେ
ଶତେ ସହସ୍ର ଦଣ୍ଡ ପ୍ରଲମ୍ବ ନାରାୟଣଙ୍କ ପାଦତଳେ । ୩୭୫ ।
ସ୍ୱାମୀ ଜମ୍ଭୁ ଦୈତ୍ୟ ମାରି ସଞ୍ଚିଲି ଅମର
ଇନ୍ଦ୍ର ପଦେ ବସିଲି ମୁଂ ମନୁ ଯେ ସତର । ୩୭୬ ।
ଈଶ୍ୱର ବ୍ରହ୍ମାୟେ ହରିଲେ ମୋହୋର ଇନ୍ଦ୍ରପଦ
ବୃତ୍ର ମହର୍ଷିଙ୍କ ଦିଲେ ଯେ ମୋହୋର ପଦ । ୩୭୭ ।
ଅନାଥର ବନ୍ଧୁ ତୁ ଜଗଦ୍ଭୁତ ନାରାୟଣ
ତୋହୋର ପ୍ରସାଦେ ଦେବ ମୁଂ ପାଇବି କାରଣ । ୩୭୮ ।
ନାରାୟଣ ବୋଇଲେ ତୁ ଯାଅସି ଅମର
ବୃତ୍ର ମହର୍ଷିଙ୍କି ମାରି ଇନ୍ଦ୍ରପଦ ଘେନ ଯେ ତୋହୋର । ୩୭୯ ।
ଇନ୍ଦ୍ର ବୋଇଲା ମୋତେ ଦ୍ୱାର ଘେନିଲା ସମସ୍ତ
କିସ ଘେନିଣ ମୁଂ ସମର କରିବି ଶସ୍ତ୍ର ନାହିଂ ମୋହୋର ହସ୍ତ
। ୩୮୦ ।
ମେଦ୍ଧାଠାରେ ତପ କରୁଥିଲେ ମହର୍ଷି ଦଧିଚି
ତାହାଙ୍କୁ ରାଇ ଆଜ୍ଞାଂ ଦିଲେ ଶ୍ରୀହରି । ୩୮୧ ।

ତୁ ପ୍ରାଣ ଛାଡ଼ି ବାବୁ ବାସବର ଅର୍ଥେ
ତୋହୋର ଅସ୍ଥି ଘେନି ମାରୁ ଯେ ଋଷି ବୃତ୍ରେ । ୩୮୨ ।
ଯେସନେକ ଆଗ୍ୟାଂ ଯହୁଂ ଦିଲେ ଶିଖିବର୍ହି
ପ୍ରାଣ ବିସର୍ଜନ ହୋଇଲା ଦଧିଋଚ ମହଋଷି । ୩୮୩ ।
ଋଷିର ପିଣ୍ଡ ଯେ ଘେନିଲା ସହସ୍ରାକ୍ଷ
ତାହା କଲା ନେଇ ହାଦେ ଅଭେଦ କପଟ । ୩୮୪ ।
ପଞ୍ଜରା ହାଡ଼କୁ ସେ କଲାକ କୋଦଣ୍ଡ
ତହ୍ନଂକ ଗୁଣକଲା ମହିଁଶିରା ଚର୍ମଖଣ୍ଡ । ୩୮୫ ।
ଅଙ୍ଗୁଷ୍ଠି ମାନଙ୍କୁ ପୁଣ ନାରାଜ ଯେ କଲା
ପାଦର ଅସ୍ଥିକ ସେ ମୁଦ୍ଗର କଲା । ୩୮୬ ।
ଋଷିର ଚର୍ମ ଯେ ହୋଇଲା ମେଖଳ
ଯେମାନନ୍ତ ଘେନି. ତହୁଂ ମଘବାନ ଚଳ । ୩୮୭ ।
ନାରପୂଣ ବୋଇଲେ ଯାଅ ଦେବ ଇନ୍ଦ୍ର
ବୃତ୍ର ମହଋଷିଙ୍କି ମାରି ଘେନ ଇନ୍ଦ୍ରପଦ । ୩୮୮ ।
କୋପେଣ ଇନ୍ଦ୍ର ଯେ ଚଳଇ ଅତି ରାଗେ
କ୍ଷଣ ମାତ୍ରେ ଯାଇଂ ମିଳିଲା ଅମର ସ୍ୱର୍ଗେ । ୩୮୯ ।
ବୃତ୍ର ମହଋଷିର ସଙ୍ଗେ ଅନେକ ଯୁଦ୍ଧ କଲା
ବାଳ୍ପୁତ ନନ୍ଦନ ସେ ସାଂଗ୍ରାମେ ହାରିଲା । ୩୯୦ ।
ଋଷିଙ୍କର କପଟ ସେ ମାଇଲା ବୁଲାଇ
ଘାଏପୂଣ ବୃତ୍ର ଋଷି ପଡ଼ିଲା ଘୁମାଇଂ । ୩୯୧ ।
ଋଷିଙ୍କର ନଖ ଯେ ଖ୍ୟାକ୍ଷ ପ୍ରଶୁ
ଯେମନ୍ତେ ବୃତ୍ର ମହଋଷି ହୋଇଲା ଧୂଳି ପାଂଶୁ । ୩୯୨ ।
ବୃତ୍ର ମହଋଷିଙ୍କି ମାଇଲାକ ଇନ୍ଦ୍ର
ଆପଣେ ଇନ୍ଦ୍ରପଦେ ବସିଲା ଦେବ ଇନ୍ଦ୍ର । ୩୯୩ ।
ନିଜ ସ୍ୱର୍ଗେଣ ସେ ହୋଇଲାକ ରାଜା
ଦିଗପାଳମାନେ ସମସ୍ତେ କଲେ ପାଦପୂଜା । ୩୯୪ ।
ତ୍ୱଷ୍ଟା ମହଋଷିଙ୍କି ଯେ କହିଲେ ନାରଦ
ତୋହୋର ପୁତ୍ରକୁ ନାଶକଲା ଦେବ ଇନ୍ଦ୍ର । ୩୯୫ ।

ବାହୁଡ଼ାଇ ଇନ୍ଦ୍ରପଦ ଯେମନ୍ତ ସେ ବଳେ
ତ୍ୱଷ୍ଟାଙ୍କୁ ସମସ୍ୟା ନ ହୋଇଲେ ଯୋଗଲଙ୍କୁ ବେଳେ । ୩୯୬ ।
ଗଗେଣ ଭୂମିକ ମାଇଲେ ଧରି ବାଳ ମୁଠାଙ୍କୁ
ବାଳଖିଲା ବାହାର ହୋଇଲେ ବେନି ଯେ ତନଙ୍କୁ । ୩୯୭ ।
ବାଲମ୍ଭିକ ବିଅମ୍ବକ ଦୁଇଙ୍କର ନାମ ହୋଇଲେ
ଇନ୍ଦ୍ର ଦେବତାଙ୍କୁ ମାର ବୋଲି ପେଷିଲେ । ୩୯୮ ।
ପିତାର ଆଜ୍ଞାଂଙ୍କୁ ସେ ବେନି ଯେ ତନଙ୍କୁ
ଅମର ସ୍ୱର୍ଗରେ ସେ ପଶିଲେ ନିର୍ଭୟଙ୍କୁ । ୩୯୯ ।
ଚିତ୍ରସେନ ଜୟସେନ ଅଙ୍ଗାରପର୍ଣ୍ଣ ପ୍ରଚଣ୍ଡାବଳୀ
ଗନ୍ଧର୍ବ କୁମାରେ ଯାଇ ବାଳଖିଲାନ୍ତ ଓଗାଳି । ୪୦୦ ।
ଅନେକ ସମର କଲେକ ହାଦ୍ୟାଧରେ
ଗନ୍ଧର୍ବନ୍ତ ମାଇଲେ ସେ ଋଷିର କୁମାରେ । ୪୦୧ ।
ମୋହଣରେ ପକାଇ ଅଇଲେ ଖର କରି
ଖାଣ୍ଡବ ବନେ ଆସି ଭେଟିଲେ ଅମରାରି । ୪୦୨ ।
ଇନ୍ଦ୍ର ତୁଲେ ଅନେକ ସମର ହୋଇଲା
ବଜ୍ର ଶରେ ଇନ୍ଦ୍ର ଋଷି କୁମାରନ୍ତ ମାଇଲା । ୪୦୩ ।
ଆପଣାର ପୁତ୍ରକୁ ଆଣି ଦେଲେକ ଅମୃତ
ଅଙ୍ଗାରପର୍ଣ୍ଣ ଜୟସେନ ପ୍ରଚଣ୍ଡାବଳୀ ଚିତ୍ରସେନ ପାଇଲେ ଜୀବିତ
। ୪୦୪ ।
ନାରଦ ଯାଇ କହିଲେ ତ୍ୱଷ୍ଟା ମହର୍ଷିଙ୍କି
ଇନ୍ଦ୍ର ନାଶ କଲା ତୋର ପୁତ୍ର ଦୁହିଙ୍କି । ୪୦୫ ।
ଶୁଣି ତ୍ୱଷ୍ଟାଙ୍କୁ ଉଠିଲେ ମହାରାଗି
କାଳାନଳ ତେଜ ଜାଣି ଆସଇ ପରମ ଯୋଗୀ । ୪୦୬ ।
ଇନ୍ଦ୍ର ଦେବତାଙ୍କୁ ରକ୍ଷା କରିବ କେହୁ ଆଜ
ବ୍ରହ୍ମା ବିଷ୍ଣୁ ମହେଶ୍ୱର କେ ରଖନ୍ତୁ ଦେବରାଜ । ୪୦୭ ।
ମନପବନ ଦଣ୍ଡ ଚଢି ନାରଦେ ଧାଇଁକାରେ ଅଇଲେ
ଇନ୍ଦ୍ର ଦେବତାଙ୍କୁ ଆସିଣ ବାରତା କହିଲେ । ୪୦୮ ।

---

୪୦୨।୨ ଇନ୍ଦ୍ର ଭୁବନେ ଯାଇ ଭେଟିଲେ ବଜ୍ରଧାରୀ ।
୪୦୨।୨ ଅମରାରି—ଅମରଶ୍ରେଷ୍ଠ, ଇନ୍ଦ୍ର ।

ଋଷି ପୁତ୍ରକୁ ତୁ ଯେ କଲୁ ପ୍ରାଣେ ଭ୍ରଷ୍ଟ
ତୋହୋର ତହିଁ ଆସୁଅଛି କୋପେ ତ୍ୱଷ୍ଟ । ୪୦୯ ।
ମନୁଅନ୍ତ ମହାତ୍ମା ସେ କଲ୍ପେ କଲ୍ପେ ତପୀ
ବ୍ରହ୍ମାର ଆୟୁଷ ସର ଯାହାର ଆୟୁଷ ବ୍ୟାପି । ୪୧୦ ।
ତାହାର କୋପ କରନ୍ତେ ଟଳଇ ହାଦେ ମେରୁ
ପଳାଇ ସମୁଦ୍ରେ ପଶ ଯା ଆଉ ସେଠେ କସ କରୁ । ୪୧୧ ।
ଇନ୍ଦ୍ର ବୋଇଲା ତ୍ୱଷ୍ଟା ମହର୍ଷିର କୋପେ
ସମୋଦ୍ର ଦହନ ହୋଇବ ତାହାର ଗରୁ ତାପେ । ୪୧୨ ।
ସେତେକ ମହାତମା ଯେବେ କୋପହିଁ କରିବ
ନାରିପୂଣ ଆନ୍ଧ କରି କେ ମୋତେ ରଖିବ । ୪୧୩ ।
ପଞ୍ଚ ଆତ୍ମା ଶରୀରୁଂ କାଢିଲା ସୁରପତି
ଧର୍ମେଣ ଆତ୍ମାସେ ନେଇ ଥୋଇଲାକ ଧାତି । ୪୧୪ ।
ଦୁଜ ଆତ୍ମା ନେଇ ପବନେ ଥୋଇଲା
ତିଜ ଆତ୍ମା ନେଇ ଅନ୍ତରିଛେ କଲା । ୪୧୫ ।
ଚତୁର୍ଥ ଆତ୍ମା ନେଇ ଅଶ୍ୱିନୀକ ଦଲା
ପଞ୍ଚମ ଆତ୍ମାକୁ ନେଇ କୁମାରେ ସମର୍ପିଲା । ୪୧୬ ।
ପଞ୍ଚ ଆତ୍ମା ପାଞ୍ଚଠାରେ ସୁନାଶୀର କଲା
ପାପ ଆତ୍ମା ଘେନଣ ପୁରନ୍ଦର ବସିଲା । ୪୧୭ ।
ତ୍ୱଷ୍ଟାସେ ଭେଟିଲେ ଆସି ବାସବର ଗ୍ରାମୁରେ'
କ୍ରୋଧଭରେ ଦେହ କମ୍ପଇ ଥରହରେ । ୪୧୮ ।
ବାସବଙ୍କୁ ଗୃହିଂ ବୋଲନ୍ତି ତପୋନିଷ୍ଠ
ତୁ ମୋହୋର ପୁତ୍ରକୁ ନାଶକଲୁ ରେ ଦୁଷ୍ଟ । ୪୧୯ ।
ଶରୀର ତୋହୋର ଭସ୍ମ ହୋଉ ବୋଇଲେ ଋଷି ତ୍ୱଷ୍ଟା । ୪୨୦ ।
ବାସବେ ବୋଇଲେ ତୁମେ ଶୁଣିମା ମୁନିବର
ବୃଥାର କୋପ କରିବା ଦୋଷ ନାହିଂ ମୋହୋର । ୪୨୧ ।
କୋପାନଳେ ଗୃହାନ୍ତେ ଅନଳ ଉଠିଲା
ଇନ୍ଦ୍ର ଦେବତାର ଶରୀର ଭସ୍ମ ହୋଇଗଲା । ୪୨୨ ।

---

୪୧୫।୧ ଦୁଜ ଆତ୍ମା—ଦ୍ୱିତୀୟ ସ୍ୱରୂପ, ୪୧୫।୨ ତିଜ- ତୃତୀୟ

ଆପଣେ ତ୍ୱଷ୍ଟାପୁତ୍ରେ ଯେ ବସିଲେ ଇନ୍ଦ୍ର ପଦେ
ପାଳଲେ ତ୍ରୈଲୋକ୍ୟ ସେ ପରମ ସାନନ୍ଦେ । ୪୨୩ ।
ବ୍ୟାସେ ବୋଇଲେ ହୋ ଶୁଣ ଦ୍ରୋପଦ ନୃପତ୍ତି
ତ୍ୱଷ୍ଟାର କୋପେ ଇନ୍ଦ୍ର ହୋଇଲ୍ ଭସ୍ମଗତ୍ତି । ୪୨୪ ।
ତାହାର ଭାରିଯା ଯେ ଅଛଇ ଦେବୀ ଶଚୀ
ଆକାଶ ଗଙ୍ଗାକୂଳେ ସେ ରୋଦନ କରୁଅଛି । ୪୨୫ ।
ସିଂହ ଶୁକଳ ଦ୍ୱାଦଶୀ ଚନ୍ଦ୍ରବାର
ଉତ୍ତରଷାଢା ନକ୍ଷତ୍ର ଭୋଗ ଅଛଇ ସେ ଦିନର । ୪୨୬ ।
ବୃଷଭ ବାହାନେ ବିଜେ ଉମା ମହେଶ୍ୱର
ବିଜେ କର ଆସୁଅଛନ୍ତ ଆକାଶ ଗଙ୍ଗା ତୀର । ୪୨୭ ।
ବୃଷଭ ରୁହାଇଣ ବୋଇଲେ ଶଶୀମୁଖୀ
ସ୍ତିରୀଏକ ରୋଦନ କରୁଛି ଅନାଥ ବଡ ଦୁଖୀ । ୪୨୮ ।
ସଦାଶିବ ବୋଇଲେ ସ୍ତିରୀ ଜନ୍ମ ବଡ ବାଇ
ଅପ୍ରସନ୍ନ ଜନନ୍ତ ଗୋ ଛୁଇଂତ ନ ଯୋଗାଇ । ୪୨୯ ।
ଗଉରୀ ବୋଲନ୍ତ ଶୁଣିମା ବିଶ୍ୱେଶ୍ୱର
ସ୍ତିରୀଜନ୍ମ ଗୋଟାକୁ ଦେବ ଦୋଷ ଯେ ଅପାର । ୪୩୦ ।
ଯେବେ ସ୍ତିରୀଏକ ରୋଦନ୍ତେ ଆରେକ ସ୍ତିରୀ ଯେ ରୁହାଇବ
ଅନ୍ୟ ଜାତି ହୋଇଲେ ଦୂରୁହିଂ ସମାର୍ଜିବ । ୪୩୧ ।
କଳିଦ୍ୱନ୍ଦ୍ୱ ହିଂସା ଯଦ୍ୟପି ସେହୁ କରିଥିବ
ରୋଦନ କାଳେ ଯାଇଂ ଅବଶ୍ୟ ରୁହାଇବ । ୪୩୨ ।
ଯେହା ବିଗ୍ଭର ନ କରନ୍ତ ଯେଉଂ ସ୍ତିରୀଜନେ
କାଠ ବେଙ୍ଗ କର ତାହାନ୍ତ ଜନ୍ମ କରଇ ଯମେ । ୪୩୩ ।
ସ୍ତିରୀଜନଙ୍କୁ ଦେବ ଅଛି ଯେସନେକ ଶାସ୍ତି
ତୁମ୍ଭେ କ୍ଷଣେକ ବିଶ୍ରାମ କର ଦେବ ମୁଂ ତାହାର କ୍ରୋଧ କରଇ ଶାନ୍ତ
। ୪୩୪
ଯେତେହେନ୍ତକ ଦୋଷକୁ ପାର୍ବତୀ ଭୟେ କରି
ସୁମ୍ଭୋମା ସ୍ତିରୀମାନେ ଯେହା ପରମାଣି ବିଗ୍ଭରି । ୪୩୫ ।
ଈଶ୍ୱରଙ୍କୁ ବୁଝାଇ ଦେବୀ ବୃଷଭୁଂ ଓହ୍ଲାଇଲେ
ନ କାନ୍ଦ ଆପୀ ବୋଲ ମୁଖେ ହସ୍ତ ଦିଲେ । ୪୩୬ ।

ସୁନ୍ଦର ସୁଲକ୍ଷଣ ସୁକୁମାର ତୋର କାୟେ
ପ୍ରତ୍ୟକ୍ଷେ ଦିଶୁଅଛୁ ଅମର ନାୟେକାଣୀ ପ୍ରାୟେ । ୪୩୭ ।
ମାଗ ଗୋ ମହାସ୍ମାଣୀ ମନେ ଯାହା ଇଚ୍ଛୁ
ଅବଶ୍ୟ ପ୍ରାପତ ହୋଇବ ମନେ ଯାହା ବାଞ୍ଛୁ । ୪୩୮ ।
ଆମ୍ଭେ ସେ ଅଟୁ ହାଦେ ଶଙ୍କର ଗିରିଜା
ମନ କାମନା ସିଦ୍ଧି ହୋଉ ତୁ ନିଜ ପୁରକୁ ଯା ଯା । ୪୩୯ ।
ପତିଂ ଦେହି ପତିଂ ଦେହି ବୋଲି ବୋଇଲେ ପାଞ୍ଚଥର
ତୋଷେ ହର ପାର୍ବତି ବୋଇଲେ ତୋର ହୋଉ ପଞ୍ଚ ବର । ୪୪୦ ।
ଶଚୀ ବୋଇଲେ ତୁମ୍ଭେ ହର ଯେ ପାର୍ବତି
ଯେକ ସ୍ତ୍ରୀଙ୍କ କେହ୍ନେ ହୋଇବ ପାଞ୍ଚପତି । ୪୪୧ ।
ଈଶ୍ୱରେ ବୋଇଲେ ମା ଗୋ ନ ଭାଳ ବିକଳ
ତ୍ୱଷ୍ଟାର କୋପେ ଦହନ ହୋଇଲା ଆଖଣ୍ଡଳ । ୪୪୨ ।
ପଞ୍ଚ ଆତ୍ମା ଥୋଇଲା ଯେ ପଞ୍ଚ ଠାବେ କରି
ସେ ପାଞ୍ଚ ଆତ୍ମା ଯେ ମର୍ତ୍ତ୍ୟେଣ ଅବତରି । ୪୪୩ ।
ଧର୍ମେ ହାଦେ ଯେବଣ ଆତ୍ମାକୁ ଥୋଇଲା
ଧର୍ମତେଜ ଘେନ ଯୁଧିଷ୍ଠିର ଉପୁଜିଲା । ୪୪୪ ।
ପବନେ ଥୋଇଲା ଯେବଣତ୍ୱଂ ଆତ୍ମା
ପବନ ତେଜ ଘେନ ଉପୁଜିଲା ବୀର ଭୀମା । ୪୪୫ ।
ଇନ୍ଦ୍ର ଯେବଣ ଆତ୍ମା ଶୂନ୍ୟେଣ ଥୋଇଥିଲା
ବାସବର ତେଜ ଘେନ ସେ ଅର୍ଜୁନ ଉପୁଜିଲା । ୪୪୬ ।
ଅଶ୍ୱିନୀରେ ଥୋଇଲା ଯେବଣ ଆତ୍ମା ଗୋଟି
ଅଶ୍ୱିନୀ ତେଜ ଘେନ ନକୁଳ କୁମାର ସେଟି । ୪୪୭ ।
କୁମାରେଣ ଥୋଇଥିଲା ଯେବଣ ଆତ୍ମାୟେକ
ବେନ ସତ୍ତ୍ୱ ବାଜ ସେ ସହଦେବ ଧାର୍ମିକ । ୪୪୮ ।
ତୁ ଶଚୀ ଉପୁଜିବୁଂ ଦ୍ରୋପଦର ଯଗେ୍ୟଂ
ପଞ୍ଚ ପାଣ୍ଡବଙ୍କ ନେଇ ଦିଅ ତୋର ଅଙ୍ଗେ । ୪୪୯ ।
ୟେତେ ବୋଲଣ ହର ପାର୍ବତି ଆଗ୍ୟାଂ ଦିଲେ
ସେ ଶଚୀଦେବୀ ତୋର ଯାଗେ ଉପୁଜିଲେ । ୪୫୦ ।

୪୪୮।୨- ବେନ ସଂହରେ ଜାତ ସହଦେବ ଧାର୍ମିକ (ସହରେ-ବେନଙ୍କ ଶକ୍ତି ସଂଗ୍ରହରେ)

ବ୍ୟାସେ ବୋଇଲେ ଶୁଣ ଦ୍ରୋପଦ ନୃପତ୍ୟ
ଦୋହିତାର ଆଦିକଥା ତୋହୋର ଅଟଇ ଯେମନ୍ତ । ୪୫୧ ।
ଯେ ପଞ୍ଚ ପାଣ୍ଡବେ ଯେକା ଯେ ଦ୍ରୋପଦୀ
ସ୍ୱର୍ଗ ନବାରଣେ ମଞ୍ଚରେ ଉତପତ୍ତି । ୪୫୨ ।
ଯେ ପଞ୍ଚ ମୂରତିକ ତୁ ନ ମଣ ଭିନ୍ନାଭିନ୍ନ
ଯେକଲଯେ କରଣ ତୁ ପାଣ୍ଡବନ୍ତ ବର୍ଣ୍ଣ ଚିହ୍ନ । ୪୫୩ ।
ଶୁଣି ପରମ ସାନନ୍ଦ ଚନ୍ଦ୍ରଧ୍ୱଜର ସୁତ
ବ୍ୟାସଙ୍କୁ ସ୍ତୁତି ସେହୁ କରଇ ବହୁତ । ୪୫୪ ।
ନମସ୍ତେ ତ୍ୱେ ବ୍ୟାସଦେବ ପାରେଶ୍ୱର ଶିଷ
ନାଉକା ସ୍ୱମାନେ ଯାହାର ତେଜହିଂ ସ୍ୱକାଶି । ୪୫୫ ।
ସତ୍ୟବତୀ ନନ୍ଦନ ତୁ ଭୂତ ଭବିଷ୍ୟ ଗ୍ୟାଂତା
ସାର୍ଥକ ପୁରୁଷ ତୁ ଅଦୃଷ୍ଟିକ ବକତା । ୪୫୬ ।
ଅଗ୍ୟାମୀକୁ ଗ୍ୟାନ ଦିଅନ୍ତା ଅଗତିକୁ ମୋକ୍ଷଗତି
ମୂର୍ଖକଇଂ ପଣ୍ଡିତପଣ ଦିଅଇ ତୋହୋର କୃତଶ୍ରୁତି । ୪୫୭ ।
ଅଣାକାର ପୁରୁଷ ତୁ ବାଟଲୁ ବର୍ଣ୍ଣ ଚିହ୍ନ
ଅଜପା ଲୟ କରି ତୁ ଠୂଳ କଲୁ ଶୂନ୍ୟ । ୪୫୮ ।
ହେମ ଶିଶିର ବସନ୍ତ ଗ୍ରୀଷମ ବରଷା ଶରଦ ଛଅଋତୁ
ଧାତୁବାଦ ପୁରୁଷ ତୁ କଲୁ ସମସ୍ତ ହେତୁ । ୪୫୯ ।
କୋଟିଯେ ବ୍ରହ୍ମାଣ୍ଡ ଯାହାର ଉଦର ଭିତରେ
ଶତେ ପ୍ରଳୟ ବଞ୍ଚିଲୁ ତୁ ନାରାୟଣ ଗର୍ଭରେ । ୪୬୦ ।
ପରମାନନ୍ଦ ପୁରୁଷ ତୁ ଅଟୁ ଗ୍ରନ୍ଥକଇ କବି
ମୁହିଂ କ ବର୍ଣ୍ଣିନା ତୋତେ କହିତେ ପାରିବି । ୪୬୧ ।
ଅନର୍ଗଳା ସରସ୍ୱତୀର ତୁ ଭଣ୍ଡାର ଅଧିକାରୀ
ନ କହି ବଢିସିଲୁ ତୁ କଳପ କୋଟି ଗୃହ । ୪୬୨ ।
କାଳ ବଞ୍ଚାଇବାକୁ ସାମରଥ ଯେବଣ ଋଷି
ବ୍ରହ୍ମାର ବ୍ରହ୍ମପଦକୁ ଯାର ତଳଯେ ଅଭ୍ୟାସି । ୪୬୩ ।
ତୋହୋର ପଦ୍ମପାଦେ ଶରଣ ମୋର ନତ୍ୟେ
ଶୂଦ୍ରମୁନି ସାରଳା ଦାସ ବଦନ୍ତି ସୁଚିତ୍ତେ । ୪୬୪ ।

---

୪୫୭। ୨ ମୂର୍ଖ ପଣ୍ଡିତ ହୋଅଇ ଶୁଣି ତୋ ଭାରତୀ ।

ଜମ୍ବୁ ଦ୍ୱୀପ ଭାରତ ଭାଷିତ ତୋର ଭାଷା
ସର୍ବ ଦ୍ୱନ୍ଦ ପରତ୍ୟାଜ ମୁଁ ବଳାଇଲି ମନୀଷା । ୪୬୫ ।
ନାରାୟଣ ବଲ୍ଲଭୀ ଗୋ ଆଜ୍ଞାଂ ମୋତେ ଦେବା
ଗିରିଜା ବାକ୍ୟରେ ମୁଁ ହୋଇଲି ମାନବା । ୪୬୬ ।
ଇତି ଶ୍ରୀ ମହାଭାରତ ଆଦିପର୍ବ ଥାପି
ସଂସାର ଜନ ହିତେ ମୁଁ ବଖାଣିଲି ଅଦ୍ୟାପି । ୪୬୭--୧୧୫୮୭ ।



## ଦ୍ରୌପଦୀ ପରିଣୟ

ବ୍ୟାସଙ୍କୁ ଭକ୍ତି ସନ୍ତୁଂ କଲେକ ଦ୍ରୁପଦ
ନାରାୟଣ ସ୍ୱାମୀ ଶୁଣି ଚିତ୍ତେ ପରମ ସାନନ୍ଦ । ୧ ।
ବନ୍ଧୁ ବର୍ଗ କୁଟୁମ୍ବ ପତ୍ନୀମାନଙ୍କ ଘେନ
ତତକ୍ଷଣେ ବିଜେକଲେ ରାମକୃଷ୍ଣ ବେନ । ୨ ।
ଦେଖିଣ ଦ୍ରୁପଦ ଯେ ଅନେକ ଭୟ କଲା
ଅଶକ୍ୟ ଦେଖି ଦୂରୁଂ ଦଣ୍ଡଲାଇ ସୁତିଲା । ୩ ।
ସ୍ୱାମୀ ଆପଣେ କୋଳ କରି ତୋଳି ଧଇଲେ· ଚକ୍ରଧର
ଅପାପୀ ପୁରୁଷ ତୁ ଆମ୍ଭର ଶଶୁର । ୪ ।
ଯେଣୁକା ଦ୍ରୌପଦୀ ଯେ ଜାତଲା ତୋର ବଂଶ
ସୁଦୋହିତାଯେ ଜାତକଲୁ ତୋହୋର ସମସ୍ତେ ହୋଇଲୁଂ ବଶ । ୫ ।
ଯେଣୁକା ଦୋହିତାଯେ ଦେଇ ଜିଣିଲୁ ସ୍ୱର୍ଗଲୋକ୍ୟ
କୋଟିଏ ପୁରୁଷର ତୋର ଦହିଜ ହୋଇଲା ପାତକ । ୬ ।
ଯେ ସେ ପଣ୍ଡିତ ଧାର୍ମିକ ସୁଜ୍ଞାନ
ବିପ୍ରର ଭଆନ୍ତି ସେ ଶୁଭ କାର୍ଯ୍ୟମାନ । ୭ ।
ସୁବେଳେ ସୁପୁରୁଷ ଅତି ଭାଗ୍ୟେଣ ପାଇ
ସୁରମୋହନ ପୁରୁଷେ ତୁ ପାଇଲୁ ଜୁଆଇଂ । ୮ ।
ଅନେକ ପ୍ରଶଂସା କଲେ ସନ୍ତୁଂ ଦେବ କୃଷ୍ଣ
ଦ୍ରୁପଦ ବୋଇଲା ମୋହୋର ଜ୍ଞାନ ଭ୍ରଷ୍ଟ । ୯ ।

୩।୨ ଅଶକ୍ୟ—ଅସମ୍ଭବ, ଅଭୂତ ଅର୍ଥରେ ।

ମହତ ପୁରୁଷଙ୍କୁ ମୋର ପୋଷ୍ୟେ ବୋଇଲେ ହିଂସାସ
ଏବେ ସ୍ୱାମୀ ପାଣ୍ଡବେ ମୋର ଉପେକ୍ଷିବା ଦୋଷ । ୧୦ ।
ଅଶ୍ରୁଜଳ ହୋଇ ଦ୍ରୌପଦେ ଅନେକ ଭୁସ୍ତି ବୋଲି
କ୍ଷଣେ କ୍ଷଣେ ମହାରାଜା ସୁତଇ ଗଡ଼ଧାଳି । ୧୧ ।
ମୁହିଂ ଅଗ୍ୟାନ ଦେବ ଦୋଷ ମୋହୋର ନ ଘେନମା
ଅନେକ ଅପରାଧ ସ୍ୱାମୀ କରିବା ମୋର କ୍ଷମା । ୧୨ ।
ମୁହିଂ ଭକ୍ଷୁକ ପ୍ରାଯ୍ୟେ ମଣିଥିଲି ସାଂସାରିକା ଧର୍ମେ
ଶଶୁରନ୍ତ ପଦକୁ ମୁହିଂ କସ କ୍ଷମେ । ୧୩ ।
ପୁଣ ପୁଣ ଦ୍ରୋପଦ ପୁହନ୍ତ ଘେନ ଲେଟି
ଆପଣେ କୋଳ କର ଧଇଲେ ଯୁଦ୍ଧେଷ୍ଟି । ୧୪ ।
ଅପାପୀ ପୁରୁଷ ତୁ ଅଟୁ ପୁଣ୍ୟମାନୀ
ପରମ ସାଧବୀ ହୋହ୍ୱିତା ତେ.ହୋର ଯିଗ୍ନସେନୀ । ୧୫ ।
ଇହଲୋକ ପରଲୋକ ତୁ ତାରିଲୁ ସମସ୍ତ
ଅଶ୍ୱମେଧ ଯାଗ କଲୁ ତୁ ଦ୍ରୋପଦ ନୃପତ୍ୟ ।୧୬ ।
ଯେହେନେକ କର୍ମେଣ ଯେବେ ଉପୁଜଇ ଦୁଲଣୀ
ପୁଣ୍ୟବନ୍ତ ଧାର୍ମିକ ଦେଖି ପ୍ରଦାନ କରିବ ଜାଣି । ୧୭ ।
ଅମହତ ଅପଣ୍ଡିତ ଅକୁଳୀଣ ଅଜାତି
ଅବଗୃରେ ଦଲେ ତହିଂ ଉପୁଜଇ ଅନେକ ଶାସ୍ତି । ୧୮ ।
ଓହୋକୁଳ ନାଶପାଇଂ କଳଙ୍କ ଦୋଷ ଥିଲେ
ବଡ଼ାଇ ଦୁରାପଦ ନ ବଗୃର କାର୍ଯ୍ୟ କଲେ । ୧୯ ।

---

୧୦।୨ ଏବେ ସ୍ୱାମୀ ପାଣ୍ଡବେ ମୋର ନ ଘେନମା ଦୋଷ ।
୧୨ ପଦ ସ୍ଥାନରେ ଅନ୍ୟ ଏକ ପୋଥିରେ ଅଧିକା ପାଠ—
ବିସରିଲି ବ୍ୟାସେ ଦେଇଥିଲେ ଯେ ଆଦେଶ
ଅଗ୍ୟାନ ପାମର, ପାଣ୍ଡବଙ୍କୁ କଲି ଦୋଷ ।
ମୁଇଂ ଅନାଥ ସ୍ୱାମୀ ତୁମ୍ଭରିଇଂ ବିନା
ଏବଗ୍ରାସ୍ୱାନାଥ ଭଗତ ଘେନ ଜନା ।
୧୯।୧ ଓହୋକୁଳ—ଉଭୟକୁଳ ।

କଳଙ୍କ କଳିଯୁଗ ଯେ ଅମିତ ଅପାର
ପଣ୍ଡିତ ଜନମାନେ ଯେହୁ ବିଗ୍ରହ କାର୍ଯ୍ୟ କର । ୨୦ ।
ପରମାଣି ବୁଝିଲେ ସମସ୍ତ ପୁଣ୍ୟ ବାଟ
ଅବିଗ୍ରହରେ କାର୍ଯ୍ୟ କଲେ ସକଳ ଧର୍ମ ନଷ୍ଟ । ୨୧ ।
ସ୍ୱାର୍ଥେ ଚିହ୍ନ ଲେଖନ କଲେ ଉତ୍ତସ୍ଥ ମାଠିଆ
ଦେବତା ପ୍ରାୟେ ଆରାଧନା କର ତାହା । ୨୨ ।
ନବତନ ଘଟ ଯେ କୁମାର୍ଗେ ପଡ଼ଇ
ଅମିତ ଠାବେ ପଡ଼ଲେ କେହି ନ ଛୁଅଇଂ । ୨୩ ।
ଯୁଧିଷ୍ଠିର ବୋଇଲେ ଆମ୍ଭେ ନ ଥିଲୁ ଆରମ୍ଭେ
ଗୋପ୍ୟାନ ସରୂପ ଚିହ୍ନି ନୁଆଇଲ ତୁମ୍ଭେ । ୨୪ ।
ଧାର୍ମିକ କଥା କହି ଯୁଧିଷ୍ଠିର ସମାଜି
ଶୁଣିଲ ଭସ୍ମ ମାନ ଉତନ୍ତି ଭାବେ ଭଜି । ୨୫ ।
କଳଙ୍କ ଗୁଣ୍ଡ ଯେତେବେଳେ ନିକଳଙ୍କ ହୋଇଲା
ଅଦୃଶ୍ୟମାନ ଯେ ସବୁ ଦୃଶ୍ୟ ହୋଇଲା । ୨୬ ।
ନାରଖାର ହିଶୁଥିଲ ମେବଣ କୁଶଳଶାଳ
ଦ୍ରୋପତ ଦେଖିଲା ଯେବେ ବାରମ୍ବାର ମଣ୍ଡଳ । ୨୭ ।
ଶୂନ୍ୟେଣ ଅଇଲେ ଯେ ଦିଗପାଳମାନେ
ଐରାବତ ଆରୋହି ବଜ୍ରପ୍ରେ ମଘବାନେ । ୨୮ ।
ଯେହୁ ଶୁଣି ଅଗସ୍ତିଙ୍କି ବଇବସୁତ ମନୁ ବୋଇଲେ
ଇନ୍ଦ୍ର ଦେବତାଙ୍କୁ ତ୍ୱଷ୍ଟା ମହର୍ଷି ନାଶକଲେ । ୨୯ ।
ଯେବେ କେଉଁ ଇନ୍ଦ୍ର ହୋଇଲା ଅଗସ୍ତି ଯେ
ହିଗ୍ରହ ଲାଗିଲା ମୋତେ ବଡ଼ାଇ ସନ୍ଦେହେ । ୩୦ ।
ବଦଯୁନ୍ତ ଅଗସ୍ତିପ୍ରେ କୁମ୍ଭଋଷିର ବାଳ
ଶୁଣ ସାବଧାନେ ହିଲଙ୍କ ଦେଶର ଆଖଣ୍ଡଳ । ୩୧ ।
ସାତଗଣ ତ୍ୱଷ୍ଟାପ୍ରେ ଯେ ନାଶ କଲେ ଅସ୍କନ୍ଦ
ଅମର ଭୁବନେ ସେ ବସିଲେ ଇନ୍ଦ୍ରପଦ । ୩୨ ।

---

୨୮।୧ ଶୂନ୍ୟେଣ ଦେଖିଲେ ଯେ ଦିଗପାଳମାନେ ।
୩୨।୧ ଅସ୍କନ୍ଦ—ଇନ୍ଦ୍ର

ତପୋଧନ ଲୋକ କ ଜାଣଇ ଭିଆଣ
ଅନର୍ଥାପ ହୋଇଲା ସମସ୍ତ ଅଧାରଣ । ୩୩ ।
ଅମର ବଳାସୁଣୀ ଚଉଷଠୀ କୋଟି
ନାୟେକ ନ ପାଇଣ ସେ ସରସେ ନ ଖଟି । ୩୪ ।
ନିତ୍ୟକର୍ମ ସାରନ୍ତେ ମୁନିଙ୍କର ଅସ୍ତ ହୋୟେ ବେଳ
ଯେ ଯାହାର ଠାବେ ଥାନ୍ତି ନ ଚଳନ୍ତି ଦିଗପାଳ । ୩୫ ।
ଯେକଦିନେ ପିତାମହ ବିଜୟେ ଅମରେ
ତ୍ୱଷ୍ଟାୟେ ପୁଚ୍ଛା କଲେ ପିତାର ଆଗରେ । ୩୬ ।
ସୁରଗଣ ସ୍ୱର୍ଗ ଆମ୍ଭେ ଯେତେକାଳ ପୁରଛିଲେ
ଆମ୍ଭଙ୍କୁ ଯେ ନ ଯୋଗାଇଂ ଆମ୍ଭେ ଥିବୁ ତପବଳେ । ୩୭ ।
ତୁ ଦେବ ଜଗତ ପିତାମହ ଧାତା
ଅମରଙ୍କୁ ଆନ ଜଣେ ଭିଆଅ ସୃଷ୍ଟିର କରତା । ୩୮ ।

---

୩୫।୨ 'ଯେ ଯାହାର ଠାବେ ଥାନ୍ତି ହୋଇଣ ନିଶ୍ଚଳ,' ଏହି ପାଦାନ୍ତ ପରେ ପୋଥି ବିଶେଷରେ ଅଧିକା ପାଠ—

ରମ୍ଭା ମେନକା ଉର୍ବଶୀ ତିଲୋତ୍ତମା ବାଲୀ
ଚଉଷଠୀ କୋଟି ନାୟିକାୟେ ହୋଇ ଯେକମେଳ ।
ତ୍ୱଷ୍ଟାଋଷିଙ୍କ ପାଶରେ ପ୍ରବେଶ ହୋଇଲେ
ସକଳ କାମିନୀମାନେ ନମସ୍କାର କଲେ ।
ସୁକଲ୍ୟାଣ ବାଞ୍ଛାକଲେ ତ୍ୱଷ୍ଟା ମୁନିବର
କି କାର୍ଯ୍ୟରେ ଆଗମନ ଯେଠାକୁ ତୁମ୍ଭର ।
କନ୍ୟାୟେ ବୋଇଲେ ତୁମ୍ଭେ ଶୁଣ ତପସ୍ୱୀ
ଯେ ଇନ୍ଦ୍ର ହେବ ସେ ଆମ୍ଭ ସଙ୍ଗତେ ବିହରି ।
ଚଉଷଠୀ କୋଟି ଆମ୍ଭେ ଅଟୁଂ ବିଦ୍ୟାଧରୀ
ସମସ୍ତ ନାୟେକା ଆମ୍ଭେ ଇନ୍ଦ୍ର ମନୋହାରୀ ।
ସ୍ୱର୍ଗପୁରେ ଇନ୍ଦ୍ର ହେଲ ତୁମ୍ଭେ ତପୋନିଷ୍ଠି,
ଆମ୍ଭେମାନେ ବିରହରେ କାମେ ହେବୁ କଷ୍ଟି ।
ଯେହା ଶୁଣି ତ୍ୱଷ୍ଟା ଋଷି ହେଲେ ଅମ୍ବୀଭୂତ
ତତକ୍ଷଣେ ସୁମରଣା କଲେକ ବିଧାତ ।
ଜାଣି ପିତା ବିଜେ କଲେ ଅମର ଭୁବନେ
ତ୍ୱଷ୍ଟାଋଷି ପୁଚ୍ଛା କଲେ ବିଧାତା ସନ୍ନିଧାନେ ।

ଦହନ ହୋଇଲା ଇନ୍ଦ୍ର ଯେବଣ ଠାବରେ
ସେ ପାଉଁଶ ଘେନିଲେ ବ୍ରହ୍ମା ବେଗେ ନିଜ କରେ । ୩୯ ।
କମଣ୍ଡଳୁଁ ଜଳ ସିଞ୍ଚି ତାହା କଲେ ଲୋଚ
ଶରୀର ସରୂପ କରି ପିତୁଳାପ୍ରାୟେ ରଞ୍ଚି । ୪୦ ।
ଅମୃତ ଦୃଷ୍ଟି କରି ଗୃହ୍ୟଂଲେ ଜୀବନ୍ୟାସ ମନ୍ତ୍ର
କରତାରି ବଚନେ ପୁରୁଷ ହୋଇଲେ ସମ୍ଭୂତେ । ୪୧ ।
ସରୂପେଣ ଇନ୍ଦ୍ର ପୁରୁଷେ ସମ୍ବାଦ
ଅମର ସ୍ୱର୍ଗପଦ ଦିଲେ ଅମରାଧି । ୪୨ ।
ତୁ ଯାହା ପୃଚ୍ଛାକଲୁ ବଇବସ୍ୱତ ମନୁ
ସେହି ଅସ୍କନ୍ଦ ପୁରୁଷ ହୋଇଲା ପିତାମହ ଧ୍ୟାନୁଁ । ୪୩ ।
ଆକାଶ ଗୁଡ଼ଲେ ଭୃଷ୍ଟା ମହର୍ଷି
ଆକାଶଗଙ୍ଗା କୂଳେ ପୁଣିହିଁ ତପେ ବସି । ୪୪ ।
ଦିଗପାଳମାନଙ୍କୁ ଯଜ୍ଞଂ ଦେଖିଲା ଦ୍ରୋପଚ୍ଯ୍ୟ
ଅନେକ ସାନନ୍ଦେ ରାଜା ହୋଇଲା କୃତକୃତ୍ୟ । ୪୫ ।
ଦିଗପାଳମାନେ ଯଜ୍ଞଂ ବିଜେ କଲେ କୁଶଳଶାଳେ
ଆକାଶ ସଭା ଗୁଡ଼ ବିଜୟେ ଆଖଣ୍ଡଳେ । ୪୬ ।
ବିଭା ଯୋଗାଡ଼ ଘେନି ଦ୍ରୋପଦେଶ୍ୱର ରାଜା
ଯୁଧିଷ୍ଠିରଙ୍କ ପଦ୍ମପାଦେ କଲେ ପାଦ ପୂଜା । ୪୭ ।
ଦେବତାନ୍ତ ଆଦି କରି ବ୍ରହ୍ମା ବରଣ କଲା
ବିଦ୍ୟାରାଜ ମନ୍ତ୍ରେ ଶୂନ୍ୟ ପୁରୁଷନ୍ତ ତୋଷିଲା । ୪୮ ।
ଋଷିମାନନ୍ତ ସେ ସବୁନ୍ତ କଲା ପୂଜା
ଅଷ୍ଟକୁଳା ନାଗନ୍ତ ସବୁନ୍ତ ବରଣ କଲା ରାଜା । ୪୯ ।
ପ୍ରଥମ ଦିବସ ସେ ବିଭାର ଯୋଗାଡ଼ କରି
ବିଚକ୍ଷଣ ବ୍ରାହ୍ମଣେ ସେ ଅନ୍ନ ସୁପ୍ରକାରି । ୫୦ ।
ଋଷିମାନନ୍ତ ସେ ଦିଲେ ଗଣ୍ଡା ମାଂସେ ଭୋଜ
କନ୍ଦମୂଳ ଦାରାକ୍ଷ ଯେ ଯାହା ପାରେ ଭୁଞ୍ଜି । ୫୧ ।
ଅମିଷ୍ଟ ରସ ଭୋଜନ ରାମକୃଷ୍ଣ ଭାଇ ବେନି
ଭୁଞ୍ଜାନ୍ତ ଯଦୁବଂଶ ଭୋଜବଂଶ ଦ୍ୱାରକା ସଇନି । ୫୨ ।

---

୪୫।୧ ଦ୍ରୋପଚ୍ଯ୍ୟ—ଦ୍ରୋପଦ ।

ଅଷ୍ଟାଦଶ ବଂଶ ନାୟୁକା ଘେନାଇ ଅଚ୍ୟୁତ
କରନ୍ତି କ୍ରୀଡାରଙ୍ଗ ଦେବ ଯେ ଅନନ୍ତ । ୫୩ ।
ନିକଟ ରାଜାମାନେ ଦ୍ରୋପଦର ବନ୍ଧୁଗଣ
ସେ ରାଜାମାନଙ୍କ ଦ୍ରୋପଦ କଲା ନିମନ୍ତ୍ରଣ । ୫୪ ।
ବାରତା ପାଇଣ ସେ ସମସ୍ତ ନୃପତି
ଅନେକ ଦଣ୍ଡରାୟେ ଚଳିଣି ଆସନ୍ତି । ୫୫ ।
କୁମ୍ଭମାସ କୃଷ୍ଣପକ୍ଷ ତୃତୀୟା ଅନ୍ତରେ ଚଉଠି
ବୃହସ୍ପତି ବାର ଉତ୍ତରା ଫାଲଗୁନି ନକ୍ଷତ୍ର ଘେଣି । ୫୬ ।
ବସନ୍ତ ଋତୁ ମଧ୍ୟେ ବୃହସ୍ପତିଙ୍କର ବେଳ
ହରିକୁ ଧଇଲେ ତହିଁ ଶୁଭ ଅନକୂଳ । ୫୭ ।
କର୍କଟ ଲଗ୍ନରେ ଯେ ପାପଗ୍ରହ ଭେଦ ନାହିଁ
ବାଲବ ନାମେ କରଣ ଉତ୍ତରେ କୌଳବ ଭୋଗ ତହିଁ । ୫୮ ।
ତାର ଚନ୍ଦ୍ର ଉତ୍ତମ ଯେ ଶୁଭ ନାମେ ଯୋଗ
ମକର ସଂକ୍ରାନ୍ତି ଠାରୁ ତିନି ଦିନ ଭୋଗ । ୫୯ ।
ତୃତୀୟରେ ଚନ୍ଦ୍ର ଯେ ଦଶମେ ବୃହସ୍ପତି
ସପ୍ତମେ ଆଦିତ୍ୟ ମଙ୍ଗଳ ପଞ୍ଚମେ ଥିତି । ୬୦ ।
ନବମେ ଶନିଚର ଏକାଦଶେ ଭୋଗ ରାହୁ
ପାପ ଗ୍ରହ ନାହିଁ ବୋଲି ଅନକୂଳ କଲେ ତହୁଁ । ୬୧ ।
ଯୁଧିଷ୍ଠିରଦେବଙ୍କର ଅଟଇ ରାଶି ମେଷ ।
ଭୀମସେନଦେବଙ୍କର ଅଟଇ ରୋହିଣୀ ବୃଷ । ୬୨ ।
ଅର୍ଜୁନଦେବଙ୍କର କନ୍ୟା ଉତ୍ତରା ଫାଲଗୁନି
ସ୍ୱାତୀ ତୁଳରାଶି ନକୁଳ କୁମାର ଘେନି । ୬୩ ।
ସହଦେବଙ୍କର ଶତଭିଷା କୁମ୍ଭ ରାଶି
ଜନ୍ମ କର୍ମ ଆଦି ବୁଝିଣ ସନ୍ନ୍ୟାସି । ୬୪ ।
ମଙ୍ଗଳ ବର୍ଦ୍ଧମାନ କରନ୍ତି ପୁରୋହିତେ
କୁଙ୍କୁମ ଲେପନ କରନ୍ତି ସବୁଙ୍କର ଗାତ୍ରେ । ୬୫ ।

---

୬୦।୨ ଥିତି—ସ୍ଥିତି, ଅବସ୍ଥାନ ।

ଯେକେ ଆରେକେ ହାସ୍ୟ ପରିହାସ୍ୟ
ଉଛବ ମଙ୍ଗଳ ଯେ ଉପୁଜଇ ବଢାଇ ହରଷ । ୬୬ ।
ଯେ ବଧୂ କୁତୋହୋଳ ଅପ୍ରମିତ ମଙ୍ଗଳ
ଦେବ ମାନୁଷ୍ୟେ ହୋଇଲେ ସର୍ବେ ମେଳ । ୬୭ ।
ଗଙ୍ଗା ଜଳେ ପଶିଣ ପଖାଳନ୍ତି କାୟେ
ନଦୀଯାକ ହଶିଲ ଯେ କୁଙ୍କୁମ କର୍ପୂ ପ୍ରାୟେ । ୬୮ ।
ଯେସନେକ ଉଛବ ଦ୍ରୋପଦର ପୁରୀ
ଦେବତା ସମାନେ ହଶନ୍ତି ନରନାରୀ । ୬୯ ।
ବହୁତ ଜନ ମିଳି ଗୀତରସ ଗାଇ
ଦେଖୀ ଦେବନ୍ତି ଗନ୍ଧ ପୁଷ୍ପ୍ୟ ଭୂଷଣ କରାଇ । ୭୦ ।
ବରକନ୍ୟାକୁ କରାନ୍ତି ବେଶ ଯେ ବେଶନ
ଦ୍ରୋପଦୀଙ୍କି ପଚାରନ୍ତି ବ୍ୟାସ ମହାମୁନ୍ୟ । ୭୧ ।
ଆଲ୍ଲ ପାଣ୍ଡବେ ଯେ ଅଛନ୍ତି ପାଞ୍ଚ ମୂରତି
ଯେ ପାଞ୍ଚଙ୍କର ମଧ୍ୟେ କାହାକୁ ବଳଇ ତୋ ମତି । ୭୨ ।
ବ୍ୟାସଙ୍କର ବଚନେ ବୋଲଇ ଯିଜ୍ଞସେନୀ
ଯେ ମୋହୋର ବଚନ ଶୁଣିମା ମହାମୁନି । ୭୩ ।
ତୁମ୍ଭେ ବ୍ରହ୍ମବେତ୍ତା ଗୁରୁ ପରମ ଗୁରୁ
ତୁମ୍ଭର ସ୍ମୁଖରେ କେ ମିଥ୍ୟା କହିତେ ପାରୁ । ୭୪ ।
ପ୍ରତକ୍ଷେ ବଳଯେ କରଛନ୍ତି ପିଅର ମାୟେ
ପାଞ୍ଚହେଂ ହଶନ୍ତି ମୋତେ ଯେକା ଇନ୍ଦ୍ର ପ୍ରାୟେ । ୭୫ ।
ବ୍ୟାସେ ବୋଇଲେ ହୋ ଦ୍ରୋପଦ ଶୁଣିଲଟିକି ପ୍ରତ୍ୟକ୍ଷ
ଆମ୍ଭର ବଚନ ତୁ ଯେ କରୁଥିଲୁ ମିଛ । ୭୬ ।
ଦ୍ରୋପଦ ବୋଇଲ ତୁମ୍ଭେ ପ୍ରତକ୍ଷେ ବ୍ରହ୍ମବେତ୍ତା
କେ ନିନ୍ଦା କରିବ ତୁମ୍ଭର ହବ୍ୟ କଥା । ୭୭ ।
ବ୍ୟାସଙ୍କର କୋଳେ ବସିଲେ ପାଣ୍ଡବେ ପାଞ୍ଚ ଭ୍ରାତଥ
ମହାବାକ୍ୟ କରନ୍ତି ଧୌମ୍ୟ ପୁରୋହିତେ । ୭୮ ।
ଦେଶ କାଳ ବାକ୍ୟ କରନ୍ତି ପଠନ
ଦେବ ଦେବତାମାନନ୍ତ କରନ୍ତି ନିମନ୍ତ୍ରଣ । ୭୯ ।

ଶ୍ରୀରାମ ମୁଦ୍ରା ଶିଳା ସ୍ନାହାନର ପାଣି
ପାଣ୍ଡବେ ଦ୍ରୋପଦୀ ଶିରେ ନଉଡନ୍ତ ଆଣି । ୮୦ ।
ଦେବ ପୂଜା ବ୍ରହ୍ମା ବରଣ ଦଇବତ
ଶୀତଳ ଦ୍ରବ୍ୟ ଦିଲେ ଅଷ୍ଟକୁଳା ନାଗନ୍ତ । ୮୧ ।
ଶଙ୍ଖପଦ୍ମ ମହାପଦ୍ମ କର୍କୋଟକ କୁଳକ
ବାସୁକୀ ତକ୍ଷକ ଯେ ଅଟେ ଅନନ୍ତକ । ୮୨ ।
ସଗୋତ୍ର ବାକ୍ୟେଣ ସିଉକାର ସାର
ସର୍ବେ ଆନନ୍ଦେ ବେଦଧ୍ୱନି କରି । ୮୩ ।
ଆଷାଢ ସାମବାକ୍ୟେ ଦ୍ବୃଢ ବନ୍ଧନ ସୁତା
କୁଙ୍କୁମ ବର୍ଣ୍ଣ କରି କାନ୍ଧରେ ଭରିଲେ ପଇତା । ୮୪ ।
ଦୁର୍ବାଙ୍କୁର ଭରି ବଦରି ପତ୍ର ଫାନ୍ଦି
ବରକନ୍ୟାଙ୍କର ଭୂଜରେ ନେଇ ବାନ୍ଧି । ୮୫ ।
ଗ୍ରହ ପୂଜା କଲେ ଗ୍ରହ ଶାନ୍ତ ମନ୍ତ୍ରେ
ଆଦିତ୍ୟ ସୋମ ମଙ୍ଗଳ ବୁଧ ବୃହସ୍ପତ୍ୟେ । ୮୬ ।
ଶୁକ୍ର ଶନିଶ୍ଚର ଯେ ରାହୁ କେତୁ ସହିତେ
ଆଦିତ୍ୟ କାଶ୍ୟପ ଗୋତ୍ରେ ସୋମ ଆତ୍ରେୟ ଗୋତ୍ରେ । ୮୭ ।
ମଙ୍ଗଳ ଭରଦ୍ୱାଜଶ ଗୋତ୍ରେ
ବୁଧ ଆତ୍ରେୟସ ଗୋତ୍ରେ । ୮୮ ।
ବୃହସ୍ପତି ଆଙ୍ଗିରସ ଗୋତ୍ରେ
ଶୁକ୍ର ଭାର୍ଗବସ ଗୋତ୍ରେ । ୮୯ ।
ଶନିଶ୍ଚର କାଶ୍ୟପସ ଗୋତ୍ରେ
ରାହୁ ପୈଠିନସୀ କେତୁ ଜୈମିନି ଗୋତ୍ରେ । ୯୦ ।
ବ୍ରହ୍ମ ଦେବତାଙ୍କର ଜଳ ଉଦେକ ଗୋତ୍ରେ
ବରୁଣ ଦେବତାର କୁଣ୍ଡଳୀଶ ଗୋତ୍ରେ । ୯୧ ।

---

୮୦।୨ ନଉଡନ୍ତ—ଢାଳନ୍ତ । ୮୩।୧ ସଗୋତ୍ର ସ୍ଥାନରେ ସଗୋତ୍ର ପାଠ ଦେଖାଯାଏ ।
୮୩।୧ ସିଉକାର—ସ୍ୱୀକାର ।
୮୪।୧ ଅଷାଢୁଆ ସୂତା, ଅସରଳା ସତା ଯେପରି ଲୋକମାନଙ୍କର କଥା ।
ଅଷାଢ—ଅସରଳ ।
୯୧।୨ କୁଣ୍ଡଳୀଶ—କୌଣ୍ଡିନ୍ୟ ।

ଅଷ୍ଟକୁଳା ନାଗ ଯେ ଜଟାୟୁ ସଗୋତ୍ରେ
ଅଗ୍ନି ଦେବତାଙ୍କ ଦଧୀଚି ଗୋତ୍ରେ । ୯୨ ।
ଗ୍ରାମ ଦେବତାର ବିମଳସ ଗୋତ୍ରେ
ଶାସ୍ତ୍ରେନ୍ଦ୍ରକୁ ସୋମପାଳ ଗୋତ୍ରେ । ୯୩ ।
ପାଣ୍ଡୁଦେବସ୍ୟ ଚନ୍ଦ୍ରମସ ଗୋତ୍ରେ
ବଶିଷ୍ଠଦେବଇଂ ସୋମପାଳ ଗୋତ୍ରେ । ୯୪ ।
ପାଣ୍ଡୁଦେବ ସମର୍ପଣେ ପୂଜାୟୁ । ୯୫ ।
ଚନ୍ଦ୍ରଧ୍ୱଜ ଦେବସ୍ୟ ପ୍ରପୌତ୍ରୀ ପୃଷତ ଦେବସ୍ୟ ପୌତ୍ରୀ
ଦ୍ରୁପଦେଶ୍ୱରସ୍ୟ ପୁତ୍ରୀ ।୯୬ ।
ଧୌମ୍ୟ ପ୍ରୋହିତେ ମନ୍ତ୍ର ଉଚାରି ଆପଣେ
ବ୍ୟାସ ମହାମୁନି ଯେ ଆଗୃହ୍ୟ ବରଣେ । ୯୭ ।
ତାର ବାର ଚନ୍ଦ୍ର ଯୋଗ କରଣ ମୁହୂର୍ତ୍ତିକାଂଶକେଷୁ
ଯଦୁର୍ବେଦାୟୁ ବ୍ରାହ୍ମଣ ବ୍ରହ୍ମା ବରଣ ପାଦେଷୁ । ୯୮ ।
ବିଭା ମଙ୍ଗଳ କଲେ ଓଡ଼ୋକୁଳ ଗୋତ୍ରେ
ପାଞ୍ଚଜନ୍ୟ ଶଙ୍ଖଧ୍ୱନି ଶବଦ କରନ୍ତି ଆପଣେ ଜଗନ୍ନାଥେ । ୯୯ ।
ଅଗ୍ରେ ନୃତ୍ୟ ଆରମ୍ଭେ ଖଟନ୍ତି ଚଞ୍ଚଳା
ହୁଳହୁଳି ଶବଦେ ମଙ୍ଗଳ ଗୀତ ଗାବନ୍ତି ଅବଳା । ୧୦୦ ।
ବ୍ରାହ୍ମଣମାନେ ଯେ କରନ୍ତି ବେଦଧ୍ୱନି
ହୁଳହୁଳି ଶବଦ କରନ୍ତି କାମିନୀ । ୧୦୧ ।
ମାହେନ୍ଦ୍ର ଯୋଗ ଦେଖି ଶୁଭଲଗ୍ନ ବେଳା
ସତ୍ୟ ବାକ୍ୟ କରନ୍ତି ଅଭିନବ ବାଳା । ୧୦୨ ।
ବରକନ୍ୟାଙ୍କର କର ଧରି ଧୌମ୍ୟ ପ୍ରୋହିତେ
ସ୍ନେହ ଯୋଗ କରାବନ୍ତି ବେନି କରପତ୍ରେ । ୧୦୩ ।
ଦ୍ରୋପଦୀ ଦେବୀଙ୍କର ଜ୍ୟେଷ୍ଠ ଯେ ଅଙ୍ଗୁଷ୍ଠି
ଶ୍ରୀହସ୍ତେ କୁଶ ଯୋଗ ଧର୍ମରାଜ୍ୟେ ଯୁଧିଷ୍ଠି । ୧୦୪ ।
ଦ୍ରୋପଦୀ ଦେବୀଙ୍କର ତର୍ଜନୀ ଅଙ୍ଗୁଳି
ଶ୍ରୀହସ୍ତେ କୁଶ ଯୋଗ ଭୀମ ମହାବଳୀ । ୧୦୫ ।
ଦ୍ରୋପଦୀ ଦେବୀଙ୍କର ମଧ୍ୟମା ଅଙ୍ଗୁଳି ଯେତି
ଶ୍ରୀହସ୍ତେ କୁଶ ଯୋଗ କଲେକ କିରୀଟୀ । ୧୦୬ ।

ଦ୍ରୌପଦୀ ଦେବୀଙ୍କର ଅନାମିକା ଅଙ୍ଗୁଳି
ଶ୍ରୀହସ୍ତେ କୁଶ ଯୋଗ ନକୁଳ ମହାବଳୀ । ୧୦୭ ।
ଦ୍ରୌପଦୀ ଦେବୀଙ୍କର କନିଷ୍ଠ ଅଙ୍ଗୁଳି ଯେତି
ଶ୍ରୀହସ୍ତେ କୁଶ ଯୋଗ ସହଦେବଙ୍କର ଗୋଟି । ୧୦୮ ।
ଦ୍ରୌପଦୀ ଦେବୀଙ୍କର ପଞ୍ଚ ଅଙ୍ଗୁଳିରେ ପଞ୍ଚୁପାଣ୍ଡବଙ୍କର ହାଥ
ମହାମନ୍ତ୍ରେ କୁଶ ଯୋଗ କଲେ ଧୌମ୍ୟ ପୁରୋହିତ । ୧୦୯ ।
ଜୟ ଜୟ ଶବଦ କଲେ ସର୍ବ ମୁନି
ଆପଣେ ଜଗନ୍ନାଥ କଲେ ଶଙ୍ଖଧ୍ୱନି । ୧୧୦ ।
ବ୍ରହ୍ମାଣ୍ଡ ଉଚ୍ଛୁଳିଲା ଶଙ୍ଖଧ୍ୱନି ବାଣୀ
ଆକାଶୁଂ ପୁଷ୍ପ ବୃଷ୍ଟି କଲେ ବଜ୍ରପାଣି । ୧୧୧ ।
ଆକାଶେ ଶୁଭିଲା ଯଶୁଂ ପାଣ୍ଡବଙ୍କର ବିଭା
ଦେବସ୍ତ୍ରୀୟେ ବୋଇଲେ ଦେଖିତେ ଚାଲ ଯିବା । ୧୧୨ ।
ସର୍ବ ଅଳଙ୍କାରେ ହୋଇ ଅନେକ ବେଶ ଯେ ବେଶନେ
ଦେବସ୍ତ୍ରୀୟେ ଦେଖନ୍ତି ରହି ଅନ୍ତର୍ଦ୍ଧାନେ । ୧୧୩ ।
ସ୍ୱର୍ଗେ ଥାଇଣ ଯେ ସମସ୍ତ ସାଧବୀ
ହୁଳହୁଳି ଧ୍ୱନି ଯେ କଲେ ସର୍ବ ଦେବୀ । ୧୧୪ ।
ସାଧୁ ସାଧୁ ଧ୍ୱନି ଯେ କଲେ ଦେବସ୍ତ୍ରୀ
ଶୂନ୍ୟ ଭୁବନେ ଥାଇ ମଙ୍ଗଳ ସିଦ୍ଧକାରୀ । ୧୧୫ ।
ବ୍ରହ୍ମାଙ୍କର ଭାରିଯା ଦେବୀ ଯେ ସାବିତ୍ରୀ
ରୁଦ୍ର ଦେବତାଙ୍କର ଭାରିଯା ପାର୍ବତୀ । ୧୧୬ ।
ବାସବ ଦେବତାଙ୍କର ଭାରିଯା ଯେ ଶଚୀ ମହାସତୀ
କୁବେରଙ୍କ ଭାରିଯା ଯେ ଅପର୍ଣ୍ଣା ହାରିବତୀ । ୧୧୭ ।
ଚନ୍ଦ୍ରଙ୍କର ଭାରିଯା ଯେ ଅଟଇ ରୋହିଣୀ
ବୃହସ୍ପତିଙ୍କର ଭାରିଯା ତାରା ମହାରାଣୀ । ୧୧୮ ।
ଆଦିତ୍ୟଙ୍କର ଭାରିଯା ସଂଜ୍ଞା ଛାୟା ବେନି ରାଣୀ
ସିଦ୍ଧ ଅପର୍ଣ୍ଣା ସେ ଅଟନ୍ତି ସାଧବୀ ମହାରାଣୀ । ୧୧୯ ।
ବୈଶ୍ୱାନରଙ୍କ ଭାରିଯା ଅଟନ୍ତି ସ୍ୱାହା ସ୍ୱଧା
ଆଗମ ପୁରୁଷଙ୍କ ଭାର୍ଯ୍ୟା ମେଧା ଯେ ସୁମେଧା । ୧୨୦ ।

ଯମ ଦେବତାଙ୍କ ଭାରିଯା କାଳୀ ଯେ କରାଳୀ
ମେଘଙ୍କର ଭାରିଯା କୁଣ୍ଡଳୀ ଆର୍ଦ୍ରାବଳୀ ଚାରାଳୀ ବିଜୁଳୀ । ୧୨୧ ।
ବରୁଣ ଦେବତାଙ୍କ ଭାରିଯା ମାରବତୀ ରାଣୀ
ବସୁଧା ବସୁମତୀ ଯେ ତିନ ଭଗ୍ନୀ । ୧୨୨ ।
ଏମାନେ ଦକ୍ଷର ନନ୍ଦନୀ ଯେ ଚଉଷଠୀ
ପ୍ରଳୟ ଶରୀର ଯେହାଙ୍କର ଆୟୁ କୋଟି କୋଟି । ୧୨୩ ।
ଏମାନେ କରନ୍ତୁ ସମସ୍ତେ ସାଧୁ ସାଧୁ ବାଞ୍ଛା
ଭୀର ନବାରଣୀ ଗୋ ସ୍ୱର୍ଗ ମର୍ତ୍ତ୍ୟ କର ରକ୍ଷା । ୧୨୪ ।
ଆକାଶେ ମଙ୍ଗଳ ଧ୍ୱନି କଲେ ଅପର୍ଷ୍ଟାବୃନ୍ଦମାନେ
ହୁଳହୁଳ ଶବଦ ଶୁଭିଲା ସ୍ୱର୍ଗ ଯେ ଭୁବନେ । ୧୨୫ ।
ମର୍ତ୍ତ୍ୟଜନମାନେ ସମସ୍ତେ ଶୁଣିଲେ
ସାଧୁ ସାଧୁ ଦ୍ରୌପଦୀ ବୋଲିଣ ସମସ୍ତେ ବୋଇଲେ । ୧୨୬ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ତିନ ଭୁବନ
ଅନେକ ମଙ୍ଗଳ ଧ୍ୱନି ସାଧୁ ସାଧୁ ବଚନ । ୧୨୭ ।
ତାହାଣାନ୍ତରେକ ଶଙ୍ଖେ ଜଳ ତିଳ ଲାଇ
ଧୌମ୍ୟ ପୁରୋହିତେ ଦିଲେ ଦ୍ରୁପଦ ହାଥେ ନେଇ । ୧୨୮ ।
ଦୁହିତା ପ୍ରଦାନ ଯେ କଲୁ ପାଣ୍ଡବଙ୍କୁ
ଯଉତୁକ ଦିଅ ରଜା ଯଥା ବିଧାନକୁ । ୧୨୯ ।
ଯୁଧିଷ୍ଠିର ଦେବ ସମର୍ପଣେ ଭୀମସେନ ଦେବ ସମର୍ପଣେ,
ଅର୍ଜୁନ ନକୁଳ ସହଦେବ ସମର୍ପଣେ ମହାମନ୍ତ୍ର ଧ୍ୱନି ଉଚ୍ଚାରନ୍ତି ବ୍ରାହ୍ମଣେ । ୧୩୦ ।
ଶ୍ରୀହସ୍ତେ ଶଙ୍ଖେ ଯେ ଘେନିଲେ ଦ୍ରୁପଦେଶ୍ୱର ନୃପତ୍ୟେ
ପାଞ୍ଚ ଲକ୍ଷ ଧେନୁ ଦିଲା ବସ୍ତ୍ରାନ୍ତ ସହିତେ । ୧୩୧ ।
ଶ୍ରୀହସ୍ତେ ପାଣି ଦେଇ ପଞ୍ଚାଳ ରାଜ୍ୟେଶ୍ୱର
ଅଷ୍ଟରତ୍ନ ପାଣିଦ୍ରବ୍ୟ ଦିଲା ପଞ୍ଚୁ ଯେ ଭଣ୍ଡାର । ୧୩୨ ।

---

୧୨୨। ବସୁଧା, ବସୁମତୀ, ସୁମତି, କ୍ଷିତି ପ୍ରଭୃତି ବରୁଣଙ୍କ ସ୍ତ୍ରୀ ରୂପେ ଅନ୍ୟ ପୋଥିମାନଙ୍କରେ କଥିତ ।

୧୨୮। ଜଦହଳା, ଜଳତଳ ଇତ୍ୟାଦି ପାଠ ଅଛି ।

ଶ୍ରୀହସ୍ତେ ଶଙ୍ଖ ଘେନି ଦ୍ରୋପଦେଶ୍ୱର ତୋଷି
ପାଣି ଗୁଡ଼ାଇଲା ପାଞ୍ଚ ଲକ୍ଷ ଦାସୀ । ୧୩୩ ।
ଶ୍ରୀହସ୍ତେ ଜଳ ଘେନଣ ଦ୍ରୋପଡ ନରନାଥ
ଯୋଦ୍ଧା ଆଦି କରି ଦେଲା ପାଞ୍ଚ ଲକ୍ଷ ରଥ । ୧୩୪ ।
ଶ୍ରୀହସ୍ତେ ଶଙ୍ଖ ଘେନି ଦ୍ରୋପଦେଶ୍ୱର ନୃପତି
ନଘୋଡ଼ ମଣ୍ଡଣୀ କରି ଦେଲା ମଭୁତେକ ମଯ୍ୟେମତ୍ତ ହାଥୀ । ୧୩୫ ।
ଶ୍ରୀହସ୍ତେ ଜଳ ଗୁଡ଼ି ଦ୍ରୋପଦେଶ୍ୱର ରାଯ୍ୟେ
ଶୈଖାର ତୁରଙ୍ଗମ ଦେଲା ଦଶ ଲକ୍ଷ ହୟେ । ୧୩୬ ।
ଶ୍ରୀହସ୍ତେ ପାଣି ଘେନି ଦ୍ରୋପଦେଶ୍ୱର ସ୍ୱାମୀ
ରୁଦ୍ରମଣ୍ଡଳ ଯମମଣ୍ଡଳ ଦେଲା ବେନି ରାଜ୍ୟ ଭୂମି । ୧୩୭ ।
ପଞ୍ଚଶତ ଯୋଜନ ଆଯ୍ୟେତନ ଯେ ବେନି ମଣ୍ଡଳ
ତୋଷେ ତାକୁ ଦେଲାକ ଦ୍ରୋପଦ ମହୀପାଳ । ୧୩୮ ।
ସର୍ବାଙ୍ଗ ଅଳଙ୍କାର କରି ଲକ୍ଷେକ ଯୁବତୀ
ତୋଷେ ଯଉତୁକ ଦେଲା ପାଞ୍ଚାଳେଶ୍ୱର ନୃପତି । ୧୩୯ ।
ସୁବର୍ଣ୍ଣର ପାଞ୍ଚ ପଲଙ୍କ ଶେଯ୍ୟାର ଯୋଗାଡ଼େ
ସୁବର୍ଣ୍ଣର ପଲମ ଦେଲା ଲକ୍ଷେ ଲକ୍ଷେ ମାଡ଼େ । ୧୪୦ ।
ଯଉତୁକ ଦେଲା ରାଜା ଶ୍ରୀହସ୍ତେ ଜଳ ଘେନି
ସମସ୍ତ ସଜ କରି ଦେଲା ବେନି ଲକ୍ଷ ସଇନି । ୧୪୧ ।
ପାଞ୍ଚ ଲକ୍ଷ ପାଟଛତ୍ର ଯେ ଆଲଟ ଉଦଣ୍ଡ
ପାଞ୍ଚ ଲକ୍ଷ ପ୍ୟେକ ଲକ୍ଷି ମଜୁରଖାଲ ଖଣ୍ଡ । ୧୪୨ ।
ପାଞ୍ଚ ଲକ୍ଷ ଆଲମ୍ବ ପାଞ୍ଚ ଲକ୍ଷ ସୁଆରି
ପ୍ୟେତେକ ଯଉତୁକ ଦେଲା ଦ୍ରୋପଡ ଦଣ୍ଡଧାରୀ । ୧୪୩ ।
ଟମକ ନିଶାଣ ନାନା ବାଦ୍ୟ ଆଦି କରି
ସମସ୍ତ ଯଉତୁକ ଦେଲା ବିନୟ ଭାବ କରି । ୧୪୪ ।
ଆସ୍ଥାନୁ ଉଠି ଦ୍ରୋପଦ ମହୀପାଳେ
ଦଣ୍ଡଲଇଂ ସୁତିଲା ଯୁଦ୍ଧେଷ୍ଟି ପାଦତଳେ । ୧୪୫ ।
ଗୋସାଇଂ ପ୍ରତକ୍ଷେ ନିରଞ୍ଜନ ଅନାଦି ସୋମବଂଶୀ
ଯାହାର ବଲ୍ଲଭ ଅଟନ୍ତି ହୃଷିକେଶୀ । ୧୪୬ ।

ତାହାଙ୍କୁ ଯଉତୁକ ଦେବାକୁ ମୋହୋର ଶକ୍ୟ କସ
ଦୁହିତା ଗୋଟିଏ ଦେଇ ସମର୍ପି ହୋଇଲା କ୍ଷମାକରିବାକ ଦଶ ଦୋଷ ।
ଅନେକ ବିନୋପି ଯେ ଦ୍ରୋପଦେଶ୍ୱର ରାଧ୍ୟେ
ପୁଣ ପୁଣ ପୁଚ୍ଛନ୍ତ ଯେନ ରାଜା ଗଡ଼ଢାଲ ଶୋଷେ । ୧୪୮ ।
ପଦ୍ମାବନ୍ତୀ ବୋଲଣ ଦ୍ରୋପଦର ପାଟରାଣୀ
ଅନେକ ସମ୍ବରେ ଯଉତୁକ ଦିଲେ ଆଣି । ୧୪୯ ।
ପ୍ରାର୍ଥନା ବାକ୍ୟ ଯତ୍ନଂ କରାଇଲେ ଧୌମ୍ୟ ପୁରୋହିତେ
ଅଶ୍ରୁଜଳ ବହାଇ ରାଣୀର ବେନ ନେତ୍ରେ । ୧୫୦ ।
କ୍ରୋଧଭର ହୋଇ ବୋଲଇ ରାଜା ଦ୍ରୁପତ
ପୁନରପି ଦୁହିତା ଯେ ନୋହୁ ନୋହୁ ଜାତ । ୧୫୧ ।
ଜଗଶ୍ରେଷ୍ଠ ପୁରୁଷର ଦୁହିତା ହୋଇଲେ
ଭୃତ୍ୟର ଭୃତ୍ୟ ହୋଇ ସେ ପରେ ପ୍ରଦାନ ଯେ କଲେ । ୧୫୨ ।
ଆପଣାର ବଳବୀର୍ଯ୍ୟ ସମସ୍ତ ବୁଡ଼ାଇ
ପରେ ପରିଚର୍ଯ୍ୟା କରେ ଭୃତ୍ୟପଣ ହୋଇ । ୧୫୩ ।
ଦୁହିତା ପ୍ରସବଇ ଯେବଣ ଭରିଯା
ତାହାର ସନ୍ନିଟେଣ କରିବାକ ପରିତେଜ୍ୟା । ୧୫୪ ।
ତାହା ଶୁଣି ବୋଇଲେ ଯେ ବ୍ୟାସ ମହର୍ଷି
ବିଭାକାଳେ ଅବଶ୍ୟ କ୍ରୋଧେକ ଉପୁଜଇ ଆସି । ୧୫୫ ।
ଅନାଦ୍ୟ ସରସ୍ୱତୀ ଆଦ୍ୟ ଯେ ଅପର୍ଣ୍ଣା
ତାହାର ତହୁଂ ଆତଯାତ ଉତ୍ପତ୍ତି ପ୍ରଳୟ ସିନା । ୧୫୬ ।
ଆଦ୍ୟ ବ୍ରହ୍ମ ଅଂଶେ ଯେ ଦକ୍ଷ ପ୍ରଜାପତି
ଯହୁଂରୁ ଷାଠିଏ କନ୍ୟା ହେଲେ ଉତପତ୍ତି । ୧୫୭ ।
ଦିଗପାଳମାନଙ୍କୁ ଯତନେ ଦିଲ ବାଣ୍ଟି
ଧର୍ମ ଦେବତାଙ୍କୁ ଦିଲ ଦୁହିତା ଦଶଗୋଟି । ୧୫୮ ।
ଶ୍ରୁତି ମତି ଧୃତି କାନ୍ତି କ୍ଷାନ୍ତି ତନୁ ଭନୁ ମେଧା ସୁମେଧା ଶରଧା
ଧର୍ମ ଦେବତାଙ୍କୁ ଦିଲ ହୋଇଣ ଆନନ୍ଦା । ୧୫୯ ।

୧୫୯ { ଶ୍ରୁତି ଧୃତି ମତି କ୍ରାନ୍ତି ଶାନ୍ତ ମେଧା ସୁମେଧା ତନୁ ଶରଧା
ଏମନ୍ତେ ଦଶ କନ୍ୟା ଧର୍ମଙ୍କୁ ନେଇ ଦିଲ ବିବୁଧା ।

ଶୁଣ ଦ୍ରୋପଡ ସାବଧାନେ ତୋତେ କହୁଁ
ଶୂନ୍ୟ ପୁରୁଷମାନେ ଉତପତ୍ତି ଯେହ୍ନାର ତହୁଁ । ୧୬୦ ।
ଶ୍ରୂତିର ତହୁଁ ଆବର୍ତ୍ତିକ ମେଘ ଉପୁଜିଲା
ମତିର ତହୁଁ ସମ୍ବର୍ତ୍ତିକ ମେଘ ଜାତ ହେଲା । ୧୬୧ ।
ଧୃତିର ତହୁଁ ଉପୁଜିଲା ଦ୍ରୋଣ ମେଘ
କାନ୍ତି ତହୁଁ ଉପୁଜିଲା ପୁଷ୍କର ମେଘ । ୧୬୨ ।
କ୍ଷାନ୍ତିର ତହୁଁ ଜାତ ଆୟୁର୍ବେଦ
ତନୁର ତହୁଁ ଜାତ ଜ୍ୟୋତିର ମନ୍ତ୍ରପଦ । ୧୬୩ ।
ଧନୁର ତହୁଁ ଜାତ ଧନୁ ମହାମନ୍ତ୍ର
ମେଧାର ତହୁଁ ଜାତ ସୁଷୁମ୍ନା ଯନ୍ତ୍ର । ୧୬୪ ।
ସୁମେଧାର ତହୁଁ ଜାତ ହୋଇଲେ ବରୁଣ
ଶରଧାର ତହୁଁ ହେମ ଶିଶିର ବସନ୍ତ ଗ୍ରୀଷମ ବରଷା ଶରଦ
ଛଡଋତୁ ଜାଣ । ୧୬୫ ।
ଶୁଣ ହେ ଦ୍ରୋପଡ ଶାହାସ୍ତ୍ର ଉକତ ତୋତେ କହୁଁ
ଯେ ଶୂନ୍ୟ ପୁରୁଷେ ଉପୁଜିଲେ ଦଶ କନ୍ୟାଙ୍କର ତହୁଁ । ୧୬୬ ।
ଈଶ୍ୱର ଦେବତାଙ୍କୁ ପ୍ରଦାନ କଲେ ଉମା
ପ୍ରଜାପତିଙ୍କର କୋଟିଯେ ପୁରୁଷ ତାଶଲେ ସଦାଶିବର ବାମା ।୧୬୭।
କଶ୍ୟପଙ୍କୁ ଦେଲେ ତେର ଗୋଟି ଯେ କୁମାରୀ
ମହା ବ୍ରହ୍ମବେତ୍ତା ସଚରାଚର ଅଧିକାରୀ । ୧୬୮ ।
ଦିତି ଅଦିତି କଦ୍ରୁ ବିନତା କଳା ଅରିଷ୍ଟା
ସିଂହିକା ସୁରଭି ଗୁହିଜା ଦନୁ ଗନ୍ଧର୍ବା ଋଷା ଆବର ପୁରୁଷଶ୍ରେଷ୍ଠା ।୧୬୯
ଯେ ତେର କନ୍ୟାଙ୍କ ଘରୁ ଉତପତ୍ତି ଯେଉଂଣ ଯେଉଂଣ
ଆହେ ଦ୍ରୋପଦ ରଜା ତୁ ସାବଧାନେ ଶୁଣ । ୧୭୦ ।
ଅଦିତି ଦିତି ତହୁଁ ଦେବ ଅସୁର ହାଦେ
କଦ୍ରୁର ତହୁଁ ଉପୁଜିଲେ ନାଗବୃନ୍ଦେ । ୧୭୧ ।
ବିନତାର ତହୁଁ ଉପୁଜିଲେ ଅରୁଣ ଗରୁଡ ପକ୍ଷୀଭାଗେ
କଳାର ତହୁଁ ଉପୁଜିଲେ କାଳକେୟ ଯୋଗେ । ୧୭୨ ।

---

୧୬୯।୧ କଳା ସ୍ଥାନରେ କାଳୀ ଅଛି ।
୧୭୨।୨ କାଳୀର ତହୁଁ ଉପୁଜିଲେ କାଳକେୟ ଯୋଗେ ।

ଗନ୍ଧର୍ବା ଠାରୁଂ ଉତପତ୍ତି ଗନ୍ଧର୍ବ ସମସ୍ତେ
ଦକ୍ଷଜଙ୍ଗ ଦକ୍ଷଗଣେ ହୋଇଲେ ସମ୍ଭୂତେ । ୧୭୩ ।
ତ୍ରିଷାର ଠାରୁଂ ଉପୁଜିଲେ ଚଉପାପ୍ସ୍ୟା ଜୀବଜନ୍ତୁ ଯେତେ
ସିଂହ ଶାର୍ଦ୍ଦୋଳ ଗଜ ଅଶ୍ୱ ବ୍ୟାଘ୍ର ଭଲ୍ଲୁକ ମର୍କଟ ବଳୟ୍ସା ସହିତେ ।୧୭୪।
ଅରିଷ୍ଟାର ଠାରୁଂ ଜନମିଲେ ଅରିଷ୍ଟି ଜୀବମାନେ
ଦନୁଠାରୁ ଉପୁଜିଲେ ଯେ ଦାନବଗଣେ । ୧୭୫ ।
ମାନୁଷୀର ଠାରୁଂ ଉପୁଜିଲେ ମାନବମାନେ
ଖଣ୍ଡାପ୍ସିତ ଆଦି କରି ଯେତେ ବାଦ୍ୟମାନେ । ୧୭୬ ।
ସିଂହିକା ଠାରୁଂ ଜନମିଲେ ରାହୁ ଯେ ରାକ୍ଷସେ
ସୁରଭିର ଠାରୁଂ ଜାତ ଗୋଧନ ପ୍ରକାଶେ । ୧୭୭ ।
ଗୁହିଜାରୁ ଉପୁଜିଲେ ଗୁହ୍ୟକ ଲୋକମାନେ
ଷାଠିଏ କନ୍ୟାରୁ ସର୍ବେ ହେଲେ ଉତପନ୍ନେ । ୧୭୮ ।
ବ୍ୟାସେ ବୋଇଲେ ବାବୁ ଶୁଣ ହୋ ଦ୍ରୋପଡ ନୃପତ୍ୟ
ଦକ୍ଷର ନନ୍ଦନୀ ଠାରୁଂ ଜାତ ହୋଇଲେ ସମସ୍ତ । ୧୭୯ ।
କରପତ୍ର ଯୋଡି କହଇ ପାଞ୍ଚାଳେଶ୍ୱର ଦେବ
ହେ ମୁନି କଥାଏ ପଚାରିବି ମୋତେ କୋପ ନ କରିବ । ୧୮୦ ।
ସଭାର ସ୍ଥଳେ ଦ୍ରୋପଦେଶ୍ୱର ବୋଇଲା
ଉମାକନ୍ୟା ଛଳେ ଦକ୍ଷ ପ୍ରଜାପତି ନାଶଗଲା । ୧୮୧ ।
ମାରକଣ୍ଡ ବୋଇଲେ କଥା ବଢିବ କହନ୍ତେ
କନ୍ୟାକୁ ସମର୍ପି ଦେବେ ଯାଅ ଯା ଦ୍ରୋପଡ ନୃପତ୍ତେ । ୧୮୨ ।
ଚଳଇ ଦ୍ରୋପଦ ରାଜା ନିଜ ଯେ ଆଶ୍ରମେ
ଧୌମ୍ୟ ପୁରୋହିତେ କଲେ ଲାଜା ହୋମେ । ୧୮୩ ।
ଅଙ୍ଗକ୍ଷେପ ଯାଗ କଲେ ଲାଜା ହୋମ ଆହୁତି
ଘୃତ ଆହୁତି ଅମୃତ ଦେଇ ବିପୃତି କଲେ ଯେ ବହ୍ନିତି । ୧୮୪ ।
ଅମର ପୁରୋହିତେ ଯେ ଧର୍ମେଣ ଅଛନ୍ତି
ଅଗ୍ନିର ଜିହ୍ୱାରେ ଦଲେକ ପୂର୍ଣ୍ଣାହୁତି । ୧୮୫ ।

---

୧୮୪।୧ ଅଙ୍ଗକ୍ଷେପ—ଅଶେଷ ।
୧୮୪।୨ ବହ୍ନିତ—ବହ୍ନିନ, ଅଗ୍ନି ।

ଉଚ୍ଛିଷ୍ଟ ଘୃତ ଦିଲେ ବର କନ୍ୟାଙ୍କର ହାଥେ
କନ୍ୟାର ହାଥ ଧରି ପାରଣା କଲେ ପଞ୍ଚୁଭ୍ରାଥେ । ୧୮୬ ।
ଘୃତ ପାରଣା କଲେ ଦେଖ ଯେ ଦ୍ରୋପଦୀ
ଅକ୍ଷୋବନ ସାରି ସେହିକ ଆସନେ ବସନ୍ତି । ୧୮୭ ।
ନଟ ଭାଟ ଭିକ୍ଷାଣୀ ଥିଲେକ ଯେତେ ଜନ
ଦରିଦ୍ର ଜନେ ଦିଲେ ଅନେକ ରତ୍ନମାନ । ୧୮୮ ।
ଗୃହ ଭଣ୍ଡାରୁ ଯେତେ ଯଉତୁକ ପାଇଥିଲେ
କନ୍ୟାଦାନ ନିମନ୍ତେ ଅନେକ ଦାନ ଦିଲେ । ୧୮୯ ।
ଗୋଧନ ଧନ ବସ୍ତ୍ର ସମସ୍ତ ଅଳଙ୍କାର
ସମସ୍ତ ଦାନ ଦିଲେ ପଣ୍ଡୁର କୁମର । ୧୯୦ ।
ଦ୍ରୋପଦୀର ମାତା ଅଟଇ ପଦ୍ମାବତୀ
ଲକ୍ଷେ ସ୍ତ୍ରିଏ ଘେନି ବର କନ୍ୟାଙ୍କର ଶିରେ ଅର୍ଘ୍ୟ ବନ୍ଦାପନ୍ତି । ୧୯୧
ମା ଗୋ ଆୟୁ ଧନ ପୁତ୍ର ଅନେକ ସମ୍ପଦ ବାଞ୍ଛା
ଅବଶ୍ୟ ଫଳ ଶ୍ରୁତି ହୋଇବ ଯାହା ତୋହୋର ଇଚ୍ଛା । ୧୯୨ ।
ପ୍ରତକ୍ଷେ ନିରଞ୍ଜନ ଯୁଧିଷ୍ଠିରଦେବଙ୍କର ବିଭା
ସମସ୍ତ ଜନେ ଶୁଣି ମୁକତି ହୋଇବା । ୧୯୩ ।
ଅନେକ ଜନମର ପାତକ ଦୁଖ ଖଣ୍ଡ
ଅଣ ଅପ୍ରାଧ କଷ୍ଟୁଂ ତରି ନ ଲାଗୁ ଯମଦଣ୍ଡ । ୧୯୪ ।
ଅପାଦ ବିପଦ ଦୁଖ କେଳଶ ସମସ୍ତ ପାରି ଯାଉ
ଦରିଦ୍ର ଦୋଷ ଛୁଟୁ ଶତ୍ରୁ ଶାନ୍ତ ହୋଉ । ୧୯୫ ।
ସୁବେଳେ ସୁଲକ୍ଷଣେ ଶୁଭ ଅନୁକୂଳେ
ରାଜା ମୁଖେ ଯଶ ହୋଉ ଦେଖ ସର୍ବମଙ୍ଗଳେ । ୧୯୬ ।
ଯେ ସେହିା ପଢନ୍ତି ଶୁଣନ୍ତି ସାବଧାନେ
କୋଟିଏ ପାତକ ହରଇ ଯେହ୍ନେ ପୁଷ୍କର ସ୍ନାହାନେ । ୧୯୭ ।
ଇହଲୋକେ ଗତି ପରଲୋକେ ମୁକତି
ଶ୍ରୀ ମହାଭାରଥ ସେହିସନ ଫଳଶ୍ରୁତି । ୧୯୮ ।
ମୁହିଂ ବାଞ୍ଛା କରଇ ସେହି ସଂସାର ଜନଙ୍କୁ
ସମସ୍ତେ ଆଶ କରି ବଇକୁଣ୍ଠ ଭୁବନକୁ । ୧୯୯ ।

---

୧୮୬।୧ ଉଚ୍ଛଷ୍ଟ—ଉଚ୍ଛିଷ୍ଟ ।

ସମସ୍ତ ଜନମାନଙ୍କର ଅପାଦ କ୍ଷୟ ଯାଉ
ଆଚ୍ଛିତ ଧନ ପୁତ୍ର ବାଞ୍ଛା ସିଦ୍ଧ ହୋଉ । ୨୦୦ ।
କଳିକାଳ ଦୁରାପଦ ଯହୁଁ କଷ୍ଟାଳଲା ସଂସାରକୁ
ତଦ ଦର୍ପ ଧ୍ୱଂସିବାକୁ ଶ୍ରୀ ଜଗନ୍ନାଥେ ଆଜ୍ଞାଂ ଦେଲେ ମୁକୁ । ୨୦୧ ।
ନ ପଢ଼ି ପଣ୍ଡିତ ମୁଂ ଆଜ୍ଞାଂ ପରମାଣେ
ଗ୍ରନ୍ଥ ଅର୍ଥ କଲି ମୁଂ ଶ୍ରୀଚଣ୍ଡୀ ସାରଳା ପ୍ରସନ୍ନେ । ୨୦୨ ।
ସେ ଯାହା କହଇ ମୁଂ ଲହଇ ସେହିମତେ
ମୂର୍ଖ ହୋଇ ଲେଖନ କଲି ମୁଂ ନୋହଇ ପଣ୍ଡିତେ । ୨୦୩ ।
ଯେ ଅବା ଭ୍ରାନ୍ତ ହୋଅଇ ମୋର ମନେ
ଆପଣେ ପ୍ରବେଶି ଦେବୀ ଶ୍ରୀହସ୍ତେ କରନ୍ତ ଲେଖନେ । ୨୦୪ ।
ସରୂପେ ଦେଖାଇଲେ ମୋତେ ଆପଣାର ଚିହ୍ନ ବର୍ଣ୍ଣ
ମୋତେ କାହିଂ ସଖ୍ୟ ହୋଇବ ସ୍ୱେ ଦିବ୍ୟ ଲେଖନ । ୨୦୫ ।
ଶ୍ରୀଚଣ୍ଡୀ ସାରଳାକୁ ବନୋର୍ମି ଭାବ ଚିତ୍ତେ
ଶତ ସହସ୍ର ଦଣ୍ଡ ପ୍ରଲମ୍ବ ମୋହୋର ନିତ୍ୟେ । ୨୦୬ ।
ବିଧ୍ୱଂସିତ ଶତଦଳ କମଳ ଦିବ୍ୟକାୟେ
ଇହ ଲୋକେ ବରଦାୟିନୀ ଭଗତବତ୍ସଳୀ ମହାମାୟେ । ୨୦୭ ।
ସ୍ୱେ ମୋହୋର ଶିର ଲୁଟୁ ତାହାଙ୍କ ପଦ୍ମ ପାଦେ
କହିଲି ଆଦ୍ୟପର୍ବ ସିଦ୍ଧ ସାରଳା ପ୍ରସାଦେ । ୨୦୮ ।
ତୁଳସୀର ବଲ୍ଲଭ ଚରଣେ ଲୟେ ଆଶ
ବଦୟନ୍ତ ଶୂଦ୍ର ମୁନି ଶ୍ରୀ ସାରଳାଚଣ୍ଡୀ ଦାସ । ୨୦୯—୧୧୨୧୬ ।

---

## ପାଣ୍ଡବଙ୍କ ଅର୍ଦ୍ଧରାଜ୍ୟ ଦାନ

ଶୁଣ ହୋ ରାଜନ ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଯେ ବେନି ଭ୍ରାତେ
ଅଗ୍ନିକି ଶୀତଳ କରାଇଲେ ସମାପତେ । ୧ ।

---

୨୦୧।୨ ତଦ ଦର୍ପ—ତାହାର ଦର୍ପ । ୨୦୩।୧ ଲହଇ—ଲେଖଇ ।
୨୦୫।୨ ସଖ୍ୟ—ଶକ୍ୟ ।
୨୦୮।୧ ଲୁଟୁ—ଲୋଟୁ ।

କନ୍ୟାର କର ଯେ ଧରିଣ ଧର୍ମରାୟେ
ଦ୍ରୋପଦର ଭୁବନକୁ ବିଜେ କରି ଆୟେ । ୨ ।
ଅନ୍ତେଶ୍ୱରପୁର ସନ୍ନିଧେ ମୁଣେ ହି ଭୁବନେ
ତହିଁ ଯାଇଂ ବିଜୟ କଲେ ଧର୍ମନାନେ । ୩ ।
ଶ୍ରୀ ଜଗନ୍ନାଥଙ୍କ ବଲ୍ଲଭୀ ଆଠୟେ କଶତ ଷୋଳସହସ୍ର ବାଳୀ
ସର୍ବ ଅଲଙ୍କାର ହୋଇ କରେଣ ଅର୍ଘ୍ୟସ୍ଥାଳୀ । ୪ ।
ମାଣିକ୍ୟର ଝିପନ୍ତ ଘେନିଣ ନିଜ କରେ
ଅର୍ଘ୍ୟ ବନ୍ଧାଇଲେ ବର କନ୍ୟାଙ୍କର ଶିରେ । ୫ ।
ଅନେକ ଶୁଭବାଞ୍ଛା କଲେ ସର୍ବେ ବାଳୀ
ଦ୍ୱାରକା ସ୍ତ୍ରିଗ୍ରୀମାନେ ମଙ୍ଗଳ ଧ୍ୱନି ତୋଳି । ୬ ।
ଦ୍ରୋପଦେଶ୍ୱର ଅନେକ ଭଗତି ହୋଇଲେ
କୁଟୁମ୍ବ ଘେନିଣ ପ୍ରଣିପତ୍ୟେ ସୁଛିଲେ । ୭ ।
ପୂର୍ବ ଜନ୍ମେଣ ମୁଂ କରିଥିଲି ପରମ ଭାଗ୍ୟ
ପାଣ୍ଡବଙ୍କର ପରସନ୍ନେ ମୋତେ ନାରାୟଣଙ୍କର ଅନୁରାଗ । ୮ ।
ସ୍ନାହାନ ସାରି ଭୋଜନ ଦ୍ରୋପଦର ପୁରେ
ଯୁଦ୍ଧେଷ୍ଠି ଅଗ୍ରତେ କହିଲେ ବଳେବରେ । ୯ ।
ଆମ୍ଭେ ଯାଉଂଅଛୁ ଦ୍ୱାରକା ଭୁବନେ
କନ୍ୟା ଘେନି ଯାଅ ତୁମ୍ଭେ ପଞ୍ଚଦଶ ଦିନେ । ୧୦ ।
ଯୁଦ୍ଧେଷ୍ଠି ବୋଇଲେ ସ୍ୱାମୀ ବିଜେ କରି ଯିବା
ଯୋଗାନନ୍ଦ ପୁରୁଷ ମୋତେ ଦୟା କରିଥିବା । ୧୧ ।
ଗୋବିନ୍ଦ ପ୍ରଣିପତ୍ୟ ଯୁଦ୍ଧେଷ୍ଠିଙ୍କ ପଦ୍ମପାଦେ
ଉଠିଣ କୋଳକଲେ ପ୍ରଭୁ ପରମ ସାନନ୍ଦେ । ୧୨ ।
ଅର୍ଜୁନ ନକୁଳ ଯେ ସହଦେବ ତିନି
ଶ୍ରୀରାମ କୃଷ୍ଣଙ୍କ ଚରଣେ କରନ୍ତି ଦର୍ଶନ । ୧୩ ।
ଦ୍ରୋପଦ ଅନେକ କଲେ ଅର୍ଘ୍ୟପୂଜା
ଗରୁଡ ପିଠିରେ ବିଜେକଲେ ଦେବରାଜା । ୧୪ ।

---

୧୧।୨ "ଯୋଗାନନ୍ଦ ପୁରୁଷ ମୋତେ ଦୟା କରିଥିବା" ପାଦାନ୍ତ ପରେ
୨ ଟି ପୋଥିର ଅଧିକା ପାଠ—
ଯୁଦ୍ଧେଷ୍ଠି ଦେବ ବଳରାମଙ୍କୁ ନମନ୍ତ
କଲ୍ୟାଣ କଲେ ବଳଦେବ ହୋଇଣ ପରମ ଶାନ୍ତ ।

କନ୍ୟାମାନନ୍ତ ସେ ଯେମନ୍ତ ଦେବ ହରି
ଦ୍ରୋପଦ ଭୁବନୁଂ ଆକାଶମାର୍ଗେ ଚଳି । ୧୫ ।
ଯେତେଦୂରେ ଦିଶଇ ଗରୁଡ଼ଧ୍ୱଜ ଚିହ୍ନ
ହୁଳହୁଳି ଧ୍ୱନି କରନ୍ତି ନଗ୍ର ନାରୀ ଜନ । ୧୬ ।
ଅଦୃଶ୍ୟ ହୋଇଣ ସ୍ୱାମୀ କଲେକ ଗମନ
ନିଜ ପୁରକୁ ଆସିତେ କାହାର ନ ବଳଇ ମନ । ୧୭ ।
ନାମ ଧଇଲେ ଯାହାର ମୁକତି ଗତି ପାଇ
ଦ୍ରୋପଦୀର ପ୍ରସାଦେ ଗୃହଂଲୁ ଚଳୁ ଯେ ପୂରେଇ । ୧୮ ।
ସାଧୁ ସାଧୁ ପାଞ୍ଚାଳୀ ଦ୍ରୋପଦର ଦୁଲାଳୀ
ସାଧୁ ସାଧୁ ଜୀବନ ତାହା ଯେ ସୁସେଣ ପ୍ରତିପାଳି । ୧୯ ।
ଦ୍ରୋପଦୀ ପ୍ରଦାନ ହୋଇଲେ ଯାହାଙ୍କୁ
ଜଗନ୍ନାଥେ ନମସ୍କାର କରନ୍ତି ତାହାଙ୍କୁ । ୨୦ ।
ତହୁଂ ଅଧିକ ତ ପାଣ୍ଡବଙ୍କ ଦରଶନେ
ଯେତେ ବୋଲିଣ ବାହୁଡ଼ିଲେ ନଗ୍ରଜନମାନେ । ୨୧ ।
ଚଳନ୍ତି କନ୍ୟାମାନେ ଯେ ଯାହାର ଭୁବନେ
ମୁଣୋହିଂ ଯୁଗତେ କନ୍ୟା ଯେମନ୍ତ ବିଜେ ବରମାନେ । ୨୨ ।
ଆଞ୍ଚୋବନ ସାରି କର୍ପୂର ତାମ୍ବୋଳ ଭୁଞ୍ଜି
ଚନ୍ଦ୍ରଶାଳା ପୁରେ ଯାଇଂ ନିର୍ଷ୍ଟିନ୍ତେ ଶୟନ ଭଜି । ୨୩ ।
ଯେତିକା ପଲଙ୍କେ ଶୟନ ପଞ୍ଚୁ ଭ୍ରାଥ ଦ୍ରୋପଦୀ
ନିଦ୍ରା ଆଳସେ ପାହିଲାକ ନିଶାରାତି । ୨୪ ।
ସ୍ନାହାନ ନିତ୍ୟକର୍ମ ସାରିଲେ ଧର୍ମସୁତେ
ଦୁଣ୍ଡିଉଛବ ବନ୍ଦାପନା ହୋଇଲେ ତୋଷ ଚିତ୍ତେ । ୨୫ ।
ଚତୁର୍ଥଦିବସେଣ ହୋଇଲା ରାତି
ଯେ ବିଧି କାର୍ଯ୍ୟ ସାରିଲେ ନଗ୍ର ଯତି । ୨୬ ।
କର୍ଦ୍ଦନ ଉଛବ ସାରିଲେ ପଞ୍ଚଇ ଦିବସେ
ଖେଳନ୍ତି କୁତୁହୋଳେ ବିଭା ମଙ୍ଗଳ ହରଷେ । ୨୭ ।
କେହୁ କୁଙ୍କୁମ ଯେମନ୍ତ ଯେ ହୋଅନ୍ତି ମରାମରି
କର୍ଦ୍ଦନ ଦେହ ଯେ ହୋଇଲା ସବୁଙ୍କରି । ୨୮ ।

୨୭।୧ କର୍ଦ୍ଦନ, ଚନ୍ଦନ ପାଠ ଅଛି ।

ନଗ୍ରୀର ସ୍ନାହାନେ ବିଜେ ସର୍ବଜନେ
ଗଙ୍ଗାଙ୍କୁ ଉଛବ ଯେ କରନ୍ତି ବିଧାନେ । ୨୯ ।
ସପତମ ଦିବସେ ଇନ୍ଦ୍ର ଉଛବ ଯେ କରି
ଅଷ୍ଟ ଦିବସେ ଅଷ୍ଟମଙ୍ଗଳା ବିଧି ଯେ ସାରି । ୩୦ ।
ବିରବେଶ ସାରି ଆସନ୍ତି ଦ୍ରୋପଦ ଭୁବନୁଂ
ସେହି କୁସ୍ଥଳଶାଳେ ରହିଲେ ଯେ କୋଇନ୍ତୀଙ୍କର ତନୁ । ୩୧ ।
କୋଇନ୍ତୀଯେ ଅନ୍ନ ପରଷନ୍ତି ଭୁଞ୍ଜନ୍ତି ପଞ୍ଚୁ ଭ୍ରାଥେ
ପଞ୍ଚାଳ ଦେଶେ ପାଣ୍ଡବେ ହୋଇଲେ ଉଦିତେ । ୩୨ ।
ଶ୍ରୀରାମକୃଷ୍ଣ ଗଲେ ଯେ ଦ୍ୱାରକା ଭୁବନେ
ବଳରାମେ ବୋଇଲେ ତୁ ଶୁଣ ଜନାର୍ଦ୍ଦନେ । ୩୩ ।
ଆମ୍ଭେ ଯିବା ହାଦେ ହସ୍ତିନା ନଗ୍ର ବାଟେ
ହସ୍ତିନାଯେ ବାରତା କରିବା ଧୃତରାଷ୍ଟ୍ରେ । ୩୪ ।
ବଳରାମଙ୍କର ବଚନେ ଅଲଙ୍ଘିତେ ଦେବ ହରି
ବିଜେ ନାଗପୁରଣ ଯେ ହସ୍ତିନା ନଗ୍ର ପୁରୀ । ୩୫ ।
ସଞ୍ଜୟେ ଜଣାଇଲେ ଯେ ଶୁଣିମା ଧୃତରାଷ୍ଟ୍ରେ
ଦ୍ୱାରକା ସମ୍ପାଦ ଘେନି ବିଜୟେ ରାମକୃଷ୍ଣେ । ୩୬ ।
ଶୁଣିଣ ଆସ୍ଥାନ ତେଜ୍ୟା କରି ଉଠିଲ ଅନ୍ଧରାଜା
ରାମକୃଷ୍ଣ ପଦ୍ମ ପାଦେ କଲକ ବିବ୍ୟ ପୂଜା । ୩୭ ।
ଶତେ ସହସ୍ର ଦଣ୍ଡ ହୋଇଲ ପରଣାମି
ଅନେକ ପୁଣ୍ୟ ଅରଜିଲ ଭଜିବା ଦେବ ସ୍ୱାମୀ । ୩୮ ।
କେଣିକ ବିଜୟୁ ବଧୂମାନନ୍ତି ଘେନି
ରାଜା ଉଗ୍ରସେନ ସହିତେ ରାମକୃଷ୍ଣ ବେନି । ୩୯ ।
ଶୁଣ ହୋ ଧୃତରାଷ୍ଟ୍ର ବୋଲନ୍ତି ବଳେବର
ଆମ୍ଭେ ଥିଲୁ ହାଦେ ଅର୍ଜୁନ ସମ୍ବମ୍ବର । ୪୦ ।
ଧୃତରାଷ୍ଟ୍ର ପଚ୍ଚରିଲେ ଶୁଣିମା ବଳଦେବ
ବଡାଇ କଥାଯେତ କହିଲ ଅସମ୍ଭବ । ୪୧ ।

---

୨୯।୨ { ନାନା ଉଛବ ଯେ କରନ୍ତି ବିଧାନେ
ବରକନ୍ୟାଙ୍କୁ ଯେ କରାଇଲେ ସ୍ନାହାନେ ।

୩୬।୧ ସମ୍ପାଦ—ସମ୍ବାଦ ।

ସଂସାରେ ଶୁଣିଲୁ ଯେ ଦ୍ରୋପଦୀ ସୟମ୍ବର
ଲକ୍ଷେକ ନୃପତି ମିଳଲେ ତାହାର ପୁର । ୪୨ ।
ପାଣ୍ଡବେ ମଲେ ଯେ ଜଦୁର ଘରେ ପଶି
ଅର୍ଜୁନ ସୟମ୍ବର ବୋଲ କେମନ୍ତେ ପରକାଶି । ୪୩ ।
ବଳରାମେ ବଦନ୍ତି ଶୁଣ ଅମ୍ବିକାର ସୁତ
କେହି ଜାଣି ନୁଆରଲେ ପ୍ରେସନେକ କୃତ୍ୟ । ୪୪ ।
ଦ୍ରୋପଦ ରାଜା ଯେ ସୟମ୍ବର କଲା
ଅର୍ଜୁନଙ୍କୁ ଦେବ ବୋଲଣ ସେ ଲଖେକ ପାତଲା । ୪୫ ।
ଷୋଳ ଦିବସ ପରିଯନ୍ତେ ହୋଇଲା ସୟମ୍ବର
ସମସ୍ତ ରାଜାପ୍ରେ ଧଂସି ହୋଇଲେ ସେ ଲଖର । ୪୬ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆବର ଦୁଯୋଧନ
ସମସ୍ତ ରାଜାମାନେ ପାଇଲେ ଅପମାନ । ୪୭ ।
ତଦଅନ୍ତେ ପ୍ରବେଶ ହୋଇଲେ ପାଣ୍ଡବ ପାଞ୍ଚ ଭ୍ରାଥ
ମହାଲଖ ବନ୍ଧିଲା ସେ ବାସବର ସୁତ । ୪୮ ।
ଧୃତରାଷ୍ଟ୍ର ଅର୍ମ୍ମିଭୂତ ହୋଇଲା ତାହା ଶୁଣି
କେମନ୍ତ କଥାପ୍ରେତ କହିଲ ହଳପାଣି । ୪୯ ।
ଜଦୁର ଘରେ ପାଣ୍ଡବେ ହୋଇଲେ ଦହନ
ଆପଣେ ତୁମ୍ଭେ ହୋ ଦେଖିଲ ଦେବରାଜ । ୫୦ ।
ପ୍ରେତ କାର୍ଯ୍ୟ କରାଇଲ ଆପଣେ ତୁମ୍ଭେ ଥାଇ
ଆବର ପାଣ୍ଡବେ ଦେବ ଅଛନ୍ତି ଅବା କାହିଂ । ୫୧ ।
ପୁଣ୍ଡରୀକ ବାସୁଦେବ ଯେହ୍ନେ ବହେ ନାମ
ତେମନ୍ତ ପାଣ୍ଡବ ଅବା ଦେଖିଲ ବଳରାମ । ୫୨ ।
ବଳରାମେ ବୋଇଲେ ଯେ ନୋହଇ ତେମନ୍ତ
ପ୍ରତକ୍ଷେ ଦେଖିଲୁଟି ପାଣ୍ଡବ ପଞ୍ଚୁ ଭ୍ରାଥ । ୫୩ ।
ଯୁଦ୍ଧେଷ୍ଟି ଭୀମ ଅର୍ଜୁନ ନକୁଳ ସହଦେବ
କୋଇନ୍ତା ଆଦ କରି ଦେଖିଲୁ ସେହି ଠାବ । ୫୪ ।

---

୫୪।୨ କୋଇନ୍ତା ଆଦ କରି ଦେଖିଲୁ ସ୍ୱେକଠାବ ।

ଯେ କା ଦ୍ରୋପଦୀଙ୍କ ବିଭା ହୋଇଲେ ପାଞ୍ଚ ଭାଇ
ଧୌମ୍ୟ ପୁରୋହିତେ ବ୍ୟାସ ମୁଖ୍ୟ ଥିଲେ ତହିଁ । ୫୫ ।
ବ୍ୟାସଙ୍କର କୋଳେ ବସି ହୋଇଲେ ପ୍ରଦାନ
ଇନ୍ଦ୍ର ଦେବତା ଯେ ବିଜୟେ ସେହି ଥାନ । ୫୬ ।
ପଣ୍ଡୁର ନନ୍ଦନ ବିଚିତ୍ରବୀର୍ଯ୍ୟ ଅଜା
ଶାନ୍ତେନୁ ଅଟନ୍ତି ଯେ ତାହାଙ୍କର ପଣ ଅଜା । ୫୭ ।
ଅନେକ ଯଉତୁକ ଦିଲେକ ଦ୍ରୋପଦ
ଧନ ଧାନ୍ୟ ଗୋଧନ ଗଜ ଅଶ୍ଵ ରଥ । ୫୮ ।
ଭଣ୍ଡାର ଦେଶ ପାଟଦଣ୍ଡ ଆଦି କରି
ଅନେକ ସମ୍ପଦ କହିତେ କ ପାରି । ୫୯ ।
ଧୃତରାଷ୍ଟ୍ର ବୋଇଲେ ଯେ ହୋଇଲା କେମନ୍ତ
ଭସ୍ମ ଆଙ୍କୋରିଲା ମୁଂ ନ ଜାଣଇ ତଥ୍ୟ । ୬୦ ।
କେବଣ ମାୟା ଯେ ନୁଆରିଲି ଜାଣି
ଧୃତରାଷ୍ଟ୍ର ଅଗ୍ରତେ କହନ୍ତି ହଳପାଣି । ୬୧ ।
ଯୁଧିଷ୍ଠିରଙ୍କି ପଚାରିଲୁ ସେ କହିଲେ ସମସ୍ତ
ଯେବେଣ ଦିନେ ଦହନ ହୋଇଲେ ଗିରି ବାରୁଣାବନ୍ତ । ୬୨ ।
ରାତ୍ରେ ବାହାର ହୋଇ ଜତୁର ଘରୁ ପଳାଇଲୁ
ସେହି ରାତ୍ରେ ସୁରନଦୀ ତୀରେ ବିଶ୍ରମିଲୁ । ୬୩ ।
ନାବରେ ବସି ହୋଅନ୍ତେ ପାରି
ଭୀମସେନ ମାଇଲା ଦଇତ କୁମ୍ଭିରି । ୬୪ ।
କନ୍ୟା ଦଇତକୁ ମାଇଲା ମଧୁବନେ
ହିଡମ୍ବକ ବଧ କଲା ହିଡମ୍ବକ ବନେ । ୬୫ ।
ବକ ଦଇତ ମାଇଲା ଯେକଚକ୍ରା ନଗ୍ରରେ
ଅଙ୍ଗାରପନ୍ନଗଙ୍କଇ ଜିଣିଲୁଂ ବାଟରେ । ୬୬ ।
ମହାଲକ୍ଷ ବିନ୍ଧିଲା ପାର୍ଥ ବ୍ରାହ୍ମଣ ସରୂପେ
ବାରିତ ନୁଆରିଲେ ହୋଇଥିଲୁ ଗୋପ୍ୟେ । ୬୭ ।
ଅର୍ଜୁନ ଯେତେବେଳେ ମହାଲକ୍ଷ ବିନ୍ଧିଲା
ପୁଅ ତୋର ମାନଗୋବିନ୍ଦ ଅନ୍ନମିତେ ଗୋଳ କଲା । ୬୮ ।

ଅନେକ ସାଂଗ୍ରାମ ଛନ୍ଦୁଂ ହୋଇଲା ଅନ୍ୟାଅନ୍ୟ
ଅନେକ ଦେଶ ରାଜା ପଡ଼ିଲେ ଅନେକ ସଇନ । ୬୯ ।
ତାଳେକ ଉଛୁର୍ଗେ ସେ ବହିଲା ରକତ ନଦୀ
କାହାର କେତେ ପଡ଼ିଲେ ନୁଆଣିଲୁ ସମ୍ବାଦ । ୭୦ ।
ଦମନକ ଶାଲୁ ଶିଶୁ ାଳ ପୁଣ୍ଡରୀକ ରୁକ୍ମଣ
ଯେ ପାଞ୍ଚଙ୍କର କେଶ ଧରି ନେଲା ଭୀମସେନ । ୭୧ ।
ବାବୁ ଯୁଧିଷ୍ଠିର ଧନ୍ୟ ମହିମା ତାହାଙ୍କର
ଯେତେ କଷ୍ଟେ କୋପ ନ ବସେ ଶରୀର । ୭୨ ।
ଗୁଡ଼ହଅ ବୋଲି ଭୀମସେନକୁ ଆଗ୍ୟାଂ ଦିଲେ
ଜାନୁ ତଳେ ଗଳାଇ ଭୀମ ଯାଅ ରେ ଯା ବୋଇଲେ । ୭୩ ।
ଧୃତରାଷ୍ଟ୍ର ବୋଇଲା ମୋତେ କହିବା ବାକ୍ୟ ସତ୍ୟ
ଗାନ୍ଧାରୀ ପୁତ୍ରମାନେ ଅଛନ୍ତି କି ମୃତ । ୭୪ ।
ଗୋବିନ୍ଦେ ବୋଇଲେ ଆମ୍ଭେ ଦିବସେଣ ଦେଖିଲୁ
ରାତ୍ରକାଳେ ଯୁଦ୍ଧତ ତଦନ୍ତ କରି ନୁଆଣିଲୁ । ୭୫ ।
ଦଣ୍ଡଭଗ୍ନ ହୋଇଲା ଆଜକୁ ବାଇଶ ଦିନ
ରାଜ୍ୟେ କର୍ମେ ପ୍ରବେଶ ନୋହିଲା ଦୁର୍ଯୋଧନ । ୭୬ ।
ବଳରାମେ ବୋଇଲେ ବଡ଼ ଅପଚଯ୍ୟେ ଥାଠ
ବହୁତ ଦୂର ଚାଲି ନ ପାରନ୍ତି ବାଟ । ୭୭ ।
ଦଣ୍ଡ ସମ୍ଭାଳଣ ଆସଇ କୁରୁବଇଂ
ତେଣୁ ସେ ବିଳମ୍ବ ହୋଇ ଆସୁଅଛଇ କୁରୁସାଇଂ । ୭୮ ।
ଧୃତରାଷ୍ଟ୍ରେ ବୋଇଲେ ତୁମ୍ଭେ କହିଲ ଯେତେ କୃତ୍ୟେ
ଆବର କି ପୋଯ୍ୟେ ମୋର ଅଛନ୍ତି ଜୀବନ୍ତେ । ୭୯ ।
ବଳରାମେ ବୋଇଲେ ଯୁଧିଷ୍ଠିର ଅଣକୋପୀ
ଯେତେ କଷ୍ଟେହେଂ ଦୟା ନ ଛାଡ଼ିଲା ଅଦ୍ୟାପି । ୮୦ ।
ଯେତେକ କହି ଦେବ ଧୃତରାଷ୍ଟ୍ରଙ୍କୁ ସମାର୍ଜି
ମାଳାମ୍ବରଙ୍କ ବଚନେ କ୍ରୋଧ ରାଯ୍ୟେ ତେଜି । ୮୧ ।

---

୭୮।୧ କୁରୁବଇଂ—କୁରୁପତି ।
୮୧।୨ କ୍ରୋଧ—କୋହ, ଶୋକ ।

ଗୋବିନ୍ଦେ ବୋଇଲେ ହୋ ଶୁଣ ଧୃତରାଷ୍ଟ୍ର
ଯେହ୍ନେ ଦିନା ଗୃହରେ ପୁଅନ୍ତ ପାଉ ସିନା ଭେଟ । ୮୨ ।
ଆମ୍ଭେ ଯାଉଅଛୁ ଦ୍ୱାରକା ଭୁବନକୁ
ଯେବେହେଂ ତିଆର ହୋ ତୋର ପୁଅମାନଙ୍କୁ । ୮୩ ।
ପୁଅନ୍ତ ଘେନି ତୋର ଚଳ ପଞ୍ଚାଳ ଦେଶେ
ଯୁଧିଷ୍ଠିରଙ୍କୁ ଘେନି ଆସସି ହରଷେ । ୮୪ ।
ଧୃତରାଷ୍ଟ୍ର ବୋଇଲା ଦେବ ହର ରହିବା ଦିନା ଗୃହ
ଦ୍ରିଯୋଧନ ଅଇଲେ ତାକୁ କହିବାକ ତିଆର । ୮୫ ।
ଗୋବିନ୍ଦେ ବୋଇଲେ ଆମ୍ଭେ କୁଟୁମ୍ବ ସହିତେ
ପଞ୍ଚାଳ ଦେଶେ ଥିଲୁ ସୟମ୍ବର ଦେଖିବା ନିମନ୍ତେ । ୮୬ ।
ଦ୍ୱାରକା ଭୁବନେ ଯେହ୍ନାନ୍ତ ଶୁଣିଣ ଆସିବୁ
ଯେହ୍ନେ ପାଣ୍ଡବନ ଅନ୍ତରେ ବାହୁଡ ପ୍ରବେଶିବୁ । ୮୭ ।
ସର୍ବେ ସାଙ୍ଗହୋଇ ଯିବା ପଞ୍ଚାଳ ଦେଶକୁ
ଅନେକ ସମ୍ଭର୍ବେ ଆଣିବା ପଣ୍ଡୁର ପୁଅଙ୍କୁ । ୮୮ ।
ଯେସନେକେ ତିଆରି ରାମକୃଷ୍ଣ ବେନି
ଚଳନ୍ତ ନିଜ ଭୁବନେ ଯଦୁବଳ ଘେନି । ୮୯ ।
ଦ୍ୱାରକା ଭୁବନେ ହୋଇଲେ ପରବେଶ
ଦେଖିଣ ପୁରଜନେ ହୋଇଲେ ହରଷ । ୯୦ ।
ଦ୍ୱାରକା ଭୁବନେ ଅନେକ ହରଷ ଉଚ୍ଛବ ବଧାଇ
ଯେ ଯାହାର ଭୁବନେ ରହିଲେ ସର୍ବେ ଯାଇଂ । ୯୧ ।
କୁମ୍ଭମାସ ଶୁକଳ ପକ୍ଷ ତୃତୀୟା ରବିବାର
ରେବତି ନକ୍ଷତ୍ର ଯେ ଭୋଗ ସେ ଦିନର । ୯୨ ।
ଭଗ୍ନବଳ ଘେନି କୁରୁବଇ ମହାରାୟେ
ହସ୍ତିନା ଭୁବନେ ଯେ ଯାଇଂ କଲେକ ବିଜୟେ । ୯୩ ।
ସଞ୍ଜୟେ କହିଲେ ଧୃତରାଷ୍ଟ୍ରର ପାଶେ
ରାଜ୍ୟେଣ ବିଜେକଲା ରାଜା ଅନେକ ବରସେ । ୯୪ ।

---

୮୨।୧ ଧୃତରାଷ୍ଟ୍ର ସ୍ଥାନରେ ଧୃତରାଷ୍ଟ୍ର ପଦ ସବୁ ପୋଥିରେ ପାଠ ।

ଅଠର କ୍ଷଉଣୀ ବଳ ସନ୍ୟ ଘେନ ଗଲ୍ଲ
ସାତ କ୍ଷଉଣୀ ପଡଲ୍ଲ ଯୁଗାର କ୍ଷଉଣୀ ଘେନଣ ଅଇଲ୍ଲ । ୯୫ ।
ବ୍ରଣସ୍ଥାନ ହୋଇ ଦେବ ଜଣେ କେହ୍ନ ନାହିଁ
ସମସ୍ତେ ଆସୁଛନ୍ତ ଅବସ୍ଥା ଦୁଖ ପାଇଂ । ୯୬ ।
ଶୁଣି ଅନେକ ହରଷ ହୋଇଲ୍ଲ ଧୃତରାଷ୍ଟ୍ର
ଯେମନ୍ତେହେଂ ନସ୍ତରଲ ମୁଂ ପୁଅନ୍ତ ପାଇଲଇଂ ଭେଟ । ୯୭ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ କୃପ ଅଶସ୍ତମା ଭୂରିସବା
ଯେ ଯାହାର ଅନରୂପ ମାନ୍ୟ ଭଗତ୍ତ ସେବା । ୯୮ ।
ଅନେଶତ ପୁତ୍ର ସୁତ୍ତଲେ ଧୃତ୍ତରାଷ୍ଟ୍ରକୁ ପ୍ରଣପତ୍ୟ ହୋଇ
ଦୁର୍ଯୋଧନ ନମସ୍କାର ନ କଲ୍ଲ ପିତାକଇଂ । ୯୯ ।
ଆସ୍ତାନେ ବଜେକଲେ କଉରେବ ଶିରୋମଣି
ରାଜ୍ୟରେ ଶୁଭଇ ଯେ ଅନେକ କ୍ରୋଧ ଧୁନ । ୧୦୦ ।
ଯେତ୍କାନ୍ତେ ବଦୁରକୁ ହକାର ଧୃତରାଷ୍ଟ୍ର
ବୋଇଲ୍ଲ ପାଣ୍ଡବଙ୍କର ଭୁଲେ ପଡଲ୍ଲଟିକ ତୁମ୍ଭ ଭେଟ । ୧୦୧ ।

ବଦୁରେ ବୋଇଲେ ତୁମ୍ଭେ ଶୁଣ ଜେ୍ୟଷ୍ଟ ଭ୍ରାଥ
ମାନବେ ଶକ୍ୟ କାହିଂ ପାଣ୍ଡବଙ୍କ ଚରିତ । ୧୦୨ ।

ଦ୍ରୋପଦକୁ ଧରାଇ ଆଣିଲେ ଯେ ଗୁରୁ ଦ୍ରୋଣେ
ଅନେକ ହିଂସାସ ତାକୁ କଲେ କୁରୁଗଣେ । ୧୦୩ ।

ସେ ରାଗଖଣ୍ଡି ଦ୍ରୋପଦ ଧରିଥାଇ ହୃଦେ
ରାଜ୍ୟକୁ ନ ଯାଇ ଖଟିଲ୍ଲ ସଦାନନ୍ଦେ । ୧୦୪ ।

କୌରବନ୍ତ ନାଶିବ ବୋଲ ଘୋର ତପକଲ୍ଲ
ଭୀଷ୍ମ ଦ୍ରୋଣ ଜିଣିମି ବୋଲ ଦ୍ରୋପଦ ବର ଯେ ମାଗିଲ୍ଲ । ୧୦୫ ।

ଈଶ୍ବରେ ବୋଇଲେ ତୋହୋରେ ନୋହଇ ରେ ସାଧି
ଅର୍ଜୁନ ସେ ସାଂଗ୍ରାମେ ଅଟଇ ପ୍ରତିବାଧି । ୧୦୬ ।

---

୯୯ { ସବୁ ପୁତ୍ରେ ଶୋଇଲେ ଦଣ୍ଡ ପ୍ରଣାମ କରି
{ ବିନା ନମସ୍କାରେ ଦୁର୍ଯୋଧନ ଯେ ଉଭାରେ ।

ଦୁର୍ବାସା ରାଇ ଆଜ୍ୟାଂ ହଲେ ହିପୁରାର
ମହାଯାଗ୍ୟଂ ଜାତ କରି ହଅସି ଦ୍ରୋପଦକୁ ଯେଉଁକଇ କୁମାରୀ । ୧୦୭ ।
ଅର୍ଜୁନକୁ ପ୍ରଦାନ କରି ସେ ଦୋହିତ
କୌରବେନ୍ତ ହିଂଘାସ କରାଉ ସେ ଅର୍ଜୁନର ହାଥ । ୧୦୮ ।
ସଦାଶିବଙ୍କ ବଚନେ ରାଜା ଚଳିଲା ନିଜ ପୁରେ
ମହାଯାଗ ନୃପତ୍ତି ଆରମ୍ଭ କରାଇଲା ଅନେକ ସମ୍ଭରେ । ୧୦୯ ।
ଯାଗେ ଯାଗନିକ ଦଶଲକ୍ଷ ମହାମୁନି
ମହାଯାଗ୍ୟଂ ଜାତ କଲେ ମେଁ ସିଦ୍ଧ୍ବେମା । ୧୧୦ ।
ଦୁହିତାକୁ ସମ୍ଭାଳି ରାଜା ଥିଲାକ ଯତନେ
ପାଣ୍ଡବେ ନାଶ ଯହୁଂ ଶୁଣିଲା ଜଦୁଘର ଦହନେ । ୧୧୧ ।
ଅର୍ଜୁନ ନ ପାଇ ରାଜା ସ୍ୱୟମ୍ବର କଲା
ଦୁର୍ଲଭ ଲାଖ ପାତିଲା କାହାକୁହିଂ ଶକ୍ୟ ଯେ ନୋହିଲା । ୧୧୨ ।
ଦେବତାଲେ ସାତତାଳ ମାନବତାଳେ ଅଣଗୃଶ ଉଚ୍ଚ
ରାଧାଚକ୍ର ଉପରେ ସୁବର୍ଣ୍ଣର ଯେଉଁକ ମାଛ । ୧୧୩ ।
ଲକ୍ଷେବଳ ଧନୁ ଦୁଷ୍ଟ ଯେ ପିନାକୀ
ଉପରକୁ ମୁଷ୍ଟି ତଳକୁ ଦୃଷ୍ଟି ପାଣି ଘଟ ନିରେକ୍ଷି । ୧୧୪ ।
ଯେଉଁହେନେକ ଅସମ୍ଭବ କରି ଦୁର୍ଲଭ ଲାଖ ସଞ୍ଚି
ମାନବେ ଶକ୍ୟ ନୋହିଲା ଧନୁ ନୁଆଁରଲେ କେହି ଆମଞ୍ଚି । ୧୧୫ ।
ଷୋଳହିନ ପରିଯନ୍ତେ କେହି ବନ୍ଧିନା ନୋହିଲା
ଭିକ୍ଷୁକ ବ୍ରାହ୍ମଣେକ ସଭାରୁ ବାହାର ହୋଇଲା । ୧୧୬ ।
କଞ୍ଚିତ ମ'ନକେ ଲାଖ ବନ୍ଧିଲା ଦିଜବର
ରାଧାଚକ୍ର ଫୁଟିଲା ପଡ଼ି ନାରାଜ ମାଛର ବାମ ଚକ୍ଷୁର । ୧୧୭ ।
ପ୍ରଥମ ହାନ୍ତ ଦୁର୍ଯୋଧନ ଗୋଳକଲା
କଇଛା ଜଗଜ୍ଜେଠୀ ସେ ଲାଖ ପୁଣିହିଂ ବନ୍ଧିଲା । ୧୧୮ ।
ମାଛର ବାମ ଚକ୍ଷୁରେ ଫୁଟି ଡାହାଣ ଚକ୍ଷୁରେ ନିକଳି
ଚକ୍ର ସହିତେ ଛିଡ଼ି ପଡ଼ିଲା ମହୀଥଳୀ । ୧୧୯ ।

---

୧୧୪।୧ ପିନାକ ପଦ ଭ୍ରମରେ ପିନାକୀ ହୋଇଅଛି ।

ଦ୍ରୋପଦୀ ଯେତେବେଳେ ବରତେ ଅଇଲା
ପୁଅ ତୋର ଦୁଯୋଧନ ଅନମିତେ ଗୋଳ କଲା । ୧୨୦ ।
ବ୍ରାହ୍ମଣକୁ ମାର ବୋଲ ଧାଇଂଲା ଧୂଶାସନ
ସାଂଗ୍ରାମକୁ ଭଯ୍ୟେ ନ କଲା ପଣ୍ଡିତ ବିଦୁଜନ । ୧୨୧ ।
ଆରେକ ବ୍ରାହ୍ମଣ ଗୋଷ୍ଠାଯ୍ୟେ ଦୁଇ ବୃଷ ଉପାଡ
ଗଜ ଯୂଥ ଦେଖି ଯେହ୍ନେ ଧାମଇଂ କେଶରୀ । ୧୨୨ ।
ପ୍ରଥମୁହ୍ନଂ ଆଣି ଧୂଶାସନକଇ ପିଠି
ଘାଯ୍ୟେ ନନ୍ଦନ ତୋହୋର ପଡଲା ମହୀ ଲୋଟି । ୧୨୩ ।
ବାଳ ଧରି ମୁଣ୍ଡ ମୋଡନ୍ତେଶ ହାଥେ
ଲଖବନ୍ଧା ବ୍ରାହ୍ମଣ ଧଇଲା ଭୁଇତେ । ୧୨୪ ।
ବଡ ଦଯ୍ୟାବନ୍ତ ସେ ଅଛଇ ଦ୍ୱିଜବର
ତାହାର ପ୍ରସାଦେ ରଖାଗଲେ ପୋଯ୍ୟେ ତୋହୋର । ୧୨୫ ।
ତେତେବେହ୍ନେଂ ନ ଧୁଝିଲା ମୂର୍ଖ ମାନଗୋବିନ୍ଦ
ଗୁରି ବ୍ରାହ୍ମଣେ ମାଇଲେ ଯ୍ୟେତେକ ସନ୍ୟବୃନ୍ଦ । ୧୨୬ ।
ଦୁଇ ରାତି ଦୁଇ ଦିବସ ହୋଇଲା ସମର
ଅଷ୍ଟାଦଶ ଯୋଜନ ପରିଯନ୍ତେ ପଡଲା ପଯ୍ୟେତ୍ତ । ୧୨୭ ।
ଅନେକ ସାଂଗ୍ରାମ ଦେଖିଲା ମୋହୋର ଅଛୁ
ଲକ୍ଷେ ରାଜା ଭଜଲେ ଦେଖି ନ ଫୁରଇ ମୋହୋର କଛୁ । ୧୨୮ ।
ଭୀଷ୍ମେ ଦ୍ରୋଣେ କହିଲେ ସାଂଗ୍ରାମର ଅନ୍ତେ
ସଚଯ୍ୟେ ପାଣ୍ଡବେ ଯ୍ୟେ ଅଛନ୍ତି ଗୁରିଭ୍ରାଥେ । ୧୨୯ ।
ଯ୍ୟେହେନେକ ବାରତା ଶୁଣିଲୁ ଘୋର ବନେ
ସଚଯ୍ୟେ କରି ଶୁଣିଲୁ ଯ୍ୟେ ପଣ୍ଡୁର ନନ୍ଦନେ । ୧୩୦ ।
ଧୃତରାଷ୍ଟ୍ର ବୋଇଲା ମୁଂ ପାଇଲ ଦିବ୍ୟ ଗ୍ୟାନ
ନଷ୍ଟଯ୍ୟେ ପାଣ୍ଡବେ ସେ ପଣ୍ଡୁର ପାଞ୍ଚ ନାନ । ୧୩୧ ।
ମୁହ୍ନଂ ଅବା ଅନ୍ଧ ହୋଇଲି ତୁମ୍ଭର ବଂଶେ
ଚକ୍ଷୁ ଥାଉଂ କମ୍ପେ ତୁମ୍ଭଙ୍କୁ ହୋଇଲା ଅଦୃଶ୍ୟେ । ୧୩୨ ।
ତୁମ୍ଭେ ଦଣ୍ଡ ଦେନି ପଳାଇଲ ଯେତେବେଳେ
ପାଣ୍ଡବନ୍ତ ଭେଟିଲି ଦ୍ରୋପଦ ମହୀପାଳେ । ୧୩୩ ।

ଶୁଭଯୋଗେ ବିଭା କଲା ଦ୍ରୋପଦୀ ନନ୍ଦିନୀ
ପଞ୍ଚୁ ପାଣ୍ଡବେ ପ୍ରଧାନ ହୋଇଲେ ପୃଥକା ସିଦ୍ଧସେନୀ । ୧୩୪ ।
ଅନେକ ଧନ ଭଣ୍ଡାର ରଥ ଗଜ ସନ୍ୟବଳ
ଅନେକ ଯଉତୁକ ଦିଲା ନୃପତି ପାଞ୍ଚାଳ ।୧୩୫ ।
ଶୁଣି ବିଦୁର ପଶୁରଇ ତୋଷ ଚିତ୍ତେ
ପୃଥିହେନେକ ସନ୍ଦେଶ ବାରତା ସ୍ୱାମୀ ପାଇଲ କେମନ୍ତେ । ୧୩୬ ।
ବିଦୁରର ଅଗ୍ରତେ କହିଲେ ଗାନ୍ଧାରୀ
ପାଣ୍ଡବଙ୍କ ବିଭା ବେଳେ ଥିଲେ ଶ୍ରୀମହରି । ୧୩୭ ।
ସମ୍ପର୍କେ ବିଭା ଯୋଗାଡମାନ ଦେବ ଦେଖି
ଚତୁର୍ଥ ଦିବସ ହୋଇଲା ବିଜେ କଲେ ପୃଥିକ । ୧୩୮ ।
ବିଭା ଯୋଗାଡମାନ ଅନେକ ଅଛନ୍ତି ଆଣି
ଆମ୍ଭନ୍ତ ଦେଖାଇଲେ ଶାରଙ୍ଗ ହଳପାଣି । ୧୩୯ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଶକୁନି ଦ୍ରିଯୋଧନ ବସାଇଂ
ସଞ୍ଜୟେ କହିଲେ ସେ ଆସ୍ଥାନେଣ ଯାଇଂ । ୧୪୦ ।
ମୂର୍ଖ ଭାବେ ବାବୁ ତୁ ମରାଇଲୁ ସଇନ
ପାଣ୍ଡବନ୍ତ କେହି ଯେ ନୁଆରିଲା ଚିହ୍ନ । ୧୪୧ ।
ବିଭାବେଳେ ଥିଲେ ଜଗନ୍ନାଥେ ବଳଦେବେ
ଦ୍ରୋପଦୀକ ପ୍ରଦାନ ହୋଇଲେ ପଞ୍ଚୁ ଯେ ପାଣ୍ଡବେ । ୧୪୨ ।
ଧୃତରାଷ୍ଟ୍ର ବୋଇଲେ ବାବୁ ପଞ୍ଚାଳ ଦେଶକୁ ଯିବା
ଗଉରବେ କରି ପୁଅନ୍ତ ଘେନିଣ ଆସିବା । ୧୪୩ ।
ସୋଦରେ ସୋଦରେ ସେ ଅନ୍ୟାଅନ୍ୟ
ତାହାଂକ ଆଦର ବାବୁ କାସ ଅଭିମାନୀ । ୧୪୪ ।
ଆନ ଯେବେ ତୁମ୍ଭନ୍ତ ଅପଚୟେ କରନ୍ତା
ତେବେ ସେ ବଂଶକୁ ମୋର ଲଜ୍ଜା ଉପୁଜନ୍ତା ।୧୪୫ ।
ସେ କଥାମାନ ଉପେକ୍ଷା କର ବାବୁ
ଆପଣା ବଡପଣ ଆପଣେ ରକ୍ଷା କରିବୁ । ୧୪୬ ।
ଧୃତରାଷ୍ଟ୍ର ବଚନେ ବୋଲଇ କୁରୁପତି
ଚିହ୍ନୁ ଚିହ୍ନୁ ପାଣ୍ଡବେ ମୋତେ କଲେ ପୃଷ୍ଠେ ଶାସ୍ତି । ୧୪୭ ।

ତାହାନ୍ତ ଆଣି ମୁଂ ଯିବଇଂ କେମନ୍ତେ
ପାଣ୍ଡବେ ଅଭାବ ମୋତେ ହୋଇଲା ଯୁଗତେ । ୧୪୮ ।
ମୁଂ ଅବା ତାହାନ୍ତ ନ ଚହ୍ନି କଲଇ ସମର
ଚହ୍ନୁ ଚହ୍ନୁ ସନ୍ୟନ୍ତ ମାରିଲେ ମୋହୋର । ୧୪୯ ।
ସେଥିର ପାଇଂ ମୋତେ ନ ବୋଲ ରାଜଦେବ
ଆବର ପାଣ୍ଡବଙ୍କ ଭୁଲେ କାହିଂ ସଦଭାବ । ୧୫୦ ।
ଭୀଷ୍ମ ବୋଇଲେ ଯେହା ନ ବୋଲ ଅକାରଣେ
ସେହ୍ନ ସେ ରଖିଲେଟି ଆମ୍ଭର ବଡ ପଣେ । ୧୫୧ ।
ନିଷ୍ଟୟ କର ଯେବେ କରନ୍ତେ ସମର
ଜଣେ କେହ୍ନ ଉବୁର ଆସନ୍ତେ କ ନଜ ପୁର । ୧୫୨ ।
ଅର୍ଜୁନର ଆମ୍ଭନ୍ତ ବହୁତ ଅଛଇ ଉପ୍ରୋଧ
ଭୀମସେନର କୋପ ସେହ୍ନ ସେ ନରୋଧ । ୧୫୩ ।
ଅଗ୍ୟାନ କଥାରେ କଛ୍ଛ ନାହିଂ ଦୋଷ
ଗୌରବ କର ଆଣିଲେ ଉପୁଜବ ବହୁତ ଯଶ । ୧୫୪ ।
ତୁ ଯଦ୍ୟପି ତାହାନ୍ତ ନୁଆଣିବୁ କୁରୁରାଜ ଦେବ
ତାହାଙ୍କର ରାଜ୍ୟକୁ କ ଆସିବାର ରହିବ । ୧୫୫ ।
ବହୁତ ମଣାଇ ବୋଇଲେ ଭୀଷ୍ମ ଦ୍ରୋଣେ
ଶୁଣି ସନମତ କଲା କୁରୁରାଣେ । ୧୫୬ ।
ଦିନା ଦଶ ସୁସ୍ତ କଲା ନଜ ସନ୍ୟବଳ
ଦଣ୍ଡ ସାଜିଲା ରାଜା କୁରୁବଇ ମହୀପାଳ । ୧୫୭ ।
ରଥ ଗଜ ଅଶ୍ୱ ସଇନ-ପାଦାନ୍ତ
ଭୀଷ୍ମ ଦ୍ରୋଣଙ୍କର ମୂଳେ ସମସ୍ତ ରଥୀ ମହାରଥୀ । ୧୫୮ ।
ମୀନ ମାସ କୃଷ୍ଣପକ୍ଷ ଚଉଠୀର ତିଥି
ଅର୍କବାର ସେ ଦିନ ନକ୍ଷତ୍ର ଭୋଗ ସ୍ୱାତି । ୧୫୯ ।
ବାଣିଜ୍ୟ ନାମେ କରଣ ହର୍ଷ ନାମେ ଯୋଗ
କୁମ୍ଭ ସଙ୍କରାନ୍ତିକ ଯେ ସତାଇଶ ଦିନ ଭୋଗ । ୧୬୦ ।

---

୧୪୯।୨ ତେଣୁ କର ପାଣ୍ଡବେ ମୋତେ କଲେ ଅପହାର ।
୧୫୨।୧ ନଉପ୍ରୋଧେ ଯେବେ କରନ୍ତେ ସମର ।

ରାଜ ବେଳଦଣ୍ଡ ଥାଉଂ କୁମ୍ଭ ଲଗ୍ନ ବେଳା
ପାପ ଲଗ୍ନ ନାହିଂ ବର୍ଦ୍ଧିତ ଚନ୍ଦ୍ରକଳା । ୧୬୧ ।
ସମଦଣ୍ଡ ଘେନଣ ନୃପତି କୁରୁସାଇଂ
ହସ୍ତିନାରୁ ବାହାର ହୋଇଲା ଥାଠ ଯେ ଚଳାଇ । ୧୬୨ ।
ଦୁର୍ଯୋଧନ ଗଲାର ଆରେକ ଦିନର
ଦ୍ୱାରକାଉଂ ପ୍ରବେଶ ହୋଇଲେ କୃଷ୍ଣ ନୀଳାମ୍ବର । ୧୬୩ ।
ଧୃତରାଷ୍ଟ୍ର ଅଗ୍ରତେ ପ୍ରବେଶ ହେବ ରାଜା
ଦେଖିଣ କୁରୁରାଇ କଲା ପାଦ ପୂଜା । ୧୬୪ ।
ଧୃତରାଷ୍ଟ୍ର ବୋଇଲେ ତଆରିଲ ଦୁର୍ଯୋଧନ
ସମଦଣ୍ଡ ଘେନଗଲା ପାଞ୍ଚାଳ ଭୁବନ । ୧୬୫ ।
ଧୃତରାଷ୍ଟ୍ର ବୋଇଲା ଦେବ ମୋହୋର ବଚନେ କରିବା
ପାଞ୍ଚାଳ ଦେଶକୁ ଚଳିଲ ସମସ୍ତେହେଂ ଯିବା । ୧୬୬ ।
ଧୃତରାଷ୍ଟ୍ର ବଚନ କାହ୍ନୁ ସର୍ଜ୍ଜିଷେଣ
ଦ୍ରୋପଡ ରାଜ୍ୟକୁ ଅନୁକୂଳ କଲେ ତତକ୍ଷଣ । ୧୬୭ ।
ମୀନ କୃଷ୍ଣ ପଞ୍ଚମୀ ବିଶାଖା ଚନ୍ଦ୍ରବାର
ଧୃତରାଷ୍ଟ୍ର ବିଜେକଲେ ରଥର ଉପର । ୧୬୮ ।
ବିଦୁର ସାରଥୀ ବାହଇ ତୁରଙ୍ଗ
ସଞ୍ଜୟେ ଗାନ୍ଧାରୀ ଭୂରିସର୍ବା ଆଗ । ୧୬୯ ।
ପଛେଣ ଚଳନ୍ତ ରାମ କୃଷ୍ଣ ବେନି
ରଥ ଗଜ ତୁରଙ୍ଗମ ସମଦଣ୍ଡ ସଇନ । ୧୭୦ ।
ପ୍ରଥମ ଦିବସରେ ଥାଠ ଚଳାଇ
ବିଶାଶତେ ଯୋଜନ ଉଜାଣ ଦେଶେ ଯାଇଂ । ୧୭୧ ।
ଆରେକ ଦିନ ରାଜା ଗଲା ଥାଠ ବଢି
ପଦ୍ମଦଳ ଦେଶେ ରହିଲା ଶତେ ଯୋଜନ ମାଡି । ୧୭୨ ।
ଆରେକ ଦିବସେ ରାଜା ଥାଠ ପଲାଣିଲା
ଛୟାଣୋଇ ଯୋଜନରେ ମନ୍ଦର ଦେଶେ ରହିଲା । ୧୭୩ ।

---

୧୭୩।୨ ମନ୍ଦର ସ୍ଥାନରେ ମନ୍ଦାର ପାଠ ଅଛି ।

ଆଉ ଦ୍ୱିନ ରାଜା ଥାଠ ଗଲା ଧେନ
ରୋହଣୀ ଗଙ୍ଗାକୂଳେ ମିଳଲେ ଯାଇଂ ସଇନ । ୧୨୪ ।
ଯେହ୍ନମତ୍ତ ପଯ୍ୟାଣ କଲା ବାଇଶି ଦ୍ୱିବସ
ଉଦ୍ଧାଳେକ ପାଟଣାରେ ଯାଇଂ ହୋଇଲା ପ୍ରବେଶ । ୧୭୫ ।
ଦ୍ରୋପଦ ରାଜ୍ୟ ତହ୍ନଂକ ଚଉବାଂଶ ଯୋଜନ
ଆସ୍ତାନେ ଦେଶାନ୍ତରେ ବାରତା କରନ୍ତ ଘନ ଘନ । ୧୭୬ ।
ସମଦଣ୍ଡ ଧେନ ବଜେ ମାନଚନ୍ଦ୍ରଗୁଣ୍ଠି
ପାଣ୍ଡବେ ନେମା ନମନ୍ତେ ଆସଇ କୁରୁପତ୍ତ । ୧୭୭ ।
ଶୁଣିଣ ପାଞ୍ଚାଳ ଦେଶର ରାଜା ଆସଇ ଆସ୍ତାନୁ ଉଠି
ବାରତା ଜଣାଇଲେ ଯାଇଂ ଧର୍ମ ଯେ ଯୁଦ୍ଧେଷ୍ଟି । ୧୭୮ ।
ସମଦଣ୍ଡ ଧେନଣ ନୃପତ୍ତ ଧୃତ୍ତରାଷ୍ଟ୍ର
ଭୀଷ୍ମ ଦ୍ରୋଣ ଦ୍ରୁଯୋଧନ କର୍ଣ୍ଣ ରାମ କୃଷ୍ଣ । ୧୭୯ ।
ଯୁଦ୍ଧେଷ୍ଟି ବୋଇଲେ ଆହେ ଶୁଣ ଶିଖଣ୍ଡୀ
ରଥ ଗଜ ଅଶ୍ୱ ସବୁ ବହନ ଆଣ ମଣ୍ଡି । ୧୮୦ ।
ଆପଣେ ବଜେ କଲେ ଧୃତ୍ତରାଷ୍ଟ୍ର ରାମ କୃଷ୍ଣେ
ପାଚ୍ଛେଟି ଯିବା ଆମ୍ଭେ ଥୋକାଏ ଦୂର ବାଟେ । ୧୮୧ ।
ଆଗ୍ୟାଂ ପ୍ରମାଣେ ଧୃଷ୍ଟଦ୍ୟୁମନ ଶିଖଣ୍ଡୀ
ରଥ ଗଜ ଅଶ୍ୱ ସଇନ ବଳ ମଣ୍ଡି । ୧୮୨ ।
ଅନେକ ରତ୍ନେ ସେ ମଣ୍ଡିଲେ ଶ୍ୱେତ ହାଥୀ
ମୁକୁତା ମାଳମାନ ଲମ୍ବଇ ଚଉକତ୍ତ । ୧୮୩ ।
ଅନେକ ଗୃମର ଯେ ଡାଲମ୍ବା ନେତମାନ
ଶ୍ୱେତ ହାଥୀ ଉପରେ ବଜେ ଧର୍ମନାନ । ୧୮୪ ।
ହାଥୀଏକ ଚଢିଣ ବଜେ ପବନ ତନଏ
ଲକ୍ଷେ ମୁକୁଟବନ୍ଧା ଯୋଦ୍ଧା ଧେନ ଆଗିଆଣି ହୋଏ । ୧୮୫ ।
ହାଥୀଏକ ଚଢି ବାସବ ତନଏ
ବେନିଲକ୍ଷ ମୁକୁଟବନ୍ଧା ଯୋଦ୍ଧା ଧେନ ଯୁଦ୍ଧେଷ୍ଟିଙ୍କ ଡାହାଣ ପଖାଏ
।୧୮୬।

୧୮୨।୧ ଶ୍ରୀଖଣ୍ଡି, ଶ୍ରୀଖଣ୍ଡୀ, ଶିଖଣ୍ଡୀ ପାଠ ବଭିନ୍ନ ସ୍ଥାନରେ ଦେଖାଯାଏ।

ବେନିଲକ୍ଷ ମୁକୁଟବନ୍ଧା ଯୋଦ୍ଧା ଘେନିଣ ନକୁଳ
ଯୁଧିଷ୍ଠିରଙ୍କ ବାମ ପଖାୟେ ମାଦ୍ରୀର ଦୁଲାଳ । ୧୮୭ ।
ତୃତୀୟଲକ୍ଷ ମୁକୁଟବନ୍ଧା ଯୋଦ୍ଧା ଘେନିଣ ମନ୍ତ୍ରୀ ଚୂଡ଼ାମଣି
ଚଳଇ ସହଦେବ କୁମାର ଯୁଧିଷ୍ଠିରଙ୍କ ପଛୁଆଣି । ୧୮୮ ।
ସୁବର୍ଣ୍ଣ ରଥେ ଚଢ଼ି ଦ୍ରୋପଦ ନୃପତି
ମଭୁ୍ଁ ତେକ ରଥୀ ଘେନ ଯୁଧିଷ୍ଠିରଙ୍କ ପଛକତି । ୧୮୯ ।
ସହସ୍ରେକ ଯୋଦ୍ଧା ଘେନ ଧୃଷ୍ଟ ଯେ ଦ୍ୟୁମନ
ବେନି ପଖାୟେ ଉଭାର ଅଛନ୍ତି ପାଟଛତ୍ରମାନ । ୧୯୦ ।
ସହସ୍ରେ ଯୋଦ୍ଧା ଘେନ ଶିଖଣ୍ଡୀ ମହାବଳୀ
ବେନି ପଖାୟେ କୁମାରେ ଭ୍ରମରନ୍ତି ଢାଲି । ୧୯୧ ।
ଗାରତୂର ବଜଘୋଷ ଟମକ ନିଶାଣ
ବେନି ଲକ୍ଷ ବାଦ୍ୟକାର ବଜାନ୍ତି ଆଗେଣ । ୧୯୨ ।
ଯେସନେକ ସମୟେ ଯୁଧିଷ୍ଠିର ରାଜଦେବେ
ଗଙ୍ଗାର ଉତ୍ତର କୂଳେ ଚଳନ୍ତି ସମ୍ଭବେ । ୧୯୩ ।
ଗୋବିନ୍ଦେ ବୋଇଲେ ରାଜା ଶୁଣସି କୁରୁପତି
ବଡ଼ାଇ ସମ୍ଭବ ତ ପାଣ୍ଡବଙ୍କର ମୃତି । ୧୯୪ ।
ଧୃତରାଷ୍ଟ୍ର ବୋଇଲେ ଶୁଣ ହୋ ବିଦୁର
ବଡ଼ାଇ ସମ୍ଭବେ ତ ବାଜଇ ଗାରତୂର । ୧୯୫ ।
ବିଦୁର ବୋଇଲା ସ୍ୱାମୀ ପାପ କଲୁ ପୂର୍ବେ
ଚକ୍ଷୁଥିଲେ ଯୁଧିଷ୍ଠିର ସମ୍ପଦ ଦେଖନ୍ତୁନା ରାଜଦେବେ । ୧୯୬ ।
ଶ୍ୱେତ ହାଥୀୟେ ଆରୋହି ଧର୍ମର ତନୟେ
ପ୍ରତକ୍ଷେ ଦିଶୁଛନ୍ତି ଦେବ ଇନ୍ଦ୍ରଙ୍କ ଦରାୟେ । ୧୯୭ ।
ପାଞ୍ଚଲକ୍ଷ ଯୋଦ୍ଧା ଘେନିଣ ଦ୍ରୋପଦ ନୃପତ୍ୟ
ଭ୍ରମର ଛତ୍ର ଆଲମ୍ବ ଘେନି ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ବେନିଭ୍ରାଥେ । ୧୯୮ ।
ଶକୁନି ବୋଇଲା ଶୁଣ ବାବୁ ଦୁର୍ଯୋଧନ
ଦେଖ ଦେଖ ପାଣ୍ଡବଙ୍କର ମହିମା କୃତ୍ୟମାନ । ୧୯୯ ।
ଦେଖିଣ ବିସ୍ମୟେ ହୋଇଲା କୁରୁରାଣ
ବାରିନିଧିବଦନ ଗୋଟି କଲାକ ମଳିନ । ୨୦୦ ।

---

୧୯୪।୨ ମୃତ୍ତି—ମୂର୍ତ୍ତି    ୨୦୦।୨ ବାରି—ଜଳ । ନିଧି—ରତ୍ନ । ବାରିନିଧି—ଚନ୍ଦ୍ର ।

ଭୀଷ୍ମ ଦ୍ରୋଣ ଭୂରିଶ୍ରବା ସଞ୍ଜୟେ ବିଦୁର
ଯେମାନଙ୍କର ଅନେକ ଉତ୍ସବ ଶରୀର । ୨୦୧ ।
ଦୁର୍ଯୋଧନ ଶତେଭାଇ କର୍ଣ୍ଣ କୃପ ଶଲ୍ୟ ଅଶ୍ୱତ୍ଥାମା
ଯେମାନଙ୍କର ବିସ୍ମୟେ ଆକୁଳ ପଞ୍ଚ ଆତ୍ମା । ୨୦୨ ।
ପାଣ୍ଡବଙ୍କର ସମ୍ପଦ ଦେଖି ଉତ୍ସବ ଶକୁନ
ପିତୃକାର୍ଯ୍ୟ କରିବ ତ ମୁଁ ପାଣ୍ଡବନ୍ତ ଘେନ । ୨୦୩ ।
ଥୋକାଏ ଲୋକ ହରଷ ବରସ ବହୁତ
ଗଙ୍ଗାକୂଳେ ଯେହ୍ନେ ପରବତ ନଇରୁତ । ୨୦୪ ।
ସେ ପର୍ବତ ତଳେ ହୋଇଲେ ଭେଟା ଭେଟି
ହାଥୀରୁ ଓହ୍ଲାଇଲେ ଧର୍ମରାୟେ ଯୁଧିଷ୍ଠି । ୨୦୫ ।
ସଇନ ବେନି ଭାଗ ହୋଇଲେ ଯୁଧିଷ୍ଠିରନ୍ତ ଦେଖି
ସମସ୍ତ ଯୋଦ୍ଧାମାନେ ବାହାନନ୍ତ ଉପେକ୍ଷି । ୨୦୬ ।
ନନ୍ଦଘୋଷ ତେଜ୍ୟା କରି ଦେବହରି
ଯୁଧିଷ୍ଠିରଙ୍କ ମୁଖ ଚାହିଁ ନମସ୍କାର କରି । ୨୦୭ ।
ବଳରାମଙ୍କ ପଦ୍ମପାଦ ତଳେ ପ୍ରଣମି ଯୁଧିଷ୍ଠି
ତହୁଁ ନମସ୍କାର କଲେ ଯାଇ ରାଜା ଧୃତରାଷ୍ଟ୍ରି । ୨୦୮ ।
ଭୀଷ୍ମ ଦ୍ରୋଣ ଶକୁନଙ୍କୁ କରି ନମସ୍କାର
ଅଶ୍ୱତ୍ଥାମା କୃପ ଭୂରିଶ୍ରବା ଆବର । ୨୦୯ ।
ଯେମାନଙ୍କୁ ନମସ୍କାର କଲେ ଧର୍ମସୁତ
ସମସ୍ତେ ବାଞ୍ଛା କଲେ ଆମ୍ଭର ଆୟୁ ଘେନ ବ୍ରତ । ୨୧୦ ।
ଶତ୍ରୁମାର ଉଭା ହୁଅ ବାଞ୍ଛା ହୋଉ ସିଦ୍ଧ
ରାଜ୍ୟ ପ୍ରାପତ ହୋଉ କହିଲୁ ତୋତେ ସିଦ୍ଧ । ୨୧୧ ।
ଶ୍ରୀହସ୍ତେ ଅର୍ଘ୍ୟ ଘେନ ଦ୍ରୋପଦେଶ୍ୱର ରାଜା
ଧୃତରାଷ୍ଟ୍ର ପଦ୍ମପାଦେ କଲା ଦ୍ରବ୍ୟ ପୂଜା । ୨୧୨ ।
ଭୂରିଶ୍ରବାଙ୍କୁ ପୂଜା କରି ଭୀଷ୍ମ ଦ୍ରୋଣଙ୍କୁ
ଯେ ବିଧି ପୂଜା କଲା ଜ୍ୟେଷ୍ଠ ଅନୁକ୍ରମଙ୍କୁ । ୨୧୩ ।

ସୁବୃଧାନ କଥା କହନ୍ତ ସମସ୍ତ
କୁଶଳ ବାରତା ପଚ୍ଛରନ୍ତ ଦ୍ରୋପଦ ନୃପତ୍ୟ । ୨୧୪ ।
ସର୍ବ କୁଶଳ କହନ୍ତ ଯେ ଯାହାର ଆନନ୍ଦେ
ହେଠ ମାଥ ହୋଇ ବସିଲ ମାନ ଯେ ଗୋବନ୍ଦେ । ୨୧୫ ।
ଦୁର୍ଜସ୍ପେ ଆଦ୍ଧ କର ଗାନ୍ଧାରୀ ପୁତ୍ରମାନେ
ଭୀମସେନକଇ ଦେଖି ହେଠ ବଦନ ଅଭିମାନେ । ୨୧୬ ।
ଶକୁନ ବୋଇଲ ହୋ ତୁମ୍ଭେ ଯେ ହୁଅ ବଡ ଦୁଷ୍ଟ
ହାରବା ଜଣିମା ଷର୍ଣ୍ଣବୃତ୍ତି ଅଛଇ ପରମ ଯେ କଷ୍ଟ । ୨୧୭ ।
ସମାର୍ଜ ଦ୍ରୋପଦେ ଯେ ନଲେ ନଜ ପୁରେ
ଆସ୍ଥାନେ ଦୁଯୋଧନ ବଜସ୍ପେ ସନ୍ତରେ । ୨୧୮ ।
ବାହାନ ଉପେକ୍ଷି ବଜସ୍ପେ ଶ୍ରୀ ରାମକୃଷ୍ଣେ
ସଞ୍ଜୟ ବଦୁର ଆବର ଧୃତରାଷ୍ଟ୍ରେ । ୨୧୯ ।
ଭୀଷ୍ମ ଦ୍ରୋଣ ଭୂରସବା କର୍ଣ୍ଣ ଶଲ୍ୟ ଅଶସ୍ତମା
ବାହ୍ଲିକ ସୋମଦତ୍ତ ଶକୁନ କୃପବ୍ରହ୍ମା । ୨୨୦ ।
ଆସ୍ଥାନ ମଧ୍ୟେ ବସିଲେ ସର୍ବ ଯୋଦ୍ଧୀ
ଯୁଧିଷ୍ଠିର ପୂଜାକଲେ ଯାହାକୁ ଯେହ୍ନେ ବଧି । ୨୨୧ ।
ଯେ ଯାହାର ଅନରୂପେ ମାନନା ଅପାର
ଦୁଯୋଧନ କାହାକୁହିଂ ନ କଲ ନମସ୍କାର । ୨୨୨ ।
ମୂର୍ଖ ଏଣେ କାହାକୁହିଂ ନମସ୍କାର ନାହିଂ
ଅନେକ କୁଶଳ ବାରତା ହେଲେ କୁହାକୁହି । ୨୨୩ ।
ଧୃତରାଷ୍ଟ୍ର କୋଳ କର ନଲେ ଯୁଧିଷ୍ଠିରଙ୍କି
ବାବୁ ତୁମ୍ଭନ୍ତ ପରମାଦ ଶୁଣି ମୁଂ ଦୁଗୁଣେ ନରମାଖି । ୨୨୪ ।
କହୁଂ କହୁଂ କ୍ରୋଧଭର ନୃପତ ଧୃତରାଷ୍ଟ୍ରି
ପ୍ରବୋଧନା କରନ୍ତ ଧର୍ମରାସ୍ପେ ଯୁଧିଷ୍ଠିରି । ୨୨୫ ।
ସ୍ୱାମୀ ଜଦୁର ଘର ଯେତେବେଳେ ହୋଇଲ ଦହନ
ପଳାଇ ପଶିଲୁ ଯାଇଂ ମହାଘୋର ବନ । ୨୨୬ ।

---

୨୧୪ { ସମସ୍ତ କୁଶଳ କହନ୍ତ ଯେ ଯାହାର ଅନୁକ୍ରମେ
ହେଠମାଥ ହୋଇ ବସିଲ ରାଜା ଦୁଯୋଧନେ ।

୨୨୪।୨ ବାବୁ ତୁମ୍ଭନ୍ତ ପରାଭବ ଶୁଣି ମୁଂ ଦୁଗୁଣେ ନରମାଖି ।

ବହୁତ ଦୁର୍ଗମେ ଯେ ପଶିଲୁ ଅମାର୍ଗ ମାର୍ଗେ
ବନଜୀବ ଜନ୍ତୁ ଦେଖି କ୍ରୀଡ଼ିଲୁ ଅନେକ ରଙ୍ଗେ । ୨୨୭ ।
ବଜ୍ରକପଟରେ ବଂଶିକ ଅସୁର ଗୃହ ଥାଇ
ମେଦିନୀ ସହୁ ନ ଥିଲା ତାହାଙ୍କର ଭାର । ୨୨୮ ।
କୁମ୍ଭୀଷ କନ୍ଧରା ବକ ହିଡ଼ମ୍ବୀକା
ଗୃହ ଦଣ୍ଡୀ ମାଇଲେ ଦେବ ଭୀମସେନ ଏକା । ୨୨୯ ।
ଅଙ୍ଗାରପର୍ଣ୍ଣଙ୍କୁ ଜିଣିଲେ ଫାଲଗୁନ
ପୂଜା କଲା ବିଦ୍ୟାଧର ବହୁତ ଶସ୍ତ୍ର ଘେନ । ୨୩୦ ।
ଏହି ସମ୍ବରେ ନିମନ୍ତେ ଦ୍ରୋପଦ ନୃପତି
ଗଉତମୀ ତୀର୍ଥେ କଲା ସବୃନ୍ତ ନିମନ୍ତ । ୨୩୧ ।
ଆମ୍ଭେ ଥିଲୁ ଦେବ ଗଉତମୀ ତୀର୍ଥେ
ଏଥିକୁ ଅଇଲୁ ସମ୍ବରେ ଦେଖିବା ନିମନ୍ତେ । ୨୩୨ ।
କର୍ମେଣ ଦେବ ଲକ୍ଷ ବିନ୍ଧିଲା ବୀର ପାର୍ଥ
ଦୁଷ୍ଟ ରାଜାଏ ମିଳି ଏଥିକୁ କଲେକ ଅନର୍ଥ । ୨୩୩ ।
ଧୃତରାଷ୍ଟ୍ର ବୋଇଲେ ବାବୁ ତୁମ୍ଭେନ୍ତ ଦେଖିଲ
ଅନେକ ସାନନ୍ଦେ ମୁହିଂ ନିସ୍ତରିଲି ନିସ୍ତରିଲି । ୨୩୪ ।
ରାଜ୍ୟେଣ ଉଛବ କରାଇ ଦ୍ରୋପଦ
ମୁଣୋହିଂ ଯୋଗାଡ଼ମାନ କରନ୍ତୁ ପରମ ସାନନ୍ଦ । ୨୩୫ ।
ସ୍ନାହାନ ଯୋଗାଡ଼ ବୀରମାନନ୍ତ ଦିଲେ
ସୁଗନ୍ଧ ତଇଳ ଘେନ ଗଙ୍ଗାରେ ସ୍ନାହାନ ଯେ କଲେ । ୨୩୬ ।
ଅମୃତ ଯୋଗାଡ଼ମାନ ସଞ୍ଚିଲେ ମିଳି ସୂପକାରେ
ମୁଣୋହିଂରେ ବିଜେ କଲେ କୃଷ୍ଣ ବଳେବରେ । ୨୩୭ ।
ପାରଦଣ୍ଡ ରାଜାମାନନ୍ତ ଘେନ ଧୃତରାଷ୍ଟ୍ରେ
ମୁଣୋହିଂରେ ବିଜେ କଲେ ସକଳ ବଳିଷ୍ଟେ । ୨୩୮ ।
ଗଣ୍ଡା ହରିଣ ମୃଗ ମାଏଂସ ଭୋଜୀ
ପରଷନ୍ତ ତୁଲାଇ ଯେହୁ ଯେତେକ ଭୁଞ୍ଜି । ୨୩୯ ।

୨୩୦।୨ ପୂଜାକଲା ବିଦ୍ୟାଧର ବହୁତ ରତ୍ନ ଘେନ ।

ଭୁଞ୍ଜିଣ ସଇନ୍ୟ ଯେ ଅନେକ ନିପୁଣ
ହାସ୍ୟ ଲାସ୍ୟ ପରିହାସେ ସୂପକାରେ ପରଷନ୍ତି । ୨୪୦ ।
ଶାକ ମୁଗ ବ୍ୟଞ୍ଜନ ଆବର ବ୍ରୀହି ବଡ଼ା
ମଧୁ ଋଚ ଛେନା ମିଶ୍ରିତ ଝିରିବଡ଼ା । ୨୪୧ ।
ପାଚକ ମଧୁର ଘୃତ ମାଂସ ଭଜା
ମୃତନ୍ତ ଯେନ ପରଷନ୍ତି ଦ୍ରୋପଦେଶ୍ୱର ରାଜା । ୨୪୨ ।
ଆମିଷ ନିରାମିଷ ଯେ ଆମ୍ବିଳ ଅଲେଖ କାଞ୍ଜି
ଦଶାଶତେ ମେଞ୍ଜନ ଯେନ ସମସ୍ତେ ନିପୁଣ ହୋଇ ଭୁଞ୍ଜି । ୨୪୩ ।
ପିଠାର ମହିମାମାନ କହିତେ କ ପାରି
ଘୃତ ମଧୁରେ ସେ ଅମୃତ ରସ ସରି । ୨୪୪ ।
ବହୁତ ଗୋରସ ପରଷନ୍ତି ଆଣି
ଭୁଞ୍ଜିଣ ନିପୁଣ ହୋଇଲେ ନୃପମଣି । ୨୪୫ ।
ଆଚମନ କଲେ କରେ ଯେନ ରତ୍ନଝରି
ସୁବାସିତ ନୀର ଦିଲେ ସମସ୍ତଙ୍କ ଯେ କରି । ୨୪୬ ।
ସୁବର୍ଣ୍ଣ ଖଡ଼ିକା ଦିଲେ ଦନ୍ତଖୁଣ୍ଟା କାଠି
ବହୁତ ପ୍ରଶଂସିଲେ ନୃପତି ଧୃତରାଷ୍ଟ୍ରି । ୨୪୭ ।
ଧୃତରାଷ୍ଟ୍ର ବୋଇଲେ ଦ୍ରୋପଦ ମହିମା ତୋର ସାଧୁ ସାଧୁ
ଧନ୍ୟ ଧନ୍ୟ ମହିମା ତୋହୋର ଦୁହିତା ଯେ ଆମ୍ଭର କୁଳବଧୂ ।୨୪୮।
ବହୁତ ନିପୁଣ ଆମ୍ଭେ ହୋଇଲୁଁ ପାଞ୍ଚାଳ
ସ୍ନେହ ସଦଭାବ ତୋହୋର ପୁଅଙ୍କୁ ମୋର ଥାଉ ସର୍ବକାଳ । ୨୪୯ ।
ଦ୍ରୋପଦର ମହିମା କହଇ ଦୁର୍ଯୋଧନ
ଭେ ତାତ ଆମ୍ଭର ସେକ ରାଜ୍ୟର କସ ସନ୍ୟ । ୨୫୦ ।
ଲକ୍ଷେ ରାଜା ସନ୍ୟ ଯେନ ରହିଲେ ଷୋଳଦିନ ପରିଯନ୍ତେ
ସବୁନ୍ତ ଯୋଗାଡ଼ ଦେଉଥିଲ ସେହି ମତେ । ୨୫୧ ।
ସାଧୁ ସାଧୁ ଦ୍ରୋପଦ ମହିମା ତୋର ଧନ୍ୟ ଧନ୍ୟ
ସେତେ ମହିମା କରିବାକୁ ନାହିଁ ନା ମେଦିନୀ । ୨୫୨ ।

---

୨୪୩।୧  ମେଞ୍ଜନ—ବ୍ୟଞ୍ଜନ ।

ଦ୍ରୋପଡ ହୋଇଲେ ବହୁତ ଭଗତି ମାନ୍ୟ
ପଞ୍ଚାଳ ଦେଶେ ରହିଲେ କୁରୁପତି ଆଠଦିନ । ୨୫୩ ।
ଯୁଧିଷ୍ଠିର ଭୀମ ଅର୍ଜୁନ ନକୁଳ ସହଦେବ
ପୁତ୍ରନ୍ତ ଘେନ ରାଜା ହସ୍ତିନାକୁ ସଜ କଲା ସବ । ୨୫୪ ।
ଅନେକ ସମ୍ପଦେ ରାଜା ଥାଠ ଯେ ପଲାଣି
ଅନ୍ତେଶ୍ୱରେ ଥାଇ ଉତ୍ତର ଦଲେ କୋନ୍ତଭୋଜର ଦୁଲଣୀ । ୨୫୫ ।
ପୁଅନ୍ତ ଘେନ ମୋହୋର ଯିବେ ଯେବେ ହସ୍ତିନାକୁ
କାଲେ ସମ୍ଭାଳ ନୁଆରିବେ ଟେଁ ମୋହୋର ପୁତ୍ରଙ୍କୁ । ୨୫୬ ।
ପୁରଞ୍ଜନ ପଣ୍ଡାଙ୍କୁ ଘେନ ଯେବଣ କୁଠି
ଘରେକ ଭିଆଇଲେ ଜଉ ସଜଳସ ଗୁଆ ଘୃତ ଛଣପଠ । ୨୫୭ ।
ରାତ୍ରକାଳେ ସେ ପୁରଞ୍ଜନ ଜୁଇ ଲଗାଇଲା
ପରକୁ ହିଂସା କରି ସେ ଆପଣେ ନାଶ ଗଲା । ୨୫୮ ।
ଧର୍ମେଣ ପାରି ହୋଇ ପଳାଇଲୁ ଝାଡି
ପୁଅନ୍ତ ଘେନ ମୂର୍ଖଂ ତହିଂ ରହେ ନାଶ ଯାଇଥାନ୍ତି । ୨୫୯ ।
ଧୃତରାଷ୍ଟ୍ର ବୋଇଲା ମା ଗୋ ନ ଧର ସେମାନ
ଯେ ମ୍ନେହା ସଞ୍ଚିଲା ସେ ହୋଇଲା ନାଶପାନ । ୨୬୦ ।
ଧର୍ମହିଂ ସେ ବର୍ଦ୍ଧିତ ମା ଗୋ ଗୃହ ଯୁଗେ
ଧର୍ମଥିଲା ପ୍ରାଣୀ ପାରି ହୁଅନ୍ତି ଶୁଭ ଯୋଗେ । ୨୬୧ ।
ପାଞ୍ଚାଳୀ ଘେନ ମା ଗୋ ରଥେ ବଜେ କର
ମୂର୍ଖ ପୁଅଙ୍କର ମା ଗୋ ଦୋଷ ଯେ ନ ଧର । ୨୬୨ ।
ଯୁଧିଷ୍ଠିର ବୋଇଲେ ମା ଗୋ ଧୃତରାଷ୍ଟ୍ର ଥିବା ଯାଏଁ
ଦୁର୍ଯୋଧନ କଥାକୁ କସ ଅଭିମାନ ମାଏଁ । ୨୬୩ ।
ଯୁଗତେ ଗରବେଶ୍ୱର ବାଳୁତ ବୟସ
ଯେ ଯାହା ବୋଲଇ ସେ ସେହି କଥାରେ ବଶ । ୨୬୪ ।
ମାଆନ୍ତ ପ୍ରବୋଧନା କରନ୍ତି ଧର୍ମଶିଷ
ଶୁଭ ମଙ୍ଗଳ ଯୋଗେ ମା ଗୋ ବିମାନେଣ ବସ । ୨୬୫ ।

---

୨୬୦।୨ ନାଶପାନ—ପୂରା ନାଶ ।

ଆକାଶୁଂ ପୁଷ୍ପେକ ବିମାନ ଆଣିଲା ମାତଳି
ଦେବରଥେ ଆରୋହିଲେ କୋଇନ୍ତାପେ ପାଞ୍ଚାଳୀ । ୨୬୬ ।
ମାପେ ଅର୍ଘ୍ୟ ଢାଳେ ପାଞ୍ଚାଳୀର ଶିରେ
ଅନେକ ବାଟେଗେଣ ଖଟିଥିବ ସ୍ୱାମୀଙ୍କ ପୟରେ । ୨୬୭ ।
ମା ଗୋ ପ୍ରତକ୍ଷେ ନିରଞ୍ଜନୀ ମାନୁଷ ଅବତାର
ପେକା ଦୁହିତା କୋଟିପେ ପୁରୁଷ ମୁକତ କଲୁ ମୋହୋର । ୨୬୮ ।
ଧୃଷ୍ଟଦ୍ୟୁମନ ଶିଖଣ୍ଡୀ ବେନି ଭାଇ
କେଶିନୀ ମୃଦୁସୁଲି ଭୁଲେ ଥାଉଂ ଯାଇ । ୨୬୯ ।
ଅନେକ ସାନନ୍ଦ ପାଞ୍ଚାଳ ରାଜନ
ଶତେ ରଥେ ପୂରେଇଲା ପାଣିଦ୍ରବ୍ୟ ମାନ । ୨୭୦ ।
ମର୍ଭୂତେକ ରଥ ବେନି ମର୍ଭୂତ ହାଥୀ
ପାଞ୍ଚବୃନ୍ଦ ତୁରଙ୍ଗମ ତିନି ଷଉଣୀ ପାଦାନ୍ତ । ୨୭୧ ।
ପାଟଛତ୍ର ଉଦଣ୍ଡ ଉଲାଖ ପେକ ଲକ୍ଷି
ଚଉଦ ଲକ୍ଷ ଆଲମ୍ବ ଦ୍ରୋପତ ଦିଲା ଲେଖି । ୨୭୨ ।
ବାଜଣାମାନନ୍ତ ବେନି ବୃନ୍ଦ ସାଜି
ମହା ହାନ୍ଦୋଳଇ ଘୋର ବାଜଣା ଶବଦ ବାଜି । ୨୭୩ ।
ଲକ୍ଷେ ଗାଈ ଦିଲା ଦୁହାଂଲ ବତ୍ସା ଧେନୁ
ସଙ୍ଗେ ସମର୍ପିଲା ଶିଖଣ୍ଡୀ ନାମେ ତନୁ । ୨୭୪ ।
ଲକ୍ଷେକ ପଟବାସ ଦେନିଣ ମୃଦୁସୁଲି କେଶିନୀ
ସନ୍ନିଧେ ସୁନ୍ଦରୀ ଖଟନ୍ତି ଯିଦୁସେନୀ । ୨୭୫ ।
କୁମ୍ଭମାସ ପୂର୍ଣ୍ଣିମୀ ଅନ୍ତେ ଚଉଠୀ
ଶଉରୀବାର ସ୍ୱାଷ୍ଟି ନକ୍ଷତ୍ର ବେଲ ବେନି ଘଟି । ୨୭୬ ।

---

୨୬୮।୨ "ପେକା ଦୁହିତା କୋଟିପେ ପୁରୁଷ ମୁକତ କଲୁ ମୋହୋର" ପାଦାନ୍ତ ପରେ ଅଧିକା ପାଠ—

ସମସ୍ତ ପିତୃଲୋକ ଗଲେ ବଇକୁଣ୍ଠପୁରୀ
ପେକା ଦୁହିତା ମୋର କୋଟିପେ ପୁରୁଷ ଉଦ୍ଧରି ।

୨୬୮।୧ ନିରଞ୍ଜନୀ—ଦୁର୍ଗା ।

୨୭୨।୨ ଚଉଦୋଳା ମର୍ଭୂତେକ ନୃପତ ଦିଲା ଲେଖି ।

ବେନ ଘଡ଼ି ଉତ୍ତାରୁ ବୃହସ୍ପତିଙ୍କର ବେଳା
ହରଷଣ ନାମେ ଯୋଗ କରଣ ବାଣିଜ୍ୟ ହୋଇଲା । ୨୭୭ ।

ମୀନ ଲଗ୍ନେ ତହିଂ ପାପ ଗ୍ରହ କିଛି ନାହିଂ
ଦୃଷ୍ଟାସ୍ୟେ ବୃହସ୍ପତି ଚଳିଲେ ରଥ ବାହି । ୨୭୮ ।

ପାଞ୍ଚାଳ ଦେଶୁଂ ଚଳଇ ସଇନ
ଅନେକ ସ୍ତ୍ରିଗଣେ କଲେ ମଙ୍ଗଳ ଧୂନ । ୨୭୯ ।

ଅମୃତ ଲଗ୍ନ ବେଳେ ଚଳିଲେ ଆଠ ଗୋଟି
ଦଣ୍ଡ ଘେନ ଦ୍ରୋପଡ଼ି ଆସଇ ପାଣ୍ଡୁଛି । ୨୮୦ ।

ଗନ୍ଧର୍ବ ନଦୀ ବହଇ ସତୁରି ଯୋଜନ
ତହିଂ ପରଯନ୍ତେ ଗଲେ ପଞ୍ଚାଳ ରାଜନ । ୨୮୧ ।

ତହୁଂ ମିଳିଲେ ଗନ୍ଧମାର୍ଦ୍ଦନ ପର୍ବତ ନିକଟେ
ରଥୁଂ ଓହ୍ଲାଇଲେ ନୃପତି ଧୃତରାଷ୍ଟ୍ରେ । ୨୮୨ ।

କୋଳକଲେ ଧୃତରାଷ୍ଟ୍ରେ ଦ୍ରୋପଡ଼ିରାଜାଙ୍କୁ
ଭୋ ସମୁଧି ଗତ ଦୋଷମାନ ନ ଧରିବୁ ମୋହୋର ପୁତ୍ରଙ୍କୁ । ୨୮୩ ।

ବାଳୁତ ଅଗ୍ୟାନ ତାହାଙ୍କର କିସ ବୁଦ୍ଧି
ଦ୍ରୋଣଙ୍କ ବଚନେ ତୋତେ ହୋଇଲେ ଅପ୍ରାଧି । ୨୮୪ ।

ଅର୍ଜୁନ ତୋହୋର ଯେଣୁ ହୋଇଲା ଜାମାତା
ସେ ସମସ୍ତ ଗଲା ଅର୍ଜୁନ ଦେଖନ୍ତା । ୨୮୫ ।

ଦୁହିତାକୁ ତୋହୋର ତଆରସି ରାଯ୍ୟେ
ଦୋଷ ନ ଧରିବ ମୋହୋର ମୂର୍ଖ ଯେ ତନୟେ । ୨୮୬ ।

ଦୋଷ ଉପେକ୍ଷିବା ଦଶବେଳ ପରଯନ୍ତେ
ତହୁଂ ତେଣିକି ଭୁଞ୍ଜିବେ ଯେ ଯାହାର ଲଖିତେ । ୨୮୭ ।

ଦ୍ରୋପଡ଼ି ବୋଇଲେ ସେ ପରମ ମାହେଶ୍ୱରୀ
ସର୍ବଗ୍ୟଂ ସତ୍ୟ ସେ ତାହାକୁ କିସ ମୁଂ ତଆରି । ୨୮୮ ।

ବାହୁଡ଼ି ଯାଅସି ସମୁଧି ନିଜ ରାଜ୍ୟେ
ଭୁଲେଣ ଯାଆନ୍ତୁ ତୋର ବେନ ଯେ ଆତ୍ମଜେ । ୨୮୯ ।

ଚଳନ୍ତି ଦ୍ରୌପଦୀ ସମସ୍ତଙ୍କୁ କଲ୍ୟାଣ କରି
ଜଣେ ଜଣେ ଭଉଣୀରଇ ସଭିଙ୍କର ହାଥ ଧରି । ୨୯୦ ।
ଗନ୍ଧର୍ବ ନନ୍ଦୀ ଶାରୁଂ ବାହୁଡ଼ିଲେ ନୃପତି
ଚଳିଲେ କୁରୁନାଥ ହୋଇ ଦକ୍ଷିଣ ମୂରତି । ୨୯୧ ।
ମେଷମାସ ଶୁକ୍ଳପକ୍ଷ ତୃତୀୟା ଗୁରୁବାର
ରୋହିଣୀ ନାମ ନକ୍ଷତ୍ର ଭୋଗ ସେ ଦିନର । ୨୯୨ ।
ଗରନାମେ କରଣ ଶୁଭନାମେ ଯୋଗ
ରୋହିଣୀ ନକ୍ଷତ୍ରେ ଚନ୍ଦ୍ର ଗୁରୁ ଦଣ୍ଡେ ଭୋଗ । ୨୯୩ ।
ପ୍ରଥମ ଦିନଦଣ୍ଡରେ ବୃହସ୍ପତିଙ୍କ ବେଳା
ବୃଷ ଲଗ୍ନେ ନାହିଂ ପାପ ଗ୍ରହ କଳା । ୨୯୪ ।
ମାହେନ୍ଦ୍ର ଯୋଗ ବାର ଶୁଭ ଅନୁକୂଳେ
ହସ୍ତିନା ରାଜ୍ୟେ ପ୍ରବେଶ ଶୁଭ ମଙ୍ଗଳ ବେଳେ । ୨୯୫ ।
ଦେଖିଣ ରାଜ୍ୟଲୋକେ ହୋଇଲେ ଆନନ୍ଦ
ହୁଳହୁଳି ଦିଅନ୍ତି ସାତ ନାରୀବୃନ୍ଦ । ୨୯୬ ।
ଯୁଧିଷ୍ଠିର ବୋଇଲେ ତାତ ଆମ୍ଭେ ବାରୁଣାବନ୍ତେ ଥାଉଂ
ପରମଳ ଭୂମିରେ ଯେ ଆମ୍ଭେ ଏଥି ରହୁଂ । ୨୯୭ ।
ଧୃତରାଷ୍ଟ୍ର ବୋଇଲେ ବାବୁ ନ ବୋଲ ଏମନ୍ତ
ଏକଆତ୍ମା ହୋଇଥିବ ପାଞ୍ଚ ଉତ୍ତର ଶତେ ଭ୍ରାଥ । ୨୯୮ ।
ବାବୁ ଅନେକ ହିଂସା ଅପବାଦ କରିଥିଲୁ
ଦହନ ବାରତା ଶୁଣି ଅନେକ ବିକଳ ହୋଇଲୁଂ । ୨୯୯ ।
ହେ ପଣ୍ଡିତ ଜନେ ପରମାଣି ବୁଝିବା
ସୋଦରେ ହିଂସା ଅପବାଦ ନ କରିବା । ୩୦୦ ।
ପୂଅନ୍ତି ସମାର୍ଜି ନୃପତି କୁରୁଙ୍କରେ
ପ୍ରବେଶ ହୋଇଲେ ଯାଇଂ ହସ୍ତିନା ନଗରେ । ୩୦୧ ।
ପୁରଜନମାନେ କଲେ ହା ହା କାର ଧ୍ୱନି
କାହିଂ ଗୋପ୍ୟ ହୋଇଥିଲେ ଏ କାହ୍ନମାନ ଯେନି । ୩୦୨ ।

---

୩୦୨।୨ ଗଣିକାଗଣମାନେ ଦିଅନ୍ତି ହୁଳହୁଳି ।

ଅନେକ ମଙ୍ଗଳ ଜୟ ଜୟ ଧ୍ୱନି ଛୋଳି
କାମିନୀଗଣମାନେ ଦିଅନ୍ତି ହୁଳହୁଳି । ୩୦୩ ।
ନିଜ ନବରେଣ ପ୍ରବେଶ ତତ୍‌କ୍ଷଣ
ଅର୍ଘ୍ୟ ଘେନି ବାହାର ହୋଇଲେ ଭାନୁମତୀ । ୩୦୪ ।
ଦ୍ରୌପଦୀଙ୍କ ଶିରେ ଅର୍ଘ୍ୟ ଯେ ବନ୍ଦାଇ
ଶତ ସହସ୍ର ଦଣ୍ଡ ପ୍ରଲମ୍ବିତ ହୋଇ । ୩୦୫ ।
ଅନେକ ମଙ୍ଗଳ ଯେ କରଇ ଭାନୁମତୀ
ଅନେକ ରତ୍ନ ଯୋଗାଡ଼ ପାଇଲେ ଦ୍ରୌପଦୀ । ୩୦୬ ।
ହସ୍ତିନା ନଗରର ପଶ୍ଚିମକଣ୍ଠ ଆଡ଼େ
ରହିଲେ ପାଣ୍ଡବେ ପୁଷ୍ପ୍ୟା ନଦୀ କଇଗ୍ରାଡ଼େ । ୩୦୭ ।
ଯୁଧିଷ୍ଠିର ଦେବଙ୍କୁ ଆସ୍ଥାନକୁ ଅଣାଇଂ
ଆସ୍ଥାନେ ବିଜେ କରଛନ୍ତି କୁରୁସାଇଂ । ୩୦୮ ।
ସଭାପ୍ୟେଣ ବାସୁଦେବ ବଚନ ପରକାଶି
ଆହା ଦୁର୍ଯୋଧନ ପାଣ୍ଡବଙ୍କୁ ସମ୍ଭାଳି ଥାଅସି । ୩୦୯ ।

---

୩୦୩।୨ କାମିନୀ ଗଣମାନେ ଦିଅନ୍ତି "ହୁଳହୁଳି" ପାଦାନ୍ତ ପରେ ଅଧିକାପାଠ :—
ଉଚ୍ଛୁଳେ ସକଳ ନଗ୍ର ପରଜନ
ପାଣ୍ଡବଙ୍କୁ ଦେଖି ଧାମନ୍ତି ତୋଷମନ ।
କେବଣ ସ୍ତିରୀ ରୂପବନ୍ତୀ ଅଛନ୍ତି ଅତୁଲ୍ୟ
ଦେବସ୍ତିରୀ ପଛାନ୍ତର ନାହାନ୍ତି ସମତୁଲ୍ୟ ।
ଆରେକ ବୋଲଇ ଦେବସ୍ତିରୀ ଆମ୍ଭେ ଦେଖିବା କାହିଂ
ଦ୍ରୌପଦୀକି ଦେଖି ସମସ୍ତେ ହୋଇବାକ ମୋହି ।
ଧନ୍ୟ ସ୍ୟେ ପାଣ୍ଡବ ସୋହଡ଼ ପଞ୍ଚାଣ
ମହାଲାଖ ବନ୍ଧିଲେ ସ୍ୟେ ଲକ୍ଷେ ରାଜା କଲେକ ଭଙ୍ଗାଣ ।
ସ୍ୟେହାଙ୍କର ପ୍ରସାଦେ ସ୍ୟେବେ ଅଇଶ୍ୱର୍ଯ୍ୟେ ଥିବା
ଅପାଦ କାଳେ ସମସ୍ତେହେଂ ବଞ୍ଚିବା ।
ନିଜ ନବରେ ସହୁଂ ପ୍ରବେଶ ହୋଇଲେ
ନଗ୍ରଜନମାନେ ସମସ୍ତେହେଂ ବାହୁଡ଼ିଲେ ।
ରାଣୀହଂସପୁରେ ଯାଇଂ ପ୍ରବେଶ ତତ୍‌କ୍ଷଣ
ଅର୍ଘ୍ୟ ଘେନି ବାହାର ହୋଇଲେ ଭାନୁମତୀ ।

ଯେହୁ ତାହାଙ୍କ ସୋଦର ତୋତେ ନାହାଁନ୍ତି ଆନ ଜଣ
ସୋଦର ସମ୍ଭାଳିଲେ ଆପଣାର ଅନେକ ହୋଇ ପୁଣ୍ୟ । ୩୧୦ ।
ତୁ ଯେବେ ପାଣ୍ଡବଙ୍କୁ ନ ସମ୍ଭାଳିବୁ ନୃପତି
ତୁମ୍ଭଙ୍କୁ ସଂସାରେ ଯେ ହୋଇବ ଅପଖ୍ୟାତି । ୩୧୧ ।
ପାଣ୍ଡବେତ ନାଶ ନୋହନ୍ତି ଚାରି ଯୁଗେ
ଯେହ୍ନା ପରମାଣି ତୁମ୍ଭେ ଥାଅ କଉରବେ । ୩୧୨ ।
ଦୁର୍ଯୋଧନ ବୋଇଲା ସ୍ୱାମୀ ଶୁଣ ଦେବ ହରି
ତୋହୋର ଆଜ୍ଞା ଭ୍ରଷ୍ଟ କଲେ ନଷ୍ଟେଂ ସେହୁ ମରି । ୩୧୩ ।
ସବୁନ୍ତ ତିଆରିଲେ ଦେବ ଜଗନ୍ନାଥେ
ଦ୍ୱାରକା ଭୁବନକୁ ବିଜୟେ ବେନି ଭ୍ରାତେ । ୩୧୪ ।
ନନ୍ଦ ବସୁଦେବ ପଚାରନ୍ତି ସର୍ବ କଥା
କହିଲେ ଯେ ରାମକୃଷ୍ଣ ପାଣ୍ଡବଙ୍କ ବାରତା । ୩୧୫ ।
ପାଣ୍ଡବେ ଦୁର୍ଯୋଧନର ଅନେକ ପୀରତି
ଭୋଜନେ ଶୟନେ ଅଭେଦ ଦିନ ରାତି । ୩୧୬ ।
ଛାଡିଲେ ହିଂସା ଅପବାଦ ମାନ
ବଢିଲା ପୀରତି ଅଭେଦ ଦିନୁ ଦିନ । ୩୧୭—୧୨୧୧୩ ।

## ମାଳତୀ ଶବରୀ ଉପାଖ୍ୟାନ

ଜୟ ତୁ କେଶବ ନାରାୟଣ ଶବରୀ
ବନଚାରୀ ରୂପେ ଅଟଣ୍ଟି ବିନୋଦ କରି । ୧ ।
ଅଜମୀଢ ଶବରର ଦୁହିତା ମାଳତୀ
ତାହାକୁ ବିଭା ହୋଇ ଶବର ଚନ୍ଦ୍ରବ୍ରତୀ । ୨ ।
ସ୍ୱାମୀ ମଉଳରେ ଶୋଭିବନ ଖାଙ୍କର କବେରୀ
ଗୁଞ୍ଜାରି ଗରଗଡା ମାଳ ଲଲାଟେ ଝୋପରି । ୩ ।
ଶିରେ ସୁନାରି ପୁଷ୍ପ ଝଲକନ୍ତି ସୀମନ୍ତିନୀ
କଣ୍ଠେ ଗରଗଡମାଳ କର୍ଣ୍ଣେଣ ସ୍ଫଟିକ କୁଣ୍ଡଳ ବେନି । ୪ ।

କେୟୂର ଆରକତ ଶୋଭିତ କର୍ଣ୍ଣାଞ୍ଚଳ
ଅଧର ଉଭଙ୍ଗ ପ୍ରଲମ୍ବ ଗଣ୍ଡସ୍ଥଳ । ୫ ।

ଅହୋ ଜାଲ ବସନ ଆଭରଣ ହୃଦଗତେ
ମୟୂର ପୁଚ୍ଛ ବାହୀ ଶୋଭିତ ବେନି ହାଥେ । ୬ ।

ଲୋହିତ ବର୍ଣ୍ଣ ଚକ୍ଷୁ ଜୁଳୁଜୁଳା ପୋକ ଛତା
ଲଲାଟେ କଂଶୁକ ପୁଷ୍ୟ କମଳଦଳ ଚନ୍ଦ୍ରା । ୭ ।

ଝିଙ୍କ ପଛୀ ଖଣ୍ଡିତ ହୃଦେ ବନମାଳା
ରଙ୍ଗରସ ପାନେ ଅଭୟେ ମତ୍ତ ଭୋଳା । ୮ ।

ମତ୍ତଲ ନାଚ ଦେବ ଘୋ ଘୋ ଶବଦେ
ଝିଙ୍କନ୍ତ ବହଣ୍ଡନ୍ତ ଦେଖୀ କଳକଳା ବ୍ରିତ ନାଦେ । ୯ ।

ଶାର୍ଦ୍ଦୋଳ ଚର୍ମ ମେଖଳ ପରିହରଣ କର୍ପଟୀ
ଶୁଦ୍ଧ ସ୍ଫଟିକେଣ ଭୂଷଣ ମୟୂର ଝଲକନ୍ତ । ୧୦ ।

ରଙ୍ଗେ ବହଣ୍ଡନ୍ତ ମାଳଣ୍ଡ ଶବଣ୍ଡ
ଗଣ୍ଡା ଜୀବ ମାରି ଝାଡମୃଗ ହେରି । ୧୧ ।

କର୍ଣ୍ଣାଞ୍ଚଳେ ବହଙ୍ଗମ କଣ୍ଠେ ମାଳକଣ୍ଠ ପଛୀ
ଘଟିତ ବକ୍ଷସ୍ଥଳେ ରସାଣେ ତାରାପକ୍ଷୀ । ୧୨ ।

ପାଦେ ନୂପୂର ଗଣ୍ଡସ୍ଥଳେ କୁଣ୍ଡଳ ଲୁଳି
ଝଲ ଝଳିତ ମର୍କତ ପାବନ କରଥଳୀ । ୧୩ ।

ମାଳଣ୍ଡ ଶବଣ୍ଡ ବଲ୍ଲଭ ନାରାୟଣ
ଶୂଦ୍ରମୁନି ସାରୋଳା ଦାସ ଶ୍ରୀକୃଷ୍ଣ ଚରଣେ ଶରଣ । ୧୪—୧୨୧୨୭।



---

୭ { ଲୋହିତ ବର୍ଣ୍ଣ ଚକ୍ଷୁ ଚଳ ଚଳ ଶୋଭିତା
  { ଲଲାଟେ କଂଶୁକ ପୁଷ୍ପ କୋଇଲି ସୂତା ପଇତା ।

୯।୧ ମାତାଙ୍ଗ ନାଚେ ଦେବ ଘୋଙ୍ଗର ଶବଦେ ।

## ହରିଜନ୍ମ ବ୍ରତ

ମନୁ ପଚାରିଲେ ଶୁଣ ମହାମୁନ୍ୟ
ଯୁଧିଷ୍ଠିର ରହିଲେ ବାରୁଣାବନ୍ତ ସ୍ଥାନ । ୧ ।
ଧୃତରାଷ୍ଟ୍ର ଗଲେ ଯେ ହସ୍ତିନା ନଗରେ
ଯୁଧିଷ୍ଠିର କଦାଚିତେ ହସ୍ତିନା ନ ଗଲେ । ୨ ।
ମାତା ଆଦି କରି ତେତେ ରହିଲେ ସପ୍ତ ଜଣ
ସକଳ ସମ୍ଭାରମାନ ରଖି ସେ ସ୍ଥାନେଣ । ୩ ।
ବଇବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତିଙ୍କି
କଥାଏକ ପୁଚ୍ଛିବି ହେ କହିବାକ ବ୍ରହ୍ମ ବାକ । ୪ ।
ପନ୍ନଗାନାରାୟଣ ସେ ଯେ ଅଟଇ ମାନଗୋବିନ୍ଦ
ଲକ୍ଷ୍ମୀ କେବଣ ବାଗେ ବିଜେ କଲେ ତାହାଙ୍କର କନ୍ଧ । ୫ ।
ଏହି କଥା ମୁନି ମୋତେ କହିବା ବିସ୍ତାର
ତବ ମୁଖୁଂ ଶୁଣିଲେ ଯେ ଦୁସ୍ତରୁ ହେବି ପାର । ୬ ।
ଶୁଣ ହେ ମନୁ ପୁରୁଷ ବଦଯନ୍ତି ଅଗସ୍ତି
ଏହି କଥା ଶୁଣିମାକୁ ତୁହି ସେ ଶକତି । ୭ ।
ସିଂହମାସ କୃଷ୍ଣ ପକ୍ଷ ଅଷ୍ଟମୀ ଯେ ତିଥି
ରୋହିଣୀ ନାମେ ନକ୍ଷତ୍ର ବାର ବୃହସ୍ପତି । ୮ ।
ବୃଷ ଘରେ ଶଶଧର ଭୋଗ ଯେ କରନ୍ତି । ୯ ।
ସେହି ଦିନ ହସ୍ତିନା ସଭା ଯେ ଆସ୍ଥାନରେ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଭୂରିସବା ସଞ୍ଜୟେ ବିଦୁରେ । ୧୦ ।
ଦୁଃଶାସନ ଦୁର୍ଦକ୍ଷ ବିକର୍ଣ୍ଣ ସହିତେ
ବସିଣ ବିଚାର ଏହି ଯେ କରନ୍ତି ସମସ୍ତେ । ୧୧ ।
ଚାଲ ଯିବା ଦ୍ୱାରକାକୁ ଦେଖିବା ହରିଜନ୍ମ ବ୍ରତେ । ୧୨
ଏମନ୍ତ ବିଚାର ବାହାରିଲେ କୁରୁବଳ
ଯାଇଂଣ ମିଳିଲେ ସେ ଦ୍ୱାରକା ମଣ୍ଡଳ । ୧୩ ।
ଦେଖିଣ ନାରାୟଣ ସୋମବଂଶ ଆଧିପତି
ଆସ୍ଥାନେ ବସାଇ ମହାମାନନା କରନ୍ତି । ୧୪ ।

ଅଛନ୍ତି ଯଦୁଭାରେ ସମସ୍ତେ ଉଭାରେ
ଆସନେ ବସାଇ ନାରାୟଣ ବଚନ ପଚାରେ । ୧୫ ।
କେଉଣ କାରଣେ ତୁମ୍ଭର ଆଗମନ
କିବା କାହିଂ ଯାଇଥିଲ ଥାଠ ତ ଗହନ । ୧୬ ।
କହନ୍ତି ଖାଟ୍ଟେ ତୁମ୍ଭର ହରଜନ୍ମ ବ୍ରତ ଶୁଣି
ଦେଖିବାରେ ଅଇଲୁ ଆମ୍ଭର ମନେ ଗୁଣି । ୧୭ ।
ଯେହା ଶୁଣି ଶ୍ରୀହରି ସାତେକ ରୁହାଇଲେ
ସେ ରାତେ ଜନ୍ମାଷ୍ଟମୀ ଉପବାସ କଲେ । ୧୮ ।
ପ୍ରଭାତୁଂ ଉଠିଣ ସେ ଯେ ସମସ୍ତ କୁରୁବାର
କମଳାଙ୍କର ଦୃଷ୍ଟି ପଡଲା ଯେ ମାନଗୋବନ୍ଦ ଉପର । ୧୯ ।
ମୂର୍ଛି ନ ପାରଲେ ସେ ଦେଖା ଦେଖିଣ ଧୃତରାଷ୍ଟ୍ରି
ଯେସନେକ ଗୁଣବନ୍ତ ଶ୍ରୀବନ୍ତ ପୁରୁଷ ଖିତରେଣ ଅଛି । ୨୦ ।
ଯେହାର କନ୍ଦରେ ମୁଂ କେମନ୍ତେ କରିବ ବଜଯେ
ଯେତେକ ବୋଲ କମଳା ମନେ ବଚଳତ ହୋଯେ । ୨୧ ।
ଯେମନ୍ତେହେଂ ତହିଂ କେତେହେଂ ଦିନଗଲା
ଦିନକୁ ଦିନ ମହ ଲକ୍ଷ୍ମୀଙ୍କର ତନୁ କ୍ଷୀଣ ଯେ ହୋଇଲା । ୨୨ ।
ଯେକ ଦିନେ ଯେକାନ୍ତେ ବସିଣ କମଳାଙ୍କୁ ସରସ୍ୱତୀ ବାକ
ସରସ୍ୱତୀ ପଚାରନ୍ତି ସଙ୍ଗାତ ଚତ୍ତ ଅନ୍ତର କାହିଂକ । ୨୩ ।
ଲକ୍ଷ୍ମୀ ବୋଇଲେ ଗୋ ସଖୀ ମୋ ହୃଦୟୁ ବେଦନା
ତୋହୋ ଆଗେ ନ କହିଲେ କାହା ଆଗେ କହିବ ସିନା । ୨୪ ।
ଶୁଣ ଗୋ ସଖୀ ମୋର ମନ ହେଉଛି ଯେମନ୍ତ
ଦ୍ୱାରକାକୁ ଆସିଥିଲା ଧୃତରାଷ୍ଟ୍ର ସୁତ । ୨୫ ।
ତାହାର ତହିଂ ଦେଖିଲି ଶ୍ରୀବନ୍ତ ଲକ୍ଷଣ
ତାହାର କନ୍ଦେ ବସିବାକୁ ବଳଇ ମୋ ମନ । ୨୬ ।
ଯେହି କଥା ହେତୁ ମନ ମୋର ବିକୁଛ ଯେ ଜାଣ । ୨୭ ।
ଫେଡ ନ କହଇ ମୁଂ ପ୍ରଭୁଙ୍କ ଛାମୁର
ଶୁଣିଣ ଶାରଦା ଯେ ବୋଇଲେ ଉତ୍ତର । ୨୮ ।

---

୨୦।୧ ଧୃତରାଷ୍ଟ୍ରି—ଧାର୍ତ୍ତରାଷ୍ଟ୍ରି—ଦୁର୍ଯ୍ୟୋଧନ ।

ଯେତୁ ସ୍ଥିର କଥାକୁ ଗୋ ନ କର ବିସ୍ମର । ୨୯ ।
ଯେହ୍ନ ଗୃହେ ବସିବ ମୁଂ ପ୍ରଭୁଙ୍କର କଣୁଗତେ
ମନାଇଂ ନଅ କଥା ତାଙ୍କଠାରୁ ପାର ତୁମ୍ଭେ ଯେତେ । ୩୦ ।
ଯେମନ୍ତେ ବିଚାରନ୍ତେ ଆଦିତ୍ୟ ଅସ୍ତ ଗଲା
ଲକ୍ଷ୍ମୀ ନାରାୟଣଙ୍କର ଯେକ ଆସନ ହୋଇଲା । ୩୧ ।

ନାରାୟଣେ ବୋଇଲେ ଗୋ କମ୍ପାଇଂ ବିଚଳିତ
ଯେତୁ କଥା ମୋହୋର ଆଗେ କହ ଗୋ ସଂଘାତ । ୩୨ ।

ନାରାୟଣଙ୍କ ଅଗ୍ରତେ କହନ୍ତି ମହାଲକ୍ଷ୍ମୀ
ଦ୍ୱାରକାକୁ ଆସିଥିଲା ଧୃତରାଷ୍ଟ୍ର ବର୍ତ୍ତି । ୩୩ ।

ତାହାକୁ ଦେଖିଲି ଯେ ଅଜ୍ଞାନ୍ତ ବିତପନ
ତାହାର କନ୍ଧେ ବସିବାକୁ ବଳଇ ମୋ ମନ । ୩୪ ।

ସେହି ହେତୁ ଦେଂଡଣ ନ କହଇ ତୁମ୍ଭଙ୍କୁ
ଚଳ କର ହୋଅ ସ୍ୱାମୀ କରନ କି ମୁକୁ । ୩୫ ।
ଶୁଣିଣ ହରଷେ ଆଗ୍ୟାଂ ଦିଲେ ଜଗନ୍ନାଥ
ମାନଗୋବିନ୍ଦର କନ୍ଧେ ବିଜୟେ କରସି ଗୋ ତୁରିତ । ୩୬ ।

ସାନନ୍ଦ ମନ ଯେ ଶୁଣିଣ କମଳେ
ଅବନୀରେ ଚଳଲେ ହସ୍ତିନା ମଣ୍ଡଳେ । ୩୭ ।
ଆସ୍ଥାନେ ସମ୍ଭବେ ବିଜୟେ କୁରୁପତି
ଲକ୍ଷ୍ମୀ ମାନଗୋବିନ୍ଦର କନ୍ଧେ କଲେ ସ୍ଥିତି । ୩୮ ।

ମଥା ପୋତିଣ ଯେ ବସଇ କୁରୁବୀର
କମଳା କନ୍ଧେ ବସନ୍ତେ ନ ଟେକଇ ଶିର । ୩୯ ।

ସେହି ଦିନୁଂ ଲକ୍ଷ୍ମୀ ବିଜେ କନ୍ଧରେ ତାହାର
ଶିରୀ ସମ୍ପତ୍ତି ବଢିଲା ଧୃତରାଷ୍ଟ୍ର କୁମରର । ୪୦ ।
ଶୁଣିଲୁ କି ରାଜା ଲକ୍ଷ୍ମୀ ଯେମନ୍ତ ରହିଲେ ହସ୍ତିନା ନଗର
ଅତି ମାନେ ମାନଗୋବିନ୍ଦ ସାରଥି ନୃପବର । ୪୧ ।

ଶୁଣିଣ ସାନନ୍ଦ ହୋଇଲେ ମନୁ ଯେ ନୃପତି
କଥାଯେକ ପୁଚ୍ଛିବି ମୋତେ କହିବାକ ଘଟଋଷିଙ୍କ ସନ୍ତତି । ୪୨ ।

ବୋଇଲ୍ ଲକ୍ଷ୍ମୀ ବଚନ ତାହାର କନ୍ଦର
ଚତୁପାଦେ ଲକ୍ଷ୍ମୀ ବୃଦ୍ଧି ମାନଗୋବନ୍ଦର । ୪୩—୧୨୧୭୦ ।



## * ଲକ୍ଷ୍ମଣକୁମାର ଜନ୍ମ

ଲକ୍ଷ୍ମଣ କୁମାର କେମନ୍ତେ ହୋଇଲା ଜନମ
ସେହୁ ବସ୍ତାର କହିବା ମୋତେ ପୁରୁଷଙ୍କ ଉତ୍ତମ । ୧ ।
ତବ ମୁଖରୁଂ ଶୁଣି ମୁଂ ଯେ ହୋଇବ ପବନ
କେମନ୍ତେ ଜନ୍ମ ହୋଇଲା ମାନଗୋବନ୍ଦର ପୁତ୍ର । ୨ ।
ସେହୁ ସଞ୍ଚି ମୁନ ମୋତେ ଯେ କହିବା
ବଦସୂନ୍ତ ଅଗସ୍ତି ବୈବସ୍ଵତ ମନୁ ଦେବା । ୩ ।
ଋଷଭ ଶୁକଳ ଯେ ପଞ୍ଚମୀର ତିଥି
ଚନ୍ଦ୍ରବାର ରୋହଣୀ ନକ୍ଷତ୍ର ବଖ୍ୟାତ । ୪ ।
ସେ ଦନ ଭାନୁମତୀ ଯେ ହୋଇଲେ ପାକାସ୍ପର୍ଶନ
ସେମନ୍ତେ ସାତ ଦନ ଯେ ଗୁପତେ ଗଲା ଦନ । ୫ ।
ପ୍ରଭାତୁଂ ସ୍ନାନ ସାର ଆସିଣ ସୁନ୍ଦରୀ
ଆପଣା ନଜ ମନ୍ଦରେ ଅଛନ୍ତ ବଜେ କର । ୬ ।
ସେମନ୍ତେ ଆଦତ୍ୟ ଯେ ହୋଇଲେକ ଅସ୍ତ
ଭାନୁମତୀ ଭୁଲେ ମାନଗୋବନ୍ଦ ବଳାସ । ୭ ।
ଅନେକ ପ୍ରୀତି ଉପୁଜଲା ରତିରଙ୍ଗ ରସ
ସେହି ଦନୁଂ ରାଣୀ ଯେ ହୋଇଲା ଗର୍ଭବାସ । ୮ ।
ସେମନ୍ତେ ମକର ମାସ ଯେ ସଂପୂର୍ଣ୍ଣ ଦଶ ମାସ । ୯ ।
ଦଶ ମାସ ଦଶ ଦନରେ ପ୍ରସବ ହୋଇଲା କୁମର
ଅତଅନ୍ତ ସୁନ୍ଦର ଯେ ଦଶଇ କାୟେ ତାର । ୧୦ ।
ଦେଖିଣ ଆନନ୍ଦ ଯେ ହୋଇଲେକ ସର୍ବେ
ସର୍ବ ସୁଲକ୍ଷଣ କୁମାରେ ହୋଇଲାକ ଜନ୍ମେ । ୧୧ ।

---

* ଲକ୍ଷ୍ମଣକୁମାର ଜନ୍ମ କେବଳ ଦୁଇ ଖଣ୍ଡ ପୋଥିରେ ଦେଖାଯାଏ ।

ଗ୍ରହପୁତ୍ର ଡକାଇଣ କଲେକ ଗଣନ
ସେ ବୋଇଲା ସର୍ବ ଶୁଭ ହୋଇଲା ଅଳପେ ମନ୍ଦ ଜାଣ । ୧୨ ।
ସମସ୍ତେ ଉତ୍ସବ କରନ୍ତି ହାଦେ ପୁଣ
ବିପ୍ରଙ୍କୁ ଡାକି ରାଜା ଦିଅନ୍ତି ସୁବର୍ଣ୍ଣ ଦାନ । ୧୩ ।
ପ୍ରଥମେ କୁମରକୁ ଦିଲେ ଭୂରିସ୍ରବାଙ୍କ କୋଳରେ
ଘେନଲେ କୁଳବୃଦ୍ଧ ଅଲେଖ କୁମାରେ । ୧୪ ।
ଦୁଜେଣ ଘେନଲେ ଯେ ଧୃଷ୍ଟ ସେନାପତି
ତୃତୀୟେ ବିଦୁର ଚତୁର୍ଥେ ସଞ୍ଜୟେ ମହାମନ୍ତ୍ରୀ । ୧୫ ।
ଧୃତରାଷ୍ଟ୍ର ବୋଇଲେ ତୁ ଶୁଣସି ସଞ୍ଜୟେ
ଏ ପୁତ୍ର ଯୋଗ୍ୟକ କହନ ଉପାୟେ । ୧୬ ।
କୋଳେ ଘେନ ସଞ୍ଜୟେ ବାଚ୍ଛି ତ କଲେ ଗୁଣ
ସର୍ବ ଗୁଣେ ପରିପୂର୍ଣ୍ଣ ଅଟଇ ନନ୍ଦନ । ୧୭ ।
ସର୍ବ ଗୁଣେ ଲକ୍ଷଣ ଦେଖିଲେକ ତାର
ନାମ ଦିଲେ ତାର ଯେ ଲକ୍ଷ୍ମଣ କୁମର । ୧୮ ।
ସଞ୍ଜୟେ ବଦନ୍ତି ଶୁଣ ହେ ଧୃତରାଷ୍ଟ୍ର
ଏ ପୁତ୍ର ହାଥେ କେହ୍ନି ଅଛି ନ ପାଇବ ଫଜାତ । ୧୯ ।
ଏ ପୁତ୍ର ହାଦେ ଯେ ହୋଇବ ବିଚକ୍ଷଣ
ଅଳପେ ନାଶ ଯିବ ମହାଭାରତ ସମରେଣ । ୨୦ ।
ଶୁଣିଣ ହରଷ ଯେ ହୋଇଲେ ଧୃତରାଷ୍ଟ୍ର ରାଜନ
ମନୁ ବୋଇଲେ ଶୁଣ ଅଗସ୍ତି ମହାମୁନ୍ୟ । ୨୧ ।
ଲକ୍ଷ୍ମଣ କୁମର ଜନ୍ମ ଶୁଣି ହୋଇଲ ସଦଗତି
ଯେଥୁ ଅନ୍ତେ ପାଣ୍ଡବେ କସ କଲେ କର୍ମ୍ମିବା ମହାଯତି । ୨୨-୧୨୧୯୨।



## *ପ୍ରଚଣ୍ଡାସୁର ବଧ

ନକୁଳର ପାଟ ଯେ କେମନ୍ତେ ସ୍ୱର୍ଗେ ହେଲା
ଏହା ଶୁଣିବାକୁ ମୋର ଶରଧା ବଳିଲା । ୧ ।

*ପ୍ରଚଣ୍ଡାସୁର ବଧ କେବଳ ଦୁଇଖଣ୍ଡ ପୋଥିରେ ଅଛି ।

ଅଗସ୍ତି ବୋଇଲେ ଶୁଣ ହେ ମନୁ ରାଜନ
ନକୁଳଙ୍କୁ ପାଟ ଯେହ୍ନେ ଦିଲେ ମଘବାନ । ୨ ।
ସାରେ଼ଚ ସତ୍ୟଯୁଗେ ଇଳାବ୍ରତ ଖଣ୍ଡେ
ହନ୍ତକାରଠାରୁ ପୁତ୍ର ଜନ୍ମିଲା ଦୁର୍ଦ୍ଦଣ୍ଡେ । ୩ ।
ଦୁର୍ଦ୍ଦଣ୍ଡର ପୁତ୍ର ହେଲା ବସୁ ଯେ ଅସୁର
ବସୁଠାରୁ ଉତପତ୍ତି ହୋଇଲା ଲୋହାସୁର । ୪ ।
ଲୋହାସୁର ନନ୍ଦନ ହୋଇଲା କେତୁମାଳା
ସେ କେତୁମାଳା ନନ୍ଦନ ହୋଇଲା ପିଙ୍ଗଳା । ୫ ।
ପିଙ୍ଗଳାର ନନ୍ଦନ ହୋଇଲା କୁଣ୍ଡଳୀ
କୁଣ୍ଡଳୀର ପୁତ୍ର ସେ ଯେ ହୋଇଲା ମୂଷଳୀ । ୬ ।
ମୂଷଳୀର ନନ୍ଦନ ହୋଇଲା ଜମ୍ବାସୁର
ଅସ୍କନ୍ଦ ବୋଲଣ ପୁତ୍ର ହୋଇଲା ପ୍ରହାର । ୭ ।
ଅସ୍କନ୍ଦର ପୁତ୍ର ଯେ ହୋଇଲା କାଳକେତୁ
ସେ ଅସୁର ପ୍ରତାପୀ ଖାଇଲା ଜୀବଜନ୍ତୁ । ୮ ।
ଅସ୍ତି କୁତ କୁତ ସେ ଥୋଇଲା ନବସୃଷ୍ଟି
ଉଗ୍ର ହୁଙ୍କାରେ ବିନାଶ ତାକୁ କଲେ ପରମେଷ୍ଠି । ୯ ।
କାଳକେତୁ ନନ୍ଦନ ହୋଇଲା ଧ୍ରୁବାସୁର
ପ୍ରହାର ନନ୍ଦନ ହେଲା ସଙ୍ଘଟ ଅସୁର । ୧୦ ।
ସଙ୍ଘଟର ନନ୍ଦନ ହୋଇଲା ସିଂହନାଦ
ସିଂହନାଦର ନନ୍ଦନ ହୋଇଲା ବିଷାଦ । ୧୧ ।
ବିଷାଦର ନନ୍ଦନ ହୋଇଲା ବଜ୍ରବାହୁ
କେତୁମାଳା ବୋଲି ପୁତ୍ର ହୋଇଲା ତାର ତହୁଂ । ୧୨ ।
କେତୁମାଳା ତହୁଂ ଉପୁଜିଲା ଧୂମାସୁର
ପ୍ରଚଣ୍ଡାସୁର ବୋଲି ପ୍ରହାର କୁମର । ୧୩ ।
ପ୍ରତାପୀ ଅସୁର ସେ ଯେ କୈଳାସକୁ ଗଲା
ଅନଶନ ବ୍ରତେ ସେ ସଦାଶିବଙ୍କୁ ତୋଷିଲା । ୧୪ ।
ସହସ୍ର ବରଷ ସେ ସେବିଲା ଯାତୁଧାନ
ତଥାପି ସେ ନ ଦେଖିଲା ଶିବ ରୂପବର୍ଣ୍ଣ । ୧୫ ।

୧୫।୧ ଯାତୁଧାନ—ଅସୁର ।

ଆରଣ ଲଗାଇ ତାଡଲା ବେନ ଆଖି
ସଦାଶିବେ ଗୃହ୍ନିଂଣ ବୋଇଲେ ପଙ୍କଜାକ୍ଷୀ । ୧୬ ।
ତୁମ୍ଭଙ୍କୁ ସେବା କଲା ପ୍ରଚଣ୍ଡା ଅସୁର
ତାର ପକ୍ଷେ ସ୍ୱାମୀ କଙ୍କେ ଯେତେକ ନିଷ୍ଠୁର । ୧୭ ।
ଅମ୍ବିକାଙ୍କର ବଚନ ସେ ସଦାଶିବ ଶୁଣି
ବୃଷଭ ଆରୋହି ବଜେ କଲେ ଶୂଳପାଣି । ୧୮ ।
ଦେଖିଲେକ ଅସୁର ଦେହରେ ନାହିଂ ଗ୍ୟାନ
ଅମୃତ ନୟନେ ସେ ଗୃହ୍ନିଂଲେ ତ୍ରିଲୋଚନ । ୧୯ ।
ତତକ୍ଷଣେ ଅସୁର ଚେତନା ପାଇଲା
ଦୁଃଖେ ଅର୍ଜିଲର ତପ ଭାଙ୍ଗିଣ ବୋଇଲା । ୨୦ ।
ମୁଂ ତୋହୋର ଯତଆ ନୋହଇ ଦୋଷକାରୀ
ଅକାରଣେ ତପ ମୋ ଭାଙ୍ଗିଲୁ କପଟେ । ୨୧ ।
ସଦାଶିବ ବୋଇଲେ ତୁ ଯାହାକୁ କରୁ ତପ
ଆମ୍ଭେ ସଦାଶିବ ସିନା ଦେଖ ମୋ ସରୂପ । ୨୨ ।
ଅସୁର ବୋଇଲା ଯେବେ ତୁମ୍ଭେ ସଦାଶିବ
ଦେଖିବଇଂ ନିଜ ରୂପ ଧର ଦେବଦେବ । ୨୩ ।
ପ୍ରଚଣ୍ଡାସୁର ବଚନେ ନିଜ ରୂପ ଧରି
ଧବଳ କମଳ ବପୁ ଚର୍ମ ବ୍ୟାଘ୍ରାମ୍ବରୀ । ୨୪ ।
କନ୍ଧରେ ଉତ୍ତରୀ ସ୍ୱାମୀ ଅଟଇ ଫଣୀବର
କଣ୍ଠତଟ ନିନ୍ଦଇ ନବଜଳଧର । ୨୫ ।
ତ୍ରିଶୂଳ ଡମ୍ବରୁ ସ୍ୱାମୀ ଅଳସାଛେ ସ୍ଫୁରି
ବାମ ଜାନୁ ଉପରେଣ ବଜେ କରିଅଛନ୍ତି ଶାକାମ୍ଭେରୀ । ୨୬ ।
ଶିରେ ସପ୍ତଫେଣୀ ସେ କାଳୀୟ ନାମେ ଅହି
ତ୍ରିନେତ୍ର ଧାରଣ ସ୍ୱାମୀ ଭାଲରେ ଚନ୍ଦ୍ର ଶୋହି । ୨୭ ।
ପଞ୍ଚମୁଖେ ପଞ୍ଚବେଦ ସ୍ଫୁରେ ଘନ ଘନ
ଗଣପତି କାର୍ତ୍ତିକେୟ ଛନ୍ତି ସନ୍ନିଧାନ । ୨୮ ।

---

୧୬।୧ ଆରଣ—ଅଙ୍କୁଶ । ୨୬।୧ ଅଳସାଛେ—ଅଳସାକ୍ଷେ ।
୨୭।୨ ଶୋହି—ଶୋଭି ।

ଶିରରେ ତ୍ରିମୁଣ୍ଡୀ ଜଟା ପରିଧାନ ବେଶ
ଦେଖିଣ ସନ୍ତୋଷ ହେଲା ପ୍ରଚଣ୍ଡା ରାକ୍ଷସ । ୨୯ ।
ତତକ୍ଷଣେ ଶତ ସହସ୍ର ଦଣ୍ଡ ପରଣାମି
କରପଦ୍ମ ଯୋଡ଼ି ବୋଲେ ଉଦ୍ଧରିବା ସ୍ୱାମୀ । ୩୦ ।
ବହୁ ସ୍ତୁତି କରି ପଦ୍ମପାଦେ କରେ ନମସ୍କାର
ସନ୍ତୋଷେ ଶିବ ବୋଲନ୍ତି ମାଗ ମାଗ ବର । ୩୧ ।
ପ୍ରଚଣ୍ଡାସୁର ବୋଇଲା ଶୁଣ ଦେବ କାଶୀ
ହେ ଦୟାସାଗର ହେ ପ୍ରସନ୍ନ ହେଲ ଆସି । ୩୨ ।
ଦେବତା ଅସୁରଙ୍କର ଅଛଇ ବିବାଦ
ଅସୁରଙ୍କୁ ଦେବତାଏ କରନ୍ତି ଶିରଚ୍ଛେଦ । ୩୩ ।
ଇନ୍ଦ୍ରାଦି ଦେବତା ମୋତେ ନ ଜିଣିମେ ରଣେ
ମୁଂ ସମରେ ପଶନ୍ତେ ଡରିବେ ଦେବଗଣେ । ୩୪ ।
ବ୍ରହ୍ମା ବିଷ୍ଣୁଙ୍କର ହାଥେ ନ ହୋଇବି ନାଶ
ବଜ୍ର ଅଙ୍ଗ ହେଉ ବର ଦିଅ ଦେବଈଶ । ୩୫ ।
ଅନ୍ତରୀକ୍ଷେ ରଥ ମୋର କରିବ ଭ୍ରମଣ
ତ୍ରିପୁର ମଧ୍ୟରେ ମୋର ଶୁଭିବ ବାରପଣ । ୩୬ ।
ନାନା ଶସ୍ତ୍ରମାନ ମୋର ଦେହରେ ନ ଭେଦିବ
ତଥାପି ମୁଣ୍ଡ ଛିଡ଼ନ୍ତେ ପୁନ ପୁନ ହେବ । ୩୭ ।
ତ୍ରିପୁର ମଧ୍ୟରେ ଭୟ ନୋହିବ କାହାକୁ
ନିଶ୍ଚୟ ମରିବ ମୁଂ ଯେ ମାରିବି ଯାହାକୁ । ୩୮ ।
ନର ଅସୁରଙ୍କର ହାଥେ ନାଶ ମୁଂ ନୋହିବି
ଆବର କଥାଏ ଶୁଣ ଚିରଞ୍ଜିବୀ ହେବି । ୩୯ ।
ସଦାଶିବ ବୋଇଲେ ରେ ସର୍ବ ଅସ୍ତୁ ହେଉ
ନର ସୁର ଅସୁରଙ୍କୁ ଭୟ ତୋ ନ ଥାଉ । ୪୦ ।
ଏହା ଶୁଣି ସଦାଶିବେ ବୋଲଇ ଉତ୍ତର
ହେ ସ୍ୱାମୀ ଏହାର ନାମ ଅଟେ ମୃତ୍ୟୁପୁର । ୪୧ ।
ଜନମ ହୋଇଲେ ତ ଅବଶ୍ୟ ମୃତ୍ୟୁ ହୋଇ
ଦେବତା ଜନ୍ମ ଲଭିଲେ ମରନ୍ତି ନା ସେହି । ୪୨ ।

କେହ୍ନେ ମୃତ୍ୟୁ ଲଭିବ କହିବା ନିରାଧାର
ଶୁଣି ଆଗ୍ୟାଂ କରନ୍ତି ସେ ବ୍ରହ୍ମାଣ୍ଡ ଈଶ୍ୱର । ୪୩ ।
ଈଶ୍ୱର ବୋଇଲେ ହୋ ପ୍ରଚଣ୍ଡା ଦାନବ
ପଞ୍ଚଇନ୍ଦ୍ର ଜନ୍ମିଲେଣ ସେ ତୋତେ ମାରିବ । ୪୪ ।
ସଦାଶିବ ବଚନେ ଅସୁର ବିଚାରଇ
ଇନ୍ଦ୍ରେକ ହୋଇଲେ ତାକୁ ସ୍ୱର୍ଗ ଯେ ସହଇ । ୪୫ ।
ପଞ୍ଚଇନ୍ଦ୍ର କେହ୍ନେ ସେ ହୋଇବେ ଅବତାର
ସଦାଶିବ ବୋଇଲେ ସେ ପୁତ୍ର ଅଶ୍ୱିନୀର । ୪୬ ।
ମାନୁଷୀର ଗର୍ଭରେ ସେ ଅଶ୍ୱିନୀ ବୀର୍ଯ୍ୟରେ
ପଞ୍ଚଇନ୍ଦ୍ର ଜନ୍ମ ଯେ ହୋଇବେ ମଞ୍ଚପୁରେ । ୪୭ ।
ତାହାର ହାଥରେ ତୋର ଅଛଇ ନିଦାନ
ଯେମନ୍ତେ ବୋଲି ସଦାଶିବ ହେଲେ ଅନ୍ତର୍ଧାନ । ୪୮ ।
ବର ପାଇଣ ସେ ପ୍ରଚଣ୍ଡାସୁର ମହାବଳୀ
କେନାବଳୀ ନଗ୍ରକୁ ଅସୁର ଗଲା ଚଳି । ୪୯ ।
କୌମୁଦା ପର୍ବତ ତଳେ କେନାବଳୀପୁର
ସେ ଗ୍ରାମେ ଅସୁରଙ୍କର ନବ ଲକ୍ଷ ଘର । ୫୦ ।
ସେ ଗ୍ରାମରେ ପ୍ରବେଶ ଯେ ଅସୁର ମହାବଳୀ
ଦେଖିଣ ସର୍ବ ରାକ୍ଷସେ ହୋଇଲେ ଯେ ମେଳି । ୫୧ ।
ହର ବର ପ୍ରସାଦେ ସକଳ ମହାବୀର
ମେଦିନୀ ନ ସହଇ ଯେ ଅସୁରଙ୍କ ଭାର । ୫୨ ।
ପ୍ରଚଣ୍ଡାସୁର ପୁରେ ନବଲକ୍ଷ ଖଣି
ସେ ପୁରେ ରାକ୍ଷସବଳ ଅଛେ ଅକଳଣି । ୫୩ ।
ମେଢ ମଣ୍ଡପ ଜଗତି ଦେଉଳ ଅଟାଳି
ପନ୍ଦର ଯୋଜନ ଗ୍ରାମ ନବଲକ୍ଷ ଗଳି । ୫୪ ।
କୁବେର ସମାନେ ସେ ଅସୁର ଧନବନ୍ତ
ରଥ ଗଜ ତୁରଙ୍ଗମ ପାଦାନ୍ତି ଅପ୍ରମିତ । ୫୫ ।
ଯେଉଂ ବାଟେ ସମଦଣ୍ଡ ଯାନ୍ତି ତାର ଚଳି
ସେହି ବାଟମାନଙ୍କରେ ଘଉଳ ବୋବାଳି । ୫୬ ।

ଦଣ୍ଡ ସାଜ ଚରାଚର ବୁଲନ୍ତିକ ମଧ୍ଯ
ସେ ଅସୁର ଛାମୁରେ ରହି ନୁଆରନ୍ତି କେହି । ୫୭ ।
ସତର ଯୋଜନ ମାଡ ଚଳନ୍ତ ତା ଥାଠ
ଜନ ଜନ୍ତୁ କବଳ ସେ କରନ୍ତ ପାପିଷ୍ଠ । ୫୮ ।
ଯୋଦ୍ଧାଙ୍କର ଧାପ ସେ ବୀରଙ୍କର ରଡ
ଆଷାଢ ମାସରେ କବା ମେଘ ଘଡଘଡ । ୫୯ ।
ରକ୍ତବୀର୍ଯ୍ୟଠାରୁ ତାର ଗୁଣଗୁଣ ସନ୍ୟ
ମୃତ୍ୟୁମଣ୍ଡଳର ରାଜା ନୁହନ୍ତି ସମାନ । ୬୦ ।
ପଶ୍ଚିମ ଦିଗକୁ ସେ ଭେଦଇ ମହାବୀର
ମେଦିନୀ ନ ସହଇ ପ୍ରଚଣ୍ଡାସୁର ଭାର । ୬୧ ।
ହେମାଦ୍ରି ଜିଣିଣ ସେ ଚଳଇ ଦଇତ
ମନ୍ଦରକୁ ଦେଖି ବସୁଦ୍ଧରଇ ଯେ ଅଟଇ କଞ୍ଚିତ । ୬୨ ।
ରଖିଲେ ରଖିବ ନ ରଖିଲେ ଫିଙ୍ଗିଦେବ
ପୃଥିବୀ ଧାରଣା ଯାକୁ କମ୍ପାଇ ଦଣ୍ଡିବ । ୬୩ ।
ମେରୁ ଆଗ୍ରେ ଦେଖିଲା ତା ବଢାଇ ସୁଉଙ୍ଗ
ଆକାଶକୁ ଲାଗିଅଛି ତାର ଶତେ ଶୃଙ୍ଗ । ୬୪ ।
ନବଲକ୍ଷ ଯୋଜନ ଅଟଇ ଆୟତନ
ଯେ ଅବା କଞ୍ଚିତ ମୋତେ ହୋଇବେ ସମାନ । ୬୫ ।
ଯେମନ୍ତ ବସୁର ବୀର ରଡଯେ ଶୁଣିଲା
ମେରୁ ପରେ ମନ୍ଦର କ ଝଡଣ ପଡିଲା । ୬୬ ।
ସେ ରଡ ଘାଏ ତରସ୍ତ ହେଲା ମେରୁଗିରି
ଲକ୍ଷେ ଭାର ରତ୍ନ ଦେଇ କହେ ପୁରସରି । ୬୭ ।
ଶୁଣ ଦୈତ୍ୟପତି ତୁମ୍ଭେ ମୋହୋର ଉତ୍ତର
ନିର୍ଦ୍ଦୋଷୀ ଅଟଇ ମୁଂ ଧରିଛି ଚରାଚର । ୬୮ ।
କାହାରି ସଙ୍ଗତେ ମୁଂ ନୋହଇ ଦ୍ୱନ୍ଦକାରୀ
ପ୍ରସ୍ତର ସ୍ୱଭାବ କାହିଂ ଚଳିତ ନ ପାରି । ୬୯ ।
ତଥାପି ମୁହିଂ ତ ତୋର ବଇରୀ ନୋହଇ
ଅକାରଣେ ମୋତେ ତୁମ୍ଭେ ଦଣ୍ଡିଲ କସ ପାଇଂ । ୭୦ ।

ତୋ ସମାନ ହେଲେ ହେବେ ଦଶଦିଗପାଳ
ଯେ ସନ୍ଧାନ ଦେଲ ଯେନ ତାଙ୍କ ପାଶେ ଚଳ । ୭୧ ।
ଯେ ସମୟେ ଶୂରଧନ୍ୟା ମନ୍ତ୍ରୀ ତା କହିଲା
ସନ୍ଧାନ ଦେଇ ଯଦ୍ୟପି ଶରଣ ପଶିଲା । ୭୨ ।
ଶରଣ ଲୋକେ ଧଂସିବା ନୋହଇ ଉଚିତ
ମନ୍ତ୍ରୀର ବଚନେ ବାହୁଡିଲା ସେ ଦଇତ । ୭୩ ।
ଅଳକା ଭୁବନେ ସେ ପ୍ରବେଶ ହେଲା ଯାଇଂ
ଖାର ଡାକ ଚମକେ କୁରୁମ ଚମକଇ । ୭୪ ।
ଶୁଣି କର ଧନାଧିପ ତରସ୍ତ ହୋଇଲା
ରତ୍ନ ଭଣ୍ଡାର ସମର୍ପି କାକୁସ୍ତେ ବୋଇଲା । ୭୫ ।
ଚଉରାଶି ଭଣ୍ଡାରର ଅଟେ ଅଧିକାରୀ
ଜାଣିବାରେ ଯେ ଭଣ୍ଡାର ଅଟଇ ତୋହୋର । ୭୬ ।
ରଖିଲେ ରଖିବୁ ନୋହିଲେ ବୋହିନେବୁ
ଭଣ୍ଡାର ରକ୍ଷକ ମୁଂ ଅଟଇ ତୋର ବାବୁ । ୭୭ ।
ମନ୍ତ୍ରୀ ଯେ ବୋଇଲା ଯେହାର ନାହିଂ ଟାଣ ପଣ
ଯେହାର ସଙ୍ଗେ ଉଚିବାଚ ହେବା କି କାରଣ । ୭୮ ।
ପ୍ରଚଣ୍ଡାସୁର ବୋଇଲା ପୃଥିବୀ ବୁଲିଲି
ଦଣ୍ଡେ କ୍ଷଣେ ମାତ୍ର କାହିଂ ଯୁଦ୍ଧ ନ କଲି । ୭୯ ।
ମନ୍ତ୍ରୀ ବୋଇଲା ଯେ ବାହାରନ୍ତା ଶତ୍ରୁପଣେ
ତାହାର ସଙ୍ଗେ ଯୁଦ୍ଧ ବା କରନ୍ତେ ଦଣ୍ଡେ କ୍ଷଣେ । ୮୦ ।
ନିରେଖି ଲୋକଙ୍କୁ ଛିବ ଶିନା କେହ୍ନ ରଖି
ଯେମନ୍ତ କରି ଆଗ୍ୟାଂ ଦେଉଛ କାହିଂକି । ୮୧ ।
ମନ୍ତ୍ରୀର ବଚନେ ସେ ଅସୁର ଶାନ୍ତ ହେଲା
କୁବେର ପୁରରୁ ସେ ବାହୁଡି ବିଜେ କଲା । ୮୨ ।
ମନେ ବିଚାରିଲା ଯେ ମର୍ତ୍ତ୍ୟରେ ନାହିଂ କେହ୍ନି
ପାତାଳକୁ ଯିବା ନାଗରାଜା ବା ଯୁଝଇ । ୮୩ ।
ଯେତେ ବୋଲି ପାତାଳକୁ ଚଳିଣିଲା ଆଠ
ଆଗରେ ମନ୍ତ୍ରୀବର ତା କଢାଇଲା ବାଟ । ୮୪ ।

ହିମାଞ୍ଚଳନ୍ତ ଶେଷେ ହେମାଦ୍ରି ନାମେ ନଦୀ
ପାତାଳ ଗଙ୍ଗା ମଧ୍ୟରୁ ଆସୁଅଛି ଭେଦି । ୮୫ ।
ସେ ନଦୀ ଉତ୍ତର ତୀରେ ପାତାଳକୁ ବାଟ
ସେ ବାଟ ଭେଦି ଚଳିଲେ ଅସୁରର ଥାଟ । ୮୬ ।
ଦଶ ଯୋଜନ ପର୍ଯ୍ୟନ୍ତେ ଅନ୍ଧକାର ଭୂମି
ସେ ବାଟରେ ପଶିଣ ଯେ ହେଲେ ପାତାଳଗାମୀ । ୮୭ ।
ଦେଖିଲେ ପାତାଳ ସେ ଅଲେଖ ରତ୍ନମୟେ
ରାଜ ହବା ସେ ପୁରେଣ ବାରଣ ନ ଯାୟେ । ୮୮ ।
ଲକ୍ଷ ଲକ୍ଷ କରି ରତ୍ନ ପ୍ରଦୀପର ପନ୍ତି
ବିନା ଅଗ୍ନିରେ ସେମାନେ ନିର୍ମଳେ ଜଳନ୍ତି । ୮୯ ।
ଅନନ୍ତ ତକ୍ଷକ ବାସୁକି ଯେ କର୍କୋଟକ
ଯେ ଗୃହଂହେ ଦ୍ବିର ଦ୍ୱାରେ ଅଟନ୍ତି ନାୟେକ । ୯୦ ।
ପ୍ରଥମ ଦ୍ୱାରେ ଅନନ୍ତ ଥିଲେ ଦ୍ୱାର ରକ୍ଷୀ
ଆଶ୍ଚର୍ଯ୍ୟ ହୋଇଲେ ସେ ଦାନବ ସନ୍ୟ ଦେଖି । ୯୧ ।
ମନେ ବିଚାର କଲେ ଯେ କେବଣ ଅସୁର
ପାତାଳ ବୈକୁଣ୍ଠେ ତ ପଶିଲା ନିଶାଚର । ୯୨ ।
ଅଗାଦ ସମୋଦ୍ର ଜାଣି ଖେପୁଛନ୍ତି ଥାଟ
ଦେଖି କରି ନାଗରାଜା ନିରୋଧିଲେ ବାଟ । ୯୩ ।
ସହସ୍ରେ ଫଣା ଉଭାରି ନିରୋଧିଲେ ଦ୍ୱାର
ମହା ବିଷ ଜ୍ୱାଳାବଳୀ ଅନନ୍ତଂ ପ୍ରଖର । ୯୪ ।
ଯୋଜନେ ଥାଉଂ ଦଶିଲା ଫଣାର ଆକୃତି
ଲକ୍ଷେକ ଯୋଜନ ସେ ବେଷ୍ଟିତ ହୋଇଛନ୍ତି । ୯୫ ।
ନବତାଳ ଉର୍ଦ୍ଧକ ହୋଉଛନ୍ତି ଥାଠ ଦମାଟ
ପାତାଳ ବଇକୁଣ୍ଠକଇଂ ଅଟନ୍ତି କବାଟ । ୯୬ ।
ଯାହାକୁ ଚହିଁ ଗୁଡବେ ଯିବ ଅବା ସେହି
ନିରୋଧିଲେ ଯିବାକୁ ପଶିବା କ୍ଷମ ନାହିଂ । ୯୭ ।
ଲାଙ୍ଗୁଡ଼ ଉପରେ ଦେଇଛନ୍ତି ମୁଖ ଡେରି
ସହସ୍ର ବଦନରୁ ପବନ ଆସେ ଫେରି । ୯୮ ।

ବେନ କଲେ ଜହ୍ନା ସେ ବୁଲାନ୍ତି ବେନ ବେନା
ତା ନାଶା ପବନ କି ପ୍ରଳୟ କାଳ ବହ୍ନି । ୯୯ ।
ବିଷଜ୍ୱାଳା ପବନ ଘାରିଲା ସର୍ବ ଅଙ୍ଗ
ମନ୍ତ୍ରୀ ଡାକଦିଲା ଫେର, ନ ଘଟେ ସଂଯୋଗ । ୧୦୦ ।
ଯେ଼ୁ ଜଳ ଅନ୍ଧାର ଯେଣିକ ଯେ ବାଟ ନାହିଂ
ଆବର ଆଶ୍ଚର୍ଯ୍ୟ ଅଗ୍ନି ଦୁଗୁଣ ଜଳଇ । ୧୦୧ ।
ବିଷାଗ୍ନି ଲଗନ୍ତେ କାହିଂ ଶରୀରେ ଅଛି ବଳ
ଘଡ଼ିଏ଼ ମାତ୍ର ରହିଲେ ମରିବ ସକଳ । ୧୦୨ ।
ପ୍ରଚଣ୍ଡାସୁର ବୋଇଲା ଆସ ବେଗେ ଫେରି
ଯେ଼ୁ ପୁରେ ସର୍ପ ସମୂହ ନୁହନ୍ତି ବଇରୀ । ୧୦୩ ।
ରଥ ଗଜ ଚଳିବାକୁ ସଂକୀର୍ଣ୍ଣ ଯେ଼ୁ ବାଟ
ଅକାରଣେ ନଷ୍ଟ ହେବ ଯେ଼ତେ ବଡ ଥାଟ । ୧୦୪ ।
ରାଜାର ବଚନେ ଥାଟ ଅଇଲେ ବାହାରି
ପଛେ ଶୂରଧନ୍ୟା ମନ୍ତ୍ରୀ ଅଇଲାକ ଫେରି । ୧୦୫ ।
ପ୍ରଚଣ୍ଡାସୁର ବୋଇଲା କିଂକେ ଭୟ କଲୁ
ମନ୍ତ୍ରୀବର ବୋଇଲା ହେ ବାଟ ନ ପାଇଲୁ । ୧୦୬ ।
ତୂନ କଣ ମନ୍ତ୍ରୀ କର୍ଣ୍ଣେ କହଇ ଉତ୍ତର
ବଡ ଅକଳତ ଯେ଼ୁ ଅନନ୍ତ ରାଜାପୁର । ୧୦୭ ।
ସ୍ୱଭାବରେ ସର୍ପବଳ କସ ପିରୋଜନ
ଯେ଼କ ଯେ଼କ ସର୍ପେ ମେରୁ ମନ୍ଦର ସମାନ । ୧୦୮ ।
ତୁଣ୍ଡ ବିସ୍ତାରନ୍ତେ ସ୍ୱର୍ଗ ପାତାଳ ପଶିବ
ସର୍ପ ଜିଣି କସ ଆମ୍ଭ ପିରୋଜନ ହେବ । ୧୦୯ ।
ଆମ୍ଭର ବଇରୀ ସେ ଅଟଇ ସୁନାଶୀର
ତାକୁ ଜିଣି ଭୋଗ ଆମ୍ଭେ କରିବା ଅମର । ୧୧୦ ।
ଶୂରଧନ୍ୟା ମନ୍ତ୍ରୀ ଯହୁଂ କହିଲା ଯେ଼ୁ ବାଣୀ
ସ୍ୱର୍ଗରାଜ୍ୟକୁ ଥାଟ ଚଳାଇଲା ନୃପମଣି । ୧୧୧ ।
ବାଜଇ ଦମା ଦାମଣ୍ଡି ମର୍ଦ୍ଦଳ ମହୁରୀ
ଜେନାବଳୀ ନଗ୍ରକୁ ଥାଟ ଆସନ୍ତି ଯେ ଫେରି । ୧୧୨ ।

---

୧୦୮।୧ ପିରୋଜନ—ପ୍ରୟୋଜନ

ଲକ୍ଷେକ ଗୃହର ରାଜା ଅଗ୍ରତେ ଚାଲନ୍ତ
ଲକ୍ଷେ ପାଟଛତ୍ର ସେ ଆବର ଉଡ଼ାବନ୍ତ । ୧୧୩ ।
ସୈକଲକ୍ଷୀ ପଞ୍ଚଲକ୍ଷୀ ବେଦ ଯେ ମନ୍ତ୍ରିତ
ସ୍ୱର୍ଣ୍ଣବନ୍ଧା ଶଙ୍ଖ ମିଶି ବାଜଇ ଅଯୁତ । ୧୧୪ ।
କୌମୋଡ ପର୍ବତ ତଳେ ସୈନ୍ୟ ହେଲେ ଯାଇଂ
ଉଗ୍ରା କହନ୍ତେ ଦ୍ୱାରପାଳ ଦ୍ୱାର ଫେଇ । ୧୧୫ ।
ପଶିଲେ ଅସଂଖ୍ୟ ବଳ ଗଡର ଭିତର
ଆଗ୍ୟାଂ ଦେଲା ଯୋଦ୍ଧାସ୍ୱେ ଚଳିଲେ ନିଜ ଘର । ୧୧୬ ।
ନିତ୍ୟକର୍ମ ବିଧାନ ସାରିଲେ ଯେ ଯାହାରେ
ଯେ ବିଧି ମୁଣୋହି ପୁଣ କଲେକ ଅସୁରେ । ୧୧୭
ପ୍ରଚଣ୍ଡା ଅସୁର ନିତ୍ୟକର୍ମ ଯେ ସାରିଲା
ହାତୀ ଘୋଡ଼ାଙ୍କ ଚରଣୀ ଖାଦ୍ୟଦ୍ରବ୍ୟ ଦିଲା । ୧୧୮ ।
ଭଣ୍ଡାର ରକ୍ଷକରମାନେ ଦେଲେ ନେଇ ବୋହି
ଯେଉଂ ଶାଳେ ଯେତେକ ଖାଦ୍ୟଦ୍ରବ୍ୟ ଅଛଇ । ୧୧୯ ।
ଆପଣେ ପ୍ରଚଣ୍ଡାସୁର ମୁଣୋହି ଯେ କଲା
ଆସୁଷ୍ଟ ଭୋଜନ ଯେ ତାହାର ଭକ୍ଷ ଥିଲା । ୧୨୦ ।
ଆଚ୍ଚୋମନ ସାରିଣ ତାମ୍ବୋଲ ଲାଗି ହୋଇ
ରତ୍ନ ଖଟ ଉପରେ ସେ ପହୁଡ଼ିଲା ଯାଇ । ୧୨୧ ।
ନିଯୋଗୀ ସେବକମାନେ ଯାଇଂ ସେ ଖଟିଲେ
ଟମକ ଦେଇଣ ନଗ୍ରେ ଦୋସାଧୁ ବୁଲିଲେ । ୧୨୨ ।
ରାତ୍ର ଶେଷ ହୋଇଲା ଉଠିଲେ ପୁରଜନେ
ରାଜାର ସିଂହ ଦୁଆରେ ଆସି ମିଳିଲେ ବହନେ । ୧୨୩ ।
ସିଂହାସନେ ବିଜୟେ ଅସୁର କୁଳପତି
ପାତ୍ର ମନ୍ତ୍ରୀ ଅମାତ୍ୟ ସମସ୍ତେ ମିଳନ୍ତି । ୧୨୪ ।
ଗହ ଗହ ଅସୁରଙ୍କ ସଭା ଗରୁ ଠାଣ
ଅମରେ ଯେମନ୍ତ ସଭା କରେ ସୁରଗଣ । ୧୨୫ ।
ସେମନ୍ତ ସମୟେଣ ନାରଦ ମୁନିବର
ପ୍ରବେଶ ହୋଇଲେ ଯାଇ ଅସୁର ସଭାର । ୧୨୬ ।

୧୨୨ । ଦୋସାଧୁ—ଦ୍ୱାରପାଳ, କଟୁଆଳ, ନଗରରକ୍ଷୀ ପ୍ରଧାନ କର୍ମଗୁଷ୍ଟ ।

· ଦେଖିଣ ପ୍ରଚଣ୍ଡାସୁର ନମସ୍କାର କଲା
ସୁବର୍ଣ୍ଣ ଆସନ ଦେଇ ଷଡାର୍ଘେ ପୂଜିଲା । ୧୨୭ ।
ଅସୁର ଭକତି ସେ ଦେଖିଣ ମୁନିବର
କଳହପ୍ରିୟ ନାରଦ ବୋଲନ୍ତି ଉତ୍ତର । ୧୨୮ ।
ଭଲେ ଅଛଟି କି ଅସୁର କୁଳସାଇଂ
ଦାର୍‌ସ ପୁତ୍ର ବନ୍ଧୁ ଅଛନ୍ତିନା ସୁସ୍ତେ ରହି । ୧୨୯ ।
ପାତ୍ର ମନ୍ତ୍ରୀ ଅମାତ୍ୟେ ଖଟନ୍ତିନା ତୋତେ
ଗଜ ଅଶ୍ୱ ଚରଣୀ ଦେଉ ନା ନଡ୍ଯେ ନଡ୍ଯେ । ୧୩୦ ।
ରଥୀ ମହାରଥୀ ଯେ ପାଦାନ୍ତି ବଳ ତୋର
ଯେତେମାନେ ଚଳନ୍ତି କି ଆଗ୍ୟାଂରେ ତୋହୋର । ୧୩୧ ।
ଝିଡା ମୁଦୁସୁଲି ଦାସୀ ପରବାସି ଜନେ
ଯେତେମାନେ ଅଛନ୍ତି ନା ଅନ୍ତପୁର ସୁବଧାନେ । ୧୩୨ ।
ପ୍ରଚଣ୍ଡାସୁର ବୋଇଲା ତୁମ୍ଭର ପ୍ରସାଦେ
ଯେତେ ସର୍ବେ ମୋହୋର ବାକ୍ୟେ ଥାନ୍ତି ଅପ୍ରମାଦେ । ୧୩୩ ।
ନାରଦେ ବୋଇଲେ ତୁ ବଇସି ସାଧୁ କିନା
ଶତ୍ରୁଜିତ ପାତାଙ୍ଗ ଉତାଉ କିନା ବାନା । ୧୩୪ ।
ଅସୁର ବୋଇଲା ମୋର ଶତ୍ରୁ କେହି ନାହିଂ
ଶତ୍ରୁଜିତ ପାତାଙ୍ଗ ବାନ୍ଧିବି କିସ ପାଇଂ । ୧୩୫ ।
ନାରଦେ ବୋଇଲେ ତୁ ତ ହୋଇଲୁ ଉଦାସ
ତୋ ପିତା ଧୁମ୍ରାସୁରକୁ ଇନ୍ଦ୍ର କଲା ନାଶ । ୧୩୬ ।
ପୁତ୍ର ହୋଇ ପିତା କାର୍ଯ୍ୟ ଯେବେ ନ କରଇ
କୁପୁତ୍ର ମଧ୍ୟରେ ସେ ଯେ ଗଣନା ହୋଅଇ । ୧୩୭ ।
ଦେବାସୁର ମଧ୍ୟରେ ଯେ ବିବାଦ ଯୁଗେ ଯୁଗେ
ତୋହ ତାର ଭାବ ଅଛି କେବଣ ସମ୍ପର୍କେ । ୧୩୮ ।
ଯେତେ ବୋଲି ମୁନି ଯେ ଚଳିଲେ ଅନ୍ତର୍ଧାନେ
ଶୁଣି କୋପ ଉପୁଜିଲା ଅସୁରର ମନେ । ୧୩୯ ।
ମନ୍ତ୍ରୀକି ବୋଇଲା ମୋର ସାଜ ସମଦଣ୍ଡ
ଅମର ଭୁବନ ମୁଂ କରିବି ଖଣ୍ଡ ଖଣ୍ଡ । ୧୪୦ ।

---

୧୨୯।୨ ସୁସ୍ତେ—ସୁସ୍ଥେ

ଦେବତା ମାନଙ୍କେ ନ ଥୋଇବା ସ୍ୱର୍ଗପୁର
ଯେମନ୍ତ ଆଗ୍ୟାଂ ମନ୍ତ୍ରୀକ ଦିଲାକ ଅସୁର । ୧୪୧ ।
ଶୁଣି ମନ୍ତ୍ରୀବର ବହନ ହୋଇ ଗଲା
ସିଂଘଦ୍ୱାରେ ଯାଇଣ ଘୋଷଣା ଦଆଇଲା । ୧୪୨ ।
ସାଜ ସାଜ ବୋଲଣ ସେ ଶୁଭିଲା ଘୋଷଣା
ଚତୁରଙ୍ଗ ବଳ ସଜ ହୋଇଲେ ତକ୍ଷଣ । ୧୪୩ ।
ଶୁଣି ତଡବଡ ସଜ ହୋଇଲେକ ସନ୍ୟ
ବଗୃରନ୍ତ ଆଜ ସ୍ୱର୍ଗେ ଚଳବେ ରାଜନ । ୧୪୪ ।
ଅସଂକ୍ଷେପ ସଇନ ଅଇଲେ ସଜ ହୋଇ
ସିଂଘଦ୍ୱାରେ ସର୍ବ ସନ୍ୟ ମିଳିଲେକ ଯାଇଂ । ୧୪୫ ।
ମାହୁନ୍ତେ ସଜ ସେ ତିନ ଲକ୍ଷ ହାଥୀ ଘେନ
ଅସୁରଙ୍କ ମୁଖରବେ ପୂରିଲା ମେଦ୍ଦନୀ । ୧୪୬ ।
ରଥୀ ତିନ ସହସ୍ର ଯେ ହୋଇଲେ ବାହାର
ପାଦାନ୍ତ ଯେ ତିନ ଲକ୍ଷ ତେତେ ହୟେବର । ୧୪୭ ।
ସର୍ବ ଥାଠ ସିଂଘଦ୍ୱାରେ ମିଳିଲେକ ଯାଇଂ
ହବସେ ରଙ୍କ କରଣ ନ ଦଶଇ । ୧୪୮ ।
ସହସ୍ରେକ ଢୋଲ ବାଜଇ ନାନା ବର୍ଣ୍ଣ
କଣ୍ଡା ଘୁମୁରା କାହାଳୀ ବାଜେ ଘନ ଘନ । ୧୪୯ ।
ମଦିରା ଖାଇଣ ସେ ଅସୁରେ ମତୁଆଳ
ମୁଖରାବ ଶବଦରେ ଶୁଭଇ ଚହଳ । ୧୫୦ ।
ଶୂରଧନ୍ୟା ମନ୍ତ୍ରୀ ଯେ ଚଢିଣ ହୟେବର
ସଜ ହୋଇ ଘରୁ ତାର ହୋଇଲା ବାହାର । ୧୫୧ ।
ଅଶ୍ୱରୁ ଓତୁରି ରାଜା ନବରେ ପଶିଲା
ଅସୁର ରାଜାକୁ ଯାଇଂ ଦରଶନ କଲା । ୧୫୨ ।
ରାଜାକୁ ବୋଇଲା ରଥ ସାଜ ବେଗ ହୋଇ
ଥାଠ ସନ୍ୟ ସିଂଘଦ୍ୱାରେ ଅଛନ୍ତି ଗୋସାଇଂ । ୧୫୩ ।
ମନ୍ତ୍ରୀର ବଚନେ ପ୍ରଚଣ୍ଡାସୁର ଉଠିଲା
ଯେ ବଧି ବଧାନେ ସେ ଅସୁର ବେଶ ହେଲା । ୧୫୪ ।

ଦିବ୍ୟ ବେଶ ହୋଇ ରଥେ ବସିଲେକ ଯାଇଂ
ଅନୁକୂଳ ହେନ ବାହାରିଲେ ନରସାଇଂ । ୧୫୫ ।
ଆକାଶ ମଣ୍ଡଳେ ତାର ଶିଖା ଲଗିଅଛି
ଚନ୍ଦ୍ରହାସ ଧରି କରେ ଝମକାଉଅଛି । ୧୫୬ ।
ଚୈତ୍ର କୃଷ୍ଣ ଅଷ୍ଟମୀ ଅଟେ ଗୁରୁବାର
ମୂଳା ନାମେ ନକ୍ଷତ୍ର ଅଟେ ସେ ଦିନର । ୧୫୭ ।
ବବ ନାମେ କରଣ ପରିଘ ଯେ ଯୋଗ
ମୀନ ସଂକ୍ରାନ୍ତିକ ଅଠର ଦିନ ଭୋଗ । ୧୫୮ ।
ସେ ଦିନ ଅସୁରକଇଂ ସମ୍ପଦ ଯେ ତାର
ବେଳ ଦ୍ୱାଦଶ ଦଣ୍ଡେଣ ହୋଇଲା ବାହାର । ୧୫୯ ।
ରଥୀ ହାଥୀ ପାଦାନ୍ତ ଚଳିଲେ ଅତି ଖରେ
ଯେତୁକେ ଯେତୁକେ ଜିଣି ସେ ପାରନ୍ତି ବଜ୍ରଧରେ । ୧୬୦ ।
ଶିବ ବର ପ୍ରସାଦେ ଅମାପ ବଳବନ୍ତା
ଦେବାସୁର ଗନ୍ଧର୍ବଙ୍କୁ କାଠରେ ଗଣିତା । ୧୬୧ ।
ପଛ ପଟୁଆରେ ଗଲେ ଅନେକ ସଇନ
ଢେଲ ଚକ୍ର ଗଦା କରେ ଅସିପତ୍ର ଘେନ । ୧୬୨ ।
ଟମକ ନିଶାଣ ଭେରି ଧୁମ୍ବସ ବଜାଇ
ଆଗିଆଣି ଦଣ୍ଡ ଆଗେ ଯେତେମାନ ବଜାଇ । ୧୬୩ ।
ପଛୁଆଣି ଦଣ୍ଡ ମଧ୍ୟେ ରାଜା ଯାଉଅଛି
ଦିବ୍ୟ ସୁଖାସନ ପରେ ଅସୁର ବସିଛି । ୧୬୪ ।
ପାଦଘାତରେ ଗଗନ ନ ଦିଶଇ
ଉଲ୍‌କାପାତ କି ଜାଣି ଶବଦ ଶୁଭଇ । ୧୬୫ ।
ମହାଥାଟ ଚଳାଇଣ ଅସୁର ଚଳିଲା
ଅସୁର ବଳ ଦିଘାତେ ପୃଥିବୀ କମ୍ପିଲା । ୧୬୬ ।
ଡରେ ଥର ହର ହୋଇ କମ୍ପିଲା ଧରଣୀ
ଶିର ନ ଟେକିଲା ସେ ବାସୁକି ନାଗ ଫଣୀ । ୧୬୭ ।

---

୧୫୬। ଚନ୍ଦ୍ରହାସ—ଖଡ଼ଗ ।

ଅନର୍ଯ୍ୟାପ ସଇନ ଯେ ଚଳନ୍ତି ସମ୍ଭରେ
ପ୍ରବେଶ ହୋଇଲେ ଯେ ଅମର ନିକଟରେ । ୧୬୮ ।
ଯେଣୁ ଅନନ୍ତରେ ତୁମ୍ଭେ ଶୁଣ ନରସାଇଂ
ଦେବତାନ୍ତ ଘେନ ଇନ୍ଦ୍ର ସ୍ୱର୍ଗ ଭ୍ରମି ଯାଇଂ । ୧୬୯ ।
ଐରାବତ ଉପରେ ଚଢ଼ିଣ ବଜ୍ରଧର
ଭ୍ରମିଣ ସେ ଯାଉଅଛି ଦକ୍ଷଣ ସ୍ୱର୍ଗର । ୧୭୦ ।
ଅସୁରଙ୍କ ଆସିବାର ନ ଜାଣନ୍ତି କେହ୍ନ
ଚନ୍ଦ୍ରସେନ ଅଙ୍ଗାରପର୍ଣ୍ଣଙ୍କ ଛନ୍ତି ରହ୍ନ । ୧୭୧ ।
ଯେହ୍ନ ସମୟେ ପ୍ରଚଣ୍ଡା ଅସୁର ଧାଡି ହେଲା
ଅମର ମଣ୍ଡଳ ମଧ୍ୟେ ଚମକ ପଡିଲା । ୧୭୨ ।
ଧର ଧର ମାର ମାର ଶବଦ ଶୁଭଇ
ମୁଖରାବ ଶବଦେ କୁରୁମ ଉଚ୍ଛୁଳଇ । ୧୭୩ ।
ଶୁଣି ଗନ୍ଧର୍ବଗଣେ ଧାଇଂଲେ କୋପ ହୋଇ
ଚନ୍ଦ୍ରସେନ ଆଗରେ ଯେ ଓଗାଳିଲେ ଯାଇଂ । ୧୭୪ ।
ତେଣେ ଇନ୍ଦ୍ର ପାଶକଇଂ ପେଶିଲେ ତଗର
ଇନ୍ଦ୍ର ବଜେ କରିଥିଲେ ଖାଣ୍ଡବ ବନର । ୧୭୫ ।
ତଗର ମୁଖରୁ ଯେ ଶୁଣିଣ ଶଚୀସାଇଂ
ବେଗେଣ ଧାମଇଂ ଐରାବତକୁ ଧୂଆଂଇ । ୧୭୬ ।
ତଗରାକୁ ପୁଛଇ ଇନ୍ଦ୍ର କସ ସମାଚାର
ତଗର ବୋଇଲା ସ୍ୱାମୀ ପ୍ରଚଣ୍ଡା ଅସୁର । ୧୭୭ ।
ଜେନାବଳୀ ନଗ୍ରେ କୈମୋଚ ଦେଶେ ଘର
ସ୍ୱର୍ଗକୁ ବାହ୍ନଲା ସନ୍ୟ ଦିଶଇ ସାଗର । ୧୭୮ ।
ଯେମନ୍ତ ଶୁଣିଣ କ୍ରୋଧେ ଧାମନ୍ତି ମଘବା
ସଙ୍ଗତରେ ଅଛନ୍ତି ସେ ତିନି କୋଟି ଦେବା । ୧୭୯ ।
ଯେ ଯାହା ଯାନବାହାନ ଆରୋହଣ ଥିଲେ
ଅସୁରଙ୍କ ଥାଟକୁ ସେ ତରସେଣ ଧାଇଂଲେ । ୧୮୦ ।
ଅସୁର ଥାଟ ଭେଟିଲେ ଜଟୀବଟ ତଳେ
ରେ ରେ କାର କରିଣ ସେ ଓଗାଳିଲେ ବଳେ । ୧୮୧ ।

---

୧୭୬। ଧୂଆଂଇବା—ଦଉଡାଇବା, ଧାବମାନ କରାଇବା ।

ନାନା ଶସ୍ତ୍ର ଧରିଣ ସେ ହୋଇଲେ ପିଣ୍ଡାପିଟି
କେହି କାହାକୁ ସମରେ ନ ଆସନ୍ତି ହଟି । ୧୮୨ ।
ବେନି ଦଳ ଟିଂଖାଇ ପହରେ ଯୁଦ୍ଧ କଲେ
ପର କେ ଆପଣା ବୋଲି ବାରିଣ ନ ଗଲେ । ୧୮୩ ।
ଅଶୀ କୋଟି ଗନ୍ଧର୍ବେ ଧାଇଁଲେ ଶସ୍ତ୍ର ଧରି
ଗନ୍ଧର୍ବ ଶର ସେ ଯେ ଲକ୍ଷ ଲକ୍ଷ ପ୍ରହାରି । ୧୮୪ ।
ଯେସନେକେ ଶ୍ରାବଣେ ପଡଇ ଜଳଧାରି
ଲକ୍ଷ ଲକ୍ଷ ଅସୁରେ ହୋଇଲେ ଦରମରି । ୧୮୫ ।
ଯମ ନୈଋତ ସେ ଯେ କୁବେର ବରୁଣ
ୟେହାଙ୍କ ଶରେ ଅସୁରେ ହରାଇଲେ ପ୍ରାଣ । ୧୮୬ ।
ଅନର୍ଯାପ ଅସୁରେ ପଡିଲେ ରଣ ଭୂଇଁ
ସାତ ତାଳ ଗର୍ଭରେ ରକତ ନଦୀ ବହି । ୧୮୭ ।
ସେ ରକ୍ତ ନଦୀରେ ମଡା ପଡିଲେ ପୟେଡ
ଗଣ୍ଡି ମୁଣ୍ଡ ଛିଣ୍ଡି ପଡେ କାର ହାତ ଗୋଡ । ୧୮୮ ।
ଐରାବତ ଆରୋହି ସେ ଦେବଙ୍କର ରାୟେ
ବଜ୍ର ପ୍ରହାରନ୍ତେ କୋଟି କୋଟି ହୋନ୍ତି କ୍ଷୟେ । ୧୮୯ ।
ତଥାପି ଅସୁର ବଳେ ନୁହାଂନ୍ତି ବିମୁଖ
ୟେକକୁ ଆରେକ ସେ ଅଟନ୍ତି ରଣରଙ୍କ । ୧୯୦ ।
ୟେସନ ସମୟେ ସେ ପ୍ରଚଣ୍ଡାସୁର ରାୟେ
ସନ୍ୟ ଅପହାର ଦେଖି ତା ରଥ ଧୁଆଂୟେ । ୧୯୧ ।
ଅଙ୍ଗାରପର୍ଣ୍ଣଙ୍ଗ ତାକୁ ଦୂରରୁ ଦେଖିଲା
ପ୍ରଚଣ୍ଡା ଅସୁରକୁ ଆଗରୁ ଓଗାଳିଲା । ୧୯୨ ।
ଦେଖି ପଚ୍ଚରଇ ସେ ଅସୁର କୁଳ ରାୟେ
ତୁମ୍ଭେ ବେନି ଅଟ ପରା ଇନ୍ଦ୍ରର ତନୟେ । ୧୯୩ ।
ଅସୁର ପୁଚ୍ଛନ୍ତେ ସେ କୁମରେ କୋପକଲେ
ଗନ୍ଧର୍ବାଶର ପ୍ରଚଣ୍ଡା ଶିରେ ପ୍ରହାରିଲେ । ୧୯୪ ।
ତା ଅଙ୍ଗରେ ଶସ୍ତ୍ର ବାଜ ପଡୁଅଛି ଝଡ
କୋପଭରେ ଅସୁର ଧାଅଇ ସିଂଘରଡ । ୧୯୫ ।

ଅନେକ ଶର ପ୍ରଚଣ୍ଡାସୁର ଯେ ବିନ୍ଧିଲା
ପ୍ରତିଶରେ ଅଙ୍ଗାରପର୍ଣ୍ଣ ତାହା ନିବାରିଲା । ୧୯୬ ।
ଆଗେ ଶର ବିନ୍ଧିଲା ଅସୁର ଉପରକୁ
ନ ଭେଦଇ ଶର ଖସି ପଡ଼ିଲା ତଳକୁ । ୧୯୭ ।
ଚିତ୍ରସେନ ଗନ୍ଧର୍ବ ରଥରେ ବିଜେ କଲା
ରଣେ ବିଜେ କରିଣ ଅସୁରେ ଓଗାଳିଲା । ୧୯୮ ।
ରହ ରହ ବୋଲିଣ ଗଦା ଯେ କ ଧରି
ଅସୁରଙ୍କ ଉପରେ ସେ ଗର୍ଜିଣ ପ୍ରହାରି । ୧୯୯ ।
ଯେ କା ପ୍ରହାରକେ ସେ ପଡ଼ିଲେ ଶତ ଶତ
ଗଦାଘାତେ ମସିଗୁଣ୍ଡା ହୁଅନ୍ତି ଦଇତ । ୨୦୦ ।
ଆଗେ ଶଚୀପତି ଧୂଆଂଇଲା ଐରାବତ
ତତକ୍ଷଣେ ରଣେ ବିଜେ କଲା ଶଚୀନାଥ । ୨୦୧ ।
ଦେଖିଣ ପଚାରେ ତାଙ୍କୁ ଦୁର୍ଦ୍ଧର ଅସୁର
ଯେ ତୋହୋର ନାମ ପରା ଅଟେ ବଜ୍ରଧର । ୨୦୨ ।
ତୁ ସେ ବଜ୍ରଧର ମୋର ପିତାର ବଇରୀ
ଅକାରଣେ ପିତାକୁ ମୋହୋର ବଧ କରି । ୨୦୩ ।
ଶୁଣି କ୍ରୋଧଭର ହୋଇ ବୋଇଲେ ମଘବା
ଯେ ତ୍ୱକ୍ଷଣି ତୋତେ ପିତାପାଶ ପଠାଇବା । ୨୦୪ ।
ଯେ ତେ ବୋଲି ବଜ୍ରକୁ ବୁଲାଇ ବଜ୍ରଧର
ପ୍ରଚଣ୍ଡା ଅସୁର ଉପରେ କଲେକ ପ୍ରହାର । ୨୦୫ ।
ମେରୁ ଗିରି ଚୂର୍ଣ୍ଣ ହୋଯେ ଯେଉଂ ବଜ୍ରଘାତେ
କିଚ୍ଛିହିଂ ନୋହିଲା ସେ ହସିଲା ଦୁରାପାତେ । ୨୦୬ ।
ଇନ୍ଦ୍ରକୁ ଚାହିଁଣ ସେ ବୋଲଇ ଦୁରାଚାର
ଯେତେ ଶସ୍ତ୍ର ଅଛି ଇନ୍ଦ୍ର କର ତୁ ପ୍ରହାର । ୨୦୭ ।
ବଜ୍ର ନ କାଟନ୍ତେ ଇନ୍ଦ୍ର ହୋଇଲା ହୀନ ତେଜ
କରେ ଶୂଳ ବୁଲାଇଣ ଧାଇଂଲା ଦନୁଜ । ୨୦୮ ।
ସେ ଶୂଳ ପିଟିଲା ନେଇ ଇନ୍ଦ୍ରର ଉପର
ଘାଯେ ଅସାସ୍ମନ ହେଲା ଐରାବତ ପର । ୨୦୯ ।

ଅସାଷ୍ଟମ ଦେଖି ଗଜ ଇନ୍ଦ୍ରେ ଘେନଗଲା
ନନ୍ଦନ ବନ ଗୁମ୍ଫାରେ ନେଇଣ ଥୋଇଲା । ୨୧୦ ।
କଲ୍ପଦ୍ରୁମ ପବନାଦ୍ଧ ବିଶଲ୍ୟକରଣୀ
ସେ ପବନ ଲାଗନ୍ତେ ଉଠିଲା ବଜ୍ରପାଣି । ୨୧୧ ।
ମନେ ବିଚାରିଲା ସେ ଯେ ଦୁର୍ଦ୍ଧର ଅସୁର
ଆଜ ଜୂର କହିଣ ସେ ନେମଇଂ ଅମର । ୨୧୨ ।
ଜୀବନର ଭୟେ ଇନ୍ଦ୍ର ବାହାର ନୋହିଲା
ସେ ଗୋପ୍ୟ ସ୍ଥାନରେ ସେ ଆତ୍ମାକୁ ରକ୍ଷା କଲା । ୨୧୩ ।
ଏଥୁ ଅନନ୍ତରେ ସେ ଗନ୍ଧର୍ବ ଚିତ୍ରସେନ
ମନ୍ତ୍ରୀ ତେ ଗନ୍ଧର୍ବ ଘେନ ଧାଇଁଲା ନନ୍ଦନ । ୨୧୪ ।
ଅଙ୍ଗାରପର୍ଣ୍ଣଙ୍କ ଡେଣେ ବିଜେ କଲା ରଣେ
ଅସଂଖ୍ୟ ଗନ୍ଧର୍ବ ବଳେ ଚଳଇ ଆପଣେ । ୨୧୫ ।
ଇନ୍ଦ୍ରଧନୁ ଜାଣିଣ ହାଥରେ ଧନୁ ଘେନି
ବିଦ୍ଧନ୍ତ ନାରାଜ ସେ ଯେ କଜାଣି ବହ୍ନି । ୨୧୬ ।
ଗନ୍ଧର୍ବ ବଳ ମାରନ୍ତି ନାନା ଶସ୍ତ୍ର ଧରି
ଲକ୍ଷ ଲକ୍ଷ ଅସୁରେ ପଡନ୍ତି ପ୍ରାଣ ହାରି । ୨୧୭ ।
ଚିତ୍ରସେନ ଅଙ୍ଗାରପର୍ଣ୍ଣଙ୍କ ବେନି ରଥୀ
ପ୍ରଚଣ୍ଡ ଅସୁର ବଳ ପକାନ୍ତି ନିପାତି । ୨୧୮ ।
ଗଦା ପରିଘ ତୋମର ଚକ୍ର ଅସିବର
ଗନ୍ଧର୍ବେ ମାରନ୍ତେ ଭୂମେ ଲୋଟନ୍ତି ଅସୁର । ୨୧୯ ।
ଅସୁରେ ନାନା ଆୟୁଧ ଧରିଣ ପିଟନ୍ତି
ଗନ୍ଧର୍ବ ବଳ ନଷ୍ଟେନଷ୍ଟେ ଭୂମିରେ ଲୋଟନ୍ତି । ୨୨୦ ।
ବେନିବଳ ଉଚ୍ଚବାଚ ନ କରନ୍ତି ଶଙ୍କା
ଏକକୁ ଆରେକ ସେ ଅଟନ୍ତି ରଣରଙ୍କା । ୨୨୧ ।
ଦିଗପାଳେ ନାମ ଶୁଣି ଭାଜି ପଳାଇଲେ
ଅମର ଭୁବନ ଛାଡି ଗୋପ୍ୟାନେ ରହିଲେ । ୨୨୨ ।
ଚିତ୍ରସେନ ଅଙ୍ଗାରପର୍ଣ୍ଣଙ୍କ କଲେ ଯୁଦ୍ଧ
ଅନେକ ରାକ୍ଷସ ବଳ ଏ ଯେ କଲେ ବଧ । ୨୨୩ ।

ତାଳେକ ପର୍ଯ୍ୟନ୍ତେ ରକ୍ତନଦୀ ବହିଗଲା
କୁଢ କୁଢ ହୋଇ ମଡ଼ା ଭାସେ ଭେଳା ଭେଳା । ୨୨୪ ।
ରଣରଙ୍ଗ କୁତୂହୋଳେ ନାଚନ୍ତି କବନ୍ଧ
ଯେଣୁ ସ୍ୱର୍ଗ ଆଳ ଛାଡ଼ି ଗଲେନ ଅସ୍କନ୍ଦ । ୨୨୫ ।
ଗନ୍ଧର୍ବେ ମାଇଲେ ରଣେ ହୋଇଣ ପ୍ରଚଣ୍ଡ
ଲକ୍ଷ ଲକ୍ଷ ଅସୁରଙ୍କ କଟାଗଲା ମୁଣ୍ଡ । ୨୨୬ ।
ପ୍ରଚଣ୍ଡା ଅସୁର ଇନ୍ଦ୍ର ସଙ୍ଗେ ଯୁଝୁଥିଲା
ଇନ୍ଦ୍ର ସମରେ ଧୁଞ୍ଚନ୍ତେ ସ୍ୱର୍ଗକୁ ଧାଇଁଲା । ୨୨୭ ।
ସମର ଭୂମିରେ ବୀର ପଶିଲା ଝସାଇ
ରାକ୍ଷସ ସଭାରେ ସ୍ୱର୍ଗ ହୋଇଅଛି ଛାଇ । ୨୨୮ ।
ଦେଖି ହା ହା କାର କଲା ଅସୁର ରାଜନ
ମନେ ବିଚାରଇ କେହୁ କଲାକ ଯେସନ । ୨୨୯ ।
କୋପାନଳେ ରଥ ଧୁଆଁଇଲା ମହାବଳୀ
ଅଙ୍ଗାରପର୍ଣ୍ଣଙ୍କ ଆଗେ ତତକ୍ଷଣେ ମିଳ । ୨୩୦ ।
ଦେଖିଲା ଅସୁର ବଳ ସେ ମନ୍ଥନ କରେ
ରହି ନ ପାରନ୍ତି କେହି ତାହାର ଛାମୁରେ । ୨୩୧ ।
ଆପଣାର ସୈନ୍ୟ ବଳ ଦେଖିଣ ଭଙ୍ଗାଣ
ମହାକ୍ରୋଧେ ଧାଇଁଲା ସେ ଅସୁରକୁଳ ରାଣ । ୨୩୨ ।
ବୋଇଲା ପାମର ମୋର ନାଶ କଲୁ ବଳ
ଯେତେ ବୋଲି ସଂଧାଇଣ ପିଠିଲା ରୁଦ୍ରଶୂଳ । ୨୩୩ ।
ଅଙ୍ଗାରପର୍ଣ୍ଣଙ୍କ ଉପରେ ସେ ଶୂଳ ପଡ଼ିଲା
କଦାପି ସେ ଶୂଳକୁ ସେ ନିବାରି ନ ପାରିଲା । ୨୩୪ ।
ହୃଦରେ ପଡ଼ିଲା ଶୂଳ ଅଗ୍ନି ତେଜ ଜାଣି
ରୁଧିର ଉଦଗାରି ସେ ପଡ଼ିଲା ବୀରମଣି । ୨୩୫ ।
ଦେଖି ଚିତ୍ରସେନ ଆଗେ ଓଗାଳିଲା ଯାଇ
ଶ୍ରାବଣ ବରଷା ଜାଣି ଶର ବରଷଇ । ୨୩୬ ।

---

୨୨୫।୨ ଅସ୍କନ୍ଦ—ଇନ୍ଦ୍ର ।

ବଜ୍ରେଣ ନିର୍ଜିତ ସେ ପ୍ରଚଣ୍ଡାସୁର କାୟେ
ଦେହେ ବାଜଣ ଶରମାନ ମସିଗୁଣ୍ଡା ହୋୟେ । ୨୩୭ ।
ବାବଲ ସେ ଚକ୍ରସେନ ବିନ୍ଧିଲ ଓଟାର
ମହା ଗିରିପରେ ଟେଳା ମାଇଲାର ପରି । ୨୩୮ ।
ଅର୍ଦ୍ଧଚନ୍ଦ୍ର ବାଣ ସେ ବିନ୍ଧିଲ ଇନ୍ଦ୍ର ସୁତ
ତୁଣ୍ଡ ବିସ୍ତାରିଣ ତାହା ଗିଳିଲ ଦଇତ । ୨୩୯ ।
ଜଳଧାର ନାଗପାଶ କାଳାନଳ ଶର
କୁହୁକା ସୂର୍ଯ୍ୟାବର୍ତ୍ତେକ ଖଗେନ୍ଦ୍ର ତମ୍ବୁର । ୨୪୦ ।
ବଜ୍ରାଶର କାଳପାଶି ଜଳପାଶି ଆଦି
ଯେତେ ଦେବଶର ତାହାର ଶରୀରେ ନ ଭେଦି । ୨୪୧ ।
ଗନ୍ଧର୍ବା ଶର ଯେ ଜୀବହନ୍ତକାରୀ ଯେତେ
ବିନ୍ଧେ ଚକ୍ରସେନ ପବନହୁଂ ବ୍ୟଗ୍ରଗତେ । ୨୪୨ ।
ଚକ୍ଷୁର ପଲକେ ବିନ୍ଧେ କୋଟି କୋଟି ବାଣ
ଶରୀରେ ନ ଭେଦି ସେ ପଡନ୍ତି ଉପୁଡଣ । ୨୪୩ ।
ପ୍ରଚଣ୍ଡା ବୋଇଲ ତୁଂରେ ଶୁଣ ଇନ୍ଦ୍ର ସୁତ
ଯେତେ ଶସ୍ତ୍ର ଅଛି ତାହା ବିନ୍ଧ ରେ ଭୁରିତ । ୨୪୪ ।
ଦେଖି ଶୁଣି ଚକ୍ରସେନ ନ ସ୍ଫୁରଇ କିଛି
ବୀରବର ପରାକ୍ରମେ ସମର କରୁଛି । ୨୪୫ ।
ପ୍ରଚଣ୍ଡାସୁର ଧଇଲ ଭଇରୋବ ମୂଷଳ
ସେ ଶହସ୍ର ତେଜ ଦିଶେ ଜାଣି ଦାବାନଳ । ୨୪୬ ।
ସେ ଶୂଳ ବୁଲାଇଲ ତିନବାର କରି
ଚକ୍ରସେନ ଉପରକୁ ତକ୍ଷଣେ ପ୍ରହାରି । ୨୪୭ ।
ସେ ଶହସ୍ର ନିବାରିବାକୁ ଚକ୍ରସେନ ବୀର
ନିବାର ନ ହୋଇ ଧାୟେଂ ଦଶଦିଗ ରୁନ୍ଧି । ୨୪୮ ।
ହର ବର ପ୍ରସାଦେ ଅସୁର ମହାବଳୀ
ଚକ୍ରସେନ ହୃଦେ ପଡ଼ି ପିଠିରେ ନିକଳି । ୨୪୯ ।

---

୨୪୬।୨ ଜାଣି ଦାବାନଳ—ଦାବାଗ୍ନି ଜଣି । ଶାରଳାଙ୍କର ଜାଣି ଶବ୍ଦ ପ୍ରାୟ ସବୁଠାରେ ଜଣି ଅର୍ଥରେ ବ୍ୟବହୃତ ।

ପଡିଲାକ କୁମର ଉତ୍ଥାନଶାସ୍ତ୍ରୀ ହୋଇ
ଗନ୍ଧର୍ବେ ଛିନ୍ନଛନ୍ନେ ଦେଖିଣ ପଳାଇ । ୨୫୦ ।
ସ୍ୱର୍ଗ ମଣ୍ଡଳ ଛାଡ଼ି ଦେବେ ପଳାଇଲେ
ଶୀବନ ବକଳେ ଯାଇ କେ କେଣେ ଲୁଚିଲେ । ୨୫୧ ।
ପଶିଲେ ଅସୁର ବଳ ସ୍ୱର୍ଗ ମଣ୍ଡଳକୁ
ପଶିଣ ଜୁରକଲେ ଦେବଭଣ୍ଡାରକୁ । ୨୫୨ ।
ହୀରା ମାଳା ମୋତି ଯେ ମାଣିକ୍ୟ ରତ୍ନହାର
ଇଚ୍ଛାୟେ ଲୁଟିଲେ ସେହି ଦୁର୍ଦ୍ଧର ଅସୁର । ୨୫୩ ।
ଦେବତାଙ୍କ ଆୟୁମାନ ନେଲେ ସର୍ବ ବନ୍ଧି
ପଶିଲେ ଅସୁର ଆଠ ତଳେ ସ୍ଥାନ ନାହିଁ । ୨୫୪ ।
ଗନ୍ଧର୍ବୀ କନ୍ୟାମାନ ବଳରେ ହରିଲେ
ଅମରପୁର ଭାଙ୍ଗିଣ ଭଗନସ୍ତ କଲେ । ୨୫୫ ।
କନ୍ଧ ବକନ୍ଧ ଅସୁରେ ବୁଲିଲେକ ଯାଇଂ
ନିର୍ଭୟ ହୋଇଲେ ଭୟ ତାଙ୍କ ଦେହେ ନାହିଁ । ୨୫୬ ।
ମହା ଦାନବ ସେ ବେଢ଼ିଗଲେ ସ୍ୱର୍ଗପୁର
ମନ ଇଚ୍ଛା ଲୁଟକଲେ ସହସ୍ରେ ଭଣ୍ଡାର । ୨୫୭ ।
ଇନ୍ଦ୍ରପୁରେ ପ୍ରଚଣ୍ଡା ଯେ ପଶିଲା ଝସାଇ
ଅପଛରାମାନଙ୍କୁ ସେ ଧରିଣ ଆଣଇ । ୨୫୮ ।
ଇନ୍ଦ୍ର ଚନ୍ଦ୍ରଶାଳା ପୁରେ ପଶିଲାକ ଯାଇ
ଦେଖିଲା ସେ ପୁରେ ଶଚୀଦେବୀ ଛନ୍ତି ରହି । ୨୫୯ ।
ଶୂରଧନ୍ୟା ମନ୍ତ୍ରୀକଇଂ ପୁଚ୍ଛଇ ଅସୁର
ଅମର ମଣ୍ଡଳ ସାଧ୍ୟ ହୋଇଲା ମୋହୋର । ୨୬୦ ।
ଇନ୍ଦ୍ର ଭାରିଯା ଶଚୀ ଯେ ଅଟେ ଝିକ ସେହି
ସେହିା ଘେନ ଇନ୍ଦ୍ରରାଜା ପାଟେଣ ବସଇ । ୨୬୧ ।
ଯହୁଂ ଭୋଳାନାଥ ପ୍ରଭୁ ମୋତେ ଦିଲେ ବର
ସେତେବେଳେ ତପସିଦ୍ଧି ହୋଇଲା ମୋହୋର । ୨୬୨ ।
ସେତେବୋଲି ଚନ୍ଦ୍ରଶାଳା ପୁରକୁ ପଶିଲା
ଶଚୀଦେବୀ ହାଥ ଧରି ଓଟାରି ଆଣିଲା । ୨୬୩ ।

---

୨୫୦।୧ ଉତ୍ଥାନ ଶାସ୍ତ୍ର—ଉତ୍ଥାନଶାସ୍ତ୍ରୀ ।

ଆପଣାର ରଥପରେ ନେଇ ବସାଇଲା
ମହାଭୟେ ଶଚୀଦେବୀ ବହୁ ଶୋକ କଲା । ୨୬୪ ।
ଅପଛରୀମାନେ ଶଚୀ ସଙ୍ଗତରେ ଗଲେ
ପଞ୍ଚବାଣ ସହିତେ ଇନ୍ଦ୍ରାଣୀ ସଙ୍ଗତରେ ନେଲେ । ୨୬୫ ।
ଅମର ଜୟେ କରଣ ଅସୁର ବାହାର
ସ୍ୱର୍ଗ ଜୟ ହେଲା ଶରୀରଇ ସେ ମନର । ୨୬୬ ।
କେନାବଳୀ ନଗ୍ରକୁ ସେ କରଇ ଗବନ
ସଙ୍ଗେ ଗୋଡାଇଲେ ତାର ଚତୁରଙ୍ଗ ସନ୍ୟ । ୨୬୭ ।
ନଗ୍ରରେ ପଶିଣ ସେ ଘୋଷଣା ଦିଆଇଲା
ରଥ ଉପରୁ ଶଚୀଦେବୀଙ୍କି ସେ ଓହ୍ଲାଇଲା । ୨୬୮ ।
ବୋଲଇ ଗୋ ଇନ୍ଦ୍ରାୟଣୀ ଶୁଣ ମୋର ବାଣୀ
ଆଜ ଦିନଠାରୁ ମୋର ହୋଇଲୁ ଘରଣୀ । ୨୬୯ ।
ଯକ୍ଷ ବିଦ୍ୟାଧର ପୁଣ ହୋଇଲେ ମୋହୋର
ଏମ୍ଭେ ବଚନ ଶଚୀ ଆଗେ କହିଲା ଅସୁର । ୨୭୦ ।
ଐରାବତ ସହିତରେ ଚନ୍ଦ୍ର ଗଲା ନାଶ
ଅପଛରୀମାନେ ତ ଖଟିବେ ମୋର ପାଶ । ୨୭୧ ।
ଅମର ମଣ୍ଡଳେ ମୁଂ ଯେ ସୁଖେ ବଇସିବି
ଇନ୍ଦ୍ରପଣେ ସୁଧର୍ମାର ସଭାରେ ବସିବି । ୨୭୨ ।
ଏମ୍ଭେ ପଦ୍ଧଜ୍ୟ ଶଚୀ ଆଗେ କହିଲା ଅସୁର
ଶଚୀ ବୋଇଲେ କର୍ମେ ଯା ଅଛଇ ମୋହୋର । ୨୭୩ ।
ପ୍ରଚଣ୍ଡାସୁର ବୋଇଲା ଶଚୀଙ୍କି ବିନୋୟୀ
ଅମର ମଣ୍ଡଳେ ତୋତେ ଇନ୍ଦ୍ର କର ନେଇ । ୨୭୪ ।
ଶଚୀ ବୋଇଲେ ସେ କଥା କିମ୍ପାଇ ପଚ୍ଛୁରୁ
ବଳାତ୍କାରେ କିମ୍ପାଇ ଆଣିଲୁ ସ୍ୱର୍ଗପୁରୁଂ । ୨୭୫ ।
ବ୍ରତାଗୃହୀ ହୋଇ ତହିଁ ବସିଥିଲା ପୁଣି
ବଳାତ୍କାରେ ହରି ଆଣି କଲୁ ହୀନମାନି । ୨୭୬ ।
ଏକବିଂଶ ଦିନେ ବ୍ରତ ପୂରିବ ମୋହୋର
ତେବେ ସେ ଭାରିଯା ମୁଂ ଯେ ହୋଇବି ତୋହୋର । ୨୭୭ ।

୨୭୩।୧ ପଦ୍ଧଜ୍ୟ—ପ୍ରତିଜ୍ଞା, ଶର୍ତ୍ତ ।

ତୋତେ ଯେବେ ଅମରେ ମୁଂ ଅବକ୍ଷେକା ହେବ
ବହି ଯା ଲେଖିଛୁ କର୍ମେ ଅନ୍ୟଥା କରବ । ୨୭୮ ।
କପଟ କରଣ ଶଚୀ ଯେ କଥା କହିଲ
ସେ କଥାକୁ ମତପ୍ରାୟେ ଅସୁର ବୁଝିଲା । ୨୭୯ ।
ଶଚୀ ବୋଇଲେ ଆହୁର କଥାଏକ ଅଛି
ଏକମନେ ଶୁଣ ମୁହିଂ ଯାହା ସେ କହୁଛି । ୨୮୦ ।
ଶୁଣ ରାଜା ଏକୋଇଶ ଦନ ପରଯନ୍ତେ
ପୁଂସ ମାତ୍ର ମୁଖ ନ ଗୃହିଂବ କଦାଚିତେ । ୨୮୧ ।
ଅଭ୍ୟନ୍ତର ସ୍ଥାନେ ମୋତେ ରଖିଥାଅ ନେଇ
ଏକୋଇଶ ଦନ ପୂର୍ଣ୍ଣେ ଦେଖିବାକ ଯାଇଂ । ୨୮୨ ।
ଦଇବ ଘଟଣା ପୁଣ କେ କରବ ଆନ
ସତ୍ୟ ପ୍ରାୟେ ମଣିଲା ତା ଅସୁର ରାଜନ । ୨୮୩ ।
ମନ୍ତ୍ରୀକ ବୋଇଲା ଆନ ନବରେକ କର
ଏ ଶଚୀକ ରଖ ନେଇ ଏକାନ୍ତର ପୁର । ୨୮୪ ।
ପ୍ରଚଣ୍ଡାସୁର ବଚନେ ମନ୍ତ୍ରୀ ଚଳିଗଲା
ଭିନ୍ନ ନଦର କରଣ ଶଚୀକ ରଖିଲା । ୨୮୫ ।
ଏଥୁ ଅନନ୍ତରେ ହୋ ଶୁଣିମା ନୃପବର
ନବରେ ଲୁଚଣ ଥିଲ ଶଚୀର ରମଣ । ୨୮୬ ।
ଅସୁର ଶଚୀକ ହର ନେଲାଗଲା ସହୁଂ
ଊରରେ କହିଲେ ହୋ ଶୁଣିମା ଦେବ କହୁଂ । ୨୮୭ ।
ଅଙ୍ଗାରପର୍ଣ୍ଣଙ୍କ ଚତ୍ରସେନ ବେନି ସୁତ
ଯାଙ୍କୁ ବଧ କର ଶଚୀ ନେଲାକ ଦଇତ । ୨୮୮ ।
ଅନେକ ଗନ୍ଧର୍ବ ବଳ ମାର କର ଗଲା
ଶଚୀ ସହିତେଣ ସେ ଅମର ଜୁର କଲା । ୨୮୯ ।
ଶୁଣିଣ ବହୁ କ୍ରୋଧିତ ହୋଇଲେ ସୁରରାଣ
ସୁଧର୍ମା ସଭାକୁ ଚଳଗଲେକ ଆପଣ । ୨୯୦ ।
ଦେଖିଲେ ସେ ଦେବସଭା ହୋଇଅଛି ନଷ୍ଟ
ବହୁରନ୍ତ ଏ ଅବସ୍ଥା କଲାକ ପାପିଷ୍ଠ । ୨୯୧ ।

ଏମନ୍ତର ସମୟେ ସେ ମାତଳି ତହିଂ ହୋଇ
ଶିରେ କର ଦେଇ କହେ ସକଳ ବିନୋଦୀ । ୨୯୨ ।
ଇନ୍ଦ୍ର ବୋଇଲେ ମାତଳି ଚଳ ଏହିକ୍ଷଣ
ବ୍ରହ୍ମାଦି ଦେବତାଙ୍କୁ ବହନ କରି ଆଣ । ୨୯୩ ।
ଏସନେକ ଆଜ୍ଞାଂ ସହିଂ ଇନ୍ଦ୍ର ଯେ ଦିଲେ
ତତ୍‌କ୍ଷଣେ ମାତଳି ବହନ ଚଳିଗଲେ । ୨୯୪ ।
ବ୍ରହ୍ମାଙ୍କର ମନ୍ଦିରେ ମାତଳି ବେଗେଂ ଯାଇଂ
ଦେଖିଲା ବସିଅଛନ୍ତି ସାବିତ୍ରୀ ଦେବୀ ସାଇଂ । ୨୯୫ ।
ଖଣ୍ଡେ ଦୂରୁଂ ଦେଖି ପାଦେ ପଡ଼ିଣ ଶୋଇଲା
ଶିରେ କରଦେଇ ପଛକୁ ଘୁଞ୍ଚିଗଲା । ୨୯୬ ।
ବ୍ରହ୍ମାଏ କଲ୍ୟାଣ କରି ତାହାକୁ ପଚାରି
କମର୍ଥେ ଆଗମ ତାହା କହନ ତଥ୍ୟ କରି । ୨୯୭ ।
ମାତଳି ବୋଇଲା ହୋ ଶୁଣିମା ବେଦବର
ଇନ୍ଦ୍ର ଆଜ୍ଞାଂ ଦିଲେ ସ୍ୱାମୀ ଯିବ ଧାତକାର । ୨୯୮ ।
କାଳି ପ୍ରଚଣ୍ଡ ଅସୁର ସ୍ୱର୍ଗକୁ ବାହିଲା
ଚିତ୍ରସେନ ଅଙ୍ଗାରପର୍ଣ୍ଣଙ୍କ ବଧ କଲା । ୨୯୯ ।
କନ୍ଦର୍ପ ଯେ ବିଦ୍ୟାଧରୀ ଶରୀର ସହିତେ
ଦେବ ଭଣ୍ଡାରାଦି ନେଲା ସ୍ୱର୍ଗେ ଥିଲା ଯେତେ । ୩୦୦ ।
ଏହା ଶୁଣି ବିଧାତା ଯେ ଉଠିଲେ ବହନ
ମରାଳ ବାହାନେ ଚଢ଼ି କଲେକ ଗବନ । ୩୦୧ ।
ବ୍ରହ୍ମାଏ ଚଳିଲେ ସୁଧର୍ମା ସଭାକୁ
ମାତଳି ଚଳିଲା ବୃହସ୍ପତି ଭୁବନକୁ । ୩୦୨ ।
ମାତଳି ବୋଇଲା ଗୁରୁ ଯିବା ବେଗ ହୋଇ
ଇନ୍ଦ୍ରର ଅବସ୍ଥା ଚାଲ ଦେଖିବ ଗୋସାଇଂ । ୩୦୩ ।
ଏହା ଶୁଣି ବୃହସ୍ପତି ବେଗ ହୋଇ ଗଲେ
ଅମର ଆସ୍ଥାନେ ଯାଇ ପ୍ରବେଶ ହୋଇଲେ । ୩୦୪ ।
ପିତାଙ୍କୁ ଦେଖିଣ ଗୁରୁ କଲେ ନମସ୍କାର
ବ୍ରହ୍ମାଏ ବୋଇଲେ ବାବୁ ଶୁଣ ରେ କୁମର । ୩୦୫ ।

କାଳ ପ୍ରଚଣ୍ଡାସୁର ଅମରେ ଧାଡ଼ି ଦିଲା
ଅଙ୍ଗାରପର୍ଣ୍ଣଙ୍କ ଚିତ୍ରସେନଙ୍କୁ ମାରିଲା । ୩୦୬ ।
ଶଚୀ ସହିତରେ ହରିନେଲାକ ପାମର
ଯେବେ ଜାଆଂଇଣ ଦିଅ ଇନ୍ଦ୍ରର କୁମର । ୩୦୭ ।
ଆଗ୍ୟାଂ ପାଇ ବୃହସ୍ପତି ଗଲେ ତତକ୍ଷଣ
ପ୍ରବେଶ ହୋଇଲେ ଯାଇଂ ସାଂଗ୍ରାମ ମଣ୍ଡଳେଣ । ୩୦୮ ।
ଅଙ୍ଗାରପର୍ଣ୍ଣଙ୍କ ଚିତ୍ରସେନ ଛନ୍ନ ପଡ଼ି
ଆବର ଗନ୍ଧର୍ବଙ୍କୁ ଶୁଆଇଂ ଧାଡ଼ି ଧାଡ଼ି । ୩୦୯ ।
କମଣ୍ଡଳୁ ପାଣି ଗୁରୁ ସିଞ୍ଚିଲେ ବହନ
ମୃତ୍ୟୁ ସଞ୍ଜୀବନୀ ମନ୍ତ୍ରେ ଦିଲେ ଜୀବଦାନ । ୩୧୦ ।
ଅଙ୍ଗାରପର୍ଣ୍ଣଙ୍କ ଚିତ୍ରସେନ ଯେ ଗନ୍ଧର୍ବ
ତତକ୍ଷଣେ ପ୍ରାଣ ପାଇ ଉଠିଲେକ ସର୍ବ । ୩୧୧ ।
ନିଦ୍ରାଗତ ପ୍ରାଣୀ ପ୍ରାୟେ ସମସ୍ତେ ଉଠିଲେ
ଯେ ଯାହାର ଶସ୍ତ୍ରମାନ ଆମଞ୍ଚନ କଲେ । ୩୧୨ ।
ଅଙ୍ଗାରପର୍ଣ୍ଣଙ୍କ ଚିତ୍ରସେନ ବେନି ଗଲେ
ଅମର ସଭାରେ ଯାଇଂ ପ୍ରବେଶ ହୋଇଲେ । ୩୧୩ ।
ବୃହସ୍ପତି ଦିଲେ ସର୍ବ ବଳନ୍ତ ଜିଆଇଂ
ଦେଖିଣ ଆନନ୍ଦ ହୋଇଲେ ତହୁଂ ଶଚୀସାଇଂ । ୩୧୪ ।
ବହୁତ ପ୍ରଶଂସା ଇନ୍ଦ୍ର ଗୁରୁଙ୍କୁ ଯେ କଲେ
ତେତିଶ କୋଟି ଦେବତା ସମସ୍ତେ ମିଳିଲେ । ୩୧୫ ।
ନାରଦ ଅଇଲେ ବୀଣା ଯନ୍ତ୍ରକୁ ବଜାଇ
ବରୁଣ ପବନ ପ୍ରବେଶିଲେ ବେଗ ହୋଇ । ୩୧୬ ।
ଚନ୍ଦ୍ର ସୂର୍ଯ୍ୟ ନବଗ୍ରହ ସହିତେ ଅଇଲେ
ଅଶ୍ୱିନୀକୁମାରେ ଅଷ୍ଟବସୁ ବିଜେ କଲେ । ୩୧୭ ।
ଗଣ ଗନ୍ଧର୍ବ ଦେବତା, ଯେ ଯହିଂରେ ଥିଲେ
ଯେ ଯାହାର ମତେ ଆସି ସଭାରେ ମିଳିଲେ । ୩୧୮
ଚଉଦ କୋଟି ଯେ ତହିଂ ଶିବଗଣ ଘେନି
ତତକ୍ଷଣେ ବିଜୟ କଲେକ ଶୂଳପାଣି । ୩୧୯ ।

ସୁଧର୍ମା ସଭାରେ ଆସି ମିଳିଲେ ସମସ୍ତେ
ବସିଛନ୍ତି ଇନ୍ଦ୍ର ଦେବତା ହୋଇ ମଣ୍ଡନବ୍ରତେ । ୩୨୦ ।
ଅଙ୍ଗାରପର୍ଣ୍ଣଙ୍କ ଚିତ୍ରସେନ ଯେ ଅଛନ୍ତି
ତାହାଙ୍କର ପଛେ ବସୁମତୀ ବିଜେ କଲେ । ୩୨୧ ।
ମୁଖରୁ ରୁଧିର ଧାର ବହଇ ଝରଝର
ବୋଇଲି ଦେବେ ସମ୍ଭାଳ ମେଦିନୀ ତୁମ୍ଭର । ୩୨୨ ।
ବସୁଧାର ବାକ୍ୟ ସର୍ବ ଦେବତା ଶୁଣିଲେ
ମାନ ଅଭିମାନେ ଶିବଙ୍କ ମୁଖକୁ ଚାହିଁଲେ । ୩୨୩ ।
ସଦାଶିବ ବୋଇଲେ ହୋ ଭଲେଣି କମ୍ପାଇ
ମରୁତ ବୋଇଲେ ତବ ପ୍ରସାଦେ ଗୋସାଇଁ । ୩୨୪ ।
ଅନର୍ଗଳ ବର ଦିଅ ଅସୁରମାନଙ୍କୁ
ସେ ବର ପାଇଣ ଧାଡି ଦ୍ୟନ୍ତି ଅମରଙ୍କୁ । ୩୨୫ ।
ଦେବତାନ୍ତ ନାଶିଣ ହରନ୍ତି ଦେବସ୍ତ୍ରିୟ
ଧନ୍ୟ ତୁମ୍ଭ ଭକ୍ତ ଧନ୍ୟ ମହିମା ତୁମ୍ଭର । ୩୨୬ ।
ସଦାଶିବ ବୋଇଲେ ସେ ଆମ୍ଭର ପ୍ରକୃତି
ବର ଦେଉଁ ଆମ୍ଭଙ୍କୁ ସେ ଯେ ଯେମନ୍ତେଣ ଚିନ୍ତି । ୩୨୭ ।
ଯାହାର ଯତ୍ନରେ ମୃତ୍ୟୁ ଯତ୍ନରେ ଘଟାଇ
ଦୁଷ୍ଟ ହୋଇଲେ ମରନ୍ତି କର୍ତ୍ତୃ ଭୋଗି ହୋଇ । ୩୨୮ ।
ବରୁଣ ବୋଇଲେ ଦୁଷ୍ଟ ମରିବ କେମନ୍ତେ
କଦର୍ଥନା ହୋଇଲୁଁ ଆମ୍ଭେ ସକଳ ଦଇବତେ । ୩୨୯ ।
ସଦାଶିବ ବୋଇଲେ ଜାଣନ୍ତି ବୃହସ୍ପତି
ଯାହାର ହାଥରେ ଅସୁର ହୋଇବ ବିନଶ୍ୟତି । ୩୩୦ ।
ଏହୁ କଥା ଶୁଣିଣ ସର୍ବେ ଗୁରୁଙ୍କ ପଚାରି
ଶୁଣି ବୃହସ୍ପତି ପାଞ୍ଜି ଫେଇଣ ବିଚାରି । ୩୩୧ ।
ବୃହସ୍ପତି ବୋଇଲେ ଶୁଣିମା ବଜ୍ରଧର
ପ୍ରଚଣ୍ଡ ବଧ ହୋଇବ ନକୁଳ ହାଥର । ୩୩୨ ।
ଇନ୍ଦ୍ରର କୁମର ସେ ଅଶ୍ୱିନୀ ବୀର୍ଯ୍ୟ ଜାତ
ସେ କଣ୍ଟକେ ବଧ କରି ପାରଇ ଦଇତ । ୩୩୩ ।

ଶୁଣିଣ ଇନ୍ଦ୍ର ବୋଲନ୍ତ ମାତଳି ମୁଖ ଗୁହିଂ
ପୁଷ୍ପେକେ ବସାଇ ଆଣ ମାଦ୍ରୀର ତନୟ ୀ ୩୩୪ ।
ଯୁଧିଷ୍ଠିରଙ୍କୁ ଅଗ୍ରତେ ମୋର କଷଣ କହିବୁ
ଶଚୀ ହର ନେଇଅଛୁ ତାହା ଜଣାଇବୁ । ୩୩୫ ।
ସେ ମୋହୋର ପଞ୍ଚୁ ପୁନେ ଜାଣନ୍ତ ନା ମୋତେ
ଲଖ ବନ୍ଧ ଲକ୍ଷେ ରାଜା ଜିଣିଲେ କଞ୍ଚତେ । ୩୩୬ ।
ଯେବେ ଦୁର୍ଯୋଧନ ଯେ ଗଉରୋବ କଲା ଯାଇ
ଦ୍ରୋପଦୀ ସହିତେ ସବ କୁଟୁମ୍ବ ଘେନାଇଂ । ୩୩୭ ।
ହସ୍ତିନାକୁ ନ ଗଲେ ସେ କଳହ ନିମନ୍ତେ
ମହା ନିଶ୍ଚିନ୍ତେ ଅଛନ୍ତ ସେ ବାରୁଣାବନ୍ତେ । ୩୩୮ ।
ଅଙ୍ଗକ୍ଷେପ ଦ୍ରବ୍ୟ ଦ୍ରୋପଦେଶ୍ୱର ଦିଲ
ବିଦୁର ମଧ୍ୟରେ ଯେହୁ କାହିଂ ନ ଦେଖିଲା । ୩୩୯ ।
ପୁନଙ୍କ ବିବାହ ମୁଂ ଯେ ଯାଇଥିଲି ଦେଖି
ବାରୁଣାବନ୍ତେ ରହିଲେ ହୋଇ ମହାସୁଖୀ । ୩୪୦ ।
ଯେ ମୋର ଅବସ୍ଥା ଯେବେ କର୍ଣ୍ଣରେ ଶୁଣିବେ
ଶୁଣିଲା ମାତ୍ରକେ ନକୁଳକୁ ପଠାଇବେ । ୩୪୧ ।
ତାହାର ଅଇଲେ ସ୍ଥିର ହେବ ସ୍ୱର୍ଗପୁର
ତାର ହାଥେ ବଧ ହେବ ଦୃପିଷ୍ଟ ଅସୁର । ୩୪୨ ।
ସବ ଦେବ ସମୂହେ ବୋଇଲେ ମଘବାନ
ମାତଳ ଯେ ଆରୋହିଲେ ପୁଷ୍ପେକ ବିମାନ । ୩୪୩ ।
ଆକାଶ ମାର୍ଗରେ ସେ ଯେ ରଥ ବାହି ନେଲା
ପବନହୁଂ ରଥ ବେଗେଣ ଚଳିଲା । ୩୪୪ ।
ବାରୁଣାବନ୍ତରେ ରଥ ପ୍ରବେଶିଲା ଯାଇଂ
ସିଂଘଦ୍ୱାରେ ରଥ ରଖି ଗଲାକ ଓହ୍ଲାଇ । ୩୪୫ ।
ଦେଖିଲା ଯୁଧିଷ୍ଠିର ଯେ ଆସ୍ଥାନେ ଛନ୍ତ ବସି
ଯେ ସମୟେ ମାତଳ ପ୍ରବେଶ ହେଲା ଆସି । ୩୪୬ ।
ମାତଳକ ଦେଖିଣ ଉଠିଲେ ପଞ୍ଚୁ ବୀରେ
ନମସ୍କାର କଲେ ସର୍ବେ ମାତଳ ପୟରେ । ୩୪୭ ।

ଗନ୍ଧର୍ବେ କରଣ ଆସ୍ଥାନରେ ବସାଇଲେ
କିମର୍ଥେ ଅଇଲତ ବୋଲଣ ପଚାରିଲେ । ୩୪୮ ।
ମାତଳି ବୋଇଲା ବାବୁ ଇନ୍ଦ୍ରଙ୍କ ଆଜ୍ଞାଂରେ
ରଥେ ବସାଇଣ ନେବ ମାଦ୍ରୀଙ୍କ କୁମରେ । ୩୪୯ ।
ଯୁଧିଷ୍ଠି ବୋଇଲେ ଯେ ଡକାଇ ମଘବାନ
ନକୁଳ କିମ୍ପାଇ ଯିବ ଯାଉନା ଅର୍ଜୁନ । ୩୫୦ ।
ମାତଳି ବୋଇଲା ଆଜ୍ଞାଂ ନକୁଳ ନେମଇଂ
ବିନା ଆଜ୍ଞାଂରେ ଅର୍ଜୁନ ନ ନଅଇ ମୁହିଂ । ୩୫୧ ।
ଯୁଧିଷ୍ଠିର ବୋଲନ୍ତି ସ୍ୱର୍ଗରେ କିସ ଭୟେ
ପ୍ରଚଣ୍ଡାସୁର ବୋଲଣ ଅସୁର ଗୋଟିଏ । ୩୫୨ ।
କୌମୋଦ ପର୍ବତର ଉତ୍ତରେ ତାର ଘର
ଜେନାବଳୀ ନଗ୍ର ନାମେ ବଡାଇ ଦୁର୍ଗର । ୩୫୩ ।
ସେ ସେ ଅସୁର ଗଡେ ବେଢିଅଛି ଖଣ୍ଡା
ଦେବ ଦାନବ ମାନବେ ଅଟେ ଅକଳଣା । ୩୫୪ ।
ସେ ପୁରେଣ ଧୂମାସୁର ଅଟଇ ଯେ ରାଜା
ସ୍ୱର୍ଗକୁ ସେ ଧାଇଁ ଦ୍ୟନ୍ତେ ବଧିଲେ ବିଡୋଜା । ୩୫୫ ।
ବଜ୍ର ଧରି ନିବାରଣ କଲେ ଶକ୍ରରାୟେ
ତାହାର ନନ୍ଦନ ଯେ ପ୍ରଚଣ୍ଡାସୁର ହୋଇଏ । ୩୫୬ ।
ରୁଦ୍ର ବର ପାଇଣ ସେ କାହାକୁ ନ ଡରଇ
ରଥ ଚଢି ତିନିପୁରେ ଅସୁର ଭ୍ରମଇ । ୩୫୭ ।
ଗଣ ଗନ୍ଧର୍ବ ଦେବତା ଆଦ୍ୟ ନ ଗଣିଲା
ସ୍ୱର୍ଗ ପୁରେ ପଶି ଦେବଙ୍କ ସଙ୍ଗରେ ଯୁଝିଲା । ୩୫୮ ।
ସ୍ୱର୍ଗେ ଧାଇଁ ଗଲା ବିନା ଗୃହର ଅନ୍ତରେ
ଅମର ପୁରୁ ଶଚୀକି ନେଲା ବଳାତ୍କାରେ । ୩୫୯ ।
ସକଳ ଦେବତା ଆସି ଆସ୍ଥାନେ ବସିଲେ
ବ୍ରହ୍ମାଏ ବୃହସ୍ପତିଙ୍କି ଗୃହିଂ ପଚାରିଲେ । ୩୬୦ ।
କାହାର ହାଥରେ ପୁଣ ମରିବ ଅସୁର
ଶୁଣି କରି ବୃହସ୍ପତି କହିଲେ ଉତ୍ତର । ୩୬୧ ।

ସେହି ଅସୁର ଯେ କାହାର ହାଥରେ ନ ମରଇ
ନକୁଳ ହାଥରେ ଯାର ମୃତ୍ୟୁଟି ଅଛଇ । ୩୬୨ ।
ବ୍ରହ୍ମା ବୃହସ୍ପତି ଇନ୍ଦ୍ର ଆଜ୍ଞା ଦିଲେ ବେଗେ
ନକୁଳର ହାଥେ ସେ ଅସୁର କ୍ଷୟଯୋଗେ । ୩୬୩ ।
ଦେବତାଙ୍କ ଆଜ୍ଞାରେ ମୁଂ ଅଇଲି ବହନ
ରଥରେ ବସାଇ ନେମି ମାଦ୍ରୀର ନନ୍ଦନ । ୩୬୪ ।
ଦେବଦୂତ ବାକ୍ୟ ଯୁଧିଷ୍ଠିର ଦେବ ଶୁଣି
ଅର୍ଜ୍ଜୁନ ବୋଇଲେ ପଠାଅ ସେହିକ୍ଷଣି । ୩୬୫ ।
ଅର୍ଜ୍ଜୁନ ବୋଇଲେ ଆଜ୍ଞା ଦିଲେ ସୁରପତି
ନକୁଳ ନ ଗଲେ କାଳେ କୋପିବେ ଅମାତି । ୩୬୬ ।
ଭୀମସେନ ବୋଇଲା ମୁଂ କିଂ ଥାପେ ଭାଷଇ
ସହଦେବକୁ ପଚ୍ଚର ସେ କା ହାଥେ ମରଇ । ୩୬୭ ।
ଭୀମସେନ ବଚନେ ଯୁଧିଷ୍ଠିର ତୁଷ୍ଟ ହେଲେ
ସହଦେବ ମୁଖ ଚାହିଂ ଯୁଧିଷ୍ଠିର ପୁଚ୍ଛିଲେ । ୩୬୮ ।
କହ କହ ଭାଇ ବେଗେ ସେହି ଅସୁର
ନକୁଳର ହାଥେ କି ସେ ମରିବ ଅସୁର । ୩୬୯ ।
ମନ୍ତ୍ରୀ ଶୁଣି କରକୁ ଚାହିଂଣ ବୋଲଇ
ନକୁଳ ଠାକୁରେ ତାକୁ ମାରିବେ ଗୋସାଇଂ । ୩୭୦ ।
ସେହି ଶୁଣି ଯୁଧିଷ୍ଠିର ଆନନ୍ଦ ହୋଇଲେ
ବେଗ ହୋଇ ଯାଅ ନକୁଳକୁ ଆଜ୍ଞା ଦିଲେ । ୩୭୧
ଯୁଧିଷ୍ଠିରଙ୍କ ମୁଖରୁ ସେସନ ଆଜ୍ଞା ପାଇ
ଧନୁ ଶର ଧରି ଉଭା ମାଦ୍ରୀର ତନୟି । ୩୭୨ ।
ଯୁଧିଷ୍ଠିରଙ୍କି ନକୁଳ ଯେ ନମସ୍କାର କଲା
ପଛେ ଭୀମସେନ ଅର୍ଜ୍ଜୁନକୁ ଓଳଗିଲା । ୩୭୩ ।
ସହଦେବ ନକୁଳକୁ କଲା ନମସ୍କାର
ଯାଉଅଛି ବୋଲି ବସେ ରଥର ଉପର । ୩୭୪ ।
ବହୁତ କଲ୍ୟାଣ ସେ ଯେ କରନ୍ତି ତିନି ଭାଇ
ପ୍ରଚଣ୍ଡାସୁରକୁ ମାରି ସବ ଶୁଦ୍ଧେ ଯାଇଂ । ୩୭୫ ।

ମାତଳି ନକୁଳ ଯାଇଂ ବସିଲେ ରଥରେ
ଦେବରଥ ଗବନ କରଇ ଧୀରେ ଧୀରେ । ୩୭୬ ।
ଅର୍ଦ୍ଧ ଆକାଶରେ ରଥ କରଇ ଗବନ
ନକୁଳ କହଇ ତୁମ୍ଭେ ଶୁଣ ମୋ ବଚନ । ୩୭୭ ।
ଯେଉଁଠାରେ ରଥ ମୋର ରୁହାଇବା କ୍ଷଣେ
ଯାହା ମୁଂ କହଇ ଦେବ ଶୁଣିବା ସାବଧାନେ । ୩୭୮ ।
ଅସୁର ନ ମାଇଲେ ନ ଯିବ ସ୍ୱର୍ଗଆଳ
ଅସୁର ହଘାଟ ମୁଂ ଭେଟିବ ଆଖଣ୍ଡଳ । ୩୭୯ ।
ଶଚୀ ଠାକୁରାଣୀଙ୍କି ଆଣିବ ମୁକୁଳାଇ
ତେବେ ସେ ପାଣ୍ଡବ ନାମେ ଧାରଧୂ ଉତଇ । ୩୮୦ ।
ଯେଉଁଥୁ ଅନନ୍ତରେ ସେ ଯେ ବଳଙ୍କ ଦେଶର ରାସ୍ତେ
ଅଗସ୍ତିଙ୍କ ଚରଣରେ ବହୁତ ବିନୟେ । ୩୮୧ ।
ଯେଉଁଥୁ ଅନନ୍ତରେ କସ ହୋଇଲା ଚରିତ
ଯେହୁ ମୋତେ ସଞ୍ଚପିଣ କହିବା ତଦନ୍ତ । ୩୮୨ ।
ଅଗସ୍ତି ବୋଇଲେ ହୋ ଶୁଣିମା ମନୁ ରାୟେ
ବଚନ ଆଖ୍ୟାନ ଯେ ଅମୃତ ରସ ମୟେ । ୩୮୩ ।
ଦେବ ସଭା ମଧ୍ୟରେ ନାରଦ ବସିଥିଲେ
ଅମର ସଭାରୁ ସେ ଯେ ବାହାର ହୋଇଲେ । ୩୮୪ ।
ମନଦଣ୍ଡ ଚଢି ଗଲେ ଅସୁର ରାଜ୍ୟକୁ
ଯାଇଣ ଭେଟିଲେ ମୁନି ପ୍ରଚଣ୍ଡାସୁରକୁ । ୩୮୫ ।
ଆସ୍ଥାନ କରିଣ ବସି ଅଛଇ ଅସୁର
ଯାଇଣ ମିଳିଲେ ତହିଂ ବ୍ରହ୍ମାଙ୍କ କୁମର । ୩୮୬ ।
ନାରଦଙ୍କୁ ଦେଖିଣ ଅସୁର କୁଳରାଣ
ପ୍ରଳମ୍ବିତ କଲା ସେ ଯେ ଋଷିଙ୍କ ପୟରେଣ । ୩୮୭ ।
ବୋଇଲା ଆଜ କି ଭାଗ୍ୟ ହୋଇଲା ମୋହୋର
ନୟନେ ଦେଖିଲି ଯାହା ବ୍ରହ୍ମାଙ୍କ କୁମର । ୩୮୮ ।
ଅସୁର ଭଗତି ଦେଖି ବ୍ରହ୍ମାଙ୍କର ଶିଷି
କଲ୍ୟାଣ କରିଣ ସେ ଯେ ବୋଇଲେକ ହସି । ୩୮୯ ।

---

୩୭୬।୨ ଗବନ—ଗମନ ।

ତୋହୋର ଠାରେ ଆମ୍ଭର ବହୁତ ସ୍ନେହ ଥାଇ
ତେଣୁ ଶଙ୍ଖୁଳ ଅଇଲୁ ଶୁଣ ନରସାଇଂ । ୩୯୦ ।
ଗୁପତ କଥାଏ ଅଛୁ କହିବା ତୋହୋରେ
ଶତ୍ରୁ ଉପଗତ ହେଲା କହିଲ ସତ୍ୱରେ । ୩୯୧ ।
ଯୁଧିଷ୍ଠି ବୋଲଣ ସେ ଯେ ଯେକଇ ଦଣ୍ଡଧର
ତାହାର କନିଷ୍ଠ ଅଟଇ ଭୀମ ମହାବୀର । ୩୯୨ ।
ତାହାର କନିଷ୍ଠ ନାମ ଅର୍ଜୁନ ଅଟଇ
ତ୍ରିଭୁବନେ ତାହାକୁ କେ ସାରସକ୍ଷ ନାହିଂ । ୩୯୩ ।
ତାହାର ସାନୁଜ ସେ ଯେ ନକୁଳ ମହାବୀର
ଆସିଅଛୁ ତୋର ସଙ୍ଗେ କରିବ ସମର । ୩୯୪ ।
ତାହା ଶୁଣି ସେ ଅସୁର ଗର୍ଜିଣ ଉଠିଲା
ନାରଦଙ୍କୁ ବହୁତ ସେ ପ୍ରଶଂସିତ କଲା । ୩୯୫ ।
ବୋଇଲା ଗୋସାଇଂ ମୁଂ ଯେ ଶିବଙ୍କ ପ୍ରସାଦେ
ଶତ୍ରୁମାନ କଦାପି ନ ଡରେ ରଣ ମଧ୍ୟେ । ୩୯୬ ।
ଅସୁର ବୋଇଲା ସ୍ୱାମୀ ହେବା ଅବଧାନ
କେଉଂଠାରେ ରହିଅଛୁ ପାଣ୍ଡୁର ନନ୍ଦନ । ୩୯୭ ।
ନାରଦ ବୋଇଲେ ଅଛୁ ସେ ଅର୍ଦ୍ଧ ସ୍ୱର୍ଗେରେ
ମାତଳି ଅଛଇ ପୁଣ ତାର ସଙ୍ଗତରେ । ୩୯୮ ।
ଏହା ଶୁଣିଣ ଅସୁର ମହାକ୍ରୋଧ କଲା
ମନ୍ତ୍ରୀକି ରାଇଣ ସେ ଯେ ବଚନ ପ୍ରକାଶିଲା । ୩୯୯ ।
ବୋଇଲା ତୁ ଥାଠ ସଜ କରାଅ ମୋହୋର
ଆଜ ମାରି ଆସିବଇଂ ପାଣ୍ଡୁର କୁମର । ୪୦୦ ।
ରାଜାର ଆଜ୍ଞାଂରେ ମନ୍ତ୍ରୀ ବେଗେ ଚଳିଗଲା
ସିଂହଦ୍ୱାରେ ଯାଇଣ ଟମକ ବଜାଇଲା । ୪୦୧ ।
ଟମକ ଡାକଇ ସଜହୁଅ ସର୍ବ ସନ୍ୟ
ରାଇ ଆଜ୍ଞାଂ ଦେଇଛନ୍ତି ଅସୁର ରାଜନ । ୪୦୨ ।

---

୩୯୩।୨ ସାରସକ୍ଷ—ସାଦୃଶ ।

ହାଥୀ ରଥୀ ପାଦାନ୍ତ ସମସ୍ତ ସଜ ହୋଇ
ଅଶ୍ୱଚଢ଼ି ଅସୁଆରେ ଆଗରେ ଧୁଆଂଇ । ୪୦୩ ।
ବାର କୋଟି ରଥୀ ପୁଣ ହୋଇଲେ ବାହାର
ନାନା ଶସ୍ତ୍ର ଥୋଇଲାକ ରଥର ଉପର । ୪୦୪ ।
ମନ୍ତ୍ରୀକି ବୋଇଲା ମୋର ରଥେ ଆସି ବସ
ନକୁଳ କୁମାର ଆଜ କରିବି ବିନାଶ । ୪୦୫ ।
ଇନ୍ଦ୍ର ଯଦ୍ୟପି ତା ପାଇଂ ହେବ ପଣ୍ଡିଘାଇ
ତାହା ସହିତରେ ସେହି ଯମପୁର ଯାଇ । ୪୦୬ ।
ଅସଂକ୍ଷେପ ଥାଟ ଘେନ ଚଳଇ ଅସୁର
ଜେନାବଳୀ ନଜ ଗ୍ରଜ୍ୟୁଂ ହୋଇଲା ବାହାର । ୪୦୭ ।
ଗଧ ଶୂକର ମଇଂଷି ଶାର୍ଦ୍ଦୂଳ ବାହାନେ
ଚଳନ୍ତି ଅସୁରେ ରଥ ଗଜ ଯେ ସଇନେ । ୪୦୮ ।
ଦଳ ଦଳ ହୋଇଣ କମ୍ପଇ ମହୀଦେବୀ
ବିକଟାଳ ହୋଇଣ ଅସୁରେ ଦ୍ୟନ୍ତି ବୋବି । ୪୦୯ ।
ଅର୍ଦ୍ଧ ଆକାଶେ ଅସୁର ମିଳିଲାକ ଯାଇ
ସିଂହରଡ଼ି ଘାତେଣ ସେ ଆକାଶ କମ୍ପଇ । ୪୧୦ ।
ପାଦ ରେଣୁ ଘାତେଣ ଆଦିତ୍ୟ ତେଜ ଗଲା
ମାର ମାର ଧର ଧର ଶବଦ ଶୁଭିଲା । ୪୧୧ ।
ଦିବା ଅନ୍ଧାର ଦେଖି ନକୁଳ ପଚ୍ଚରଇ
ଦିବସରେ ଅନ୍ଧାର ଦିଶଇ କାହିଂପାଇଂ । ୪୧୨ ।
ମାତଳି ବୋଇଲା ସେହି ଅସୁର ବାହିଲା
ନାରଦ ମୁଖରୁ ତବ ଆଗମନ ଶୁଣିଲା । ୪୧୩ ।
ଯେହା ଶୁଣି ନକୁଳ ଯେ କୋପମନ ହେଲା
ଦ୍ରୋଣଙ୍କୁ ସୁମରି ଧନୁ ଆମନ୍ତ୍ରନ କଲା । ୪୧୪ ।
ଗାଣ୍ଡୀବ ସାରିଖ୍ୟେ ଧନୁ ଅଟଇ ଯାହାର
ଗୁଣ ଚଢ଼ାଇଣ ଧନୁ କଲାକ ଟଙ୍କାର । ୪୧୫ ।
ଧନୁ ଗୁଣ ଘୋଷକ ଶୁଭଇ ଘଡ଼ଘଡ଼
ରେ ରେ କାର କରିଣ ଗ୍ରଜଇ ସିଂହରଡ଼ି । ୪୧୬ ।

୪୦୬।୧ ପଣ୍ଡିଘାଇ—ପ୍ରତିଦନ୍ଦକ । ୪୦୯।୨ ବୋବି—ରଡ଼ି ।

ପୁଣି ଜଗନ୍ନାଥଙ୍କୁ କରଇ ସୁମରଣ
କରୁଣାସାଗର ସ୍ୱାମୀ ମୋ ଦସ୍ପୃ ମା ଘେନ । ୪୧୭ ।
ଦଷ୍ଟ୍ୟ ନଶୋଧନେ ତୁମ୍ଭ ନାମ ଦଇତାରି
ମହାବ୍ଦ ପ୍ୟେ ଦଶ ଅବତାର ରୂପ ଧରି । ୪୧୮ ।
କୂର୍ମରୂପ ଧରଣ ମନ୍ଦର ଗିରି ଧରି
ବରାହ ରୂପରେ ଉଦ୍ଧରିଲ ବସୁନ୍ଧରା । ୪୧୯ ।
ମତ୍ସ୍ୟ ଅବତାରେ ଶଙ୍ଖାସୁର ବଧ କରି
ନରସିଂହ ରୂପ ଧରି ହିରଣାକ୍ଷ ମାରି । ୪୨୦ ।
ପୃଥିବୀର ଭାରଭର ନିବାରଣ କରି
ଘନବାନ୍ଧବ ହେ ଘନ ଶରଣ ପୂକାରି । ୪୨୧ ।
ଆମ୍ଭେ ପଣ୍ଡୁସୁତେ ସ୍ୱାମୀ ତୁମ୍ଭରେ ଶରଣ
ପ୍ୟେ ସଙ୍କଟୁ ରକ୍ଷାକର କମଳାରମଣ । ୪୨୨ ।
ଶ୍ରୀହରିଙ୍କି ନକୁଳ ମନରେ ସୁମରିଲା
ଅଫ୍‌କ୍ଷେପ ବଳ ତାର ଶରୀରେ ହୋଇଲା । । ୪୨୩ ।
ପ୍ୟେ ସମୟେ ପ୍ରବେଶିଲା ପ୍ରଚଣ୍ଡା ଅସୁର
ମନ୍ତ୍ରୁ ତେକ ରଥୀ ଯେ ଅଛନ୍ତି ସଙ୍ଗତର । । ୪୨୪ ।
ନକୁଳର ରଥକୁ ସେ ବେଢ଼ିଲେ ଯାଇ ଖରେ
ମାର ମାର ବୋଲଣ ସେ ଯେ ଡାକନ୍ତି ନିଶାଚରେ । ୪୨୫ ।
ପ୍ୟେ ସମୟେ ଅସୁରେ ମାଇଲେ ଶସ୍ତ୍ରମାନ
ନକୁଳ ଶସ୍ତ୍ର ପ୍ରହାର କରଇ ଛେଦନ । ୪୨୬ ।
ଜଳଧାରା ଜାଣି ଶର ଅସୁରେ ବର୍ଷନ୍ତି
ପ୍ୟେକା ନାରଜକେ ତାହା ନକୁଳ ବିଟକୋନ୍ତି । ୪୨୭ ।
ଲକ୍ଷେ ପୁର କରଣ ନକୁଳେ ବେଢ଼ିଗଲେ
ଛେଲ ଚନ୍ଦ ନାରାଜ ଲକ୍ଷିଆ ପ୍ରହାରିଲେ । ୪୨୮
ବେଲୁଂବେଲ ସମର ହୋଇଲା ଅଗୋଚର
ସରଗେଣ ନକୁଳ ଯେ କମ୍ପଇ ଥରହର । ୪୨୯ ।
ନକୁଳ ଶତେ ନାରାଜ ସରଗେଣ ମାଇଲା
ଦ୍ରୋଣ ଗୁରୁ ସୁମରି ସେ ଶରନ୍ତ ପେଷିଲା । ୪୩୦ ।

ଅନର୍ଯୀପ ଶର ସନ୍ୟେ ପଡିଲାକ ଯାଇଂ
ବଶାଶତେ ରଥୀ ଯେ ପଡିଲେ ପ୍ରାଣଦେଇ । ୪୩୧ ।
ରଥୀ ହାଥୀ ମାହୁନ୍ତ ହୋଇଲେ ସବ କ୍ଷୟେ
ସାଂଗ୍ରାମ ଭୂମି ଗୋଟା ହୋଇଲା ରକ୍ତମୟେ । ୪୩୨ ।
ଅସଂକ୍ଷ ଦାନବେ ନକୁଳକୁ ବେଢିଛନ୍ତି
କୁନ୍ତ ଶକ୍ତ ମୁଦଗର କୋପେଣ ପ୍ରହାରନ୍ତି । ୪୩୩ ।
ନକୁଳର ଅଙ୍ଗରେ ବାଜଣ ଖାଷ ଶର
ଝର ଝର ହୋଇଣ ଯେ ବହଇ ରୋଧିର । ୪୩୪ ।
ଦେଖିଣ ନକୁଳ ଯେ ମହା କ୍ରୋଧଭର ହେଲା
ସହସ୍ରେ ନାରାଜ ପୁଣ ଗୁଣେ ବସାଇଲା । ୪୩୫ ।
ମନ୍ତ୍ର ସୁମରି ନାରାଜ ଗୁଡିଲାକ ବେଗେ
ଗଣ୍ଡି ମୁଣ୍ଡ ହୋଇ ଅସୁରେ ପଡିଲେ ମହୀଭାଗେ । ୪୩୬ ।
ରକତରେ କର୍ଦ୍ଦମ ହୋଇଲା ବସୁମତୀ
ଅସୁରେ ଭୂମିରେ ପଡି ଗଡି ଗଡି ଯାନ୍ତି । ୪୩୭ ।
ସେହିମାନଙ୍କ ପଡିବା ଦେଖି ମହାରଥୀମାନ
ଶତେ ପୁର କରି ନକୁଳକୁ ବେଢିଲେ ବହନ । ୪୩୮ ।
ଖାଷଶର ଶକ୍ତ ଭାଲ ବର୍ଷିଲେ ଅପାର
ଦୂରୁଂ ନିବାରଇ ତାହା ମାଦ୍ରୀର କୁମର । ୪୩୯ ।
ବେଳୁଂ ବେଳ ଅସୁରେ ହୋଇଲେ କୋପଚିତ୍ତ
ନକୁଳ ଉପରେ ନେଇ ପ୍ରହାରିଲେ କୁନ୍ତ । ୪୪୦ ।
ପଞ୍ଚାଶ ଶର ନକୁଳ ରତ୍ନରେ ନିର୍ମିତ
ମନ୍ତ୍ରିଣ ପେଶିଲା ତାହା ମଦନାର ସୂତ । ୪୪୧ ।
ସେ ନାରାଜେ ପଡି ମଲେ ବେନି ସନ ରଥୀ
ପଞ୍ଚକୋଟି ହୟେବର ମର୍ଦ୍ଦତେକ ହାଥୀ । ୪୪୨ ।
ନକୁଳର ଶର ଘାତେ ଅସୁରେ ପଡିଲେ
ରକତ ନଦୀ ସୁଅରେ ଥୋକେ ଭାସିଗଲେ । ୪୪୩ ।
ନକୁଳର ଶରେ ଯେ ଅନେକ ସନ୍ୟ ମଲେ
ରଥୀ ହାଥୀ ପାଦାନ୍ତ ଅନେକ ସନ୍ୟ ନାଶଗଲେ । ୪୪୪ ।

ବାତ ଝଞ୍ଜାରେ କଦଳୀ ବନ ଯେହ୍ନେ ଧଂସ
ତେମନେ ଅସୁରଙ୍କ ଦଳକ ଲୋଟାଇ । ୪୪୫ ।
ତାଳେକ ଉପ୍ସର୍ଗେ ତହିଂ ରକ୍ତନଦୀ ବୁହାଇଲା
ଦେଖିଣ ପ୍ରଚଣ୍ଡାସୁର ମହାକ୍ରୋଧ ହେଲା । ୪୪୬ ।
ଅସୁର ବୋଇଲା ତାର ମନ୍ତ୍ରୀମୁଖ ଗୃହିଂ
ନକୁଳ ସମ୍ମୁଖକୁ ମୋର ରଥ ନଅ ବାହି । ୪୪୭ ।
ସନ୍ୟ ନବାରନ୍ତେ ସହଦେବ ବନ୍ଧୁଗଲା
ଦୃଷ୍ଟାନ୍ତ ଧନର ବେଳ ପ୍ରଭରେ ହୋଇଲା । ୪୪୮ ।
ସାଗରେକ ଅସୁର ନକୁଳ କଲା ନାଶ
ବସୁମତୀର ଭାର ଥୋକେ ହୋଇଲା ଉଶ୍ବାସ । ୪୪୯ ।
ପ୍ରଚଣ୍ଡାସୁର ଦେଖିଣ ପ୍ରଶଂସିଲା ମନେ
ଧନ୍ୟରେ ପାଣ୍ଡବା, ଛତ୍ରୀ ନାହିଂ ତୋ ସମାନେ । ୪୫୦ ।
କହୁଂ କହୁଂ ମନ୍ତ୍ରୀ ତାର ରଥ ବାହିନେଲା
ନକୁଳ ସମ୍ମୁରେ ନେଇ ରଥକୁ ଟେକିଲା । ୪୫୧ ।
ମନ୍ତ୍ରୀ ବୋଲେ ଯେ ତୋ ଶତ୍ରୁ ଯା ରୂପକୁ ଦେଖ
ଯେହାକୁ ବନାଶ ଅନ୍ୟ ଦୁଖ ଯେ ଉପେକ୍ଷ । ୪୫୨ ।
ମନ୍ତ୍ରୀର ବଚନେ ସେ ଅନେକ କୋପକଲା
ଅନେକ କୋପ କରି ନକୁଳେ ଗୃହିଂଣ ଗାଳଦିଲା । ୪୫୩ ।
ଦୁହେଂ ମହାଛତ୍ରୀ କେହି ନୁହନ୍ତନା ଊଣ
ଦ୍ରୋଣୁଂ ବାହ୍ଲି ବନ୍ଧନ୍ତ ନାରାଚ ମହାତୀକ୍ଷ । ୪୫୪ ।
ସହସ୍ରେ ବାଣ ଅସୁର ଗୁଣରେ ବସାଇ
ନକୁଳ ଉପରକୁ ତା ବିନ୍ଧଲା ନଠାଇଂ । ୪୫୫ ।
ସେ ବାଣ ଆସନ୍ତେଣ ତା ନକୁଳ ଦେଖିଲା
ଯେତେକ ନାରାଚକେ ତାହା ଦୂରରୁ କାଟିଲା । ୪୫୬ ।
ଦେଖିଣ ଅସୁର ଯେ କମ୍ପଇ ଥରହର
ନକୁଳ ବିନ୍ଧଲା କୋପେ ଅର୍ଦ୍ଧଚନ୍ଦ୍ରାପ ଶର । ୪୫୭ ।
ଅସୁର ଅଙ୍ଗରେ ପଡ଼ ଅଗ୍ନି ଝଳକଲା
ଦାନ୍ତ ମୋଡ଼ ନାରାଚ ସେ ଭୂମିରେ ପଡ଼ଲା । ୪୫୮ ।

କୋପେଣ ଅସୁର ଯେ ପନ୍ନଗା ଶର ବିନ୍ଧି
ଫଣା ଟେକି ପନ୍ନଗେ ଧାମନ୍ତି ଦିଗ ରୁନ୍ଧି । ୪୫୯ ।
ଦେଖିଣ ନକୁଳ ଯେ ଗରୁଡ଼ା ଶର କଲା
ଅସୁର ସର୍ପମାନଙ୍କୁ ଦୂରୁ ଟିଳିଦିଲା । ୪୬୦ ।
ପୁଣିହିଂ ସେ ମେଘାଶର ଅସୁର ବିନ୍ଧିଲା
ପବନା ଶରେ ନକୁଳ ତାକୁ ଉଡ଼ାଇଲା । ୪୬୧ ।
ଶର ଆତଯାତରେ ଗଗନ ନ ଦିଶଇ
ଶ୍ରାବଣ ବରଷା ଜାଣି ଶରବୃଷ୍ଟି ହୋଇ । ୪୬୨ ।
ପ୍ୟେକକୁ ଆରକେ ଶର ବିନ୍ଧି ନିବାରନ୍ତି
କେହି କାହାକୁ ନଓଛ ସମାନ ଅଟନ୍ତି । ୪୬୩ ।
ଯେ ଯାହାର ତ୍ରୋଣେ ଥାଇ ଅପାଲଟ ଶର
ସେହି ବିନ୍ଧୁଛନ୍ତି ତାହା ହୋଇଣ ନିଷ୍ଠୁର । ୪୬୪ ।
ଶର ଆତଯାତେ ନ ଦିଶଇ ରଣଭୂଇଂ
ପ୍ୟେକ ଶରକୁ ସେ ଯେ ଆରେକ ନିବାରଇ । ୪୬୫ ।
ତିନି ଦିବସ ତିନି ରାତ୍ର ଯୁଦ୍ଧ ହେଲା
କେହି କାହାକୁହିଂ ଯୁଦ୍ଧେ ଜିଣି ନ ପାରିଲା । ୪୬୬ ।
ଶରଙ୍କର ଆତଯାତ ଗୁଣଘୋଷ ନାଦ
ଶୂନ୍ୟ ପୁରୁଷେ ଶୂନ୍ୟରେ ହୋଇଲେ ତବଦ । ୪୬୭ ।
ପ୍ରଳୟ କାଳ ଜାଣିଣ ଶରଙ୍କ ଗର୍ଜନ
ଦିବାରାତ୍ର ଗଲାନି ହୋଇଲା ସମ୍ପନ୍ଦନ । ୪୬୮ ।
ବିଜୁଳି ଝଟକ ଜାଣି ଶରଙ୍କର କାନ୍ତି
ଘଡ଼ଘଡ଼ ପ୍ରାମ୍ୟେକ ସେ ଶବଦ କରନ୍ତି । ୪୬୯ ।
ମ୍ୟେକ ବିନ୍ଧିବାରେ ଶର ଆରେକ [illegible]ରେ
କାହାର ଶର କାହାର ନ ବାଜେ ଶରୀରେ । ୪୭୦ ।
ବିନ୍ଧି ବିନ୍ଧି ଅସମର୍ଥ ହେଲେ ବେନି ଜନ
ନୁହଇ ନିବାର ଶର ଶରୀରେ ଭେଦନ । ୪୭୧ ।
ବେଳୁଂବେଳ ସମର କରନ୍ତି ମହାଘୋର
ଦୁହେଂ ମହାବଳୀ ସେ ଯେ ଅଟନ୍ତି ଧାନୁର୍ଦ୍ଧର । ୪୭୨ ।

---

୪୬୩।୨ ନଓଛ—ଅସମକକ୍ଷ ନୁହନ୍ତି । ୪୬୭।୨ ତବଦ—ସ୍ତବ୍ଧ ।

କାଣ୍ଡରେ ନକୁଳ ଦେହ ହୋଇଲାକ ଘାଇ
କାଣ୍ଡଘାଏ ଦେହୁଂ ରକ୍ତ ଝର ଝର ବହି । ୪୭୩ ।
ମହାକ୍ରୋଧେ ନକୁଳ ଶରନ୍ତ ପ୍ରହାରିଲା
ଅସୁରର ଶରୀରକୁ ବକୋଡି କାଟିଲା । ୪୭୪ ।
ରକତରେ ଜର ଜର ସେ ବେନିଙ୍କର କାଏ
କେହ୍ନି କାହାକଇଂ ନ ଦୁଅନ୍ତି ବେନି ପାଏ । ୪୭୫ ।
ସହସ୍ରେକ ତୀକ୍ଷ ଶର ନକୁଳ ପେଷିଲା
ଅସୁର ଶରୀରକୁ ସେ ବକୋଡି କାଟିଲା । ୪୭୬ ।
ପୁଣିହିଂ ନକୁଳ ବଜ୍ରାଶର ପ୍ରହାରିଲା
ଅସୁରର ଶିରକୁ ସେ କାଟି ପକାଇଲା । ୪୭୭ ।
ବେକ ସଳଖରୁ ବାଣ ଗଲାଗଲା ଯହୁଂ
ମୁଣ୍ଡ ଛିଣ୍ଡି ଭୂମିରେଣ ପଡ଼ିଲାକ ତହୁଂ । ୪୭୮ ।
ପୁଣି ଗର୍ଭ ଭିତରୁ ଶିରେକ ବାହାରିଲା
ଦେଖିଣ ନକୁଳ ମନେ ମହାକ୍ରୋଧ କଲା । ୪୭୯ ।
ପୁଣିହିଂ ନକୁଳ କୋପେ ଅର୍ଦ୍ଧଚନ୍ଦ୍ର ପେଶି
ସେ ଶିର ଛିଣ୍ଡିଣ ଭୂମିରେ ପଡ଼ିଲାକ ଆସି । ୪୮୦ ।
ପୁଣି ଶିର କମଳ ତା ଗର୍ଭୁଂ ଉପୁଜିଲା
ଦେଖିଣ ନକୁଳଙ୍କଇଂ ବୁଦ୍ଧି ନ ସ୍ଫୁରିଲା । ୪୮୧ ।
ମନେ ବିଚାରଇ ଏହୁ ଅନିବାର ଅସୁର
କି ବିଚାର କରିଣ ଅଛନ୍ତି ଚକ୍ରଧର । ୪୮୨ ।
ପୁଣି ଇନ୍ଦ୍ରାଶର ନକୁଳ ବିନ୍ଧେ ଟାଣି
ପ୍ରଚଣ୍ଡାସୁର ଶିର ପକାଇଲା ହାଣି । ୪୮୩ ।
ପୁଣି ଶିର ଉଦର ଭିତରୁ ବାହାରିଲା
ଧନୁ ଧରି ନକୁଳ ସଙ୍ଗତେ ଯୁଦ୍ଧ କଲା । ୪୮୪ ।
ନକୁଳର ଦେହେ କାଣ୍ଡ ହୋଇଲାକ ଘାଇ
ରକତ ବହି ପଡ଼ଇ ଯେ ଧାର ଧାର ହୋଇ । ୪୮୫ ।
ନକୁଳ ବିଚାର କରେ କି ବୁଦ୍ଧି କରିବି
କେମନ୍ତ ପ୍ରକାରେଣ ଏହୁ ଅସୁର ସଂହାରିବି । ୪୮୬ ।

---

୪୭୪।୨ ବକୋଡି—ଖଣ୍ଡ ଖଣ୍ଡ କରି କାଟିବା । ୪୮୨।୧ ଅନିବାର—ଦୁର୍ଦ୍ଧର୍ଷ ।

ପୁଣି ପଶୁପତ ବାଣ ବନ୍ଧିଲା ନକୁଳ
ଅସୁରର ଛିଣ୍ଡିଗଲା ଶିର ଯେ କମଳ । ୪୮୭ ।
ପୁଣି ଗର୍ଭରୁ ଶିରେକ ହେଲା ତତକ୍ଷଣ
ବନ୍ଧଇ ଅସୁର ସେ ଯେ ଅନଯୀପ ବାଣ । ୪୮୮ ।
ଏ ବଧିରେ ଶତେକବାର ଶିର ତା ଛିଣ୍ଡିଲା
ପୁଣ ପୁଣ ଗର୍ଭରୁ ତା ଶିର ବାହାରିଲା । ୪୮୯ ।
ନକୁଳ ମୁଖକୁ ଗୁହିଁ ବୋଲଇ ଅସୁର
ଏ ଶରମାନଙ୍କେ କାହିଁ ମୃତ୍ୟୁ ଯେ ମୋହୋର । ୪୯୦ ।
ଶିର ଛିଣ୍ଡିଗଲେ ମୁଁ ରେ ଯଦ୍ୟପି ମରନ୍ତ
ଏତେ ଦିନ ଯାଏ କ'ଏ ପୃଥୀରେ ରହିଥାନ୍ତ । ୪୯୧ ।
ସର୍ବ ସୁରଗଣେ ବେଢି ମାରିଥାନ୍ତେ ମୋତେ
ତୁ ଏ କଥାମାନ ପୁଣ ନ ବୁଝୁରୁ ଚିତ୍ତେ । ୪୯୨ ।
ତୋହୋର ହାଥରେ କାହିଁ ମୋହୋର ମରଣ
ଯମପୁରକୁ ତୋତେ ରେ ପେଶିବ ଏହିକ୍ଷଣ । ୪୯୩ ।
ଏତେ ବୋଲନ୍ତେ ଅସୁର ବନ୍ଧଇ ଶରମାନ
ଅତି ବିମୁଖ ହୋଇଲା ମାଦ୍ରୀର ନନ୍ଦନ । ୪୯୪ ।
ନ ପାରିଲେ କସଟି ବୋଲିବେ ଦାମୋଦର
କି ବୋଲି ବୋଲିବେ ମୋତେ ଅର୍ଜୁନ ଠାକୁର । ୪୯୫ ।
ଭୀମସେନ ଠାକୁରେ ବହୁତ ନିନ୍ଦାସିବେ
ଶୁଣିଣ କଉରବେ ଯେ ଉପହାସ କରିବେ । ୪୯୬ ।
ମରଣରୁ ଲଜ୍ଜା ମୋତେ ଅଧିକ ହୋଇବ
ନ ଜାଣି କି ମୋତେ ପଠାଇଲା ସହଦେବ । ୪୯୭ ।
ଏମନ୍ତ ଭାବଣା ମନେ ବିସ୍ମୟ ହୋଇଲା
କରପଦ୍ମ ଯୋଡି ମାତଳିକି ପୁଚ୍ଛା କଲା । ୪୯୮ ।
କି ବୁଦ୍ଧି କରିବି ହୋ ମାତଳି କହ ମୋତେ
ଛିଣ୍ଡିବାର ମୁଣ୍ଡ ପୁଣ ଗର୍ଭୁଂ ଉତପତ୍ତି ଯେ କେମନ୍ତେ । ୪୯୯ ।
ଯେତେ ଶର ସେ ଅସୁର ମୋତେ ପ୍ରହାରଇ
ମମ ଅଙ୍ଗେ ଭେଦଇ ମେ ବିଅର୍ଥ ନ ଯାଇ । ୫୦୦ ।

ଘାୟେ ଅନ୍ତରାଳ ହୋଇ ମୋହୋର ଶରୀର
କେମନ୍ତେ ମାତଳ କହ ମରବ ଅସୁର । ୫୦୧ ।
ମାତଳ ବୋଇଲା ଶୁଣ ସାବଧାନ ହୋଇ
ଯେମନ୍ତେ ମରବ ସେ ତାହା ଜାଣିଅଛୁ ମୁହିଂ । ୫୦୨ ।
ଯେତେବେଳେ ସଦାଶିବଙ୍କୁ ଯେ ସେବାକଲା
ସେବାରେ ମନାଇ ବର ପ୍ରାର୍ଥନା ଯେ କଲା । ୫୦୩ ।
ବୋଇଲା ସ୍ୱାମୀ ଅମର ହେବ ମୋର କାୟେ
ଅସ୍ତୁ ହୋଉ ବୋଲିଣ ବୋଇଲେ ଦେବରାୟେ । ୫୦୪ ।
ଆବର ବର ମାଗିଲା ପ୍ରଚଣ୍ଡା ଅସୁର
ଦେବ ଦାନବ ମାନବେ ମୃତ୍ୟୁ ନୋହୁ ମୋର । ୫୦୫ ।
ସଦାଶିବ ବୋଇଲେ ରେ ତାହାହିଂ ଅସ୍ତୁ ହୋଉ
ସମର ଭୂଇଁରେ ତୋର ଭୟହିଂ ନ ଥାଉ । ୫୦୬ ।
ଅସୁର ବୋଇଲା ସ୍ୱାମୀ ଯେ ମୃତ୍ୟୁମଣ୍ଡଳ
ଯେଥି ଜନ୍ମ ଲଭିଲେ ମରବ ଆଖଣ୍ଡଳ । ୫୦୭ ।
ଜନମ ହୋଇଲେତ ଅବଶ୍ୟ ମୃତ୍ୟୁ ହୋଇ
କେଉଁଣ ପ୍ରକାରେ ମୁଂ ମରିବ କହ ତାହି । ୫୦୮ ।
ଶିବ ବୋଇଲେ ମୁଣ୍ଡ କାଟିଲେ ନ ମରିବୁ
ବୁକୁ ଫୁଟିଲେ ତୁ ପୁଣ ବିନାଶ ହୋଇବୁ । ୫୦୯ ।
ଅଗ୍ନିଶର ଯେବେ ଅବା ତୋତେ ଯେ ମାରିବ
ଅଙ୍ଗ ଜଳିଗଲେ ତୋର ମରଣ ହୋଇବ । ୫୧୦ ।
ଏସନ ବଚନ ଯହୁଂ ମାତଳ କହିଲା
ନକୁଳର ମନ ମଧ୍ୟେ ସଂଶୟ ତୁଟିଲା । ୫୧୧ ।
ତୋଣ ଭିତରୁ ସେ କାଢିଲା ଅଗ୍ନିଶର
ଗୁଣେ ବସାଇଲା ତାହା ନକୁଳ କୁମାର । ୫୧୨ ।
**ଆକର୍ଣ୍ଣ ପର୍ଯ୍ୟନ୍ତେ** ଧନୁଂ ଗୁଣ ଓଟାରିଲା
ପ୍ରଚଣ୍ଡ ଅନଳ ଶିଖା ଆକାଶେ ଯୋଡିଲା । ୫୧୩ ।
ଦ୍ରୋଣ ଗୁରୁ ସୁମରଣେ ତୁଟନ୍ତେ ନାରାଚ
ପ୍ରଚଣ୍ଡାସୁର ଶରୀର ହୋଇଲା ଦହିଜ୍ୟ । ୫୧୪ ।

ମନ୍ତ୍ରୀ ସଙ୍ଗେ ବହନ ହୋଇଲା ରଥ ଆଦି
ନକଣ୍ଟକ ହୋଇଲେ ଅମରେ ଜନ୍ମୋଭେଦ । ୫୧୫ ।
ଯହୁଁ ସେ ମହା ଅସୁର ହୋଇଲା ବିନାଶି
ଦେଖିଣ ନୃତ୍ୟ କଲେ ନାରଦ ମହର୍ଷି । ୫୧୬ ।
ତାହା ଦେଖି ମାତଳି ଯେ ଆନନ୍ଦ ହୋଇଲା
ନକୁଳ କୁମରକୁ ବହୁତ ପ୍ରଶଂସିଲା । ୫୧୭ ।
ଶୁଣ ହୋ ବିଲଙ୍କ ରାଜା ବୋଲନ୍ତି ଅଗସ୍ତି
ଯେସନେକେ ପ୍ରଚଣ୍ଡା ହୋଇଲା ବିନଶ୍ୟନ୍ତି । ୫୧୮ ।
ଅସୁର ମରିବା ଦେଖି ନାରଦେ ଚଳିଲେ
ସୁଧର୍ମା ସଭାରେ ଯାଇଂ ପ୍ରବେଶ ହୋଇଲେ । ୫୧୯ ।
ସଭା ମଣ୍ଡାଇଣ ଯେ ବସିଛି ସୁରନାଥ
ପ୍ରବେଶ ହୋଇଲେ ଯାଇ ନାରଦ ତପୋବନ୍ତ । ୫୨୦ ।
ନାରଦଙ୍କ ହରଷିତ ଜାଣି ବଜ୍ରପାଣି
ପଚାରନ୍ତି କାହିଂ କିସ ଦେଖିଅଛ ପୁଣି । ୫୨୧ ।
ନାରଦେ ବୋଇଲେ ଯେ ନକୁଳ ମହାବୀର
ସ୍ୱର୍ଗେ ପଶନ୍ତେ ଧଂସିଲା ପ୍ରଚଣ୍ଡା ଅସୁରା । ୫୨୨ ।
ସାତ ଦିନ ସାତ ରାତ୍ର ଯୁଦ୍ଧ ସେ ଯେ କଲା
ସାଗରେକ ଯୋଦ୍ଧାଙ୍କୁ ସେ କଞ୍ଚିତେ ଜିଣିଲା । ୫୨୩ ।
ପ୍ରଚଣ୍ଡାସୁରକୁ ସେ ବଧିଲା ନକୁଳ
ଦେଖା ଶୁଣା ନାହିଂ ଯାହା ଦେଖିଲି ଆଖଣ୍ଡଳ । ୫୨୪ ।
ଏହା ଶୁଣି ସୁରରାୟେ ଆନନ୍ଦ ହୋଇଲେ
ନକୁଳ କୁମାରକୁ ପ୍ରଶଂସା ବହୁ କଲେ । ୫୨୫ ।
ସ୍ୱର୍ଗପୁରେ ଜୟ ଜୟ ଶବଦ ଶୁଭିଲା
ପଦ୍ମ ପୁଷ୍ପ ପ୍ରାୟେ ଇନ୍ଦ୍ର ମୁଖ ବିକାଶିଲା । ୫୨୬ ।
ବସନ୍ତ ବହିଲା ତହିଂ ଧୀର ଧୀର ହୋଇ
ଅନେକ ସାନନ୍ଦ ହେଲେ ସ୍ୱର୍ଗବାସୀ ତହିଂ । ୫୨୭ ।
ସଭା ମଣ୍ଡାଇଣ ସୁରରାୟେ ବିଜେକଲା
ବୃହସ୍ପତିଙ୍କି ସେ ଇନ୍ଦ୍ର ହକାରି ଆଣିଲା । ୫୨୮ ।

ତେତିଶ କୋଟି ଦେବତା ସମସ୍ତେ ଅଇଲେ
ସୁଧର୍ମା ସଭାରେ ଯେ ସମସ୍ତେ ବିଜେକଲେ । ୫୨୯ ।
କପିଳାସୁଂ ଈଶ୍ୱରେ ଅଇଲେ ବେଗ ହୋଇ
ଏକାଦଶ କୋଟି ଶିବଗଣ ସଙ୍ଗେ ଲାଇ । ୫୩୦ ।
ଯେ ଯାହାର ମତେ ସଭାମଧ୍ୟେ ବିଜେକଲେ
ଯଶୋବନ୍ତୀ ପୁରୁଂ ବେଦବ୍ରହ୍ମା ଯେ ଅଇଲେ । ୫୩୧ ।
ଦେଖିଣ ଦେବତାମାନେ ଶିରେ କର ଦିଲେ
ସୁବର୍ଣ୍ଣ ଆସନରେ ବିଧାତା ବିଜେକଲେ । ୫୩୨ ।
ବ୍ରହ୍ମା ପୁଚ୍ଛା କଲେ ସେ ଇନ୍ଦ୍ରର ମୁଖ ଚାହିଁ
ପ୍ରଚଣ୍ଡା ଅସୁର ମଲା ସ୍ୱର୍ଗେ ଭଲ ନାହିଁ । ୫୩୩ ।
ବୃହସ୍ପତି ଆଜ୍ଞା ଦିଲେ ଶୁଣ ସୁରଗଣ
ନକୁଳ କୁମାରକଇଁ ହକାରିଣ ଆଣ । ୫୩୪ ।
ଇନ୍ଦ୍ରହିଂ ବୋଇଲେ ସୁରସେନ ବେଗେ ଯାଉ
ଆମ୍ଭ ଆଜ୍ଞା ଅଛି ବୋଲି ନକୁଳକୁ କହୁ । ୫୩୫ ।
ଆଜ୍ଞା ପାଇ ଗନ୍ଧର୍ବ ବହନ ଚଳିଗଲା
ନକୁଳ ଗୁମ୍ଫରେ ଯାଇଂ ପ୍ରବେଶ ହୋଇଲା । ୫୩୬ ।
ବୋଇଲା ବାସବଙ୍କର ଆଜ୍ଞା ଅଛି ତୋତେ
ମୁଂ ଆସିଅଛଇ ଘେନି ଯିବଇଂ ସଙ୍ଗତେ । ୫୩୭ ।
ସୁରସେନ ମୁଖରୁ ଏସନେକ ବାକ୍ୟ ଶୁଣି
ମାତଳକ ଗୃହିଂଣ ବୋଲଇ ମୃଦୁବାଣୀ । ୫୩୮ ।
ବୋଇଲା ଦଣ୍ଡେ ନବରେ ଯିବା ଆମ୍ଭେ ଖରେ
ଶଚୀ ଠାକୁରାଣୀ ଛନ୍ତି ତାହାର ମନ୍ଦିରେ । ୫୩୯ ।
ତାହା ଶୁଣି ମାତଳ ଯେ ସନମତ କଲା
ରଥ ସାଜ ନକୁଳ କୁମାର ବିଜେକଲା । ୫୪୦ ।
ମାତଳ ଯେ ସୁରସେନ ରଥରେ ବସିଲେ
ଜେନାବଳୀ ପୁରକଇଂ ରଥ ବାହିନେଲେ । ୫୪୧ ।
ସେ ପୁରଜନଙ୍କୁ ଯାଇଂ ପୁଚ୍ଛନ୍ତି ବାରତ
ତୁମ୍ଭେ ଜାଣ କେଉଁଠାରେ ଅଛନ୍ତି ଶଚୀମାତ । ୫୪୨ ।

ଡଗରେ ବୋଲନ୍ତ ସେ ଅସୁର ପୁରେ ନାହିଂ
ଅରଡ ପର୍ବତ ତଳେ ଛନ୍ତି ମହାଦେଈ । ୫୪୩ ।
ଡଗରେ ନକୁଳ କହେ କଢାଅ ସେ ବାଟ
ଆମ୍ଭଙ୍କୁ ନେଇଣ ବାରେ କରାଅନ ଭେଟ । ୫୪୪ ।
ପ୍ରଚଣ୍ଡା ଅସୁର ସ୍ୱର୍ଗକଇଂ ଧାଡ ହିଲା
ନକୁଳ କୁମାର ହାଥେ ବଧ ସେ ହୋଇଲା । ୫୪୫ ।
ଯେତୁହା ଶୁଣି ଡଗରେ କଢାଇଲେ ବାଟ
ଶଚୀଙ୍କ ନବରେ ଅଛି ବଜ୍ରର କବାଟ । ୫୪୬ ।
ଯେତୁହା ଶୁଣି ଡଗରାଯେ ଆଗରେ ଧାଇଂଲେ
ଗନ୍ଧର୍ବ ନାରୀମାନଙ୍କୁ ଯେତ୍ସ ଡାକ ହିଲେ । ୫୪୭ ।
ବୋଇଲେ କେ ଦ୍ୱାରେ ଅଛି ଫିଟାଅ କବାଟ
ଭେଟ କର ଆସିଅଛି ମଦନାର ଗୃଟ । ୫୪୮ ।
ଚନ୍ଦ୍ରରେଖା ନନ୍ଦନୀ ଯେ ମଦନା ଗନ୍ଧର୍ବୀ
ଶଚୀଙ୍କି ସେ ସର୍ବଦାକାଳରେ ଥାନ୍ତି ସେବ । ୫୪୯ ।
ସେ ଯାଇ କହିଲା ମାଗୋ ଶଚୀ ଠାକୁରାଣୀ
ନକୁଳ ଆସିଣ ତବ ଦ୍ୱାରେ ଅଛି ପୁଣି । ୫୫୦ ।
ଆମ୍ଭଙ୍କୁ ସେ ଆଗ୍ୟାଂ ହିଲେ ଫିଟାଅ କବାଟ
ସୁରସେନ ଅଛଇଂ ଗୋ ଫିଟିଲା ସଙ୍କଟ । ୫୫୧ ।
ଶଚୀ ବୋଇଲେ ଗୋ ସଖୀ ଯେ କ କଥା କହ
ସେ ଯେବେ ଅଇଲା ସତ ଚିକ ମାଦ୍ରୀପୁଅ । ୫୫୨ ।
ଯାଅ ଲୋ କବାଟ କାଢି ଦିଅ ତୁ ବହନ
ଲେଖାରେ ନକୁଳ ଅଟଇ ମୋହୋର ନନ୍ଦନ । ୫୫୩ ।
ଯେତୁହା ଶୁଣି ଗନ୍ଧର୍ବୀ ବହନ ହୋଇ ଗଲା
ସେ ଯନ୍ତ୍ର କଳଣୀ ଯାଇଂ ଫିଟାଇଣ ହିଲା । ୫୫୪ ।
ବାଟ କଢା ଡଗରେ ଯେ ପଶିଲେ ଝସାଇ
ଶଚୀ ଦେବୀଙ୍କି କହନ୍ତି ସକଳ ବୁଝାଇ । ୫୫୫ ।
ମା ଗୋ ଶୁଣିମା ହେଉ ଇନ୍ଦ୍ରଙ୍କ ପାଟରାଣୀ
ପ୍ରଚଣ୍ଡାସୁର ବାହିଲା ସ୍ୱର୍ଗକଇଂ ପୁଣି । ୫୫୬ ।

ନକୁଳ ବୋଲଇଣ ମା ଗୋ ପଣ୍ଡୁର କୁମର
ସେହୁ ଯୋଗେ ଆସିଣ ଗୋ ଥିଲି ସ୍ୱର୍ଗପୁର । ୫୫୭ ।
ଯାର ଭୁର ଶୁଣିଣ ସେ ନ ଗୋଧିଲା ବାଟ
ଅସୁରଙ୍କ ସଙ୍ଗରେ କଲାକ ମୋଟ ଦୈତ୍ୟ । ୫୫୮ ।
ସାତ ଦିନ ସାତ ରାତ୍ର ଯେତୁକାକେ ଯୁଝିଲା
ପ୍ରଚଣ୍ଡାସୁର ସହିତେ ସର୍ବ ନାଶ କଲା । ୫୫୯ ।
ଯେବେ ସେ ଆସିଛି ଆପଣଙ୍କୁ ଘେନିଯିବ
ଇନ୍ଦ୍ରଙ୍କ ଗ୍ରାମରେ ନେଇ ଭେଟ କରାଇବ । ୫୬୦ ।
ଶୁଣି କରି ଶଚୀ ଦେବୀ ହୋଇଲେ ଆନନ୍ଦ
ମୁଖ ବିକାଶି ଦିଶିଲା କି ପୂର୍ଣ୍ଣିମାର ଚନ୍ଦ୍ର । ୫୬୧ ।
ଶଚୀ ପ୍ରଶଂସା କରନ୍ତି ଧନ୍ୟ ରେ ନକୁଳ
ପ୍ରଚଣ୍ଡା ଦାନବ ଯେ ଅଟଇ ମହାବଳ । ୫୬୨ ।
ସତସ୍ତର ବାର ସେ ସ୍ୱର୍ଗକୁ ଧାଡି ଦେଲା
ତେତିଶ କୋଟି ଦେବତା କଷ୍ଟତେ ଜିଣିଲା । ୫୬୩ ।
ସତଷଠୀ ଖଉଣୀ ତାହାର ଅଙ୍ଗବଳ
ଯେତୁକାକୁ କେମନ୍ତେ ତାହା ନାଶିଲୁ ନକୁଳ । ୫୬୪ ।
ଧନ୍ୟ ଧନ୍ୟ ମହିମା ତୋ ନକୁଳ କୁମାର
କାର୍ତ୍ତି ରୁହାଇଲୁ ତୋର ଚତୁର୍ଦ୍ଦଶ ପୁର । ୫୬୫ ।
ଯେ ସମୟେ ନକୁଳ ଯେ ପ୍ରବେଶ ହୋଇଲେ
ଯେତେ ଦୂରୁ ସେ ଶଚୀ ଦେବୀ ଯେ ଦିଶିଲେ । ୫୬୬ ।
ସେହିଠାରୁ ପାୟେ ପଡି ଶୋଇଲେ ବହନ
ଶଚୀ ଡାକ ଦେଲେ ଯେ ଉଠ ଉଠ ରେ ନନ୍ଦନ । ୫୬୭ ।
ନ ଉଠଇ ନକୁଳ କରଇ ନିଉଛୁଳି
ଧାଇଂ ଶଚୀଦେବୀ ସେ ନକୁଳେ ଧରି ତୋଳି । ୫୬୮ ।
ଆଘ୍ରାଣ ଅଙ୍ଗଲେ ଧୂଳିମାନନ୍ତ ଝାଡିଲେ
କର ଧରି ଜାନୁପରେ ନେଇ ବସାଇଲେ । ୫୬୯ ।
ବୋବାଲେକ ଶଚୀ ଦେବୀ ହୋଇଣ ବିକଳ
ଗଙ୍ଗା ଯମୁନା ପ୍ରାୟେ ବହେ ଅଶ୍ରୁ ଜଳ । ୫୭୦ ।

୫୬୦ ଭେଟିବା—ବେଦନ କରିବା ।

ନକୁଳ ବୋଇଲେ କ୍ରୋଧ ଶାନ୍ତକର ମାୟେ
ୟେ ତୁମ୍ଭର ପ୍ରସାଦେ ଅସୁରେ ଗଲେ କ୍ଷୟେ । ୫୭୧ ।
ଶଚୀ ପ୍ରତିବାଚ ବାବୁ ୟେ ଘୋର ସଂକଟ
ମାନ ଉଦ୍ଧରିଲୁ ଆସି ଧନ୍ୟ ରେ ତୁ ଗୃଠ । ୫୭୨ ।
ୟେ ତୋହ୍ମାର ଗୁଣ ବାବୁ ସୁଝିବଇଂ କାହିଂ
ଚତୁର୍ଦ୍ଦଶ ପୁରେ କେ ୟେମନ୍ତ ଦେବ ନାହିଂ । ୫୭୩ ।
ବହୁତ ପ୍ରଶଂସି ଶଚୀ ନକୁଳେ ବୋଇଲେ
କରପଦ୍ମ ଯୋଡଣ ନକୁଳ ଜଣାଇଲେ । ୫୭୪ ।
ତୁମ୍ଭର ଆଗ୍ୟାଂରେ ୟେ ଅସୁର କ୍ଷୟେ ଗଲା
ମୁଂ ତୁମ୍ଭର ଭୃତ୍ୟ ସିନା ଯଶ ଉପୁଜିଲା । ୫୭୫ ।
ଶଚୀ ବୋଇଲେ ନନ୍ଦନ ନୁହଇକି ତାହି
ଅମର ସ୍ୱର୍ଗକୁ ବଳା ରକ୍ଷା କଲୁ ତୁହି । ୫୭୬ ।
ଦୁଷ୍ଟାସୁ ସମୋଦ୍ର ଜାଣି ସେ ଅସୁର ବଳ
ୟେକାକେ କେମନ୍ତେ ନାଶ କଲୁ ତୁ ନକୁଳ । ୫୭୭ ।
ୟେତେ ବୋଲଣ ନକୁଳ ଶରୀର ଆଉଂଶିଲେ
ବଜ୍ର ଅଙ୍ଗ ହେଉ ବୋଲି ଦେବୀ ଯେ ବୋଇଲେ । ୫୭୮ ।
ନକୁଳ ବୋଇଲେ ମା ଗୋ ରଥେ ବିଜେ କର
ଅମର ମଣ୍ଡଳ କଇଂ ଯିବାନା ସତ୍ୱର । ୫୭୯ ।
ନକୁଳ ବୋଇଲେ ମା ଗୋ ସ୍ୱର୍ଗ ଠାକୁରାଣୀ
ତୁମ୍ଭ ବିନା ସ୍ୱର୍ଗ ନ ଶୋହଇ ଗୋସାମଣୀ । ୫୮୦ ।
ନକୁଳ ବଚନେ ଦେବୀ ତକ୍ଷଣେ ଉଠିଲେ
ଅପଛରୀନ୍ତ ହେନଣ ରଥରେ ବିଜେ କଲେ । ୫୮୧ ।
ଚମକାଇ ରଥ ତେଣେ ବାହଇ ମାତଳି
ପବନଙ୍କ ପ୍ରତ୍ୟକ୍ଷ୍ୟକ ସେ ଗଲା ବେଗେ ଚଳି । ୫୮୨ ।
ସ୍ୱର୍ଗ ମଣ୍ଡଳରେ ପ୍ରବେଶିତ ହେଲା ଯାନ
ଶଚୀ ଦେବୀ ପ୍ରବେଶିଲେ ଆପଣା ଭୁବନ । ୫୮୩ ।
ନିଜ ପୁରେ ପ୍ରବେଶିଲେ ପରିବାରୀ ହେନ
ଯେ ଯାହା ସେବାରେ ଯାଇଂ ଖଟିଲେ କାମିନୀ । ୫୮୪ ।

---

୫୮୧।୨ ଅପଛରୀ—ଅପ୍ସରୀ ।

ନକୁଳ ଘେନିଣ ମାତଳି ଚଳିଗଲା
ସୁଧର୍ମା ସଭାରେ ଯାଇଂ ତକ୍ଷଣେ ମିଳିଲା । ୫୮୫ ।
ବ୍ରହ୍ମା ବୃହସ୍ପତି ଇନ୍ଦ୍ର ଶିବଙ୍କୁ ଦେଖିଣ
ପାଦେ ପଡ଼ି ଶୋଇଲାକ ମାଦ୍ରୀର ନନ୍ଦନ । ୫୮୬ ।
ଇନ୍ଦ୍ର ବୋଇଲେ ରେ ଉଠ ପଣ୍ଡୁରାଜା ପୁଅ
ଯାଅ ଚିତ୍ରସେନ ହୋ ନକୁଳକୁ ଉଠିଆଅ । ୫୮୭ ।
ଧାଇଂଯାଇ ଚିତ୍ରସେନ ନକୁଳକୁ ଉଠାଇଲା
କର ଯୋଡ଼ିଣ ନକୁଳ ଉଠି ଉଭାହେଲା । ୫୮୮ ।
ଇନ୍ଦ୍ର ଆଜ୍ଞାଂ ଦିଲେ ସୁଧର୍ମା ସଭାକୁ ଯେ ଆସ
ଧନ୍ୟ ଧନ୍ୟ ନକୁଳ ରେ ପଣ୍ଡୁରାଜ ଶିଷ । ୫୮୯ ।
ଆସ୍ଥାନ ଉପରକୁ ନକୁଳ ଉଠିଗଲେ
ଦେଖି ଅଶ୍ୱିନୀକୁମାରେ କୋଳରେ ଧଇଲେ । ୫୯୦ ।
ମୁଖରେ ଚୁମ୍ବନ ପିତା ହରଷେ ଦିଅନ୍ତି
ବ୍ରହ୍ମା ବୃହସ୍ପତି ବହୁ କଲ୍ୟାଣ କରନ୍ତି । ୫୯୧ ।
ଅମରେଣ ଅଧିକାରୀ ହୋଅ ତୁ ବୋଇଲେ
ଗଣ ଗନ୍ଧର୍ବ ଦେବତା ଯେତେ ବସିଥିଲେ । ୫୯୨ ।
ଏକେ ଏକେ ହୋଇ ସର୍ବେ କଲ୍ୟାଣ ବାଂଛିଲେ
ଏଥୁ ଅନନ୍ତରେ ଶୁଣ ଅଗସ୍ତି ଭାଷିଲେ । ୫୯୩ ।
ଅମରେ ନକୁଳ ବୀର ପୁରୁଷାର୍ଥ ପାଇ
ଉଠି ନକୁଳକୁ କୋଳ କଲେ ଶଚୀସାଇଂ । ୫୯୪ ।
ତୋହୋର ହେତୁ ଏ ସ୍ୱର୍ଗ ରକ୍ଷା ହେଲା ବାବୁ
ଏ ଅମର ମଣ୍ଡଳ ଅର୍ଜିଲା ତୋର ସବୁ । ୫୯୫ ।
ନକୁଳକୁ ପୁରନ୍ଦର ଗଉରବ କଲେ
ବହୁ ଅଳଙ୍କାର ତାର ଦେହରେ ଖଞ୍ଜିଲେ । ୫୯୬ ।
ଦେବାଙ୍ଗ ପାଟେକ ଇନ୍ଦ୍ର ଘେନଲେ ଆପଣେ
ନକୁଳର ମସ୍ତକେ ବାନ୍ଧିଲେ ତତକ୍ଷଣେ । ୫୯୭ ।
ଅଭିଷେକ ବିଧି ପୁରନ୍ଦର ଅଣାଇଲେ
ସୁଧର୍ମା ସଭାରେ ଅଭିଷେକ କରାଇଲେ । ୫୯୮ ।

ସର୍ବ ଦେବଗଣେ ତହିଁ ଆନନ୍ଦ ହୋଇଣ
ନକୁଳର ଶିରେ ପୁଷ୍ପ ବୃଷ୍ଟି କଲେ ପୁଣ । ୫୯୯ ।
ଭରତରେଣ ବାରତା ପାଇଲେ ଶଚୀଦେଈ
ଅର୍ଘ୍ୟସ୍ଥାଳୀ ଘେନିଣ ଅଇଲେ ମହାମାଈ । ୬୦୦ ।
ସ୍ୱର୍ଗର ନାୟିକାମାନେ ଛନ୍ତି ସଙ୍ଗତରେ
ସର୍ବେ ଆସି ପ୍ରବେଶିତ ହୋଇଲେ ସଭାରେ । ୬୦୧ ।
ଦୀପାବଳୀ ଘେନିଣ ନକୁଳେ ବନ୍ଦାଇଲେ
ଅମର ମଣ୍ଡଳେ ପାଟ ହୋଇଲା ବୋଇଲେ । ୬୦୨ ।
ଯେତେବେଳେ ବନ୍ଦାଇଲେ ଶଚୀ ଠାକୁରାଣୀ
ଗଣ ଗନ୍ଧର୍ବ ଦେବତା କଲେ ଜୟ ଧ୍ୱନି । ୬୦୩ ।
ଆଶିଷ ତଣ୍ଡୁଳ ଶିରେ ଦିଲେ ବେଦବର
ଅମରେ ପାଟ ହେଲା ନକୁଳ କୁମର । ୬୦୪ ।
ରାଜ ଅଭିଷେକ ବିଧି ତକ୍ଷଣେ ସାରିଲେ
ସକଳ ଦେବତା ଜୟ ଜୟ ଶବ୍ଦ କଲେ । ୬୦୫ ।
ଇନ୍ଦ୍ର ଆଗ୍ୟାଂ ଦିଲେ ସେ ନକୁଳ ମୁଖ ଚାହିଂ
ଇନ୍ଦ୍ରାସନେ ବସ ବାବୁ ମୋ କଲ୍ୟାଣ କରୁଛୁ ନାହିଂ । ୬୦୬ ।
ନକୁଳ ବୋଇଲା ସ୍ୱାମୀ ଯେ କାହୁଂ ହୋଇବ
ପିତା ଥାଉଂ ଥାଉଂ କାହିଂ ପୁତ୍ର ରାଜା ହେବ । ୬୦୭ ।
ସେବକ କାହିଂ ସାମନ୍ତ ଆସନେ ବସିଛି
ଯେମନ୍ତ ଯେ ଅବହିତ କହିବା ହେଉଛି । ୬୦୮ ।
ସେ କଥାକୁ ଅଙ୍ଗୀକାର ନ କଲା ନକୁଳ
ସଭା ମଉଳିଲା ଗଲେ ଦଶ ଦିଗପାଳ । ୬୦୯ ।
ଇନ୍ଦ୍ର ଭୁବନେ ନକୁଳ ସପ୍ତଦିନ ରହି
ଯେଣେ ମନ ବାରୁଣାବନ୍ତକୁ ଯିବାପାଇଂ । ୬୧୦ ।
ଇନ୍ଦ୍ରଙ୍କୁ ବୋଇଲା ସ୍ୱାମୀ ମୋତେ ଆଗ୍ୟାଂ ଦେବା
ବାରୁଣାବନ୍ତକୁ ଯିବି ନାହିଂ ନ କରିବା । ୬୧୧ ।
ଶୁଣିଣ ମଘବା ସ୍ୱାମୀ ଆନନ୍ଦ ହୋଇଲେ
ମାତଳିକି ଚାହିଂ ଇନ୍ଦ୍ର ବଚନ ବୋଇଲେ । ୬୧୨ ।

ପୁଷ୍ପକେ ବସାଇ ନକୁଳକୁ ଘେନ ଯାଅ
ବାରୁଣାବନ୍ତରେ ଗୁପ୍ତ ଆସ ମନ୍ତ୍ରୀ ପୁଅ । ୭୧୩ ।
ଶୁଣିଣ ମାତଳି ଯେ ପୁଷ୍ପକ ସାଜି ଆଣି
ନକୁଳ ଦେବ ସମ୍ମୁଖଂ ହୋଇଲା ବହଲିଣି । ୭୧୪ ।
ପୁଷ୍ପକ ବିମାନେ ବୀର ବସିଲେକ ଯାଇ
ମାତଳି ସାରଥି ରଥ ଅନ୍ତରୀଚ୍ଛେ ବାହି । ୭୧୫ ।
ଧୀରେ ଧୀରେ ଆକାଶରେ ଚଳେ ଦେବରଥ
ବାରୁଣାବନ୍ତ ନିକଟରେ ଦେଖିଲେକ ପାର୍ଥ । ୭୧୬ ।
ଅର୍ଜୁନ ବୋଇଲେ ଦେବ ବିମାନ ଦେଖାଏ
ବାରୁଣାବନ୍ତ ସଲଖୁଂ ଆକାଶୁଂ ଖସାଏ । ୭୧୭ ।
ଭୀମସେନ ବୋଇଲା ଏହୁ କେଉଁଣ ରାକ୍ଷସ
ମୋତେ ଆଗ୍ୟାଂ ଦିଅ ସ୍ୱାମୀ କରିବଇଂ ନାଶ । ୭୧୮ ।
ଯୁଧିଷ୍ଠି ବୋଇଲେ ଭୀମ ଏହୁ ତୋର ପ୍ରକୃତି
କେ ଅବା କେଣିକି ଯାଏ ତୁ ବୋଲୁ ଅମତି । ୭୧୯ ।
ସହଦେବ ଶୁଣିଣ ହସିଲେ କର କର
ଯୁଧିଷ୍ଠି ପଚ୍ଛରନ୍ତ ଶୁଣ ଭାଇ ମୋର । ୭୨୦ ।
ଏହୁ ବିମାନ କାହାର କେ ଯାଉଅଛି କାହିଂ
ଶୁଣି କରପଦ୍ମ ଯୋଡି ସହଦେବ କହଇ । ୭୨୧ ।
ସ୍ୱାମୀ ନକୁଳ ଠାକୁର ଯେ ସ୍ୱର୍ଗେ ଯାଇଥିଲେ
ପ୍ରଚଣ୍ଡା ଅସୁରକୁ ଅମରେ ବଧ କଲେ । ୭୨୨ ।
ସ୍ୱର୍ଗେ ପାଟ ବାନ୍ଧିଲେ ସକଳ ଦେବତାଏ
ଶଚୀ ସହିତରେ ଅର୍ଘ୍ୟ ଢାଳେ ଦେବରାଏ । ୭୨୩ ।
ବିଦାୟ ହୋଇ ଆସନ୍ତି ତୁମ୍ଭର ଛାମୁକୁ
ବୃକୋଦର ଲୋଡନ୍ତି ଯୁଦ୍ଧ କରିବାକୁ । ୭୨୪ ।
ଶୁଣି ଯୁଧିଷ୍ଠି ଠାକୁରେ ତକ୍ଷଣେ ଉଠିଲେ
ସିଂହଦ୍ୱାର ପର୍ଯ୍ୟନ୍ତେ ସଧୀରେ ଚଳିଗଲେ । ୭୨୫ ।
ପଛେ ପଛେ ଗୋଡାନ୍ତି ଆବର ତିନି ଭାଇ
ଆକାଶରୁ ଦେବରଥ ସଧୀରେ ଖସଇ । ୭୨୬ ।

୭୧୫।୨ ଅନ୍ତରୀଚ୍ଛେ—ଅନ୍ତରୀକ୍ଷେ ।

ବାରୁଣବନ୍ତରେ ଯାଇ ପ୍ରବେଶିଲା ଯାନ
ରଥରୁ ଡେଇଁ ପଡିଲା ମାଦ୍ରୀନନ୍ଦନ । ୭୨୭ ।
ଯେତେବେଳେ ଯୁଧିଷ୍ଠିର ନକୁଳ ଦେଖିଲା
ବିନତ କରଣ ପାଦ୍ୟେ ପଡଣ ଶୁଇଲା । ୭୨୮ ।
ନ ଉଠଇ ନକୁଳ ଭୂମିରେଣ ଲୋଟି
ଧାଇଂ କୋଳ କରଣ ଯେ ତୋଳିଲେ ଯୁଧିଷ୍ଠି । ୭୨୯ ।
ଯୁଧିଷ୍ଠି ତୋଳନ୍ତେ ତହୁଂ ନକୁଳ ଉଠିଲା
ଭୀମ ଅର୍ଜୁନର ପାଦେ ନମସ୍କାର କଲା । ୭୩୦ ।
ଧାଇଂଣ ଭୀମସେନ ନକୁଳ କୋଳ କରି
ସହଦେବ ଲୋଟିଲା ନକୁଳ ପାଦ ଧରି । ୭୩୧ ।
ତକ୍ଷଣେ ଭାଇକି ସେ ନକୁଳ ଉଠାଇଲେ
ଏ ଚାରି ପାଣ୍ଡବେ ମାତଳିକି ମାନ୍ୟ କଲେ । ୭୩୨ ।
ଛଅଜଣେ ସଙ୍ଗ ହୋଇ ଗଲେ ଆସ୍ଥାନକୁ
ମାତଳି କହିଲା ସର୍ବ ଯୁଧିଷ୍ଠି ଦେବଙ୍କୁ । ୭୩୩ ।
ପ୍ରଚଣ୍ଡାସୁର ମାରିବା ଶଚୀଙ୍କି ଆଣିବା
ତେତିଶ କୋଟି ଦେବତା ପାଠକୁ ବାନ୍ଧିବା । ୭୩୪ ।
ସକଳ ଚରିତ ସେ କହିଲା ଦେବଦୂତ
ଶୁଣିଣ ଚାରି ଭାଇ ଯେ ହୋଇଲେ ଆନନ୍ଦିତ । ୭୩୫ ।
ଯୁଧିଷ୍ଠିରଙ୍କଠାରୁ ସେ ମାତଳି ବିଦାହେଲା
ରଥ ବାହୁଡାଇ ସେ ସ୍ୱର୍ଗକୁ ବାହିଲା । ୭୩୬ ।
ଇନ୍ଦ୍ରଙ୍କ ଅଗ୍ରତେ ସର୍ବ କହିଲା ବାରତା
ସ୍ୱର୍ଗ ପୁରେ ଆନନ୍ଦେ ରହିଲେ ଶଚୀକାନ୍ତ । ୭୩୭ ।
ବଇବସୁତ ମନୁ ଆଗେ କହିଲେ ଅଗସ୍ତି
ସ୍ୱର୍ଗରେ ପାଇଲା ପାଠ ମାଦ୍ରୀର ସନ୍ତତି । ୭୩୮ ।
ଶୁଣି ବଇବସୁତ ମନୁ କୃତକୃତ୍ୟ ହେଲା
ପ୍ରେ ଆଦିପର୍ବରେ ଯେତେ ଚରିତ ଶୁଣିଲା । ୭୩୯ ।
ତଦନ୍ତରେ ମଧ୍ୟପର୍ବ ହୋଇବ ଲେଖନ
ଆଦିପର୍ବ ସଦାଜପ୍ୟେ ହୋଇଲା ସମ୍ପୂର୍ଣ୍ଣ । ୭୪୦ ।

---

୭୪୦।୨ ସଦାଜପ୍ୟେ—ସର୍ବଦା, ଜପ୍ୟଯୁକ୍ତ । ୭୨୮।୨ ଶୁଇଲା—ଶୋଇଲା ।

ଜଙ୍ଘେରପୁର ବାସିନୀ ଶ୍ରୀଚଣ୍ଡୀ ସାରଳା
ସେ ମହାମାୟା ମୋ କଣ୍ଠେ କଲେ ଯନ୍ତ୍ରଂ ଖେଳା । ୭୪୧ ।
ମୋତେ ଆଜ୍ଞାଂ ହେଲେ ଲେଖ ଶ୍ରୀ ମହାଭାରତ
ତେଣୁ କରି ଆଦିପର୍ବ କରିଲି ବର୍ଣ୍ଣିତ । ୭୪୨ ।
ଧର୍ମ ଅର୍ଥ କାମ ମୋକ୍ଷ ଲଭି ପ୍ରାଣୀ ଶୁଣି
ସେ ସାରଧା ଅନୁଗ୍ରହେ ଭାରତ ବଖାଣି । ୭୪୩ ।
ସେ ଯାହା କହଇ ତାହା ମୁଂ କରଇ ଲେଖନ
ମୋର ଦୋଷ ନ ଧରିବ ହେ ବିବେକ ଜନ । ୭୪୪ ।
ସେ ସାରଦା ବେନି ପାଦତଳେ ଚିତ୍ତ ଧ୍ୟାୟି
ଶୂଦ୍ରମୁନି ସାରଳା ଦାସ ଯେହୁ ଗୀତେ ଗାଇ । ୭୪୫ ।
ସୁଜନ ଜନମାନଙ୍କୁ ଯେହୁ ନିବେଦନ ମୋର
ଲେଖନକାର ଦୋଷାଦୋଷ ଯେ ନ ଧର । ୭୪୬ ।
ମୂନି ଜନମାନଙ୍କର ମନ ହୋଯ୍ୱେ କାଲେ ଭ୍ରମ
ମୋ ଗୁରୁ କେତେ ମାତର ନରଙ୍କ ଅଧମ । ୭୪୭—୧୨୮୩୯ ।



# ଆଦିପର୍ବର ଅତିରିକ୍ତ ପାଠ

## ମହୀନ୍ଦ୍ର ଗିରି ବିବରଣ

ଯେଥୁ ଅନନ୍ତରେ ଶୁଣ କେତେ ଦିନ ଅନ୍ତେ
ପଞ୍ଚନନ୍ଦନଙ୍କ ଭୁଲେ କୁନ୍ତୀ ଦେବୀ ଯାନ୍ତେ । ୧ ।
ପର୍ବତ ଶିଖେ ଦେଖିଲେ ବିବର ପଲକେ
ପଚାରନ୍ତ ସହଦେବେ ଗୃହ୍ୱଂ ଯେତେକେ ଯେତେକେ । ୨ ।
ଶଇଳ ମଧ୍ୟେ ଯେମନ୍ତ ସ୍ଥାନ ଅଛୁ ପୁଣି
ଜାଣିଥିଲେ କହ ବାବୁ ମନ୍ତ୍ରୀ ଚୂଡ଼ାମଣି । ୩ ।
କରଯୋଡ଼ି ବିନୟରେ କହେ ସହଦେବ
ଶୁଣିମା ଯେହୁ ବିବର କଥା ଆହେ ଦେବ । ୪ ।

କରତଳ ଗୃହିଂ କହେ ମନ୍ତ୍ରୀ ଚୂଡ଼ାମଣି
ତ୍ରେତା ଯୁଗର ଚରିତ ଶୁଣ ପାଟରାଣୀ । ୫ ।
ଅଯୋଧ୍ୟା କଟକେ ଦଶରଥ ବୋଲି ରାଯେ
ଅପୁତ୍ରିକ ମା ଗୋ ନାହିଂ ତାହାର ତନଯେ । ୬ ।
ମହା ବ୍ୟାକୁଳ ଚିତ୍ତରେ ଭାଳେ ନୃପମଣି
ସନ୍ତତି ବିନେ ନିଷ୍ଫଳ ଜୀବନ ପରାଣୀ । ୭ ।
ବଶିଷ୍ଠେ ବୋଲନ୍ତି ଶୁଣ ବିସ୍ମିତ ନୃନାଥ
କେମନ୍ତେ ଆସିବେ ଯେତେଂ ବିଭାଣ୍ଡିକ ସୁତ । ୮ ।
ଲୋମପାଦ ଦଶରଥ ମଇତ୍ର ସଙ୍ଗତି
ବେଶ୍ୟା ପଠାଇ ଆଣିଲେ ଋଷ୍ୟଶୃଙ୍ଗ ଯତି । ୯ ।
ଶାନ୍ତା ନାମେ ଦଶରଥ ନୃପତି ନନ୍ଦିନୀ
ତାହାଙ୍କୁ ବିଭା ହୋଇଲେ ଋଷ୍ୟଶୃଙ୍ଗ ମୁନି । ୧୦ ।
ଜାମାତା, ରାଜା ସକଳ ଦେଖି ଯାଗ କଲା
ରତ୍ନଭାଣ୍ଡ ବହାଇଣ ଚରୁ ଫୁଟାଇଲା । ୧୧ ।
କୌଶଲ୍ୟା କୈକେୟୀ ସୁମିତ୍ରା ଯେ ତିନି
ଅଟନ୍ତି ଯେ ଦଶରଥ ରାଜା ପାଟରାଣୀ । ୧୨ ।
ଚରୁ ଗ୍ରାସ କଲେ ସୁଖେ ଯେ ତିନି ଯୁବତୀ
ତିନିଙ୍କଠାରୁ ଯେ ଚାରି ପୁତ୍ର ଉତପତ୍ତି । ୧୩ ।
କ୍ରମେଣ ରାଜା ପାଇଲା ଚାରୋଟି ତନଯ
ଯାହାରେ ହୋଇବ ପୃଥ୍ୱୀ ଭାରାଭାର କ୍ଷୟ । ୧୪ ।
ଶ୍ରୀରାମ ଲକ୍ଷ୍ମଣ ଆଉ ଭରତ ଶତ୍ରୁଘ୍ନ
ଯେକାଳେ ମିଳିଲେ ବିଶ୍ୱାମିତ୍ର ତପୋଧନ । ୧୫ ।
ଯାଗ ରକ୍ଷା ଅର୍ଥେ ରାମ ଲକ୍ଷ୍ମଣେ ସେ ନେଲେ
ମନ୍ତ୍ର ସହ ଅସ୍ତ୍ର ଶସ୍ତ୍ର ସବୁ ତାଙ୍କୁ ଦେଲେ । ୧୬ ।
ପଥେ ଯାନ୍ତେ ତାଡ଼କାକୁ କଲେ ସେ ନିଧନ
ଅମୋକ୍ଷକୁ ମୋକ୍ଷ କଲେ ଶ୍ରୀରାମ ଲକ୍ଷ୍ମଣ । ୧୭ ।
ତହୁଂ ପ୍ରବେଶ ହୋଇଲେ ମୁନିଙ୍କ ଆଶ୍ରମ
ଶ୍ରୀରାମ ଲକ୍ଷ୍ମଣ କଲେ ଋଷିଙ୍କୁ ପ୍ରଣାମ । ୧୮ ।

ମୁନିମାନଙ୍କର ଯଜ୍ଞ ରଖି ବାହୁବଳେ
ସୁଖ୍ୟାତି ଅର୍ଜିଲେ ରାମ ତ୍ରୈଲୋକ୍ୟ ମଣ୍ଡଳେ । ୧୯ ।
ମୁନିମାନଙ୍କର ଶୁଭ ଆଶୀର୍ବାଦ ପାଇ
ବିଶ୍ୱାମିତ୍ର ମୁନି ତୁଲେ ତହୁଁ ବେନି ଭାଇ । ୨୦ ।
ବିଦେହ ମଣ୍ଡଳେ ଯାଇ ହୋଇଲେ ପ୍ରବେଶ
ଶ୍ରୀରାମ ଚରଣେ ଶରଣ ଶ୍ରୀ ସାରଳା ଦାସ । ୨୧ ।
ବିଦେହ ମଣ୍ଡଳେ ହୋଇଥିଲା ସୀତା ସୟମ୍ବର
ଅନେକ ଦେଶୁଂ ମିଳିଲେ ଆସି ଦଣ୍ଡଧର । ୨୨ ।
ଦେଖନ୍ତି ସେ ପୁର ଗୋଟି ଦିଶେ ଅତି ଶୋଭ
କି ଜାଣି ସେ ପୁର ଚନ୍ଦ୍ର କିରଣର ଆଭ । ୨୩ ।
ଶ୍ରୀରାମ ପ୍ରବେଶ ହେବା ବିଦେହ ଶୁଣିଲେ
ପଟହ ଧ୍ୱନି ଉତ୍ସବେ ପୁର ମଣ୍ଡାଇଲେ । ୨୪ ।
ବାଟକୁ ଆଇଲେ ନେବା ପାଇଂ ମୁନିବରେ
ରାମ ଲକ୍ଷ୍ମଣ ପ୍ରବେଶ ଉତ୍ସବ ନଗରେ । ୨୫ ।
ରାମଙ୍କୁ ଦେଖି ସନ୍ତୋଷ ସର୍ବ ତପୋଧନ
ପ୍ରତ୍ୟକ୍ଷେ ବିଷ୍ଣୁ କରିବେ ଦାନବ ନିଧନ । ୨୬ ।
ଯେହ୍ନ ଶ୍ରୀରାମ ମାନବ ରୂପେ ଅବତାର
ଯେହ୍ନ ଉଶ୍ୱାସ କରିବେ ସିନା ମହୀଭାର । ୨୭ ।
ମୁନିଙ୍କୁ ଦେଖିଣ ରାମ ପ୍ରଣିପାତ କଲେ,
ଅକଳିତ ବଳ ଧନୁ ନେଇ ଦେଖାଇଲେ । ୨୮ ।
ଶ୍ରୀଭୁଜେ ସେ ଧନୁ କଲେ ରାମ ଆମଞ୍ଚନ
ବେନିଖଣ୍ଡ ହୋଇ ଧନୁ ଗୋଟି ହେଲା ଭଗ୍ନ । ୨୯ ।
ଶବଦରେ କମ୍ପିଲାକ ସପତ ବ୍ରହ୍ମାଣ୍ଡ
ଦଳ ଦଳ ହୋଇଲା ସେ ପୃଥ୍ୱୀ ନବଖଣ୍ଡ । ୩୦ ।
ଧନୁ ଭଗ୍ନ ହେବା ଦେଖି ଜନକ କୁମାରୀ
ରାମ କଣ୍ଠେ ଲମ୍ବାଇଲେ ନେଇ ପୁଷ୍ପମାଳ । ୩୧ ।
ଜନକ ବୋଇଲେ ଦେବି ତୋତେ ମୋ କୁମାରୀ
ବ୍ରତ ମୋହୋର ପୂରିଲା ହେ କୋଦଣ୍ଡଧାରୀ । ୩୨ ।

ଶୁଣିଣ ସମସ୍ୟା ହେଲେ ରାମ ଗୃପଧାରୀ
ଅଯୋଧ୍ୟାକୁ ଦୂତ ପଠିଆଇ ବେଗ କରି । ୩୩ ।
ମକର କୃଷ୍ଣ ଉତ୍ତମ ଦିନ ଦେଖି ତହିଂ
ଅଇଲେକ ପିତା ଦଶରଥ ଆଠ ବାହି । ୩୪ ।
ବିଦେହ ମଣ୍ଡଳେ ଯାଇ ଭରତେ ମିଳନ୍ତ
ବିବାହ ବିଧି ସ୍ୱୀକାର ବରଣ କରନ୍ତ । ୩୫ ।
ଛପ୍ପା ମଣ୍ଡପ ବେଦୀରେ ବସି ମୁନିଗଣ
ସତ୍ୟବାକ୍ୟ ଉଚ୍ଚାରଣ କରନ୍ତି ବରଣ । ୩୬ ।
ଶ୍ରୀରାମଚନ୍ଦ୍ରଙ୍କୁ କଲେ ସୀତାଙ୍କୁ ପ୍ରଦାନ
ଭରତଙ୍କୁ ମାଣ୍ଡବୀ ଯେ ଜନକ ରାଜନ । ୩୭ ।
ଲକ୍ଷ୍ମଣେ ଉର୍ମିଳା ଶତ୍ରୁଘନେ ଶ୍ରୁତକୀର୍ତ୍ତି
ଚାରି ପୁତ୍ରେ ଚାରି କନ୍ୟା ହେଲେ ମନେ ଚିନ୍ତ । ୩୮ ।
ବିଭା ହୋଇ ରାମଚନ୍ଦ୍ର ଅଯୋଧ୍ୟା ଆସନ୍ତେ
ଓଗାଳିଲେ ତାଙ୍କୁ ଯମଦଗ୍ନି ସୁତ ପଥେ । ୩୯ ।
ପରଶୁରାମର ଦର୍ପ ମର୍ଦ୍ଦି ରଘୁବୀର
ପ୍ରବେଶିଲେ ଦାଶରଥି ଅଯୋଧ୍ୟା ନଗର । ୪୦ ।
ମୁନିଯଗ୍ୟଂରେ ଦୈତ୍ୟଙ୍କୁ ରାମଚନ୍ଦ୍ର ମାରି
ନିଶ୍ଚିନ୍ତେ ଅଯୋଧ୍ୟା ପୁରେ ଥିଲେ ଗୃପଧାରୀ । ୪୧ ।
ଶ୍ରୀରାମ ଶଉର୍ଯ୍ୟବଳ ଦେଖି ଅଜ ସୁତ
ମନେ ମନେ ଭାଳନ୍ତି ଯେ ରାଜା ଦଶରଥ । ୪୨ ।
ପୁତ୍ର ଶ୍ରୀରାମ ମୋହୋର ଜଗତେ ବିଖ୍ୟାତ
ତାହାଙ୍କୁ ରାଜ୍ୟ ଦେଇଣ ହେବି ସ୍ୱର୍ଗପ୍ରାପ୍ତ । ୪୩ ।
ବଶିଷ୍ଠଙ୍କୁ ଘେନ ବସି ଭାଳେ ନୃପବର
କରିବି ରାମେ ଅଯୋଧ୍ୟା ରାଜ୍ୟେ ଦଣ୍ଡଧର । ୪୪ ।
ମକର ଶୁକ୍ଳ ଦଶମୀ ତିଥି ଗୁରୁବାରେ
ରୋହିଣୀ ନକ୍ଷତ୍ର ଭୋଗ ଅଛି ସେ ଦିନରେ । ୪୫ ।
ଶୁକ୍ଳ ନାମେ ଯୋଗ ବବ ନାମରେ କରଣ
ନରପତି ହେବାର ଯେ ଅଛି ଶୁଭଦିନ । ୪୬ ।

ଶ୍ରୀରାମଙ୍କ ଅଭିଷେକ ଶୁଣିଣ ମନ୍ଥରା
କୈକେୟୀ ଆଗେ କହଇ ତାର ହିତ କରି । ୪୭ ।
ଆହେଗୋ ରସୁଣୀ ପ୍ରଭାତେ ରାମ ହେବ ରାଜା
ତୋହୋର ପୁତ୍ର କରିବ ତାର ପାଦ ପୂଜା । ୪୮ ।
ଅନେକ ପ୍ରକାରେ ତାକୁ କହିଲା ମଣାଇ
ଶୁଣିଣ କୈକେୟୀ ରାଣୀ ରାଜାକୁ କହଇ । ୪୯ ।
ପୂର୍ବ ବର ଦେବା ସତ୍ୟେ ସତ୍ୟ କରି ରଖ
ଶ୍ରୀରାମକୁ ବନ, ରାଜ୍ୟ ଭରତକୁ ଦିଅ । ୫୦ ।
ଶ୍ରୀରାମ ଲକ୍ଷ୍ମଣ ତହୁଁ ଗଲେ ବନବାସେ
ସଙ୍ଗତେ ଜାନକୀ ଶୋଭମାନ୍ତି ତାଙ୍କ ପାଶେ । ୫୧ ।
ହରଷ ହୋଇଣ ତିନ ଜଣ ଚଳିଗଲେ
ରାମ ନ ଦେଖିଣ ରାଜା ମରଣ ଲଭିଲେ । ୫୨ ।
ମୃତଶବକୁ ସଂସ୍କାରି ଭରତ ଶତ୍ରୁଘ୍ନ
ବଶିଷ୍ଠ ମୁନି ସହିତେ ଗଲେ ଘୋର ବନ । ୫୩ ।
ରାମଙ୍କୁ କହିଲେ ଯାଇଂ ଶତ୍ରୁଘ୍ନ ଭରତ
ଚାଲନ୍ତୁ ଅଯୋଧ୍ୟା ପୁରେ ହେବ ନରନାଥ । ୫୪ ।
ଯେତେ କହିଲେ ଶ୍ରୀରାମ ନ ଆସିଲେ ଫେରି
ବାହୁଡି ଅଇଲେ ଦୁହେଂ ଅଯୋଧ୍ୟା ନଗରୀ । ୫୫ ।
ତହୁଁ ଗମନ୍ତି ବିପିନ ମଧ୍ୟେ ଦାଶରଥି
ରହିଲେକ ପଞ୍ଚବଟୀ ବନେ ସୀତାପତି । ୫୬ ।
ପୂର୍ବରୁଂ ସୂର୍ପଣଖା ତହିଂ ବାସ କରିଥିଲା
ସେହି ସମୟେ ଆସିଣ ଉପସ୍ଥିତ ହେଲା । ୫୭ ।
ହାବ ଭାବ ଦେଖାଇ ସେ ରାମଙ୍କ ଅଗ୍ରତେ
ବୋଲଇ ବିଳସ ତୁମ୍ଭେ ମୋହୋର ସଙ୍ଗତେ । ୫୮ ।
ତଦନ୍ତେ ରାମ ବୋଇଲେ ଲକ୍ଷ୍ମଣଙ୍କୁ ଡାକି
ଯଥୋଚିତ ଦଣ୍ଡ ସେହୁ ଦିଅ ସେହୁ ମୂର୍ତ୍ତୀକି । ୫୯ ।
ତହୁଁ ସେ ତାହାର ନାକ କାନ ଦିଲେ ଛେଦି
ଡରେ ଅସୁରୀ ପଳାଇଗଲା କାନ୍ଦି କାନ୍ଦି । ୬୦ ।

ରାବଣେଶ୍ୱର ଅଗ୍ରତେ କହିଲା ସମସ୍ତ
ଯତି ବେଶ ହୋଇ କଲେ ତୋ ସେନାଙ୍କ କ୍ଷୟ । ୬୧ ।
ଖର ଦୂଷଣ ତ୍ରିଶିରା ମୂଳେ ସେନାପତି
ସେ ବେଶ ତପସ୍ୱୀ କଲେ ସର୍ବ ବିନାଶ୍ୟନ୍ତି । ୬୨ ।
ଶୁଣିଣ ରାବଣେଶ୍ୱର କୋପେଣ ପ୍ରଚଣ୍ଡ
ଆଜ କାଟିବଇଂ ବେଶ ଯତିଙ୍କର ମୁଣ୍ଡ । ୬୩ ।
ପୁଷ୍ପକ ରଥ ଆରୋହି ଚଳେ ଦଶାନନ
ଶ୍ରୀରାମର ତେଜ ଦେଖି ବିଷର୍ଣ୍ଣ ବଦନ । ୬୪ ।
ସେହି ତ ଅଟଇ ସ୍ୱୟଂ ବିଷ୍ଣୁ ଅବତାର
ଯେହା ହାତେ ନାଶଯିବେ ସକଳ ଅସୁର । ୬୫ ।
ମୋହୋର ମରଣ ଜାଣ ହୋଇବ ନିକଟେ
ସେ ଯେ ଜନକ ଦୁହିତା ସ୍ୱୟଂ ଲକ୍ଷ୍ମୀ ଅଟେ । ୬୬ ।
ମାୟା ମୃଗେକ ତକ୍ଷଣେ ହୋଇଲା ତହିଂ
ଆପେ କପଟେ ତପସ୍ୱୀ ରୂପ ଗୋଟି ବହି । ୬୭ ।
କନକ କୁରଙ୍ଗୀ ଦେଖି ଲୋଭେ ମହାସତୀ
ଶ୍ରଦ୍ଧା କରି ଶ୍ରୀରାମଙ୍କୁ ଯାଇଣ ମାଗନ୍ତି । ୬୮ ।
ମୃଗ ମାରିବାକୁ ରାମଚନ୍ଦ୍ର ତହିଂ ଗଲେ
ଲକ୍ଷ୍ମଣଙ୍କୁ ସେ ମଢିଆ ଗୋଟି ଜଗାଇଲେ । ୬୯ ।
ନାରାଜ ପୂରେଇ ଧାଇଂ ଯାନ୍ତି ରଘୁବୀର
ଅନ୍ତରୀକ୍ଷ ମାର୍ଗେ ମୃଗ ଯାଏ ଖରତର । ୭୦ ।
ପଡନ୍ତେ ଯାଇ ତା ଅଙ୍ଗେ ଶ୍ରୀରାମଙ୍କ ବାଣ
ରାବେକ ହେଲା ଶରଣ ରଖ ହେ ଲକ୍ଷ୍ମଣ । ୭୧ ।
ରଖ ହେ ଲକ୍ଷ୍ମଣ ବୋଲି ଶୁଭେ ଯେଣୁ ବାଣୀ
ଶୁଣିଣ ବିଷାଦ ପାଇ ଜନକ ଦୁଲଣୀ । ୭୨ ।
ହସ୍ତୟୁ ଚତ୍ତରେ ଦେବୀ ଲକ୍ଷ୍ମଣେ ନିରାକ୍ଷି
ବୋଲନ୍ତି ଯେ ଗଦ ଗଦ ବାଣୀ ଚନ୍ଦ୍ରମୁଖୀ । ୭୩ ।
ନିଚୟେଂ ପଡ଼ିଲା ସ୍ୱାମୀଙ୍କୁ ବନେ ଅପଚମୃ
ନାହି ଶବଦ ଶୁଭଇ ତେଣୁ ମନେ ଭୟ । ୭୪ ।

ସୀତାଙ୍କ ବଚନେ ବୀର ଲକ୍ଷ୍ମଣ ଯେ ଗଲା
ତପସ୍ୱୀ ରୂପେ ରାବଣ ସୀତା ହରିନେଲା । ୭୫ ।

ଅଶୋକ ବନେ ଥୋଇଲା ଲଙ୍କାଗଡ଼େ ନେଇ
ଆଇଲେ ସେ ମୃଗଭାର ଘେନି ବେନି ଭାଇ । ୭୬ ।

ସୀତା ନ ଦେଖି ବ୍ୟାକୁଳ ହେଲା ପଞ୍ଚମନ
ଖୋଜିଲେ ରାମ ଲକ୍ଷ୍ମଣ ଗହନ ବିପିନ । ୭୭ ।

ଭ୍ରମି ଭ୍ରମି କିଷ୍କିନ୍ଧ୍ୟାରେ ପ୍ରବେଶ ହୋଇଲେ
ସୁଗ୍ରୀବର ସଙ୍ଗେ ତହିଂ ମଇତ୍ର ବସିଲେ । ୭୮ ।

ଭେଟିଲେ ବୀର ହନୁକୁ ଦାଶରଥି ତହିଂ
ବଜ୍ର କୌପିନ ଅମୃତ କୁଣ୍ଡଳ ଅଛଇ । ୭୯ ।

ରାମ ଅବତାରେ ହନୁମନ୍ତ ନିଜ ଭୃତ୍ୟ
ସୁଗ୍ରୀବର ହାତେ କଲେ ବାଳିକି ନିପାତ । ୮୦ ।

ସୀତା ଖୋଜିବାକୁ ରାମ ହନୁକୁ ପେଷିଲେ
ଗୃଧ୍ର ଯୂଥପତି ଗୃଧ୍ରରାଜକୁ ଲୋଡ଼ିଲେ । ୮୧ ।

ଯମଦଗ୍ନି ପର୍ବତରେ ଉଠେ ହନୁମନ୍ତ
ଉଠନ୍ତେ ପର୍ବତ ଗୋଟି ହେଲା ରସାଂଗତ । ୮୨ ।

ତହୁଂ ବିକ୍ରମିଣ ହନୁ ଯେ ମହୀନ୍ଦ୍ର ଉଠି
ଲଙ୍କା ଗଡ଼କୁ ପବନସୁତ ଦେଲା ଦୃଷ୍ଟି । ୮୩ ।

ବିକ୍ରମିଣ ତହୁଂ ଗଲା ଅଞ୍ଜନାର ସୁତ
ପାଦଭରେ ହୋଇଲେ ଯେ ଗିରି ରସାଂଗତ । ୮୪ ।

ଶୁଣ ସାବଧାନେ କୁନ୍ତଭୋଜର ଦୁହିତେ
ଯେହ୍ନ ବିବର ହୋଇଲା ହନୁ ପାଦଘାତେ । ୮୫ ।

ମହୀନ୍ଦ୍ର ଗିରି ଯେହ୍ନାର ନାମ ଆଗୋ ମାତ
ଅମୋକ୍ଷ ଜନ ଯେଠାରେ ହୁଅନ୍ତି ମୁକତ । ୮୬ ।

ପାପନାଶିନୀରେ ସ୍ନାନ କଲେ ଶୁଦ୍ଧ କାୟ
ନ ପାରଇ ପାପୀ ଜନେ ନେଇ ଯମରାୟ । ୮୭ ।

ଶତ ଶତ ଜନ୍ମର ଯେତେ ପାପ ଯାଇ କ୍ଷୟ
मुकति गति दिअन्ति प्रभु देवराय । ८८ ।
ଶୁଣିଲଣ୍ଟି ସାବଧାନେ ପରୀକ୍ଷିତ ଯାହା
ସମାବତାରେ ହନୁର ପାଦେ ହେଲା ସେହା । ୮୯ ।
ସେ ମହାଭାରତ ଜନେ ଶୁଣ ମନ ଦେଇ
ଶ୍ରୀହରି ଭଜ ସାରଳାଦାସ ଯେ ଲେଖଇ । ୯୦ ।



# ଅତିରିକ୍ତ

## ପଞ୍ଚ ପାଣ୍ଡବଙ୍କର କ୍ଷୀର ପାନ

ଅଗସ୍ତି ମୁନି କହନ୍ତି ପଞ୍ଚ ଯେ ପାଣ୍ଡବେ । ୧ ।
ବନେ ଭ୍ରମନ୍ତେ ଦେଖିଲେ ଶମ୍ଭୁଙ୍କୁ ସେ ଠାବେ । ୨ ।
ମୁନିଙ୍କୁ ଆଶ୍ରମେ ଦେଖି କଲେ ନମସ୍କାର
ସେ ବୋଇଲେ ତୁମ୍ଭେ ପରା ପଣ୍ଡୁଙ୍କ କୁମର । ୩ ।
ଜତୁଘରୁ ପାର ହେଲ କେହ୍ନେ ପାଞ୍ଚଜଣ
ଦୁର୍ଯୋଧନ ରାଜା ରାଗ କରିଥିଲା ପୁଣ । ୪ ।
ବଦନ୍ତି ଯୁଧିଷ୍ଠିର ଦେବ ଶୁଣ ମୁନିବର
ଦୁର୍ଯୋଧନର କପଟେ ବହ୍ନି ସୁଖ ମୋର । ୫ ।
ତାର ପୁଣ୍ୟରୁ ଦେଖିଲ ସିନା ବନ ଘୋର
ଅନେକ ତୀର୍ଥେ ବୁଡିଲା ସେ ମୋହୋର ଶିର । ୬ ।
ତା ଯୋଗୁଂ ପାଇଲି ସିନା ତୁମ୍ଭର ଦର୍ଶନ
ତୁମ୍ଭନ୍ତ ଦେଖିଣ ହେଲା ପାତକ ଦହନ । ୭ ।
ଆଗ୍ୟାଂ ମାଗନ୍ତି ତାହାଙ୍କୁ ସେ ଶୂର କୁମାର
ବନେ ଅଛନ୍ତି ଦୁହିତା କୁନ୍ତି ଭୋଜଙ୍କର । ୮ ।

ମୁନି ବୋଇଲେ ହେ ରାଜା କ୍ଷୀର ଖାଇ ଯାଅ
ଅଡାଇ ଆଣିଚଲେ ଗାଈ ତିଳୋତ୍ତମା ଝିଅ । ୯ ।
ବାଛୁରୀ ଫିଟାଇ ଦେଇ ବସି ତପଗୃହୀ
ଦୁଇଭାଇ ଦୁହାଁଲେ ସେ ବ୍ୟଗ୍ର ବ୍ୟଗ୍ର କରି । ୧୦ ।
ପଚ୍ଛରନ୍ତି ଯୁଧିଷ୍ଠିର ଶୁଣ ତପଗୃହୀ
ଏହି ଗାଈ ସନ୍ଦେଶ ମୋତେ କହିବା ବିସ୍ତାରି । ୧୧ ।
ବଦନ୍ତି ଯତି କପିଳା ଝିଅ ଯେ ସୁରଭି
ସୁରଭିର ନନ୍ଦନୀ ଯେ ଅଟଇ ଜାହ୍ନବୀ । ୧୨ ।
ଜାହ୍ନବୀର ନନ୍ଦନୀ ଯେ ଅଟଇ ବଉଳା
ବଉଳାର ନନ୍ଦନୀ ଯେ ଅଟଇ ଚଞ୍ଚଳା । ୧୩ ।
ବଉଳା ଯେ ଯାଇ କୁଶଦ୍ୱୀପକୁ ଚରଣ
ଏହି ପାଶରେ ଥାଇ ତାର ଦୁହିତା ଯେ ପୁଣ । ୧୪ ।
ପ୍ରତିଦିନ ଗାଈ ଗୋଠି ଯାଇଣ ଆସଇ
ଏହି ପାଶରେ ଝିଅକୁ ସେ କ୍ଷୀରପାନ ଦେଇ । ୧୫ ।
ଏହିକ ଦିନକରେ ବଡ ଉଚ୍ଛୁର ହୋଇଲା
ଚରି ଟାଣିବାରୁ ତଦୁତ୍ତରେ ସେ ଅଇଲା । ୧୬ ।
ବୋଇଲା ଦୁହିତା ତାର ଶୁଣସି ଗୋ ମାତ
ଆଜ କ୍ଷୀର ସ୍ୱାଦୁ ମୋତେ ଲାଗେ ଅପ୍ରମିତ । ୧୭ ।
ସେ ବୋଲେ ସ୍ତନରେ ଲୁଣ ପାଣି ଲାଗିଥିଲା
ତେଣୁ କରି ବଡ ସ୍ୱାଦୁ ତୁଣ୍ଡକୁ ଲାଗିଲା । ୧୮ ।
ବୋଲଇ ବାଛୁରୀ ମାତ ନିଅ ମୋତେ ସଙ୍ଗେ
ଦେଖିବି ସାଗର ପାଣି କେମନ୍ତେ ସଂଯୋଗେ । ୧୯ ।
ଆରଦିନ ସେ ଝିଅକୁ ସଙ୍ଗରେ ଘେନିଲା
କୂଳେ ରଖି ସେ ପାରକୁ ପୁଣି ଚଳିଗଲା । ୨୦ ।
ମାତାର ଯାଆନ୍ତେ କ୍ଷୁଧା ଯନ୍ତ୍ରଂ କଟାଳିଲା
ଲୋଭେଣ ବାଛୁରୀ ପାଣିଯାକ ପିଇଦେଲା । ୨୧ ।

ସମୁଦ୍ରରେ ପାଣି ନାହିଁ ପଡ଼ିଲା ଶୁଖିଲା
ଅନେକ ଜୀବଜନ୍ତୁଙ୍କ ପ୍ରାଣ ନାଶ ହେଲା । ୨୨ ।

ବିଧାତାଙ୍କୁ ଜଣାଇଲେ ତହୁଁ ଦେବଗଣ
ମତ୍ସ୍ୟ କଚ୍ଛପ ବିନାଶ ହେଲେ ପଦ୍ମାସନ । ୨୩ ।

ବ୍ରହ୍ମା ତହୁଁ କହିଲେକ ଯାଇ ଗୋ ମାତାଙ୍କୁ
ତୋର ଝିଅ ପିଇଦେଲା ସମୁଦ୍ର ପାଣିକୁ । ୨୪ ।

ବ୍ରହ୍ମା ବଚନେ ସୁରଭି ଚିତ୍ତ ହେଲା ଦ୍ରବ
କ୍ଷୀର ପ୍ରସରୁ ପୂରିଲା ସମୁଦ୍ରର ଗର୍ଭ । ୨୫ ।

ସତ୍ୟଯୁଗେ ହରି କ୍ଷୀର ସମୁଦ୍ର ମନ୍ଥିଲେ
ଅନେକ ଦ୍ରବ୍ୟ ପାଇଣ ବାଣ୍ଟି ଦେନଗଲେ । ୨୬ ।

ସେହି ଅଂଶରେ ନାଚୁଣୀ ଅଟେ ତିଳୋତ୍ତମା
ସେହିକାର ବହିଣୀ ନାମ ଅଟଇ ପ୍ରଥୁନା । ୨୭ ।

ଶୁଣିଣ ଯୁଧିଷ୍ଠିର ଦେବ ହରଷ ହୋଇଲେ
ସ୍ନାନ ତର୍ପଣ ସାରିଣ କ୍ଷୀର ପାନ କଲେ । ୨୮ ।

ବୋଇଲେ ଯେ ଭୀମସେନ ଶୁଣ ମୁନିବର
ରାଜ୍ୟ ଗଲା ଦିନୁ ନାହିଁ ସମ୍ପୂର୍ଣ୍ଣ ଆହାର । ୨୯ ।

ଯେତିକି ଶୁଣି ମୁନି କାମଧେନୁଙ୍କୁ ଯେ ଚାହିଁ
ଦିଶି ତିନ ଘର ଦୁହିଁ ଦିଲେ ତର୍ପିସାଇଁ । ୩୦ ।

ଗୃହଜଣ ବସି ସୁଖେ କ୍ଷୀର ପାନ କର
ଭୀମସେନ ଯେ ବିଗ୍ରହ କରଇ ମନର । ୩୧ ।

ତିନିଜଣ ଖାଇଲେଣି କ୍ଷୀର ଯେତିକିମନ୍ତ
ତିନିଘର ଖାଇଲେ ମୁଁ ହୋଇବି ତୃପତ । ୩୨ ।

ଯୁଧିଷ୍ଠିର ବୋଇଲେ ଯେବେ ହୋଇବ ରାଜନ
କନକମୟ ପାତ୍ରରେ ଧୋଇବ ଚରଣ । ୩୩ ।

ସମ୍ପୂର୍ଣ୍ଣ ଆହାର ରାଜ୍ୟ ଗଲା ଦିନୁ ନାହିଁ
ତୁମ୍ଭେ ଥୋକାଏ ଦେଇଣ ଶାନ୍ତକ କରାଇ । ୩୪ ।

ମୁନିଙ୍କୁ ଆଗ୍ୟାଂ ମାଗିଣ ଅଇଲେ ଯୁଦ୍ଧେଷ୍ଟି
ଫଳଭାର କନ୍ଧେ ଘେନି ଅଛଇ କଷ୍ଟୀ । ୩୫ ।
ତତକ୍ଷଣେ ମାତାଙ୍କୁ କଲେ ନମସ୍କାର ସେହ୍ନି
ପୁଚ୍ଛନ୍ତେ ବିଳମ୍ବ କମ୍ପାଇଂ କଲ ବନେ ଯାଇ । ୩୬ ।
ବହୁତ ଦୂର ପଥ ଗୋ ଯାଇଥିଲୁ ମାତ
ଫଳ କିଛି ନ ପାଇଲୁ ପୁଣ୍ହ ସେ ବନସ୍ତ । ୩୭ ।
ପନ କୁଟୀର ଆଶ୍ରମ ଭିଆଇ ସେ ବନେ
ଭ୍ରମନ୍ତ ସେ କୁତୂହୋଳେ ପଣ୍ଡୁର ନନ୍ଦନେ । ୩୮ ।
ଶ୍ରୀହରି ଚରଣ ବନ୍ଧ ଶ୍ରୀ ସାରଳା ଦାସ
ଲେଖଇ ମହାଭାରତ ସାଗର ସଦୃଶ । ୩୯ ।

## ଆଦିପର୍ବ ଦ୍ୱିତୀୟ ଖଣ୍ଡ ସମାପ୍ତ



ବ୍ରହ୍ମପୁର ଶାରଦା ପ୍ରେସ୍‌ରେ ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀଙ୍କ ଦ୍ୱାରା ମୁଦ୍ରିତ ୧୯୬୩

# ଆଦିପର୍ବର ପରିଶିଷ୍ଟ

## ସାରଳା ଦେବୀଙ୍କ ବନ୍ଦନା

ଆଦିପର୍ବ ୪ର୍ଥ ପୃଷ୍ଠାର ୧୧।୨ ପାଠପରେ 'ଦ' ପୋଥିରେ ଅଧିକା ପାଠ:—

ସଂସାରେ ଯେତେକ ଦେବା ଦେବୀ ଛନ୍ତି ରହି
ମଣ୍ଡନେ ବସିଥାନ୍ତି ସମାସ୍ୟା ନ ଦେଇ । ୧ ।
ଶ୍ରୀ ସାରୋଳା ଚଣ୍ଡୀ ମହିମାଂ ଅଗୋଚର
ଘୁ ଘୁ କାର ଧୂନି ଶବଦ ଅଗୋଚର ନିରନ୍ତର । ୨ ।
ଅଭାବେ ଯେଉଂ ଜନ ଯାନ୍ତି ତାର ପାଶେ
ସେ ଦେବୀର ନିଶ୍ୱାସେ ସେ ଯାନ୍ତି ପ୍ରାଣନାଶେ । ୩ ।
ଭଗତି ଭାବରେ ଯେ ଚରଣେ ଖଟଇ
ଚଉବର୍ଗ ସିଦ୍ଧି ସେ ତାହାକୁ ଦିଅଇ । ୪ ।
ରଣେ ବଣେ କାର୍ଯ୍ୟେ ଅକାର୍ଯ୍ୟେ ଯେ ସୁମରଇ ତାର ନାମ
ସେଠାରେ ଗୋସାମଣୀ ହୁଅନ୍ତି ପ୍ରସନ୍ନ । ୫ ।
ସେ ନଗ୍ରେ ଦେବୀ ବିଜେ କରିଛନ୍ତି
ଧନ ଧାନ୍ୟ ବିପୁଳ ତାଂକୁ ଦେଇଛନ୍ତି । ୬ ।
ଦୁଖୀ ହୋଇ ଜଣେହେଂ କେହି ତହିଂ ନାହିଂ
ପ୍ରବାସୀ ଜନେ କେହି ଉପବାସେ ନ ଶୁଅଇ । ୭ ।
ସଂଖୋଳ ଲୋଡି ତାହାନ୍ତି ଅନ୍ନ ଯେ ଦିଅନ୍ତି
ଉଦୟରୁ ଅସ୍ତ ଯାଏ ଦେବୀ ତିନ ମୂରତି ଧରନ୍ତି । ୮ ।
ପ୍ରଭାତ କାଳେ ବାଳକ ରୂପେ ବାଳକ ସଙ୍ଗେ ଖେଳୁଥାଇ
ନାନା ରଙ୍ଗେ ବାଳକଂକ ମନ ସେ ତୋଷଇ । ୯ ।

ଯେହ୍ନ ରୂପେ ପ୍ରହରେକ ଖେଳଇ ବାଳକ ରୂପେତ
ତହୁଂଣ ଦେବୀ ବାହାର ହୁଅଇ ତ୍ୱରିତ । ୧୦ ।
ବାଳକ ରୂପ ଛାଡ଼ ହୁଅଇ ଯୁବାନାରୀ
ଯୁବାସ୍ତ୍ରିଗ୍ର ମାନଂକ ସଂଗତେ ହୁଅଇ ସେ ଚମଳ । ୧୧ ।
ସଖୀ ସଂଘାତୁଣୀ ଦାସୀ ରୂପ ସେ ଧରଇ
ସବୁଂକର ମନ ସେହୁ ମୋହିତ କରଇ । ୧୨ ।
ଯେମନ୍ତେ ପ୍ରହରେକ ହୁଅଇ ମେଳ ମଣ୍ଡ
ସେ ନଗ୍ର ସ୍ତ୍ରିଗ୍ର ନ ଜାଣନ୍ତି ଯେହ୍ନାର ଭାବ ଭକ୍ତି । ୧୩ ।
ଆପଣେ ମହାମାୟୀ ଯେହ୍ନ ରୂପେ ଖେଳଇ
ଯୁବାସ୍ତ୍ରିଗ୍ର ମାନଂକର ମନ ଯେ ହରଇ । ୧୪ ।
ଯୁବା ରୂପ ଛାଡ଼ ଦେବୀ ହୁଅଇ ବାହାର
ପ୍ରାଚୀ ନଦୀରେ ଦେବୀ ସ୍ନାନ ସାରି ନତ୍ୟେ ଯେ ବେହାର । ୧୫ ।
ବେଶ ବେଶନ ଯେ ଅଲେଖ ତିଳକ
ଷଡରସ ବ୍ୟଞ୍ଜନ ଯେ ଭୋଜନ କରଇ ହାକ । ୧୬ ।
ପାଟେ ପିନ୍ଧି ପାଟେକ ଉପର୍ଣ୍ଣ କରଇ
ନାନା ଅଳଂକାର ଦେବୀ ଆଭରଣ ହୁଅଇ । ୧୭ ।
ଶିରରେ ସୀମନ୍ତିନୀ ଗଳାରେ ମୋତିମାଳ
କର୍ଣ୍ଣରେ ସୁବର୍ଣ୍ଣ କାପ ଆବର କଡ଼ି ଯୋଡ଼ । ୧୮ ।
ହାଥରେ ତାଡ଼ ଯେ ପୟରେ ନେପୁର
ବଦ ମୁଦ୍ଧ କଂକଣ ରସାଣ ସୁନ୍ଦର । ୧୯ ।
ଶତେ ସର ସୁବର୍ଣ୍ଣ କଣ୍ଠରେଣ ଲାଇ
ଦିବ୍ୟ ଶଙ୍ଖା ବାହୁ ଯେ ହାଥକୁ ଶୋଭା ପାଇ । ୨୦ ।
ଅଷ୍ଟଭୁଜ ତାଂକୁ ଦଶଇ ଶୋଭାବନ
କାତି ଖପର ଯେ ଘେନଣ ହାଥରେଣ । ୨୧ ।
ସିଂଘ ପିଠିରେ ମହାମାୟୀ କରଇ ବଜୟେ
ଡାକେଣୀ ପିଶୁଣୀ ଖଟନ୍ତି ତାର ପାୟେ । ୨୨ ।
ତରୁଣୀ ରୂପ ଧରି ଦେବୀ ହୁଅଇ ବାହାର
ବ୍ରହ୍ମାଣ୍ଡରେ କାୟା ଯେ ପୂରଇ ତାହାର । ୨୩ ।

୧୭।୧ ଉପର୍ଣ୍ଣ—ଓଢଣୀ, ଓଢଣ ବସ୍ତ୍ର, ଗୁଦର । ୨୦।୨ ବାହୁ—କାଚମୁଠା ।

ଉଦ୍ଧାନ ଦୁଇ ପ୍ରହରେ ଦେବୀ କରଇ ଭ୍ରମଣୀ
କ୍ଷଣକେ ବୁଲି ଆସଇ ନବଖଣ୍ଡ ମେଦିନୀ । ୨୪ ।
ଭ୍ରମଣ ସାରି ଦେବୀ ସନ୍ଧ୍ୟା ସମୟେ ଆସଇ
ଦୀପ ଦିହୁଡି ସେ ଯେ ଗୁମ୍ଫରେ ଜଳୁଥାଇ । ୨୫ ।
ଦେଉଳ ଭିତରେ ବିଜେ କରନ୍ତି ଠାକୁରାଣୀ
ସେହି ସିଂଘ ଉପରେ ବିଜୟେ ଗୋସାମଣୀ । ୨୬ ।
ଶ୍ରୀ ପୁରୁଷୋତ୍ତମଂକୁ ବିଜେ କରନ୍ତି ଆପଣ
ଶ୍ରୀ ଜଗନ୍ନାଥଂକୁ ଦର୍ଶନ କରନ୍ତି ବହନ
ତାଂକର ଯେତେଂ ସେବା କରନ୍ତି ତତକ୍ଷଣ । ୨୭ ।
ବଡସିଂଘାର ଖଟଣି ଦେବତାଂକ ମେଲାଣିର ବେଳେ
ମେଲାଣି ହୋଇ ଦେବୀ ବାହାର ତତକାଳେ । ୨୮ ।
ସିଂଘର ପିଠିରେ ଯେ ବିଜୟେ କରନ୍ତି
ତତକ୍ଷଣେ ଆପଣାର ମନ୍ଦିରେ ମିଳନ୍ତି । ୨୯ ।

ଯେହିପରି ନିତ୍ୟପ୍ରତି କରନ୍ତି ବେହାର
ଯେତେକ ମହିମାଂ ଚଣ୍ଡୀ ସାରଳା ଦେବୀର । ୩୦ ।

ଧନ୍ୟ ସେ ମହାମାୟୀ ତାଂକୁ ପଟାନ୍ତର ନାହିଂ
ରାଜାଂକର ଘରେ ତାଂକୁ ଭୋଗ ଖଞ୍ଜା ନାହିଂ । ୩୧ ।

ଛେଳି ପୋରୁହ ବୋଦା ସେ ଭୁଆଇ
କାହିଂ କେତେ ଦୂରରୁ ଆଣଇ ସେ ମୋହି । ୩୨ ।

ନତ୍ୟେହେଂ ଭୋଗ ତାରି ପଡଆ ନୋହଇ
ଦେବୀଂକର ଆଗ୍ୟାଂୟେ ଯେ ସମସ୍ତ ମିଳଇ । ୩୩ ।

ଯେମନ୍ତେ ଯେକଚତେ ଯେ ତାହାନ୍ତି ସେବନ୍ତି
ସେ ଯାହା ବାଞ୍ଛଇ ତାକୁ ମନ ଜାଣି ଦ୍ୟନ୍ତି । ୩୪ ।

ମୁହିଂ ଯେ ସାରଳା ଦାସ ସେହି ଗ୍ରାମରେ ଥାଇ
ନାନା କଷ୍ଟ ପଡଣ ଦିନ ମୁଂ ବଞ୍ଚଇ । ୩୫ ।

ଜାତରେ ଶୂଦ୍ର ମୁଂ ଯେ ଅଟଇ ମୂରୁଖ
ପାଠ ଶାହାସ୍ତ୍ର ମାନ ମୁଂ ନ ଜାଣଇ ହାକ । ୩୬ ।

ସାଗ୍ରେଲା ଗ୍ରାମରେ ମୁଂ ଅଟଇ ପ୍ରଧାନ
ପୁରୁଷ ଅନୁକ୍ରମେ ଅଟୁଂ ଯେ ଗ୍ରାମୀନ । ୩୭ ।
ଆମ୍ଭର ଇଷ୍ଟଦେବତା ସାଗ୍ରେଲା ଚଣ୍ଡୀ ଦେବୀ
ତାହାର ଚରଣେ ଆମ୍ଭେ ସର୍ବଦା ଥାଉ ସେବି । ୩୮ ।
ଅପ୍ରାଧ କଲେ କ୍ଷମା କରଇ ମହାମାୟୀ
ଅନ୍ନ ବସ୍ତ୍ର ଆମ୍ଭନ୍ତ ସଂଯୋଗେ ମିଳଇ । ୩୯ ।
ଗୃଷ ଚଷିଣ ଆମ୍ଭେ ନାନା କୃଷି କରି
ଧାନର ଗୃଷ କାକୁଡ ମାଣ୍ଡିଆ ଆଦି କରି । ୪୦ ।
ନାନା କୃଷି କରି ଦୁଗରେ ଧନ ନେଉ
ଯେତୁଥିର ଆହାଲଦେ ଧନ ବଞ୍ଚିଥାଉ । ୪୧ ।
ଆମ୍ଭର ପିତାଂକର ଯେ ଅଟଇ ଗୃହପୂର୍ବ
ପିତା ମାତା ଆମ୍ଭର ଅଟନ୍ତି ବୃଦ୍ଧଗତ । ୪୨ ।
ସବୁହୁଂ ସାନ ମୁଂ ଯେ ଜଡ଼ଭବ ମତ
ଜ୍ୟେଷ୍ଠ ଭ୍ରାଥମାନେ ଯେ କାର୍ଯ୍ୟ କରୁଥାନ୍ତି । ୪୩ ।
ଯେଉଂ କୃଷିରେ ମୋତେ ଲଗାଇ ଦିଅନ୍ତି
ସେ କାର୍ଯ୍ୟ ସୁଂଖେଣ ମୁଂ କରୁଥାଇ ନିତ । ୪୪ ।
ଅଗ୍ୟାନ ଭାବେ ମୁଂ ଯେ କିଛିହିଂ ନ ଜାଣଇ
ଆପଣା କର୍ମେ ଯେ ମିଳଇ ତାହା ସୁଖେଣ ଭୁଞ୍ଜଇ । ୪୫ ।
ଯେମନ୍ତେଣ ମୁହିଂ ଯେ ବଞ୍ଚୁଥାଇ ଧନ
କେବଳ ମନ ଥାଇ ମୋର ଗୋବିନ୍ଦ ଚରଣ । ୪୬ ।
ଗୁରୁଂକ ଦୟା ଯହୁଂ ମୋତେ ଯେତେକ ଅଛଇ
ଅଳପ ବୟସେ ମୋ ମନ ଭ୍ରମଣ ହୁଅଇ । ୪୭ ।
ଗୋବିନ୍ଦଂକ କଥାକୁ ଯେତେ ନ ବଳଇ ଚିତ୍ତ
ମୂରୁଖ ଜନ ମୁଂ ଯେ ଅଟଇ ଅପଣ୍ଡିତ । ୪୮ ।
ଶୂଦ୍ର ମୂରୁଖ ମୁଂ ଅଗ୍ୟାନ ଅଟଇ
ସାଧୁ ଜନମାନଂକର ଚରଣେ ଚିତ୍ତ ମୁଂ ଖଟାଇ । ୪୯ ।
ଯେତୁହି ରୂପେଣ ଯେ ଥୋକାୟେ ଧନ ଗଲା
ପୂର୍ବର ବାସନା ଯେ ଆଉ ଆନ ନୋହିଲା । ୫୦ ।

ଶୁଣ ହୋ ସାଧୁଜନେ ଦେବୀର ମହିମା
ଲକ୍ଷ ଦେବାକୁ ତାହାନ୍ତ ନାହିଂ ନା ଉପମା । ୫୧ ।
ବଇଶାଖ ଶୁକ୍ଳ ଯେ ଅଷ୍ଟମୀ ମଂଗଳବାର
ବଡହିଂ ତପତ ହେ କରନ୍ତି ସେ ଦିନର । ୫୨ ।
ପ୍ରାଚୀ ନଦୀର ଯେ ଉତ୍ତର କୂଳରେ
ଆଖୁ ଭୂମି ଖଣ୍ଡିଏ ଯେ କରନ୍ତି ସେଠାରେ । ୫୩ ।
ଯନ୍ତ ସଜ ବସାଇ ପାଣି ତେଣ୍ଡ ତହିଂକ
ଗୃହ ସଜ ଗୋଟି ଯେ ବସାଇଣ ହାକ । ୫୪ ।
ସେହି ଠାବରେ ଯେ ରାଜପଥ ଅଟଇ
ପ୍ରାଣୀମାନେ ନତ୍ୟେ ସେ ପଥରେଣ ଯାଇ । ୫୫ ।
ସ୍ତ୍ରି ପୁରୁଷ ବାଳକ ନ ଯାଇ କଳଣା
ଯାଉଂ ଆସୁଥାନ୍ତି ଯେ ନ ଯାଇ ଗଣନା । ୫୬ ।
ମଧ୍ୟ ସ୍ଥାନରେ ପାଣି ତେଣ୍ଡୁଥାଇଂ ମୁହିଂ
ଭଣ୍ଡ ବଭଣ୍ଡ କରି ଗୀତ ମୁଂ ଫୁକାରଇ । ୫୭ ।
ଯେମନ୍ତେଣ ଦେଖ ସେ ଦଇବର କୃତ
ଗ୍ରୀଷମ ସେ ଦିନ କରନ୍ତି ବହୁତ । ୫୮ ।
ବେଳ ମଧ୍ୟାହ୍ନ ଦୁଇ ପ୍ରହର ଅଟଇ
ଯେମନ୍ତେଣ ବେଳେ ଦେବୀ ଭ୍ରମଣୀ କରୁଛନ୍ତି ମହାମାୟୀ । ୫୯ ।
ଯାନ ବାହାନ ନାହିଂ ପାଦରେ ଗବନ
ସଙ୍ଗତେ କେହି ନାହିଂ ଯେକାକେ ଆପଣ । ୬୦ ।
ଷୋଡଶୀ ରୂପ ଯେ ଧରିଣ ମହାମାୟୀ
ଦିବ୍ୟ ବେଶରେ ନାନା ଅଳଂକାର ଲଇ । ୬୧ ।
ଯେକାନ୍ତ ହୋଇଣ ଯେ ଆସୁଛନ୍ତି ଭ୍ରମି
ମାନବୀ ରୂପ ଯେ ଧରିଣ ଗୋସାମଣୀ
ମୋହୋର ଭୁଜ ହୁଅନ୍ତେ ଜାଣିଲେ ଠାକୁରାଣୀ । ୬୨ ।
ତାହାନ୍ତ ଦେଖି ମୁଂ ଯେ ଲଜ୍ଜାଗତ ପାଇଲ
ମଥା ପୋଡିଣ ମୁଂ କାନ୍ଦି କରି ବସିଲ । ୬୩ ।

ଏମନ୍ତେଣ ଦେବୀ ଯେ ଗଲେ ବାହାର ହୋଇ
ଯୁବା ରୂପ ଛାଡ଼ି ବୃଦ୍ଧା ରୂପ ତହିଁ ହୋଇ । ୬୪ ।
ଖଣ୍ଡେ ଦୂର ଯାଇଂ ଦେବୀ ହେଲେ ବୃଦ୍ଧା ରୂପ
ଯୁବାକନ୍ୟା ରୂପ କଲେକ ସେହୁ ଗୋପ୍ୟ । ୬୫ ।
ଏମନ୍ତ ହୋଇଣ ସେହୁ ଦେବୀର ଚରିତ
ପ୍ରହରକେ ଭ୍ରମଣୀ କଲେ ଜଗତ ମାତ । ୬୬ ।
ପୁଣ ସେହି ବାଟେ ଆସନ୍ତ ଗୋସାମଣୀ
ସଙ୍କଟ ତାରେଣୀ ସେ ମାନ ଉଦ୍ଧାରଣୀ । ୬୭ ।
ମୋହୋର ମନ ସେହୁ ବଡବାର ପାଇଂ
ବୃଦ୍ଧା ସ୍ତ୍ରୀ ରୂପ ଧଇଲେ ଗୋ ମାଈ । ୬୮ ।
ମୋତେ ଗୃହ୍ଣଂଣ ଯେ ବୋଇଲେ ମୃଦୁବାଣୀ
କୋକଳ ଭଷିଲ ପ୍ରାଏ ଶୁଭୁଅଛୁ ଧୂନି । ୬୯ ।
ଗୀତ ଗାଉଥିଲୁ ତୁନି ଯେ ହୋଇଲୁ
ଲଜ୍ଜା ଭୟକୁ ତୁ ମନରେ ପାଇଲୁ । ୭୦ ।
ମୁହିଂ ବୋଇଲି ମାଗୋ ଯାଉଅଛ ତୁମ୍ଭେ
କେସନେ ଭଣ୍ଡ ବଭଣ୍ଡ ଫୁକାରବ ତୁଣ୍ଡେ । ୭୧ ।
ଏତେକ କହି ମୁହିଂ ହୋଇଲଇଂ ତୁନି
କ ଗୀତ ଗାଇବ ଯେ କହିଦଅ ପୁଣି । ୭୨ ।
ଠାକୁରାଣୀ ବୋଇଲେ ତୁ ବସ୍ତ୍ରୁର ଚରିତ ବଖାଣ
ତୋହୋର ମୁଖରେ ଅନ୍ୟ ବାକ୍ୟ ନ ଫୁଟୁ ବଚନ । ୭୩ ।
ଏହା ଶୁଣି ମୁଂ ଯେ ଚମତ୍କାର ପାଇ
ଥମ୍ଭୀଭୂତ ହୋଇ ରହିଲଇଂ ମୁହିଂ । ୭୪ ।
କ୍ଷଣେକ ରହି ମୁଂ ଯେ ଫୁକାରିଲ ଗୀତ
ହୃଦୟୁ ଫୁଟି ବାହାର ହୋଇଲା ବସ୍ତ୍ରୁର ଚରିତ । ୭୫ ।
ଶ୍ରୀକୃଷ୍ଣ ଚରିତ ମୁଖୁଂ ବାହାର ହୋଇଲା
ମୋହୋର ତୁଣ୍ଡରେ ଅନ୍ୟ କଥା ନ ଫୁରିଲା । ୭୬ ।
ଏତେକ କହି ଦେବୀ ହୋଇଲେ ଅନ୍ତର୍ଦ୍ଧାନ
ମନେ ମନେ ମୁହିଂ କରିଲଇଂ ବିଚାରଣ । ୭୭ ।

ଏହି କଥା ଗୋଟି ମୋତେ ଅଦ୍ଭୁତ ଦିଶିଲା
କେଉଁ ଦେବୀ ଦେଖା ମୋତେ ପ୍ରସନ୍ନ ହୋଇଲା । ୭୮ ।
କେମନ୍ତେ ଜାଣିମି ମୁଁ ଏହିର ଚରିତ
ମନକୁ ମୋହୋର ଯେ ଲାଗିଲା ଉଦେ ଖ୍ୟାତ । ୭୯
ସେ ଦିନ ଙ୍କରଣ୍ଡ ଯେ ବନ୍ଦନ ସରିଲା
ମନକୁ ମୋହୋର ଯେ ଉଚ୍ଛନ୍ନ ଲାଗିଲା । ୮୦ ।
ମନର ଉଚ୍ଛନ୍ନେ ମୁଁ ଅଇଲି ଗୃହବାସ
ମନଗୋ ଟି ମୋହୋର ହୋଉଛି ଉଲ୍ଲାସ । ୮୧ ।
ଶ୍ରୀ ଜଗନ୍ନାଥଙ୍କୁ ମନରେ ଧ୍ୟାଏ କରି
ମନରେ ରହିଲି କାହାକୁ ସମାସ୍ୟା ନ ଦେଇ କରି । ୮୨
ଅନ୍ନ ପାଣି ଯେ କିଛି ନ କଲଇଁ ଭୋଜନ
ଏମନ୍ତେ ରାତି ଗଲା ପ୍ରହରେକ ଜାଣ । ୮୩ ।
ରାତି ପ୍ରହରେକ ଉତ୍ତାରୁ କଲଇଁ ଶୟନ
ନିଦ୍ରାରେ ଶୋଇଲି ଯେ ହରାଇଲି ଗ୍ୟାନ । ୮୪ ।
ରାତି ଦୁଇ ପ୍ରହର ହୋଇଲାକ ଯହୁଁ
ଠାକୁରାଣୀ ବିଜୟେ କଲେକ ଆସି ତହୁଁ । ୮୫ ।
ମୋହୋର ସୀମସ୍ଥାନେ ବସିଲେ ମହାମାୟୀ
ନାନା ବେଶ ବେଶନ ଅଳଂକାର ଲାଇ । ୮୬ ।
ଅଷ୍ଟ ଭୁଜରେ ଅଷ୍ଟ ଆଉଧ ଆଭରଣ କରଣି
ସିନ୍ଦୂରେ ମୁଖ ଗୋଟି କରିଛି ମଣ୍ଡଣ । ୮୭ ।
ନିର୍ଧୂମ ଅଗ୍ନି ପ୍ରାଏ ବିରାଜେ ଶରୀର
କାୟା ପ୍ରକାଶିଛି କି ଅସୁରୀ ବ୍ରହ୍ମାଣ୍ଡର । ୮୮ ।
ଏମନ୍ତେ ବେଶ ହୋଇ ଜଗତ ଜନନୀ
ମୋହୋର ସୀମସ୍ଥାନେ ବିଜେ କଲେକ ପୁଣି । ୮୯ ।
ବୋଇଲେ ସାରୋଳା ଉଠ ରେ ବହନ
ଏତେ ବେଗେ ପାସୋରିଲୁ ମୋହୋର ବଚନ । ୯୦ ।
ଯାହା ସେ ଦିବସେ ଆଗ୍ୟାଂ ଦେଲି ତୋତେ
ବିଷ୍ଣୁ ପୁରାଣ ପୂରୁ ତୋହୋର କଣ୍ଠ ଡଟେ । ୯୧ ।

ଏମନ୍ତେ ବେଗରେ ପାସୋରିଲୁ ତାହା
ବସ୍ତୁର ଚରିତ ଯେ ଅମୃତ ପୟୋଧି ଅଟଇ । ୯୨ ।
ଏମନ୍ତେକ ବଚନ ଯହୁଂ ଭଣିଲେ ଠାକୁରାଣୀ
ସତ କି ସପନ ମୁଂ ନୁଆରିଲି ଜାଣି । ୯୩ ।
ନିଦ୍ରାର ପ୍ରସ୍ତାବେ ସପନରେ ମୁହିଂ
ବୋଇଲି ମାତା ଗୋ କେ ତୁମ୍ଭେ ପୁଣ୍ୟଦେହି । ୯୪ ।
ହସିଣ ବୋଲନ୍ତି ଯେ ସାରଳା ଚଣ୍ଡୀ ଦେବୀ
ମୁହିଂ ସାରଳା ଚଣ୍ଡୀ ଅଟଇ ମହାଭେଦୀ । ୯୫ ।
ତୁ ଯହୁଂ ସର୍ବଦା ମୋହୋରେ ଭକତ
ତେଣୁ ସେ ପ୍ରସନ୍ନ ହୋଇଲି ଶୁଦ୍ଧମତ । ୯୬ ।
ବସ୍ତୁର ଚରିତ ତୁ କରିବୁ ବଖାଣ
କୀରତି ରହିବ ମୃତୁ ଭୁବନେଣ । ୯୭ ।
କଳିଯୁଗେ ପ୍ରାଣୀମାନେ ହୋଇଲେ ଅଗ୍ୟାନ
ଗୋବିନ୍ଦର ନାମ ପାସୋରିଲେ ତାଳେଣ । ୯୮ ।
ଅଗ୍ୟାନ ମୂଢପଣେ ଅଳପେ ନଶାଯିବେ
ନାନା ପୀରତି ସେ ତରି ନୁଆରିବେ । ୯୯ ।
ଏଣୁ କରି ତୋ ଆଗେ କହୁଅଛି ସରୂପ
ଶ୍ରୀ ମହାଭାରଥ ଅଷ୍ଟାଦଶ ପୁରାଣ କରିବୁ ଉକତ । ୧୦୦ ।
ପୁରାଣ ଗ୍ରନ୍ଥ ତୁ ପଦରେ ଛନ୍ଦିବୁ
ତେବେ ସେ ସଂସାର ଲୋକନ୍ତ ମୁକତି ଗତି ଦେବୁ । ୧୦୧ ।
ଏମ୍ଭେ ଶାସ୍ତ୍ର ପଢି ପ୍ରାଣୀମାନେ ଗ୍ୟାନବନ୍ତ ହେବେ
ତେବେ ସେ ଘୋର ନରକୁ ଉଦ୍ଧାର ଗତି ପାଇବେ । ୧୦୨ ।
ଏମନ୍ତେକ ବୋଲି ସେ ସାରଳା ସଂକଟ ତାରେଣୀ
ଦୟା କରି କହିଲେ ମୋତେ ଅମୃତ ରସବାଣୀ । ୧୦୩ ।
ଯହୁଂ ପ୍ରସନ୍ନ ମୁଖ ହୋଇଲେ ମହାମାୟୀ
ସେହି ସପନରେ ମୁଂ ନମସ୍କାର କରଇ । ୧୦୪ ।
ନମସ୍କାର ହୋଇ ପଡିଲିଇଂ ଚରଣେ
ପିମ୍ପୁଡି ଉପରେ ପର୍ବତ ଲଦୁଛି କେସନେ । ୧୦୫ ।

ଜନ୍ମରୁ ବିଦ୍ୟା ସେ ତ ପଢ଼ିନି ମୋର ନାହିଁ
କେମନ୍ତେ ଅଷ୍ଟାଦଶ ପୁରାଣ ଲେଖିବଇଁ । ୧୦୬ ।
ଲେଖନ ପତ୍ର ମୁଁ ଯେ ଧରିବି କେମନ୍ତେ
ଅସମ୍ଭବ ଚରିତ ମୋତେ କହିଲ ଜଗତ ମାତେ । ୧୦୭ ।
ମୁହିଁ ଯେ ଅରଖିତ ଜାତିରେ ଶୂଦ୍ରଇ
ଗଣ୍ଡ ମୂରୁଖ ସଂଗତେ ମୁଂ ଲେଖା ଯେ ଅଟଇ । ୧୦୮ ।
ତୁ ଯେବେ ଦୟା ମୋତେ କରିବୁ ଗୋ ମାୟେ
ଜଗତେ ଭାରତ ରହିବ ଥୋକାୟେ । ୧୦୯ ।
ଯହୁଁ ମୁଂ ଏହି ରୂପେ କହିଲି ବଚନ
କ୍ଷଣେ ତୁନି ହୋଇ ଦେବୀ କହନ୍ତି ବୟାଣ । ୧୧୦ ।
ବୋଇଲେ ମନେ ତୁ ନ ଭାଳ ହୋ କିଛି
ଲେଖନ ପତ୍ର ମୁଂ ତୋତେ ଯାଚି ଦେଉଅଛି । ୧୧୧ ।
ତୋହୋର କଣ୍ଠରେ ମୁଂ ନଚେଂ ବସିଥିବି
ଗଲ୍ପ ନ ଗଲ୍ପ ପଦ ହୃଦରେ କହିଦେବି । ୧୧୨ ।
ଲେଖନ ପତ୍ର ଗୋଟିଏ ଘେନିଣ ମହାମାୟୀ
ମୋହୋର ସୀମଥାନେ ଥୋଇଲେକ ନେଇ । ୧୧୩ ।
ଅନ୍ତର୍ଦ୍ଧାନ ହୋଇଣ ଗଲେ ତତକ୍ଷଣ
ଏମନ୍ତ ସମୟେ ମୋର ହୋଇଲା ଚେତନ । ୧୧୪ ।
ସପନ ପ୍ରାୟେ ମୁଂ ସମସ୍ତ ମଣିଲି
ସୀମଥାନେ ଲେଖନ ପତ୍ର ମୁଂ ଦେଖିଲି । ୧୧୫ ।
ଲେଖନ ପତ୍ର ଦେଖି ଉଲ୍ଲାସ ମୋର ମନ
ବୋଇଲି ଦୟା ମୋତେ କଲେ ସିଂହ ଯେ ବାହାନ । ୧୧୬ ।
ତତକ୍ଷଣେ ମୁହିଁ ଶେଯ୍ୟାରୁ ଉଠିଲି
ପ୍ରାଚୀ ନଦୀରେ ଯେ ନିତ୍ୟକର୍ମ ସାରିଲି । ୧୧୭ ।
ଶ୍ରୀ ଚଣ୍ଡୀ ସାରଳା ଛାମୁରେ ମିଳିଲଇଂ
ଶତେ ଅଷ୍ଟୋତ୍ତର ଦଣ୍ଡବତ କରଇଂ । ୧୧୮ ।
ଅନେକ ସ୍ତୁତି କରଇ ଶିରେ କର ଦେଇ
ଅରଖିତେ ଦୟା ଗୋ କଲୁ ମହାମାୟୀ । ୧୧୯ ।

ଯେବେ ଦୟା କଲୁ ଗୋ ପଚ୍ଛରିବି ଯାହା
ପ୍ରସନ୍ନ ମୁଖରେ ମୋତେ କହିଦେବା ତାହା । ୧୨୦ ।
ପୂର୍ବ ଜନ୍ମରେ ମୁଂ ଅଟଇ କ ଜାତି
ଶୂଦ୍ର କୁଳରେ ଆସି ହୋଇଲା ଉତପତ୍ତି । ୧୨୧ ।
ଆର ଜନ୍ମରେ ମୁହିଂ କାହାର କୁଳେ ଥିଲି
କେବଣ ପାତକେ ମୁଂ ମୂରୁଖ ହୋଇଲି । ୧୨୨ ।
ଏହା ସଞ୍ଚପି ଦେବୀ କହିବାକ ମୋତେ
ତେବେ ସେ ଗୁଡିବନା ମୋହୋର ମନ ତାପେ । ୧୨୩ ।
ଏସନକ ବଚନ କହନ୍ତେ ଦେବୀର ଶ୍ରୀମୁଖରେ
କର କର ହସିଲେ ଦେବୀ ପ୍ରଭାର ଭିତରେ । ୧୨୪ ।
ପାଷାଣଙ୍କୁ ପୁଚ୍ଛି ଦେବୀ କହନ୍ତି ବୟାଣ
ତୋ ପୂର୍ବଜନ୍ମ କଥା ଏକମନେ ଶୁଣ । ୧୨୫ ।
ମେରୁର ପଶ୍ଚିମ ଭାଗେ କପିଳାସ କନ୍ଦର
ଦ୍ବିତୀୟ ସ୍ବର୍ଗ ସେ ନାହିଂ ଆନ ପଟାନ୍ତର । ୧୨୬ ।
ଚଉଦ କୋଟି ଶିବଗଣ ଘେନଣ ବିଶ୍ବନାଥ
ସର୍ବଦା ବିଜୟ ତହିଂ ତ୍ରିପୁରାରି ତୃପ୍ତ । ୧୨୭ ।
ଚାରିଯୁଗ ପ୍ରଳୟ ଯେତେବେଳେ ହୋଅଇ
ସେ ପର୍ବତକୁ ପ୍ରଳୟ ପାଣି ନ ଲାଗଇ । ୧୨୮ ।
ଗଉରୀଙ୍କୁ ଘେନ ବିଶ୍ବନାଥ ଗୋସାଇଂ
କ୍ରୀଡାରଙ୍ଗ ଭୋଳେ ସୁଖେଣ ଥାନ୍ତି ରହି । ୧୨୯ ।
ବାଣାୟେକ ଟିଣାୟେକ ଆବର ଗଣେଶ୍ବର
କାର୍ତ୍ତିକର ମୂଳେ ଏ ଚାରି ଯେ କୁମର । ୧୩୦ ।
ଦକ୍ଷିଣ ଦ୍ବାରେ ଯେ ଗଣନାଥ ମୂଳେ ଥାଇଂ
ପୂର୍ବ ଚରିତ ଯେ ଟିନାୟେକ ବାଣାୟେକ ଭାଇ । ୧୩୧ ।
ତୁ ସେ ବିଶ୍ବନାଥଂକର ଧର୍ମର କୁମର
ତୋହୋର ବିଜୟେଣ ବିଶ୍ବନାଥଂକର । ୧୩୨ ।
ତୋହୋର ତାହାଂକ ଠାରେ ବଡ ଯେ ଭକତି
ବହୁତ ଦୟା ତୋତେ କରନ୍ତି ପାର୍ବତୀ । ୧୩୩ ।

ତୋହୋର ବିଶ୍ୱାସ ଭଗତି ଭାବ ଦେଖି
ଆପଣେ ଶ୍ରୀମୁଖେ ତୋତେ ବୋଲେକ ପଞ୍ଚମୁଖୀ । ୧୩୪ ।
ବୋଇଲେ ପଶ୍ଚିମ ଦ୍ୱାରେ ତୁ ଦ୍ୱାରପାଳ ହୋଇବୁ
ଆବର ବର ତୋତେ ଦେଉଅଛୁଂ ବାବୁ ! ୧୩୫ ।
ତିନପୁରେ ତୋତେ ଜିଣନ୍ତା କେହୁ ନୋହୁ
ପଶ୍ଚିମ ଦ୍ୱାର ଗୋଟି ତୋର ମୂଳେ ଯୁଗେ ଯୁଗେ ଥାଉ । ୧୩୬ ।
ଏମନ୍ତେକ ବର ଦିଲେ ଯେ ତୋତେ ହର
ବିଭୂତି ବୋଳିଲେ ଯେ ତୋହୋର ଶରୀର । ୧୩୭ ।
ପଶ୍ଚିମ ଦ୍ୱାରପାଳପଣ ଦେଇ ବିଶ୍ୱନାଥ
ନିର୍ଭର ହୋଇଣ ତୁ ରହିଥାଅ ଏଥି । ୧୩୮ ।
ଏମନ୍ତେକ ଆଜ୍ଞା ପାଇଣ ତୁ ଭଲେ
ପଶ୍ଚିମ ଦ୍ୱାରେ ତୁ ରହିଲୁ ନିର୍ଭରେ । ୧୩୯ ।
ଏମନ୍ତେଣ ଗଲା କେତେହେଂକ କାଳ
ନିଶ୍ଚିନ୍ତ ହୋଇଣ ତୁ ହୋଇଲୁ ଦ୍ୱାରପାଳ । ୧୪୦ ।
ହର ଗଉରୀଂକ ଚରଣେ ସେବା କରିଥାଉ
ମନରେ ଭୟ ନ ଥାଇ କାହାକୁହିଂ ଆଉ । ୧୪୧ ।
ଶୁଣ ହେ ସାରଳା ଦାସ ପୂର୍ବ ଜନ୍ମର ଚରିତ
ଏକମନେ ଶୁଣ ଏଥିର ବିଦନ୍ତ । ୧୪୨ ।
ଜ୍ୟେଷ୍ଠ ଶୁକଳ ଯେ ପଞ୍ଚମୀର ଦିନ
ଗ୍ରୀଷମ କାଳ ଯେ ଅଟଇ ବିଦ୍ୟମାନ । ୧୪୩ ।
ସେ ଦିନରେ ପାର୍ବତୀ ଭ୍ରମଣ କରିଣ
ପଶ୍ଚିମ ବନରେ ଯେ ବୁଲନ୍ତି ବେନି ଜନ । ୧୪୪ ।
ମଳୟ ପବନ ଯେ ବହଇ ଚହିଂରେ
କୋକିଳ ରଡ଼େଇ ଯେ ସୁସ୍ୱରେ ଧ୍ୱନି କରେ । ୧୪୫ ।
କାକ ପକ୍ଷୀମାନେ କ୍ରୀଡ଼ନ୍ତି ବନସ୍ତରେ
ନାନା ପୁଷ୍ପମାନେ ଆମୋଦନ୍ତି ସମୀରେ । ୧୪୬ ।
ମଳୟ ପବନ ଯେ ସୁସ୍ୱର ହୋଇ ବହି
ମଳୟ ପବନ ଲାଗନ୍ତେ ଶୁଖିଲା ପଲ୍ଲବଇ । ୧୪୭ ।

ହର ପାର୍ବତୀ ବସିଲେ ଭଣ୍ଡୀର ବଟ ତଳେ
କୋମଳ ଦେହ ଦୃଢାଏ ପାଢଣ ଭୂମିରେ । ୧୪୮ ।
ଆନନ୍ଦ ହୋଇଣ ଶୋଇଲେ ନଚନ୍ତେ
କୋମଳ ପଦ ଘେନ ପାର୍ବତୀ ବସିଛନ୍ତି ବିଶ୍ୱନାଥେ । ୧୪୯ ।
ପାର୍ବତୀ ଅଙ୍ଗେ ଉତ୍ତୁରୀ ସେ ନାହିଁ
ଅଧ ଉଲଗ୍ନ ହୋଇ ବସିଅଛନ୍ତି ମହାମାୟୀ । ୧୫୦ ।
ଯେମନ୍ତ ସମୟରେ ଦେଖ ଦଇବର କୃତ
ନିଦ୍ରାରେ ଅଚେତନ ହୋଇଅଛନ୍ତି ବିଶ୍ୱନାଥ । ୧୫୧ ।
ତୁହି ସେହିକ୍ଷଣି ବାହାର ଯେ ହୋଇ
ସେହି ବନସ୍ତରେ ପଶିଅଛୁଁ ଯାଇଁ । ୧୫୨ ।
ଅଚେତେ ପଶିଲୁ ତୋର ଚଇତନ ନାହିଁ
ପାର୍ବତୀଙ୍କ ଦୃଷ୍ଟି ଯେ ପଡିଲା ତୋର ଠାଇଁ । ୧୫୩ ।
ତତକ୍ଷଣେ ଦେବୀ ଉତ୍ତୁରୀ ବସ୍ତ୍ର ଘେନ
ଅଙ୍ଗ ଘୋଡାଇଣ ହଲେକ ତହିଁ ପୁଣି । ୧୫୪ ।
ଯେମନ୍ତେ ଖଣ୍ଡେ ଦୂର ଭ୍ରମିଣ ଗଲୁ ତୁହି
ତୋତେ ଦେଖି କୋପ କଲେ ଗଉରୀ ଦେଈ । ୧୫୫ ।
କରେ ଗଣ୍ଡ ମୂରୁଖ ଆସୁଅଛୁ କାହିଁକ
ଗ୍ୟାନ ଗୋଚର ତୋର ଦେହରେ ନାହିଁକ ? । ୧୫୬ ।
ଯେମନ୍ତ ସମୟେଣ ଅନାଇଣ ହଲୁ
ଈଶ୍ୱର ପାର୍ବତୀଙ୍କ ଦେଖିଣ ଭୟ କଲୁ । ୧୫୭ ।
ପଛ ଘୁଞ୍ଚା ଦେଇଣ ଭୟମାନ ପାଇ
ଡରେ ଥର ହର କମ୍ପୁଅଛୁ ଦେଖି । ୧୫୮ ।
ଯେମନ୍ତେଣ କୋପ ଯେ ହୋଇଲେ ଗଉରୀ
ତୁ ହିନ ଚଣ୍ଡାଳ ଅଟୁ ସିନା ମୂରୁଖ ମୂଢା । ୧୫୯ ।
ଆମ୍ଭର ସ୍ତନ ମୁଦ୍ରା ତୁ ନୟନେ ଦେଖିଲୁ
ଯେତେ ପାପ କର୍ମ ତୁ ଅକାରଣେ ଅର୍ଜିଲୁ । ୧୬୦ ।
ଯାହା ମୁଁ ମନରେ ତୋତେ ଶାପ ହଲା
ଅନ୍ୟଥା କରଣ ନୋହୋଇ କାହାର । ୧୬୧ ।

ଯେବେ ତୁ ମୃତ୍ତୁ ମଣ୍ଡଳେ ହୋଅ ଜାତ
ଗଣ୍ଡ ମୂ ଚୁଖ ତୁ ହୋଅ ଅପଣ୍ଡିତ । ୧୬୨ ।
ଯେ ଜନ୍ମର କଥା ପାସୋଟିବୁ ହାଦେ ହେଲେ
ଆମ୍ଭ ସ୍ତନ ମୁଦ୍ରା ଦେଖିଲୁ ସହୁଂ ତୋଳେ । ୧୬୩ ।
ଅଂଗ୍ୟାନ ହୋଇଣ ତୁ ଦନ ଯେ କାଟିବୁ
ନାନା କର୍ତ୍ତି କର କାଳ ହରୁଥିବୁ । ୧୬୪ ।
ଯେତେ ଶାପ ସହୁଂ ଦଲେ ଜଗତ ମାତ
ତୋହୋର ମନେ ଭୟ ହୋଇଲା ବହୁତ । ୧୬୫ ।
ଭୟେଣ ଚରଣେଁ ପଡ଼ିଲୁ ତୁ ଯାଇଂ
ରଖ ରଖ ବୋଲିଣ ଶିରେ କର ଦେଇ । ୧୬୬ ।
ଅନେକ ସ୍ତୁତି କର ବନସ୍ତ ଭାବ ହେଲୁ
ନୟନୁଂ ଲୋତକ ଭୂମିରେ ପକାଇଲୁ । ୧୬୭ ।
ତୋହୋର ବେଦନ ଯେ ବିଶ୍ୱନାଥେ ଜାଣିଲେ
ନିଦ୍ରା ଭାଙ୍ଗିଣ ଯେ ତତକ୍ଷଣେ ଉଠିଲେ
କ ଚରିତ ବୋଲି ପାର୍ବତୀଂକ ପଚ୍ଛରିଲେ । ୧୬୮ ।
ଯେ ଆମ୍ଭର ଅଟଇ ଧର୍ମର କୁମର
ଯେ ଦୋଷ କମା ତୁମ୍ଭେ ହେନିଲ ମନର । ୧୬୯ ।
ଇଶ୍ୱରେ ବୋଇଲେ ଯେ ଥାଉ ପଞ୍ଚିମ ଦ୍ୱାରେ
ଅନ୍ୟାୟେ ଦୁଷ୍ଟ ପଣ ଯା ନାହିଂନା ଶରୀରେ । ୧୭୦ ।
ବିଶ୍ୱନାଥ ସହୁଂ ପ୍ରସନ୍ନ ହୋଇଲେ
ଭୁହା କର ଯୋଡିଣ ଜଣାଇଲୁ ଭଲେ । ୧୭୧ ।
ମାତାର ଦୟା ହୋଇଲାକ ତୋତେ
ତୁମ୍ଭେ ଯେ ମୋତେ ଦୟାକଲ ବିଶ୍ୱନାଥେ । ୧୭୨ ।
ମୁହିଂ ମୃତ୍ତୁ ମଣ୍ଡଳେ ଜନମ ଲଭିବ
ଅଂଗ୍ୟାନ ଭାବରେ ଦନ ଯେ ବଞ୍ଚିବ । ୧୭୩ ।
ମଞ୍ଚରେ ଜାତ ହୋଇ ହୋଇବ ଅଗ୍ୟାନ
ନାନା ପାତେକ ଅଭିଷ୍ଟିରେ ନିରନ୍ତରେ ବଳିବ ମୋ ମନ । ୧୭୪ ।
ଯେ ଜନ୍ମର କଥା ତାଳେ ପାସୋରିବ
ଅତି ମୂଢ଼ ପଣେ ଦନ ମୁଂ ହଟିବ । ୧୭୫ ।

ହର ପାବଣ୍ଡଂକ ସେବା ବିଫଳ ହୋଇଲା
ସେହିତେ ସୁକୃତ ମୋର ଅଳପେ କ୍ଷୟ ଗଲା । ୧୭୬ ।
ସେତେକ କହି ବିକଳେ କଲୁ ଯେ ଗୋଦନ
ଦୟା କର ତୋତେ ବୋଇଲେ ତ୍ରିଲୋଚନ । ୧୭୭ ।
ପାବଣ୍ଡ ଦଲା ଶାପ ଅନ୍ୟଥା ନୋହିବ
ସେଥକୁ କଥାଏ ତୋତେ କହିବା ପ୍ରତିଭାବ । ୧୭୮ ।
ଅବଶ୍ୟ ମୃତ୍ୟୁ ମଣ୍ଡଳେ ଜନମ ଲଭିବୁ
ପାବଣ୍ଡର ଶାପେ ଶୂଦ୍ର ଯୋନି ପାଇବୁ । ୧୭୯ ।
ମର୍ତ୍ତ୍ୟରେ ଜାତ ତୁ ଯାଇଂଣ ହୋଇବୁ
ଅଗ୍ୟାଂତବ୍ୟ ଶୂଦ୍ର ଯୋନି ତୁ ପାଇବୁ । ୧୮୦ ।
ମର୍ତ୍ତ୍ୟରେ ଜାତ ତୁ ହୋଇବୁ ଅଗ୍ୟାନ
ସେମନ୍ତେ ଯିବ ତୋ ଥୋକାଏକ ଦିନ । ୧୮୧ ।
ମୂର୍ଖ ହୋଇ ବିଦ୍ୟା ନ ପଢିବୁ କିଛି
ଗଣ୍ଡ ମୂରୁଖ ହୋଇବୁ ଭୁହି ସେ ଲେଖି । ୧୮୨ ।
ଶୁଣି କର ଯୋଡ ପଚ୍ଛରିଲୁ ତୁହି
ଆବର କଥାଏ ପଚ୍ଛରିବି ମୁହିଂ । ୧୮୩ ।
କେବଣ ଗ୍ରାମରେ ମୁଂ ହୋଇବି ଜନମ
ସେହୁ କଥା ଗୋଟି କହିବା ହୋଇ ସାବଧାନ । ୧୮୪ ।
ଶୁଣି ବିଶ୍ୱନାଥେ ଅଳପ ହସିଲେ
ବୋଇଲେ ଉତ୍କଳ ଦେଶ ଓଡରାଷ୍ଟ୍ର ମଣ୍ଡଳେ । ୧୮୫ ।
ନୀଲଗିରି ନୀଳସୁନ୍ଦର ବଟ ନିକଟରେ
ପ୍ରାଚୀ ନଦୀର ସେ ଯେ ଉତ୍ତର ତୀରରେ ।
ସ୍ୱର୍ଗୁ ବଳିଣ ସେ ଦେଶ ପଟାନ୍ତର । ୧୮୬ ।
ତହିଂର ପଡା ଯେ ସାରୋଳା ନାମେ ଗ୍ରାମ
ତୋହୋର ପିତା ତହିଂ ହୋଇବ ଗ୍ରାମୀନ । ୧୮୭ ।
ତୋହୋର ନାମ ଯେ ହୋଇବ ସାରୋଳା
ଜନମୁଂ ମୂରୁଖ ବିଦ୍ୟାରେ ନାହିଂ ମେଳା । ୧୮୮ ।
ଅଗ୍ୟାନ ପଣରେ ଯିବ ତୋର ଦିନ
ସାଧୁଂକ ଚରଣରେ ନ ଥିବ ତୋର ମନ । ୧୮୯ ।

ଯେଉଁ ରୂପେ ଦୁର୍ଗା ଶାପ ଛନ୍ତ ଦେଇ
ସେହି ରୂପେ ଜନମ ଲଭିବୁ ତୁହି । ୧୯୦ ।
ଯେସନକ ଆଗ୍ୟାଂ ଯହୁଂ ହଲେ ବିଶ୍ୱନାଥ
ତାହାଂକର ବଚନ ମୁଂ କଲିଇଂ ଶିରଗତ । ୧୯୧ ।
ପାର୍ବତୀଂକ ଗୃହଂ ବିଶ୍ୱନାଥ ବୋଇଲେ
ଆପଣୀ ସେବକକୁ କୋପ ଯେତେ କଲେ । ୧୯୨ ।
କେମନ୍ତେ ସଂସାର ରକ୍ଷା ହେବ ଯେବେ
ଅଳପ ଦୋଷକୁ ବିହିଲ ଯେତେ ପରମାଦେ । ୧୯୩ ।
ତୁକୁଇଂ ଆମ୍ଭେତ ଦେଉଅଛୁ ଶାପ
ତୋହୋର ଅଂଶେହିଂ ଜନମୁଂ ସେ ମର୍ତ୍ତ୍ୟ । ୧୯୪ ।
ତୋହୋର ଅଂଶେ ଯାଇଂ ମର୍ତ୍ତ୍ୟରେ ଜନମିବ
ନାମ ଗୋଟି ତୋ ସାରଳା ଚଣ୍ଡୀ ହେବ । ୧୯୫ ।
ସେ ଦେଶର ନାମ ସିଂଘ ଯେ ବୋଲଇ
ତେଣୁ ସେ ସିଂଘ ସାରଳା ନାମ ବାହାରୁ ମହାମାଈ । ୧୯୬ ।
ସିଂହର ବାହାନେ ତୁ ଜଗତ ଭ୍ରମୁଥିବୁ
ଛେଳ ପୋରୁଅ ବୋଦା ନରତେ ଭକ୍ଷିବୁ । ୧୯୭ ।
ରକତ ମାଂସରେ ତୋର ମନ ଥିବ ବଳ
ପ୍ରେତ ପିତୃଶଂକ ସଂଗତେ ତୋହୋର ଯେ ମେଳ । ୧୯୮ ।
ରାଜାଂକର ତୋର ନୋହିବ ଭୋଗ ଖଞ୍ଜା
ନାନା ଦେଶୁଂ ମୋହି ଖାଇବୁ ଗିରିଜା । ୧୯୯ ।
ତୋହୋର ମହିମାଂ ଜଗତେ ବିଖ୍ୟାତ ହେବ
ମୂର୍ଖ ଲୋକଂକର ତୋତେ ଭୟ ସେ ହୋଇବ । ୨୦୦ ।
ଭୟରେ ନର ଲୋକେ କରିବେ ତୋତେ ପୂଜା
ଅଭୟେ ବରଦାନ ନାମ ତୋ ହେଉ ଗିରିଜା । ୨୦୧ ।
ଯେତେ ଶାପ ଯହୁଂ ହଲେ ତ୍ରିଲୋଚନ
ତେଣୁ ସେ ମନ୍ଦରେ ଦୁହେଂ ହୋଇଲେକ ଜନ୍ମ । ୨୦୨ ।
ପୁଣି ବିଶ୍ୱନାଥ ମୋତେ ବୋଇଲେ ବଚନ
ଆବର କଥାଏକ ତୁ ଯେକ ମନେ ଶୁଣ । ୨୦୩ ।

---

୧୯୭। ପୋରୁଅ—ପୋଜୁଅ, ପୋଡ଼ୁହ, ପୋଢ଼, ଈଶ୍ଚିର ମଇଂଷି ।

ସାରଳା ଦାସକୁ ତୁମ୍ଭେ ସଦୟ ହୋଇବ
ବନା ଭଗତରେ ତାର ଯେ ବର ଦେବ । ୨୦୪ ।
ସାରଳା ବୋଲଣ ଯେ ତାହାର ନାମ ଦେଇ
କଣ୍ଠ ତଟେ ଆପଣେ ବସିବୁ ମହାମାୟୀ । ୨୦୫ ।
ବଦ୍ୟାଶାସ୍ତ୍ର ତାକୁ ବୁଝାଇ କହିବୁ
ଲେଖନ ପତ୍ର ଯେ ବେଳେଣ ଯାଚେଦେବୁ । ୨୦୬ ।
ଶ୍ରୀ ମହାଭାରଥ ପୁରଣ ଗୀତରେ ଦେବୁ କହି
ତେବେ ସେ ସଂସାରେ କୀର୍ତ୍ତି ଥିବ ରହି । ୨୦୭ ।
ଶାପରୁ ମୁକ୍ତ ସେ ହୋଇବାକ ପାଇଁ
ତହୁଂ ସେ ବଖାଣି ଗ୍ରନ୍ଥ ଗୋବନ୍ଦର । ୨୦୮ ।
ଯେଉଂ ଦନୁ ତୁମ୍ଭେ ତାକୁ ହୋଇବ ପ୍ରସନ୍ନ
ସେହିଦନୁଂ ଅଗ୍ୟାନ ତାର ହୋଇବ ଖଣ୍ଡନ । ୨୦୯ ।
ଯେସନେ ଆଗ୍ୟାଂ ଯହୁଂ ବଶ୍ୱନାଥ ଦଲେ
ତେଣୁ ଆସି ଦୁହେଂ ଜନମ ଲଭିଲେ । ୨୧୦ ।
ତୁ ଯେବେ ପଚ୍ଛିଲୁ ମୋତେ ପୂର୍ବ ଜନ୍ମର ଚରିତ
ଯେ କଥା ଶୁଣି ସନ୍ତୋଷ କର ତୋର ଚିତ୍ତ । ୨୧୧ ।
ପୂର୍ବ ଜନ୍ମ ଚରିତ ଯହୁଂ କହିଲେ ଗୋସାମଣୀ
ତେବେ ସେ ତହୁଂ ଅର୍ଥ ଜାଣିଲ ମୁଂ ପୁଣି । ୨୧୨ ।
ଲେଖନ ପତ୍ର ଗୋଟି ହାଥରେ ଘେନିଣ
ପୁଣ ପୁଣ ନମଇ ଯେ ଦେବୀର ଚରଣ । ୨୧୩ ।
ଶିରେ କର ଦେଇ ଉଭା ହୋଇ ରହିଲ
ବନୟ ଭାବ ହୋଇ ପୁଣି ପଚ୍ଛିଲ । ୨୧୪ ।
ବୋଇଲ ମାତା ଗୋ ପୁଣ ଦୟା ଯେବେ କଲୁ
ଅପଣ୍ଡିତ ଜନକୁ ପଣ୍ଡିତ କରାଇଲୁ । ୨୧୫ ।
ଶ୍ରୀ ମହାଭାରଥ ପୁରାଣ ମୋ' ଦେଇ
ଜଗତେ ଭାରତ ରଖୁଛୁ ମହାମାଈ । ୨୧୬ ।
ଯେ ଯେ କଳଯୁଗ ଅମାନ୍ତ ସଂସାର
ମୂର୍ଖ ଅପଣ୍ଡିତ ଯେ ଅଟନ୍ତି ଅପାର । ୨୧୭ ।

ସାଧୁ ଜନମାନେ ଶୁଣି ନ ଧରିବେ ଦୋଷ
ଶୁଣିଣ ଆନନ୍ଦେ ଯେ ହୋଇବେ ହରଷ । ୨୧୮ ।
ମୂର୍ଖ ଜନମାନେ ଅର୍ଥ ନ ଜାଣିମେ
ବହୁତ ପ୍ରକାରେ ନିନ୍ଦା ବଖାଣିମେ । ୨୧୯ ।
ହୋଇଲା ପଦକୁ ନୋହିଲା ବୋଲିବେ
ଶ୍ରୀ ମହାଭାରଥ ଯେ ମୁଖରେ ନିନ୍ଦିବେ । ୨୨୦ ।
ଯେତିକକୁ ମାତା ଗୋ ବଡ ଭୟେ କରୁଛି
ଯେଣୁ କରି ତୋର ଚରଣେ ଜଣାଉଛି । ୨୨୧ ।
ମୁହିଂ ଯେ ହୀନ ଜନ ତୁଚ୍ଛ ମୋହୋର ବୁଦ୍ଧି
ତୋହୋର ବଚନେ ହେଉଛି ମୁହିଂ ସିଦ୍ଧି । ୨୨୨ ।
ହସିଣ ବୋଇଲେ ସିଂଘ ଯେ ବାହେନୀ
ମୋହୋର ବଚନ ତୁ ଶୁଣ ପରମାଣି । ୨୨୩ ।
ତୋହୋର କଣ୍ଠେ ବସି କହିଦେବ ମୁହିଂ
ନୋହିଲା ବୋଲଣ ଯେ ବଚନ ବୋଲଇ । ୨୨୪ ।
ତାହାକୁ ଶାପ ମୁଂ ଅବଶ୍ୟ ବହିବ
ତାହାର ବଂଶରେ ବିଦ୍ୟା ଅପ୍ରାପତ କରାଇବ । ୨୨୫ ।
ଶ୍ରୀ ମହାଭାରଥ ଯେ ଅଟଇ ମହାଭାର
ସବୁ ଶାହାସ୍ତ୍ରରୁ ଯେ ଅଟଇ ଉଗ୍ରୁଳ । ୨୨୬ ।
ଶ୍ରୀ ମହାଭାରଥ ଅର୍ଥ କେହି ପାଇନାହିଂ
ଅଗମ୍ୟ ଚରିତ ଯେ ଗମି ନ ପାରଇ । ୨୨୭ ।
ପୂର୍ବର ଭାଗ୍ୟ ତୋର ଅଛଇ ସୁକୃତ
ତୋତେ ଯେ ଦୟା କରିଅଛନ୍ତି ବିଶ୍ୱନାଥ । ୨୨୮ ।
ବାକ୍ୟଦେବୀ ପ୍ରସନ୍ନେ ହୋଇବୁ ମହାକବି
କବିତା ପଣେ ତୁ ହୋଇବୁ ପ୍ରସିଦ୍ଧି । ୨୨୯ ।
ମୃତ୍ୟୁ ମଣ୍ଡଳେ କଳିଯୁଗ ମଧ୍ୟରେ
ଶୂଦ୍ରମୁନି ନାମ ବହିବୁ ଶରୀରେ । ୨୩୦ ।
ବିଷ୍ଣୁ ଚରଣରେ ହୋଇବୁ ଭକତ
ତେବେ ସେ ଲଭିବୁ ତୁ ହୋ ପରମ ଗତି । ୨୩୧ ।

ସାଧୁ ଜନମାନେ କରିବେ ଯେ ଦୟା
କଷ୍ଟରେ ତାଙ୍କୁ ଉଦ୍ଧାରିବୁ ତୁ ମାୟା । ୨୩୨ ।
ଯେତେ ଜନ୍ମ ଦେବା ମଣ୍ଡଳେ ରହିଲେ
ମୋହୋର ମନେ ମୁଁ ଭାଳିଲଇଁ ଭଲେ । ୨୩୩ ।
ଶ୍ରୀଚଣ୍ଡୀ ସାବିତ୍ରୀ ଚରଣେ କଲଇଁ ଦଇନ
ବିନୟ ଭାବେ ଶିରେ ଯୋଡ଼ିଲି ବେନି ପାଣି । ୨୩୪ ।
ବୋଇଲି ମାତା ଗୋ ସାବଧାନେ ଶୁଣ
ଦୟାକଲୁ ଯେବେ ଭଗତି ତୋ ଚରଣ । ୨୩୫ ।
ଯେତେବେଳେ ମୋତେ ପଦ ଅଦୃଶ୍ୟ ହୋଅଇ,
ଡାକିଲେ ଶ୍ରବଣେ ଶୁଣିବୁ ମହାମାୟୀ । ୨୩୬ ।
ଯେତେବେଳେ ମୁଁ କରିବି ସୁମରଣ
ମୋହୋର ଡାକିଲେ ଶୁଣିବୁ ତତକ୍ଷଣ । ୨୩୭ ।
ମାତା ବୋଲି ମୁଁ ଡାକିବି ଯେତେବେଳେ
ଆପଣେ 'ଓ' ତୁ କରିବୁ ସେତେବେଳେ । ୨୩୮ ।
ତେବେ ସେ ସଂସାର ଲୋକେ ଜାଣିମେ ତୋ ବାଣୀ
ବୋଲିବେ ଦୟାକଲେ ଜଗତ ଜନନୀ । ୨୩୯ ।
ଶୟନେ ଆସନେ ଭୋଜନେ ଗମନେ
କ୍ଷଣେ ନ ଛାଡ଼ିବ ମୋହୋର ନୟନେ । ୨୪୦ ।
ଯେତେକ ବର ଯହୁଁ ମାଗିଲଇଁ ମୁହିଁ
ଅସ୍ତୁ ହୋଉ ବୋଲି ବୋଇଲେ ମହାମାୟୀ । ୨୪୧ ।
ବୋଇଲେ ପୁତ୍ର ରେ କହଇ କଥାଯେ
ଅଷ୍ଟାଙ୍ଗ ଶରୀର ମୋର ବର୍ଣ୍ଣିବୁ ସବୁଠାଯେ । ୨୪୨ ।
ଭବ ଦ୍ୱାରକୁ ମୋର କେବେହେଁ ନ ବର୍ଣ୍ଣିବୁ
ତେବେ ରେ ମୋହୋରେ ଭଗତି ହୋଇଥିବୁ । ୨୪୩ ।
ଯେହୁ ଶୁଣି ମୁହିଁ ଶ୍ରବଣ ଛୁଇଁଲି
ପୂଣିହିଁ ଚରଣ ତଳରେ ପଡ଼ିଲି । ୨୪୪ ।
ତୁ ମୋହୋର ଜନନୀ ମୁଁ ତୋହୋର ଧର୍ମସୁତ
ତୋହୋର ବଚନ ମୁଁ ପାଳିବି ନିଯୁତ । ୨୪୫ ।

ଏମନ୍ତେ କହି ଦେବୀ ହୋଇଲେ ଅନ୍ତର୍ଦ୍ଧାନ
ମୋହୋର ହାଥରେ ଦେଲା ଝଟିକ ଲେଖନ । ୨୪୬ ।
ସେହି ମଣ୍ଡୋପେ ବସିଲି ମନର ସୁଖରେ
ହାଥରେ ଘେନିଅଛି ଲେଖନ ପତ୍ରରେ । ୨୪୭ ।
ନମସ୍ତେ ଦୁର୍ଗା ଗୋ ଦୁର୍ଗତି ଖଣ୍ଡଣୀ
ସଙ୍କଟ ପଡିଲେ ଗୋ ରଖ ଗୋସାମଣୀ । ୨୪୮ ।
ଚଣ୍ଡ ମୁଣ୍ଡକୁ ମାଗୋ ମାଇଲୁ ବୁଦ୍ଧି ବଳେ
ରକ୍ତବୀର୍ଯ୍ୟକୁ ମାଇଲୁ ପାଡିଣ ଖପରେ । ୨୪୯ ।
ମଇଁଷା ଅସୁରକୁ ନାଶିଲୁ ଯେ ତୁହି
ଅସୁର ବୁକୁରେ ତ୍ରିଶୂଳ ମାଡିଦେଇ । ୨୫୦ ।
ମଇଁଷାସୁର ମର୍ଦ୍ଦିନୀ ନାମ ବୋଲାଇଲୁ
ଦେବତାଙ୍କ ହିତେ ଅସୁର ବଳ ଦହିଲୁ । ୨୫୧ ।
ନମସ୍ତେ କାତ୍ୟାୟିନୀ ଗୋ ଅଭୟେ ବରଦାୟିନୀ
ସିଂହ ବାହିନୀ ଗୋ ଦୁଖ ବିନାଶିନୀ । ୨୫୨ ।
କଳିକାଳ ଧ୍ୱଂସିନୀ ଗୋ କମଳ ଲୋଚନୀ
ବାର ବାର କରି ତୋର ଚରଣେ ଦଇନି । ୨୫୩ ।
ଅଷ୍ଟହନେ ମା ଗୋ ପଡ଼ଇ ତୋର ବାର
ଅଷ୍ଟ ନାଡ଼ି ଦୁବ ଯେ ଅଷ୍ଟ ଗୋଟି ତଣ୍ଡୁଳ । ୨୫୪ ।
ଯେଉଁମାନେ ଏକଚିତ୍ତେ ଯେ ତୋତେ ସେବଇ
ଧନ ଜନ ବିପୁଳ ଭୋଗ ଯାଚି ଦେଉ ନେଇ । ୨୫୫ ।
ସର୍ବ ମଙ୍ଗଳା ରୂପ ମାତଙ୍ଗୀ ମତ୍ତଭୋଳୀ
ଗ୍ରନ୍ଥ ଅର୍ଥ ସୁଖେଣ ସେ ହରଷ କୁତୂହୋଳୀ । ୨୫୬ ।
ସାରଳା ଚଣ୍ଡୀ ଯେ ଅଟଇ ମହାଦେବୀ
ତାହାର ପୁତ୍ର ମୁହିଂ ସାରଳା ଦାସ କବି । ୨୫୭ ।
ପ୍ରସନ୍ନେ ଆଗ୍ୟାଂ ମୋତେ ଦେଲେକ ଶାକାମ୍ବରୀ
ଲଭ ତୁ କପିଳାସ ମହାଭାରଥ ଗ୍ରନ୍ଥ କରି । ୨୫୮ ।
ଅନ୍ତକାଳେ ତୁ କପିଳାସ ପୁରକୁ ଯିବୁ
ପଶ୍ଚିମ ଦ୍ୱାରେ ତୁ ଦ୍ୱାରପାଳ ହେବୁ । ୨୫୯ ।

ଆର ଜନ୍ମେ ତୁ ବିଶ୍ୱନାଥଂକୁ ମନାଇ
ପଶ୍ଚିମ ଦ୍ୱାରପାଳପଣ ପାଇଥିଲୁ ତୁହି । ୨୬୦ ।
ଅନ୍ତେ ରହିବୁ ତୁ ସେ ସେବା ଆଦୋର
ତେବେ ସେ ଦୁର୍ଗାର ଶାପୁଂ ହେବୁ ପାର । ୨୬୧ ।
ଯେତେ ଆଜ୍ଞାଂ ଦିଲେ ଚଣ୍ଡୀ ଯେ ସାରଳା
ତେଣୁ ସେ ମହାଭାରଥ ଫୁରିଲ ମୋ ଗଳା । ୨୬୨ ।
ଶ୍ରୀହରି ଆଜ୍ଞାଂରେ ମୁଂ ହୋଇଲି ଶୂଦ୍ରମୁନି
ତେଣୁ ସେ ଜଗତେ ହୋଇଲି ବଖାଣି । ୨୬୩ ।
ଶ୍ରୀଚଣ୍ଡୀ ସାରଳା ଚରଣକୁ ମୋର ଆଶ
ଜନ୍ମେ ଜନ୍ମେ ସାରଳା ତୁମ୍ଭର ମୁଂ ଦାସ । ୨୬୪ ।



# ଜଗନ୍ନାଥ ବନ୍ଦନା

ବନ୍ଦଇ ନାରାୟଣ ନୀଳଗିରି ନାଥ
ଚତୁର୍ଦ୍ଧା ରୂପ ଧରି ବିଜୟେ ପଦ୍ମନେତ୍ର । ୧ ।
ଯେତକଇ ମୂର୍ତ୍ତି ଯେ ଚାରି ରୂପ ହୋଇ
ଜଗନ୍ନାଥ ବଳଭଦ୍ର ସୋହୋଦ୍ରା ସୁଦ୍ରିଶେନ ନାମ ବହି । ୨ ।
ବଳରାମ ବୋଲଣି ଯେବଣ ନାମ ହୋଇ
ପ୍ରତକ୍ଷେ ଯେ ସଦାଶିବ କପିଳାସବାସୀ ସେହି । ୩ ।
ମଧ୍ୟରେ ସୋହୋଦ୍ରା ଯେ ଜଗତର ପିତା
ସଂସାର ଜାତ କରିବାକୁ ଅଟନ୍ତି ମହାଜ୍ଞାଂତା । ୪ ।
ଅନାଦି ମାତାଂକର ଶାପ ଗୁଣ ଯେନ
ତେଣୁ ସେ ସ୍ତ୍ରୀଲିଙ୍ଗ ରୂପ ବହିଛନ୍ତି ପୁଣି । ୫ ।
ସେ ଜଗନ୍ନାଥ ଯେ ସଂସାର ଉଦ୍ଧାରଣ
ମ୍ଲେଛ ଜନ ଉଦ୍ଧାରଣେ ସେ ବାଉଦ ରୂପେଣ । ୬ ।
ଚତୁର୍ଭୁଜକୁ ଚତୁର୍ ଆୟୁଧ ଶୋଭାପାଇ
ତେଣୁ ସେ ସୁଦର୍ଶେନ ଚକ୍ର ଅସ୍ତ୍ର ଯେ ବୋଲୁଇ । ୭ ।

କଳି ଯୁଗ ଲୋକଂକ ଅମାନ୍ତ ଭାବ ଜାଣି
ତେଣୁ ପାଦ ପାଣି ନ କହିଲେ ଚକ୍ରପାଣି । ୮ ।
ନାସା ଶ୍ରବଣ ଯେ ଅଧର ସହିତେ
ଲୁଗାଇଣ ମଉନ ହୋଇଲେ ଜଗନ୍ନାଥେ । ୯ ।
ଦାସ ଜନଂକର ହିତକାରୀ ହୁଅନ୍ତି
ସପତ ଫଣା ଅହି ଶିରରେ ବହନ୍ତି । ୧୦ ।
ସପତ ଫଣା ଉପରେ ନାରାୟଣ
ଗୋଲକ ଭୁଇଂ ତହିଂ କରଣ ଭିଆଣ । ୧୧ ।
ରାଧାଂକୁ ବାମ ଭୁଜରେ ବସାଇଲେ ଦଇତାରି
ଗୋଲକ ଭୂଇଂରେ ଯେ ନିତ୍ୟେ ରହାସ କେଳି । ୧୨ ।
ଅଷ୍ଟ ନାୟେକା ଯେ ଜନ୍ତମାନ ଘେନି
ଯେ ଯାହାର ଖଟଣିରେ ଲଗିଛନ୍ତି କାମେମା । ୧୩ ।
କୋଟି କୋଟି ଯୁଗ ପ୍ରଳୟ ହୋଇଲେ
କେବେହେଂ ସେ କ୍ରୀଡ଼ା ଭଙ୍ଗ ନୋହେ ଭଲେ । ୧୪ ।
ସଂସାରର ଚନ୍ତା ଯେ ଶେଷ ମୁଣ୍ଡେ ଦେଇ
ରହାସ କେଳିରେ ମନ ଯେ ମଜାଇ । ୧୫ ।
ସେହି ଜଗନ୍ନାଥ ମହିମା ଅଗୋଚର
ଅନ୍ତ ନ ପାଇଲେ ବ୍ରହ୍ମା-ସେ ଶଂକର । ୧୬ ।
ଶ୍ରୀ ନୀଳଗିରିକ ଯେ ପଟାନ୍ତର ନାହିଂ
ଆପଣାର ଅଙ୍ଗେ ଯେ ଆପେ ନିର୍ମ୍ମେ ହୋଇ । ୧୭ ।
ଆପଣାର ଦେହ ଯେ ନୀଳସୁନ୍ଦର ଗିରି କଲେ
ମାୟାରୂପ ଧରି ନିର୍ଭରେ ରହିଲେ । ୧୮ ।
କଲ୍ପବଟ ଯେ ରୋହେଣୀ ନାମେ କୁଣ୍ଡ
କୋଟିଏକ ତୀର୍ଥ ସେଠାରେ କରିଛୁ ଗୁଣ୍ଡ । ୧୯ ।
ତୀର୍ଥର ନାମ ଯେ ଦକ୍ଷିଣ ମଉଦଧି
କୋଟିଏ ତୀର୍ଥ ଘେନି ଖଟିଛି ଜଳଧି । ୨୦ ।
ଯେମନ୍ତ ରୂପେ କ୍ଷେତ୍ରରେ ବିଜୟେ ନାରାୟଣ
ଦାରୁ ବ୍ରହ୍ମ ରୂପରେ ଆପଣେ ନିର୍ବାଣ । ୨୧ ।

ଜୟ ଜଗନ୍ନାଥ କରୁଣା ସାଗର
ଜୟ ନାରାୟଣ ଜୟ ଦାମୋଦର । ୨୨ ।
ମୁହିଂ ଯେ ଅରକ୍ଷିତ ଅଟଇ ମୂର୍ଖଇ
ସୂଚିମୁନ ଯେହ୍ନେ ପର୍ବତ ଟାଳଇ । ୨୩ ।
ଦୟାନିଧି ନାମ ବହିଛ ଆପଣ
ଦୟାକର ମୋତେ ପ୍ରଭୁ ଭଗବାନ । ୨୪ ।
ଶ୍ରୀ ମହାଭାରଥ ଅର୍ଥ ପୁରାଣ ମୋତେ ଦେବ
ଅଇଲ ନ ଅଇଲ୍ଲ କହି ଦେଉଥିବ । ୨୫ ।
ସଂସାର ଜନମାନେ ନ ବୋଲିବେ ମନ୍ଦ
ଯେମନ୍ତେ ଲଜ୍ଜା ନ ପାଇବ ସଂସାରର ମଧ୍ୟ । ୨୬ ।
ଲକ୍ଷ ଲକ୍ଷ ଶ୍ରୀ ଜଗନ୍ନାଥଂକର ଗୁଣ ଯେ ଅଟଇ
ଲୋଭରେ ମୋହୋରେ ସେ ପୁରାଣ ଲେଖିବଇଂ । ୨୭ ।
ଶ୍ରୀ ଭୁକୁସାର ବାଞ୍ଛିଭ ଚରଣେ ଦାଇନ
ଦୟା କର ଧର ମୋତେ ଶଙ୍ଖଚକ୍ର ପାଣି । ୨୮ ।
ଶ୍ରୀ ଜଗନ୍ନାଥଂକ ଶ୍ରୀ ଚରଣେ ମୋର ସେବା
ସାରଳା ଦାସକୁ ମୁକତି ଗତି ଦେବା । ୨୯ ।
ଶ୍ରୀ ବୁଧଜନେ ନ ଧର ମନେ ଆନ
ନୁହଂଇ ପଣ୍ଡିତ ମୁଂ ଯେ ସବାହୁଁ ମୂର୍ଖଜନ । ୩୦ ।
ପ୍ରେକଲୟ କର ଶୁଣ ସାବଧାନେ
ଫିଟିବ ଦୁଷ୍କୃତ ପାତକ ନାଶନେ । ୩୧ ।
କୁମ୍ଭଋଷି ନନ୍ଦନ ଯେ ଅଗସ୍ତି ମହାମୁନି
ମହା ବ୍ରହ୍ମବେତ୍ତା ଭାଷନ୍ତି ଅମୃତ ରସ ଧୁନି । ୩୨ ।
କଳଂକ ଦେଶ ବୋଲି ନଗରେକ ଅଛଇ
ସେ ଦେଶର ଅଧିକାରୀ ମନୁରାଜା ଅଟଇ । ୩୩ ।
ମହାଭାଗ୍ୟଂ ରାଜା ସେ ଅଟଇ ପଣ୍ଡିତ
ଗ୍ୟାନରେ ରଣ ଭଣ ହୋଇଣ ନରନାଥ । ୩୪ ।
ନାନାବିଧ ଧର୍ମରେ ଚିତ୍ତ ଗୋଟି ଥାଇ
ଗୋବିନ୍ଦ ଚରଣରେ ଚିତ୍ତ ସେ ଖଟାଇ । ୩୫

ପରଜା ପାଳଇ ସେ ପୁତ୍ରସମ କରି
ଦେବତା ବ୍ରାହ୍ମଣନ୍ତ ଥାଇ ସେ ଆଦରି । ୩୬ ।
ବସନ୍ତୁ କାରନ୍ତରେ ଥାଇ ସେ ଅନୁକ୍ଷଣେ
ଅନେକ ବଜେ କଲେ ଅଗସ୍ତି ମହାମୁନେ୍ୟ । ୩୭ ।
ରଜାର ଆସ୍ଥାନେ ବଜେ କଲେକ ଯାଇଂ
ସ୍ୱସ୍ତି କଲ୍ୟାଣ ବାଞ୍ଛନ୍ତ ପୁଣ୍ୟଦେହୀ । ୩୮ ।
ଅଗସ୍ତିଂକ ଦେଖିଣ ଯେ ଉଠିଲେ ମନୁରାୟେ
ଚରଣ ତଳେ ସେ ନମସ୍କାର କୟେ । ୩୯ ।
ସୁବର୍ଣ୍ଣର ଝାରିରେ ନୀର ଯେ ପୂରେଇ
ମୁନିଂକ ଚରଣ ଆନନ୍ଦେଣ ଧୋଇ । । ୪୦ ।
ନବବସ୍ତ୍ର ଘେନି ପୋଛଇ ଚରଣ
ପାଦର ଉଦକ ଯେ ଶିର୍ଭକୁ କ୍ଷେପିଣ । ୪୧ ।
ବସିବାକୁ ଦିବ୍ୟ ଆସନେକ ଦିଲେ
ବିନୟ ଭାବ ହୋଇ ବଚନ ପୁଛିଲେ । ୪୨ ।
ଆଜ ବଡ ସୁଫଳେ ପାଇଲ ରଜନୀ
ଯହୁଂ ତୋଳେ ଦେଖିଲି ଅଗସ୍ତି ମହାମୁନି । ୪୩ ।
ଧନ୍ୟ ଧନ୍ୟ ଦିନ ମୋର ସୁଫଳ ହୋଇଲା
ଯହୁଂ ଦୟା କଲେ ମୋତେ କୁମ୍ଭଋଷି ବଳା । ୪୪ ।
ବିନୟ ଭାବ ଯେ ଦେଖିଣ ରାଜାର
ମନେ ବିଚାରନ୍ତ କୁମ୍ଭଋଷିଂକ କୁମର । ୪୫ ।
ମନରେ ବେଦନା ଜାଣିଣ ତାହାର
ମନ ବୋଲିଣ ଯେ ବଚନ ଉଚ୍ଚାର । ୪୬ ।
ଆପଣେ ମନ ଚଇତନ୍ୟ ଟହେଳୁ କଲେ
ଚଇତନ୍ୟ ବୋଲି ନାମେକ ବହିଲେ । ୪୭ ।
ମନ ପଚ୍ଚରଇ ଚଇତନକୁ ଯହୁଂ
ଯେବେ ଦୟା କରି ଅଇଲ ଗୋସାଇଂ । ୪୮ ।
ଗୋବିନ୍ଦ ଚରିତ ଲୀଳା କହ ସାବଧାନେ
ତେବେ ସେ ପିଣ୍ଡ ମୋର କରିବ କାରଣେ । ୪୯

ଶ୍ରୀ ମହାଭାରଥ ଶ୍ରେବଣ ପୁରାଣ
ସନ୍ତୋଷ ଚିତ୍ତରେ ମୋତେ ହୁଅ ସାବଧାନ । ୫୦ ।
ରାଜାର ମନ ପଟ୍ଟଂ ଜାଣିଲେ ମହାମୁନ
ପବିତ୍ର ଗଙ୍ଗାଜଳ ଭକ୍ଷିଲା ପ୍ରାୟେ ମଣି । ୫୧ ।
ସଂକଳ୍ପ କର ରାଜା ଶୁଣ ଶୁଦ୍ଧ ଚିତ୍ତେ
ତେବେ ସେ ଶୁଣିବୁ ଶ୍ରୀ ମହାଭାରଥେ । ୫୨ ।
ଅଷ୍ଟାଦଶ ପୁରାଣ ଯେ ଅମୃତ କାହାଣୀ
ଶ୍ରବଣେ ଶୁଣିଲେ ନରକ ହୋଏ ହାନି । ୫୩ ।
ଯେ ଏକ ମନେ ଯେକ ଚିତ୍ତେ ଯେ ଯେହା ଶୁଣଇ
ଅନ୍ତେଣ ଅମର ବଇକୁଣ୍ଠେ ବସଇ । ୫୪ ।
ଅମୃତ ଖାଇବଇଂ ପାରିଜାତେକ ପୁଷ୍ପ
ଅନେକ ଭଉଗେବ କରଇ ଶରୀର ବିଳାସ । ୫୫ ।
ଧନ ଧାନ୍ୟ ବହୁତ ପୁତ୍ର ପଉତ୍ରୀ ମିଳେ
ଲଭ ହାନ ଅପଚୟେ କେବେହେଂ ନ ପଡ଼ଇ । ୫୬ ।
ଆରୋଗ୍ୟ ଶରୀର ସର୍ବଦା ହୋଇଥାଇ
ରାଜଦ୍ୱାରେ ସେ ବହୁତ ପୂଜା ପାଇ । ୫୭ ।
ଡାକେଣୀ ଭୂତ ପିଶ୍ଚଶ ବ୍ୟାଘ୍ର ଭୟେ
ଯେମାନ ଭେଦ ନ ପାରନ୍ତି ତାରେ ଯାଏ । ୫୮ ।
ସଂକଳ୍ପ ଯେକମନେ ଯେ ମହାଭାରଥ ଶୁଣନ୍ତି
ନାନାବ ଦୁସ୍କୃତରୁ ସେ ନସ୍ତରନ୍ତି । ୫୯ ।
ଯେତେକ ବଚନ ପଦ୍ମଂ ଅଗସ୍ତି କହିଲେ
ଶୁଣି ମନୁ ରାଜା ସନ୍ତୋଷ ହୋଇଲେ । ୬୦ ।
ସଂକଳ୍ପ କର ରାଜା ବସିଲା ଆସନେ
ସହସ୍ର ସୁବର୍ଣ୍ଣ ଥୋଇଲା ମୁନିଂକ ଚରଣେ । ୬୧ ।
ନଉରତନ ବସ୍ତ୍ରେ ପାଦ ପୂଜା କଲା
ଅନେକ ବିନୟ ହୋଇ କରଯୋଡ଼ ରହିଲା । ୬୨ ।
ସେ ମହାଭାରଥ କହିବା ମୁନି ମୋତେ
ବ୍ୟାଧି ପାତେକ ନ ରହୁ ମୋର ଗାତ୍ରେ । ୬୩ ।

ବଇବସୁତ ମନୁ ଯହୁଁ ପୁଚ୍ଛା କଲେ ଅଗସ୍ତିଂକ
କହ ମହାମୁନି ଅମୃତ ରସ ବାକ । ୬୪ ।
ମହାଭାରତ ନାମ ହୋଇଲା କେମନ୍ତେ
ଯେହୁ ତଦନ୍ତ କରି କହିବା ମୁନି ମୋତେ । ୬୫ ।



## ଦ୍ରୌପଦୀ ସ୍ୱୟମ୍ବର ସ୍ଥାନରେ ପାଠ

ଭିକ୍ଷା ମାଗିଣ କଲେକ ରନ୍ଧନ ଭୋଜନ
ଯେହୁଁ ଅନନ୍ତରେ କଥା ଶୁଣ ହେ ରାଜନ । ୧ ।
ବଇବସୁତ ମନୁଂକୁ ଯେ ଅଗସ୍ତି ସମ୍ଭାଷି
ସୟମ୍ବର ସ୍ଥାନେ ରାଜା ମିଳୁଛନ୍ତି ଆସି । ୨ ।
ରଥ ଗଜ ଅଶ୍ୱ ତହିଁ କହଣା ନ ଯାଇ
ବାଦ୍ୟର ଶବଦେ ଯେ ପୃଥ୍ୱୀ ଉଛୁଳଇ । ୩ ।
ପ୍ରଥମରେ ବିଜେ କଲା ଜାରାସନ୍ଧ ରାୟେ
ଛୟାଣୋଇ ସହସ୍ର ରାଜା ସଂଗତରେ ଆୟେ । ୪ ।
ଅଙ୍ଗବଙ୍ଗ ସଇନ ତାର ତେଇଶ କ୍ଷୋହୁଣୀ
ବାଦ୍ୟର ଶବଦେ ତାର କମ୍ପଇ ମେଦିନୀ । ୫ ।
ଶାଲୁ ଦନ୍ତବକ୍ର ଅଇଲେ ସଇନ ଘେନ
ଜାରାସନ୍ଧ ରାଜାର ଅଟନ୍ତି ଭାଇ ବେନ । ୬ ।
ଗୃଶ ଗୃଶ କ୍ଷୋହୁଣୀ ଯେ ଗୋସିଂହର ବଳ
ଆବର ନୃପତିମାନେ ମିଳିଲେ ସକଳ । ୭ ।
ଦମଘୋଷ ନନ୍ଦନ ଅଟଇ ଶିଶୁପାଳ
ଯେହୁ ମାନେ ମିଳିଲେ ଆସି ସୟମ୍ବର ମେଳ । ୮ ।
ତିନିଶତ କ୍ଷୋହୁଣୀ ବଳ ତାହାର ସଂଗତର
ଦ୍ରୁପଦ ସଭାରେ ଆସି ମିଳିଲା ନୃପବର । ୯ ।
ପଦ୍ମବଳ ଦେଶରୁ ଯେ ପଦ୍ମନାଭ ରାୟେ
ପଞ୍ଚ କ୍ଷୋହୁଣୀ ବଳ ଘେନି ସଂଗତରେ ଆୟେ । ୧୦ ।

ଦ୍ରୋପଦ କଟକରେ ମିଳିଲେକ ଯାଇଂ
ସଭାରେ ବସିଲା ସେହୁ ଗଉରବେ ପାଇ । ୧୧ ।
ବିକ୍ରମ କେଶରୀ ବୋଲି ନୃପତି ଗୁଣଗ୍ରାହୀ
ସାତ କ୍ଷୋହଣୀ ସଇନ ଘେନି ଅଇଲାକ ବାହି । ୧୨ ।
ଯମାଘୋଷ୍ଟ ବୋଲଣ ଯେ ଗରିଷ୍ଟ ରାଜନ
ଦ୍ୱାଦଶ କ୍ଷୋହଣୀ ବଳ ଘେନି ଅଇଲା ବହନ । ୧୩ ।
କାମପାଳ ଦେଶ ରାଜା ଅଟଇ କାମସେନ
ସତୁରି କୋଟି ତାର୍ ଅଟଇ ନିଜ ସଇନ । ୧୪ ।
ଯମନିକ ଦେଶ ରାଜା ଅଟଇ ରୁଭୁପାମ
ପଂଗୃଣ କୋଟି ବଳ ଘେନି କଲାକ ଗମନ । ୧୫ ।
ଷଣ୍ଡ ବିଷଣ୍ଡ ରାଜା ଆବର ବାଣାସୁର
ଯେହ୍ନାର ତୁଲେ ସଇନ ଖର୍ବ ଯେ ଯେଗାର । ୧୬ ।
କାଳନଉମି କାଳଦଣ୍ଡ ନୃପତି ମାଗଧେ
ଯେହ୍ନାର ତୁଲେ ସଇନ ପରାର୍ଦ୍ଧେ ପରାର୍ଦ୍ଧେ । ୧୭ ।
ଶାଳୀବାହାନ ରାଜା ବିକ୍ରମ ଶମ୍ଭୁରାଣ
ତିନ ତିନ କୋଟି ସଇନ ଯେହ୍ନାଂକର ଜାଣ । ୧୮ ।
ପ୍ରଚଣ୍ଡ ଅସୁର ବୀର ନାରକା କପିଳ
ସାତ ସାତ କ୍ଷୋହଣୀ ଯେହ୍ନାଂକର ନିଜ ବଳ । ୧୯ ।
ମାନଶ୍ରେଷ୍ଠ ରୁଦ୍ରଶ୍ରେଷ୍ଠ ଯେ ବେନି ମହୀପାଳ
ଯେହ୍ନାଂକର ତୁଲେ ସଇନ ଅନ୍ତହିଂ ଗହଳ । ୨୦ ।
ମ୍ଲେଚ୍ଛ କରାତ ସଙ୍ଖାଚୂଡ଼ ବେଣୁ
ଯେହ୍ନାକଂର ସଇନି କେ ପରମାଣୁ । ୨୧ ।
ଗଙ୍ଗାଧର ମାଳଧର ବୀର ସୁନାଧ୍ୱଜ
ଯେହ୍ନାଂକର ତୁଲେ ଅନେକ ରଥ ଗଜ । ୨୨ ।
ଶ୍ରେଷ୍ଠ ରାଜା ବୀର ମାଳଧ୍ୱଜ ରାଣ
ସାତ ସାତ କୋଟି ସଇନି ଯେହ୍ନାଂକର ଜାଣ । ୨୩ ।
ଅଶ୍ୱକେତୁ ରାଜା ରହିଲା ଆଠ କୋଟି ବାଜୀ
କପିଳା ରାଜା ରହିଲା ଅନେକ ସଇନି ସାଜି । ୨୪

ସ୍ନେହଚନ୍ଦ୍ର ମଣିଚନ୍ଦ୍ର ବୀର ଭଦ୍ରେଶ୍ୱର
ସାତ ସାତ କୋଟି ପ୍ରଚଣ୍ଡ ଅସୁର ସଂହାର । ୨୫ ।
ସ୍ନେହ ଅଇଲା ଆବର ରୂପ ଧରି
ତିନ ତିନ କ୍ଷେଉଣୀ ଯେ ବଳ ସ୍ନେହାଂକର । ୨୬ ।
କୁମୁଦ କାଞ୍ଚନ ଭାନୁ ଯେ ସୋତଳ
ସେହୁ ରାଜାଂକର ସଂଗେ ପାଞ୍ଚ କ୍ଷେଉଣୀ ବଳ । ୨୭ ।
ରଙ୍ଗ ଶାଲ୍ୱେଦଳ ଯେ ସୁତଳ ନୃପସାର
ସେହୁ ଘେନ ଅଇଲେ ସଇନ୍ୟ ବେନି ଯେ ସାଗର । ୨୮ ।
କୁମ୍ଭ ନିକୁମ୍ଭ ବୀର ବୃକୋଦର
ସେହୁ ଘେନ ଅଇଲା ଯେ କ୍ଷେଉଣୀ ପନ୍ଦର । ୨୯ ।
ବସୁକଲ୍ପ ବୋଲଣ ଯେ ସେକ ରାଜା ଥିଲା
ବିଂଶ କ୍ଷେଉଣୀ ବଳ ଘେନ ସମ୍ଭରେ ଅଇଲା । ୩୦ ।
ଅଷ୍ଟାଦଶ କ୍ଷେଉଣୀ ବଳ ଘେନି ବାଣାସୁର ରାୟେ
ପଞ୍ଚାଳ ଦେଶର ରାଜା ସମ୍ଭବେ ସମ୍ପାୟେ । ୩୧ ।

ଦ୍ରୋପଦସେନର ଭାଇ ନନ୍ଦସେନ ରାୟେ
ନବକୋଟି ବଳ ଘେନ ପ୍ରବେଶ ସେହୁ ହୋୟେ । ୩୨ ।
ସମସ୍ତେହେଂ ମିଳୁଛନ୍ତି ସୟମ୍ବର ଠାବ
ସାତ କ୍ଷେଉଣୀ ବଳ ଘେନ ଅଇଲା ବଜ୍ରନାଭ । ୩୩ ।
କଳିଙ୍ଗ ଦେଶରେ ଯେ କଳିଙ୍ଗସେନ ନୃପମଣି
ତାହାର ତୁଲେ ସଇନ୍ୟ ଆଠ ଯେ କ୍ଷେଉଣୀ । ୩୪ ।
ନବଲକ୍ଷ କୁଞ୍ଜର ତୁଲେ ପରିମାଣି
ତେର କୋଟି ରଥ ତୁଲେ ଗୁଣଉଣୀ ପଲଣି । ୩୫ ।
ସୟମ୍ବର ସ୍ଥାନେ ଯେ ହୋଇବାକ ଦ୍ୱନ୍ଦ
ଆବର ଆଣିଅଛି ଅଶ୍ୱ ଗୃଧ୍ରବୃନ୍ଦ । ୩୬ ।

ପାଟଛନ୍ଦ ନିରନ୍ତରେ ଆଲମ୍ବ ଗହଳ
ପନ୍ଦର କୋଟି ଯୋଦ୍ଧା ଘେନିଣ ଅଙ୍ଗବଳ । ୩୭ ।
ପାଦାନ୍ତ ଲେଖିବାକୁ ନାହାନ୍ତ ଭର୍ଜନ
ମାଡ଼ିଣ ରହିଲା ଥାଟ ଦ୍ୱାଦଶ ଯୋଜନ । ୩୮ ।

ଅଷ୍ଟାଦଶ କ୍ଷୋହଣୀ ବଳ ତୁରଙ୍ଗ ଅପ୍ରମାଣ
ବାଦ୍ୟନାଦ ଶବଦେ କମ୍ପଇ ଗଗନ । ୩୯ ।
ସେ ସବୁରେ ବଢେ କଲା ରାଜା ଦୁର୍ଯୋଧନ
ବାମ ଡାହାଣେ ଛନ୍ତି ଅନେଶ୍ୱତ ଭାଇମାନ । ୪୦ ।
ଶ୍ରମର ଆଳଟ ଯେ କହଣା ନ ଯାଇ
ଦ୍ରୋପଦ କଟକରେ ପ୍ରବେଶ ହେଲେ ଯାଇଂ
ରାଜାଗଣ ସଭାରେ ମିଳିଲା କୁରୁସାଇଂ । ୪୧ ।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା ଶଲ୍ୟ କର୍ଣ୍ଣ
ଭୂରିସବା ସୋମଦତ୍ତ ଅଛନ୍ତି ବଦ୍ୟମାନ । ୪୨ ।
ଖଗେଶ୍ୱର ଯୋଗେଶ୍ୱର ଗୋମାଳ ଗୋଗଜ
ସୁରସେନ ସହିତେ ସେହିମାନଙ୍କ ତୁଲେ ସଜ । ୪୩ ।
କାମେଶ୍ୱର ଜଙ୍ଗଡେଶ୍ୱର ଧ୍ରଷ୍ଟେ ଯେ ଆତ୍ମଜା
କଜଣିକ କଞ୍ଚନ ଆବର ମୃଗଧ୍ୱଜା । ୪୪ ।
ସିନ୍ଧୁଦେଶ ରାଜା ଜୟଦ୍ରଥ ବରାଟ
ତିନ ତିନ କ୍ଷୋହଣୀ ଯେ ସେହିମାନଙ୍କର ଥାଟ । ୪୫ ।
ପୁଣ୍ଡରୀକ ବାସୁଦେବ ସୁବାହୁ ସୁବଳ
ରହବର ଆବର ଭଲ୍ଲୁକ ମହୀପାଳ । ୪୬ ।
ଭୁଜଙ୍ଗସେନ ରାପ୍ୟେସେନ ଶତ୍ରୁରାପ୍ୟେ କାଳ
ଏମାନେ ମିଳିଲେ ଆସି ସୟମ୍ବର ମେଳ । ୪୭ ।
ହଂସେସେନ ଖାରସେନ ଦଇତ କୁଳ ବେନ
ତିନ ତିନ କୋଟି ଅଇଲେ ସଇନ ଘେନ । ୪୮ ।
ମୃଗସେନ କୋଳଣ ଅସୁର କୁଳ ନାଥ
ସୁବର୍ଣ୍ଣର ଘେନ ଅଇଲା ସହସ୍ରେକ ରଥ । ୪୯ ।
ଧୂଳମାନେ ଜଣିବାରେ ନ ଦିଶଇ ବାଟ
ଶ୍ରୀ କ୍ଷୋହଣୀ ବଳ ତାହାର ସାମରଥ । ୫୦ ।
ସ୍ୱୟମ୍ବର ମଣ୍ଡଳେ ମିଳିଲେ ନୃପସାଇଂ
ଦ୍ରୋପଦର କଟକେ ବସିବାର ଠାବ ନାହିଂ । ୫୧ ।

ବୀରଭଦ୍ର ମଣିଭଦ୍ର ଧୃଷ୍ଟ ଯେ ଦ୍ୟୁମନ
କେତନ ସର୍ବ ପଛେ ଆଇଲେ ଉଗ୍ରସେନ । ୫୨ ।
ଦ୍ୱାଦଶ କ୍ଷେଉଣୀ ଯେ ତାହାର ସଇନ ବଳ
ରାମ କୃଷ୍ଣ ସହିତେ ଆଇଲେ ଯଦୁବଳ । ୫୩ ।
ସୟମ୍ବର ଥାନେ ଆସି ମିଳିଲେ ଗହନ
ଠୋଲ ହୋଇଅଛନ୍ତି ସଇନ ନ ଯାଇ କଳନ । ୫୪ ।
କେ କହି ପାରିବ ଯେ ଲକ୍ଷେକ ମହୀପାଳ
ଅନେକ ସମ୍ବରେ ସଇନ ପୂରିତ ଗହଳ । ୫୫ ।
ଯାହା ସେ ଉକତ କଲେ ବ୍ୟାସ ମହାମୁନି
ପଣ୍ଡିତ ଜନଙ୍କୁ ମୋର ସହସ୍ରେ ଦଇନ । ୫୬ ।
ଲଖ ମାତ୍ର କରଣ ମୁଂ ଥୋକାଏ କହିଲି
ପଦକେ ଦଶପଦ କରଣ ଗୁଡିଲି । ୫୭ ।
ଲକ୍ଷେକ ରାଜା ଯେ ନୃପତି ଅନୁପମ
ଜଣେ ଜଣେ କରଣ ମୁଂ କହିବି କେତେ ନାମ । ୫୮ ।
ଏହା ଶୁଣି ପୁଚ୍ଛାକଲେ ବଇବସ୍ୱତ ମନୁ
ଆଇଲେ କେବଣ ଦେଶୁ କହ ହେ ମହାମନୁ । ୫୯ ।
ନଗରଂକର ନାମ ମୋତେ କହିବା ମହାମୁନେ୍ୟ
ଅଗସ୍ତି ବୋଇଲେ ତୁ ଶୁଣ ହେ। ରାଜନେ । ୬୦ ।
ତୁ ଯେ ପୁଚ୍ଛାକଲୁ ମୋତେ ରାଜାଂକ ଭୁବନ
ଶ୍ରୀ ମହାଭାରଥ ଏ ଅତ୍ୟନ୍ତ ଗହନ । ୬୧ ।
ଠିକ ଠିକ କରି ମୁଂ କହଇ ରାଜା ତୋତେ
ସାବଧାନେ ଶୁଣ ତୁ ବଳଂକ ମହାପତେ । ୬୨ ।
ନାଠ ଦ୍ୱେଠ ଗୁଣିର ଯେ ବସନ୍ତ ପ୍ରଶସ୍ତ
ତ୍ରିହୋତ୍ର ସଉରାଷ୍ଟ୍ର କଂକଣ ବଦାତ
ମାଳବ ଗଉଡ ଯେ ସିନ୍ଧୁ ତୁଳାଇତ । ୬୩ ।
କୁନ୍ତିପୁର ଜୋତିପୁର ଗୋରେଖ କର୍ଣ୍ଣାଠ
ମଲ୍ଲିକାପୁର ବଜୟାପୁର ନଗ୍ର ମରାହାଠ । ୬୪ ।
ବଡମଲ୍ଲାର ଯେ କାଞ୍ଚନ ନଗ୍ରପୁର
ଶ୍ୱେତପୁର କେତୁପୁର ବଙ୍ଗାଳ କେଶର । ୬୫ ।

ସିଙ୍ଗଳା ପିଙ୍ଗଳା ଯେ ନାଟ ଦକ୍ଷିଣ
ବେଦପୁର ନଈରୁତପୁର ମିଳକାଚହ୍ନାଣ । ୬୬ ।
କସିପୁର କାଶିପୁର ମରହଟ୍ଟ ନେପାଳ
ହେମ ଦେଶ ବାମ ଦେଶ ବଚନ ଦେଶପାଳ । ୬୭ ।
କୁଳାବଇ ପାଟଣା ଆବର ଜେନାବଳୀ
ଶିବପୁର ଯୋଦ୍ଧା ଆବର କୁଶସ୍ଥଳୀ । ୬୮ ।
ଜୟନ୍ତନା ହସ୍ତିନା ବାରୁଣା ଇନ୍ଦ୍ରପ୍ରଶସ୍ତ ଯମପ୍ରଶସ୍ତ
କୁହ୍ଳାଙ୍କ ହସ୍ତିନାପୁର ଦେବ ଭଗବନ୍ତ । ୬୯ ।
କାଉଂଶ୍ରୀ ଗୈରର ମଣ୍ଡଳ କଂକଣ ଗୈହସ୍ତ
ବାରସ୍ୱଣ୍ଣ ହରବଣ୍ଣ କଟକ ମହନ୍ତ । ୭୦ ।
ବର୍ଧବ କୁଣ୍ଡିନଗ୍ରୀ ସିନ୍ଧବ ମଧୁବନ
ରାଷ୍ଟ୍ର ବଙ୍ଗରାଷ୍ଟ୍ର ଦେଶ ନେପାଳ ଶାସନ । ୭୧ ।
ମାଉଣ ରହିଲେ ଥାଠ ଦ୍ୱାଦଶ ଯୋଜନ
ଊଣାଇଶ ଲକ୍ଷ ଜନେ ମିଳିଲେ ବ୍ରାହ୍ମଣ । ୭୨ ।
ତହିଁର ସଙ୍ଗତେ ହନ୍ତ ପାଣ୍ଡବ ପାଞ୍ଚଜଣ
ଦ୍ରୋପଦ କଟକ ଅଟେ ବାସ୍ତୋଷ୍ଠି ଯୋଜନ
ସନ୍ୟବଳ ରହନ୍ତେ ପୂରିଲା ଛନ୍ଦକୁଣ୍ଟ । ୭୩ ।
ବାଦ୍ୟନାଦ ଶବଦ କେ ପାରିବଟି କହି
ମୃଖରାବ ଶବଦେ କର୍ଣ୍ଣ ଅଛୁ ମହି । ୭୪ ।
ଅଗାଦ ସାଗର ସଇନ ରଥଗଜ ଭେଲା
ସମୋଦ୍ର ମନ୍ଥନେ ଯେହ୍ନେ ଦେବଦୈତ୍ୟ ମେଳା । ୭୫ ।
ତେସନକେ ରାଜାଗଣ ସୟମ୍ବରେ ଆଗମ
ନିମନ୍ତ୍ରଣେ ଅଇଲେ କେହ୍ନ ନୋହିଲେ ବିମନ । ୭୬ ।
ପ୍ରବେଶ ହୋଇଲେ ଆସି ସୟମ୍ବର ସ୍ଥାନ
ସ୍ୱର୍ଗ ତେଜି ଅଇଲେ ତ୍ରିଦଶ୍ୟ ଦେବମାନ । ୭୭ ।
ଚଉଦକୋଟି ବଳ ଘେନି ଅଇଲେ ତ୍ରିଲୋଚନ
ସୟମ୍ବର ଦେଖିତେ ବଳିଲା ତାହାଙ୍କର ମନ । ୭୮ ।
ଦେବ ଇନ୍ଦ୍ର ଅଇଲେ ଆରୋହି ଦେବଯାନ
ଅଧାସ୍ୱର୍ଗେ ହୋଇ ସେ ରହିଲେ ମଧ୍ୟସ୍ଥାନ । ୭୯ ।

ପୁଷ୍ପେକ ବିମାନ ଚଢ଼ି ଅଇଲେ କୁବେର
ହଂସର ବାହାନେ ବିଜେକଲେ ବେଦବର । ୮୦ ।
ବଶ୍ୟାନର ଅଇଲେ ଆରୋହଣ ମେଷ
ଆବର ଅଇଲ ଯମ ଦେଖଣ ଆକାଶ । ୮୧ ।
ମୃଗର ବାହାନେ ବିଜେ ପବନ ଅଣଶ୍ୱାସ
ସକଳେ ମିଳଲେ ଆସି ପାଞ୍ଚାଳର ଦେଶ । ୮୨ ।
ସିଦ୍ଧ ବୃନ୍ଦ ସହିତେ ଅଇଲେ ପ୍ରଜାପତି
ଦେବଗୁରୁ ପଣ୍ଡିତ ଅଇଲେ ବୃହସ୍ପତି । ୮୩ ।
ଆବ୍ରତେକ ସମ୍ବର୍ତ୍ତେକ ଦ୍ରୋଣ ଯେ ପୁଷ୍କର
ଅପାର ଖଣ୍ଡ ମେଘ ଯେନ ମିଳଲେ ସେଠାର । ୮୪ ।
ସତାଇଶ ନକ୍ଷତ୍ର ବିବୁଧଗଣ ତୁଲେ
ଦଶଦିଗପାଳେ ଯେ ସମସ୍ତେ ଅଇଲେ । ୮୫ ।
ଯେ ଯାହାର ବାହାନରେ ବିଜୟେ ଦେବତାଏ
ଅଧାସ୍ୱର୍ଗରେ ରହିଲେ ନକ୍ଷତ୍ରଗଣ ପ୍ରାଏ । ୮୬ ।
ଦେଖିଲେ ଭୁବନ ତାର ଅଦ୍ଭୁତ ଅଦୃଶ୍ୟ
ଘରେ ଘରେ ବସିଅଛି ସୁବର୍ଣ୍ଣ କଳସ । ୮୭ ।
ନିରନ୍ତରେ ଉଡ଼ଇ ପାତାଙ୍ଗ ଚଉପାଶ
ବାଜେଣୀ ବିତପନ ରବର ତର୍ବିସ । ୮୮ ।
ଅଗର ଧୂପ ଚନ୍ଦନ କର୍ପୂରର ଗନ୍ଧବାସ
ଆମୋଦଇ ନାନାଗନ୍ଧେ ପୂରଇ ଆକାଶ । ୮୯ ।
ଆସ୍ଥାନ ମଣ୍ଡୋପ ଗୋଟି ଅତି ବିଚିତ୍ର
ସୁବର୍ଣ୍ଣର ଖମ୍ବ ଯେ ବିଚିତ୍ର କମମାନ । ୯୦ ।
ଇନ୍ଦ୍ରଗୋବିନ୍ଦ ଗୃହଦୁଆ ଉପରେଣ ଟାଣି
ହୀରା ମାଳା ପୁଞ୍ଜି ପୁଞ୍ଜି ଉପରେ ଖଞ୍ଜାଣି । ୯୧ ।
ଚଉକତି ଲମ୍ବିଛନ୍ତି ମୁକୁତାର ଝରା
ନିଶାକାଳେ ଯେସନେକେ ବିରାଜଇ ତାରା । ୯୨ ।
ନେତର ଚନ୍ଦ୍ରାଲ ଯେ ଉଡ଼ଇ ସମକାନ୍ତି
ନୀଳମେଘେ ଯେସନେ ଦିଶଇ ବକ ପନ୍ତି । ୯୩ ।

ଯେମନ୍ତ ଦ୍ରୋପଦ ରଜା ସଭା ମଣ୍ଡିଅଛି
ସ୍ୱର୍ଗ ପୁରୁଂ ସୁଧର୍ମା ସଭା କି ଆସିଅଛି । ୯୪ ।
କନ୍ୟାର ମଣ୍ଡୋପ ଗୋଟି ଦିଶଇ ସୁନ୍ଦର
ବାରସ୍ୱର୍ଗ ପୁର କି ପେଷିଲ୍ଲ ପୁରନ୍ଦର । ୯୫ ।
ରତନର ପାବଚ୍ଛ କି ମାଣିକ ଜଡିଲ
କୋବେର ଭୁବନ କି ଖସିଣ ପଡ଼ିଲା । ୯୬ ।
ରୂପାରେ କୁଣକାଣ୍ଡ ସୁବର୍ଣ୍ଣର ବତା
ରତ୍ନାକର ଦେଇଛି କି ସୁବର୍ଣ୍ଣର ଛତା । ୯୭ ।
ରତ୍ନର ଗୁଚ୍ଛେଣି ବାଲ ଆଦର୍ଶର ଗୁମ୍ଫା ଜ୍ୟୋତି
ରତନର ଝରାମାନ ଲମ୍ବଇ ଚଉକତି । ୯୮ ।
ମଣ୍ଡୋପ ଆଗରେ ଅଛି ଶୁଭ୍ର ଖମ୍ବ ପାତି
ରାଧାଚକ୍ର ବୁଲଇ ଉପରେ ଊର୍ଦ୍ଧ୍ୱଗତି । ୯୯ ।
ତହିଂ ତଳେ ଥୋଇଅଛି ଲକ୍ଷେକ ବଳ ଧନୁ
ସୁରପତି ପକାଇ କି ଦିଲ୍ଲାକ ଗଗନୁ । ୧୦୦ ।
ଯେ ରୂପେ ଆରୋପି ଅଛି ଲାକ୍ଷ ସନ୍ନିଧର
କେବଣ ଠାବରେ ଥୋଇଅଛି ଧନୁଶର । ୧୦୧ ।
କେବଣ ଠାବରେ ଅଛି ଗଦା ମୁଦ୍ଗର
ଶାସ୍ତ୍ର ଜୋଥି ଥୋଇଅଛି କେବଣ ଠାବର । ୧୦୨ ।
ଯେସନ ମଣ୍ଡିଣି କରିଅଛି ଜଗତର ହେତୁ
କେବଣ ଠାବରେ ମକୁଟା ସୁବର୍ଣ୍ଣର କୁତ । ୧୦୩ ।
ଧନପରେ ଇଚ୍ଛା ଯା'ର ଧନ ଦେଖି ସେ ରହଇ
ଶାହସ୍ର ଇଚ୍ଛା ଯାର ସେ ଶାହାସ୍ର କରଇ । ୧୦୪ ।
ଶରହସ୍ତେ କର୍ଜିତା ଯେ ସେ ଧନୁ ତୋଣ ବହଇ
ଯେ ଯହିଂରେ ତୋଷ ସେ ତହିଂରେ ମଜ୍ଜଇ । ୧୦୫ ।
ନାନାବାଦ୍ୟ ବାଜୁଅଛି ବିବିଧ ଶବଦ
ଯେସନେକ ରଞ୍ଜନା ସେ କରନ୍ତି ଦ୍ରୋପଦ । ୧୦୬ ।
ସୟମ୍ବର ଦେଖି ରଜା ହରଷ ହୋଇଲେ
ଧନ୍ୟ ଧନ୍ୟ ଦ୍ରୋପଦ ବୋଲି ପ୍ରଶଂସା ସେ କଲେ । ୧୦୭ ।

ସୁରଗଣମାନେ ସବୁ ସଭାକୁ ନଇଲେ
ସପ୍ତମ୍ବର ଲକ୍ଷ ଉପରେ ମଧ୍ୟସ୍ୱର୍ଗରେ ରହିଲେ । ୧୦୮ ।
ଶୁଣସି ରାଜନ ବୋଲି ଅଗସ୍ତି କହିଲେ
ଚଉ ବୃତ୍ତ ଦେଇ ରାଜା ଶୁଣ ଭୂହି ଭଲେ । ୧୦୯ ।
ଗୃଣଦିଗେ ଶୁଭିଲା ଯେ ସପ୍ତମ୍ବର ଘୋଷା
ଋଷିଗଣମାନେ ଯେ ସମସ୍ତ କଲେ ଇଚ୍ଛା । ୧୧୦ ।
ଲକ୍ଷେକ ଶିଷ୍ୟ ଘେନି ବ୍ୟାସ ମହାମୁନେ୍ୟ
ପ୍ରବେଶ ହୋଇଲେ ସେ ଦ୍ରୌପଦ ଭୁବନେ । ୧୧୧ ।
ଲକ୍ଷେ ଶିଷ୍ୟ ଘେନି ପରାଶର ତପୋଧନ
ପଞ୍ଚାଳ ଦେଶକୁ ସେ କଲେକ ଗମନ । ୧୧୨ ।
ବିଶ୍ୱାମିତ୍ର ବଶିଷ୍ଠ ଲୋମଶ ମହାମୁନି
ଲକ୍ଷେ ଲକ୍ଷେ ଶିଷ୍ୟ ସଙ୍ଗତରେ ଘେନି । ୧୧୩ ।
ଶ୍ରୀବତ୍ସ କପିଳ ଯେ ଦୁର୍ଭାସ୍ୟା ଅଗସ୍ତି
ଅଷ୍ଟବକ୍ର ଅଙ୍ଗିରା ଆବର ପଉଲସ୍ତି । ୧୧୪ ।
ବାଲଖିଲ୍ୟା ଯବଖିଲ୍ୟା ଉତଙ୍ଗ ମହାମନ୍ତ
ବିଭାଣ୍ଡେକ ମାର୍କଣ୍ଡ ଆବର ମହାପଣ୍ଡ । ୧୧୫ ।
ଦେବଳ କପିଳ ଯେ ସଉଭରି ବିଭାଣ୍ଡେକ
ସ୍ୱୟମ୍ବର ଭୁଲେ ମୁନି ଅଇଲେ ଅନେକ । ୧୧୬ ।
ପୁଣ୍ଡରୀକ ଗଉତମ ମରୀଚ ମହାଋଷି
ଦଣ୍ଡକସ୍ତ ମୂଳେ ଅଇଲେ ସର୍ବଋଷି । ୧୧୭ ।
ସନକ ସନନ୍ଦନ ଆଦି କରି ଯେତି
ନାରଦେ ବିଜେ କଲେ କଳହ ମୂରତି । ୧୧୮ ।
ବୀଣା ବଜାବନ୍ତ ମୁନି ପରମ ଯୋଗଧ୍ୟାନେ
ସଭାରେ ପରବେଶ ସେ ହୋଇଲେ ହୃଷ୍ଟମନେ । ୧୧୯ ।
ଦେବଋଷି ବ୍ରହ୍ମଋଷି ରାଜଋଷିମାନେ
ସପ୍ତମ୍ବରେ ବିଜେକଲେ ଦ୍ରୌପଦ ଭୁବନେ । ୧୨୦ ।
ଦେବ ଦାନବ ରାକ୍ଷସ ନୃପତିଗଣମାନ
ସ୍ୱୟମ୍ବର ସଭାରେ ଦେଖି ଜଣାଇ ଧୃଷ୍ଟ ଯେ ଦ୍ୟୁମନ । ୧୨୧ ।

ପିତାଂକୁ ଜଣାଇଲା ଶୁଣିମା ମହାରାଜୟେ
ଆସିଣ ମିଳିଲେଣି ସକଳ ରାଜାୟେ । ୧୨୨ ।
ଦ୍ରୋପଦ ବୋଇଲା ତୁମ୍ଭେ ଶୁଣ ମୋର ନାନ
ଆସିଣ ମିଳିଲେ ଯେବେ ରାଜାଗଣମାନ । ୧୨୩ ।
ନିଜ ପୁରେ କରାଅ ଉଚ୍ଛବ ବିଧାନ
ହୁଳହୁଳି ମଙ୍ଗଳ ଗାବନ୍ତୁ ଥାନେ ଥାନ । ୧୨୪ ।
ଦିବ୍ୟବେଶ କରି ଦ୍ରୋପଦୀକି ଘେନଯାଅ
ସୁବର୍ଣ୍ଣ ମଣ୍ଡପେ ନେଇ କନ୍ୟାକୁ ବସାଅ । ୧୨୫ ।
ପିତାର ବଚନେ ସେ ଚଳିଲେ ବେନିଭାଇ
ନିଜ ପୁରେ କରାଇଲେ ଉଛବ ବଧାଇ । ୧୨୬ ।
ଦ୍ରୋପଦୀକି ଦାସୀମାନେ ବେସନ କରାଇ
ଚନ୍ଦନ ଚନ୍ଦ୍ରସମ ଅଙ୍ଗରେ ଘସାଇ । ୧୨୭ ।
ଦେବାଙ୍ଗ ପଟନ କଲେ ଅଙ୍ଗେ ଆଭରଣ
ନାନାମଣି ଅଳଂକାର ଶରୀରେ ଭୂଷଣ । ୧୨୮ ।
ହାର ମାଳା ରତ୍ନକଣ୍ଠି ତାର କର୍ଣ୍ଣରେ ଶୋହଇ
ଚାଲନ୍ତେ ସୁନ୍ଦରୀ ତିନି ଭୁବନ ମୋହଇ । ୧୨୯ ।
ସ୍ୱର୍ଗ ଅପସରୀ ରମ୍ଭା ଶଚୀ ତ ନୋହଇ
ଚାଲନ୍ତେଣ ବାମା ତିନି ପୁରକୁ ମୋହଇ । ୧୩୦ ।
କସ୍ତୁରୀ ଚିତାଗୋଟି ରଞ୍ଜିତ୍ତ କପୋଳେ
ନବରୁ ବାହାର ହେଲା ସ୍ତ୍ରୀଗଂକର ମେଳେ । ୧୩୧ ।
ଚଉପାଶେ ବେଢିଛନ୍ତି ଲକ୍ଷେକ ନୃପତି
ଚାମର ଆଲଟମାନ ଧରିଣ ଅଛନ୍ତି । ୧୩୨ ।
ମତ୍ତଗଜ ଗମନା ଚାଲିଇ ମହାସ୍ତୁତି
ଦେଖିଣ ରାଜାଗଣେ ଅଥିର ଯେ ମତି । ୧୩୩ ।
ମୋହମାନ ହୋଇ ରଜା କରନ୍ତି ବିଚାର
ଯୁବତୀଂକ ମଧ୍ୟେ ୟେ ଅଟଇ ରତ୍ନସାର । ୧୩୪ ।
କନ୍ୟା ଦେଖି ରାଜାମାନେ ବିଚାର କରନ୍ତି
ଯେ ଲକ୍ଷ ବିନ୍ଧିବ ସେ ନେବ ରୂପବନ୍ତୀ । ୧୩୫ ।

କେହ୍ନ ବୋଲେ କେହ୍ନ ଲାଖ ବନ୍ଧ ନୁଆରନ୍ତି
ଦୁଲଭ ଲାଖ ଯେ ବୋଲି ବିଚ୍ଚର କରନ୍ତି । ୧୩୬ ।
କେହ୍ନ ରାଜା ବୋଲେ ତୁମ୍ଭେ ହୋଇଲକବାଇ
ଦଇବ ସଞ୍ଚିଛି ଜଣେ ଅବଶ୍ୟ ବନ୍ଧଇ । ୧୩୭ ।
ଥୋକାଏ୍ତେ ବୋଇଲେ ଯେ ଲଖ ବନ୍ଧିବ
ଯେ୍ତ ଦ୍ରବ୍ୟ ସୁନ୍ଦରୀକ ସେହ୍ନ ଯେନିଯିବ । ୧୩୮ ।
ବନ୍ଧି ନୁଆରନ୍ତ କେବଣ ରାଜା ବୋଲି
ସୟମ୍ବର ଲଖ ଦେଖି ସ୍ତୁକତ ହୋଇଲି । ୧୩୯ ।
ସୟମ୍ବର ଲାଖ ଦେଖି ସ୍ତୁକତ ହୋଇଲ
ଯେ୍ତତେ ବୋଲି ରାଜାମାନେ ହୋଅନ୍ତି ବୋଲି ବୋଲି । ୧୪୦ ।
ସୁବର୍ଣ୍ଣ ମଣ୍ଡପେ ଯାଇଂ ବସିଲି ପାଞ୍ଚାଳୀ
କରେ ଘେନଅଛି ଯେ କନକ ପୁଷ୍ପମାଳ । ୧୪୧ ।
ସକଳ ନୃପତିଙ୍କ ଗୃହ୍ନଂଇ ଚକ୍ଷୁ ଢାଳ
ସଖୀ ସଂଘାତୁଣୀ ତାର ମନେ ମନେ ଭଲ । ୧୪୨ ।
ହସିଣ ବଚନ ତାଂକୁ ବୋଲଇ ପାଞ୍ଚାଳୀ
କଥାଏ୍ତେ ତୋତେ ମୁହ୍ନଂ ପୁଚ୍ଛଇ ଗୋ ବାଳୀ । ୧୪୩ ।
କେ ଲାଖ ବନ୍ଧିବ ମୋତେ କହ ଯଥାର୍ଥ
ସେହ୍ନ ମୋର ପ୍ରଭୁ ବୋଲି ଜାଣିବ ନିଯୁତ । ୧୪୪ ।
ପ୍ରତିଗାମୀ ବୋଇଲି ମା ଗୋ ଶୁଣ ମୋ ଉତ୍ତର
ବସିଛନ୍ତି ସର୍ବ ରାଜା ସକଳ ଦେଶର । ୧୪୫ ।
ଯେ୍ତକୁ ଯେ୍ତକ ସୁନ୍ଦର ସେ ଅତ୍ୟନ୍ତ ଧନୁର୍ଦ୍ଧର
ଯେ ଲାଖ ବନ୍ଧିବ ସେ ହୋଇବ ତୋର ବର । ୧୪୬ ।
ତାହା ଶୁଣି ଦ୍ରୋପଦୀ ଯେ ବୋଲଇ ଉତ୍ତର
ବିଷାଦେ ବୋଲଇ ମନ୍ଦ କଲି ମୋ ପିତୃର । ୧୪୭ ।
ଜାଣିଲି ପିତା ଯେ ମୋର ମୂର୍ଖ ମନ୍ଦ ବାଇ
ଏହେନେକ ବିପରୀତ କଥା କହଣା ନ ଯାଇ । ୧୪୮ ।
ମୋହୋର ବିଭୁରେ ଯେ୍ତଥି କିଛି ନ ଯୋଗାଇ
ଆବର ଅଗ୍ୟାଂନ ଯେ ହୋଇଲେ ମୋର ଭାଇ । ୧୪୯ ।

କୁଳ ଶୀଳ ବଂଶ ଜାଣି ଦେଇଥାନ୍ତା ବର
ତାହାକୁ ସେବା କରି କରନ୍ତ ନରଭ । ୧୫୦ ।
ନିମନ୍ତ୍ରଣ କଲେ ସ୍ୱୟମ୍ବରେ କେସନେକ ବିଧି
ମୋହୋର ଇଚ୍ଛାୟେ ମୁହିଂ ବର ଯେ ବରନ୍ତି । ୧୫୧ ।
ତାହା ଗ୍ରୁଡଣ ଲାଖ ପାଡିଲ୍ 'ଅର୍ଦ୍ଧଗତ
ଯେ ଲାଖଂ ବିନ୍ଧିବ ସେ ହୋଇବ ମୋର ପତି । ୧୫୨ ।
ନିମନ୍ତ୍ରଣେ ମିଳିଲେ ଲକ୍ଷେକ ନୃପବର
ବିଗ୍ଭର ଜାଣିଲ ଯେତେ ଥୋକାୟେ ଯେ ଭଲ । ୧୫୩ ।
ଲାଖ ଦେଖି ରାଜାମାନେ ହୋଇଲେ ବିରସ
କଷ୍ଟେ ଦୁଃଖ ପାଇ ଅଇଲୁ ଯେତେ ଦୂର ଦେଶ । ୧୫୪ ।
କନ୍ୟା ଆମ୍ଭେ ନେବୁ ବୋଲି କରିଥିଲୁ ମନ
ଲାଖ ବିନ୍ଧି କନ୍ୟାକୁ ତ ଦେନିଯିବ ଆନ । ୧୫୫ ।
ଯେତେ ବୋଲି ତବଦ ହୋଇଲେ ଭୂଅପାଳ
ମୁଖରାବ ଶବଦ ଯେ ଶୁଭିଲ ରହିଲ । ୧୫୬ ।
ଧୃଷ୍ଟଦ୍ୟୁମନ ବୋଲି ଯେ ଦ୍ରୁପଦର ବାଳ
ରଥ ଚଢ଼ି ମିଳିଲ୍ ସେ ସ୍ୱୟମ୍ବର ଆଳ । ୧୫୭ ।
ରାଜାଂକୁ ଗୃହିଂଣ ଯେ ବୋଲଇ ବଚନ
ସକଳ ଦେଶର ତୁମ୍ଭେ ମିଳିଛ ରାଜନ । ୧୫୮ ।
ଆମ୍ଭର ବଚନ ତୁମ୍ଭେ ଶୁଣିମା ସର୍ବରାୟେ
ଯେଉଂ ଅର୍ଥେ କଲୁ ଆମ୍ଭେ ସ୍ୱୟମ୍ବର ଉପାୟେ । ୧୫୯ ।
ସାତ ତାଳରେ ବସିଅଛି ସୁବର୍ଣ୍ଣ ଘଟ ଗୋଟିୟେ
ପବନ ଉପରେ ଚକ୍ର ବୁଲୁଅଛି ବାୟେ । ୧୬୦ ।



## ହିଡମ୍ବକ ବନେ ଘଟୋତ୍କଚର ଅଭିଷେକ

ଯେମନ୍ତ ଯେ କେତେକାଳ ତହିଂ କଟାଇଲେ
ଭଦନ୍ତେ କ ହେଲ୍ ବଇବସୁତ ପଗୃରିଲେ । ୧ ।

ବନ୍ଦନ୍ତ ଅଗସ୍ତିଶୁଣ ହେ ମନୁ ପୁରୁଷ
ପୁତ୍ର ଦେଖି ଧର୍ମରାଜା ଅନେକ ହରଷ ।
ବସନ୍ତ ଶୁକ୍ଳ ତ୍ରୟୋଦଶୀ ତିଥି ବୁଧବାର
ଅନୁରାଧା ନକ୍ଷତ୍ର ଯେ ଅଟେ ସେ ଦିନର । ୩ ।
ଶୁଭ ନାମେ ଯୋଗ ପୁଣି ବାଲବ କରଣ
ବ୍ୟାସନ୍ତ ଯେ ସୁମରିଲେ ଧର୍ମଙ୍କ ନନ୍ଦନ । ୪ ।
ତହିଁ ବ୍ରହ୍ମବେତ୍ତା ସଙ୍ଗେ ହୋଇ ମୁନିଗଣ
ପ୍ରବେଶ ହୋଇଲେ ଆସି ଦ୍ୱୈତମୃକ ବନ । ୫ ।
ଦଣ୍ଡ କମଣ୍ଡଳୁ କକ୍ଷା କଉପୀନ କାଛଟି
ଦେଖି ପୂଜା କଲେ ଧର୍ମ ରାଜନ ଯୁଧିଷ୍ଠି । ୬ ।
ସପତ ଋଷି ସହିତେ ବଶିଷ୍ଠ ପଉଲସ୍ତି
ସୁଦେବ କଉଣ୍ଡିନ୍ୟ ମାର୍କଣ୍ଡେୟ ବ୍ରହ୍ମଯତି । ୭ ।
ଯମଦଗ୍ନି ଅଙ୍ଗିରା ଯେ ମରୀଚ ଲୋମଶ
ଦ୍ୱୈତମୃକ ବନେ ସର୍ବ ମୁନିଙ୍କ ପ୍ରବେଶ । ୮ ।
ମୁନିମାନଙ୍କୁ ଯୁଧିଷ୍ଠି ଦେବ ପୂଜା କରି
ଆସନ ଦିଲେକ ପାଦ ପ୍ରକ୍ଷାଳ ତାଙ୍କରି । ୯ ।
ହେ ଦେବ ପୁଣ୍ୟ ବନେ ହେବ ଘଟୋତ୍କଚ ରାଜା
ଅଭିଷିକ୍ତ କରି ତୀର୍ଥ ଜଳେ ପାଣ୍ଡୁ ପୂଜା । ୧୦ ।
ଯୁଧିଷ୍ଠିଙ୍କର ବଚନେ ବେଦବ୍ୟାସ ଯତି
କୁଣ୍ଡେ ଅଗ୍ନି ଆରୋପିଣ ପାଡ଼ିଲେ ଆହୁତି । ୧୧ ।
ଅର୍ଯମା ଅନଳ ମଧ୍ୟେ ଶାସ୍ତ୍ର ଯୁକତେ
ସକଳ ଋଷିପ୍ରେ ମିଳି ଆହୁତି ଦିଅନ୍ତେ । ୧୨ ।
ପୁଷ୍କରକୁ ଧ୍ୟାନକଲେ ପ୍ରେମାନ୍ତେ ଯୁଧିଷ୍ଠି
କୋଟି ତୀର୍ଥ ହୋଇ ତହିଁ ସହିଂ ମୁନିଗୋଷ୍ଠୀ । ୧୩ ।
ବସାଇଲେ ଯୁଧିଷ୍ଠିର କୋଳେ ଘଟୋତ୍କଚ
ସାନନ୍ଦେ ପୁତ୍ରକୁ କଲେ ମୂର୍ଦ୍ଧା ଅଭିଷେକ । ୧୪ ।
ପୁଷ୍କର ମେଘକୁ ରାଇ କହିଲେ ସୁରେଶ
ଘଟୋତ୍କଚ ଶିରେ ଭୂହ କୁସୁମ ବରଷ । ୧୫ ।

ଯହିଁ ବିଜୟେ ପାଣ୍ଡବେ ଦେଖି ମୁନିଗୋଷ୍ଠୀ
ଦେବ ଇନ୍ଦ୍ର କରାଇଲେ ତହିଁ ପୁଷ୍ପବୃଷ୍ଟି । ୧୬ ।
ଯହୁଁ ଗଗନେ ଶୁଭିଲା ଦୁନ୍ଦୁଭି ଶବଦ
ଦ୍ୱାରକା ପୁରେ ଜାଣିଲେ ପ୍ରଭୁ ଯେ ଗୋବିନ୍ଦ । ୧୭ ।
ଆଶିଷ ବାଞ୍ଛିଲେ ଦେବରାଜା ଚକ୍ରଧର
ବୋଇଲେ ଖ୍ରୀମ କୁମର ସୁଖେ ରାଜ୍ୟ କର । ୧୮ ।
ଋଷିମାନେ ଆଶୀର୍ବାଦ ଅର୍ଘ୍ୟ ପୁଣି ଦିଲେ
ଘଟୋତ୍କଚକୁ ହିଡମ୍ବିକ ବନେ ରାଜା କଲେ । ୧୯ ।
ଋଷିଏ ଗମନ କଲେ ଯେ ଯାହାର ସ୍ଥାନେ
ରହିଲେ ପାଣ୍ଡବେ ସୁସ୍ଥେ ହିଡମ୍ବିକ ବନେ । ୨୦ ।
ଯେବଣ ଜନେ ଶୁଣନ୍ତି ଏହା ସାବଧାନେ
ଶରୀର ନିର୍ମଳ ଯେହ୍ନେ ପୁଷ୍କରିଣୀ ସ୍ନାନେ । ୨୧ ।
ବଂଶରେ ସମସ୍ତ ହତ୍ୟା ଦୋଷ ପାଇ କ୍ଷୟ
ଏଥିରେ ସନ୍ଦେହ ନାହିଁ ଆହେ ନରରାୟ । ୨୨ ।
ଜୟ ଶ୍ରୀରାମ କୋଦଣ୍ଡ ଧନ୍ଵା ଶିକ୍ଷା ଗୁରୁ
ପୃଥୀର ହିତ ଅର୍ଥେ ତୁ ଦଇତ ନିବାରୁ । ୨୩ ।
ମୁନି ଜନ ରଞ୍ଜନ ତୁ ମାନ ଉଦ୍ଧାରଣ
ଭୃଗୁସୁତ ଦର୍ପ ଧଂସି ଦୈତ୍ୟ ନିବାରଣ । ୨୪ ।
ଜୟ ତୁ ରାମ ଧାନୁଷ୍କ ଜନ ଚୂଡ଼ାମଣି
ଜୟ ତୁ ରାମ ବଇରି କାଳଯମ ଜାଣି । ୨୫ ।
ଜୟ ତୁ ରାମ ଅମୋକ୍ଷ ଜନ ମୋକ୍ଷ ଦାତା
ଜୟ ତୁ ରାମ ସକଳ ମହୀ ପରିତ୍ରାତା । ୨୬ ।
ଜୟ ତୁ ରାମ ବଇକୁଣ୍ଠ ପୁର ଅଧିବାସୀ
ଜୟ ତୁ ଶ୍ରୀରାମ ମହା ଭାରଭର ନାଶି । ୨୭ ।
ଜୟ ତୁ ଶ୍ରୀରାମ ସୀତା ଦେବୀଂକର ପତି
ଜୟ ତୁ ଶ୍ରୀରାମ ମୁନି ଜନ ଚିତେ ଚିନ୍ତି । ୨୮ ।
ଜୟ ତୁ ଶ୍ରୀରାମ କଉଶଲ୍ୟାର ନନ୍ଦନ
ପିତା ସତ୍ୟେ ରାଜ୍ୟ ତେଜି ବିପିନେ ଗମନ । ୨୯ ।

ଜୟ ତୁ ଶ୍ରୀରାମ ଭକ୍ତ ମୁକ୍ତ ଫଳ ଦାତା
ଜୟ ତୁ ରାମ ନରକୁ ଉଦ୍ଧାର କରତା । ୩୦ ।

ଜୟ ତୁ ରାମ ଅହଲ୍ୟା ଶାପ ବିମୋଚନ
ଜୟ ତୁ ରାମ ସାକାର ବିଷ୍ଣୁ ସନାତନ । ୩୧ ।

ଜୟ ତୁ ଶ୍ରୀରାମ ବାଳୀର ପ୍ରାଣ ହର
ଜୟ ତୁ ରାମ ସୁଗ୍ରୀବେ ଦେଲୁ ରାଜ୍ୟ ଭର । ୩୨ ।

ଜୟ ତୁ ଶ୍ରୀରାମ ଦଶଶିରଠାରେ କୋପୀ
ଜୟ ତୁ ଶ୍ରୀରାମ ରାଜ୍ୟେ ବିଭୀଷଣ ସ୍ଥାପି । ୩୩ ।

ଜୟ ତୁ ଶ୍ରୀରାମ ରଣେ ଅସୁର ସଂହାର
ଜୟ ତୁ ରାମ ସଂସାର ଜନଙ୍କୁ ଉଦ୍ଧାର । ୩୪ ।

ଜୟ ତୁ ରାମ ଜଗତ ଜନ ତାତ ମାତ
ଜୟ ତୁ ରାମ ଅଯୋଧ୍ୟା ଦେଶ ନରନାଥ । ୩୫ ।

ଜୟ ତୁ ଶ୍ରୀରାମ ଅଟୁ ଆଦ୍ୟ ନିରଞ୍ଜନ
ଜୟ ତୁ ଶ୍ରୀରାମ ମିତ୍ର ଦୁଃଖ ବିମୋଚନ । ୩୬ ।

ଜୟ ତୁ ରାମ ତୋ ଯୋଗୁଂ ଚରାଚର ବୃତ୍ତ
ଜୟ ତୁ ଶ୍ରୀରାମ ନବ ଦୁର୍ବାଦଳ କାନ୍ତ । ୩୭ ।

ଶୂଦ୍ରମୁନି ଶ୍ରୀ ସାରଳା ଦାସକୁ ଉଦ୍ଧର
ଜନ୍ମେ ଜନ୍ମେ ଦାଶରଥି ପାଦର କିଂକର । ୩୮ ।

ନମଇଂ ଯେ ସରସ୍ୱତୀ ବ୍ରହ୍ମାର ନନ୍ଦନୀ
କରେ ଧୋର କରତାଳ ଶୋହେ ବୀଣା ପାଣି । ୩୯ ।

ଶ୍ରୀବାକ୍ୟଦେବୀ ଚରଣ ତଳେ ମୋର ସେବା
ଶୂଦ୍ରମୁନି ଶ୍ରୀ ସାରଳା ଦାସେ ଗତି ମୁକ୍ତି ଦେବା । ୪୦ ।

ଯେଉଁ ଯେ ମହାଭାରଥ ଆଦ୍ୟପର୍ବ କଥା
ଶୁଣନ୍ତେ ଛୁଟେ ଦୁଷ୍କୃତ ସର୍ବ ମନୋବ୍ୟଥା । ୪୧ ।



# ସଞ୍ଜୟ, ଶକୁନି, ବିଦୁର ଓ କୃଷ୍ଣଙ୍କର ପରାମର୍ଶ

ମନୁ ବୋଇଲେ କହଣ ମୁନି ପାଦ ପୂଜା
ପାଣ୍ଡବ ନିଧନେ କେଉଁ ବୋଲି ଦୁର୍ଯୋଧନ ରାଜା । ୧ ।
ପାଣ୍ଡବ ନାଶନ କଥା ନ ଭଲେ ଶକୁନି
ଧୃତରାଷ୍ଟ୍ର ନ ଭଲଇ ସଞ୍ଜୟକୁ ଘେନି । ୨ ।
ବଦନ୍ତି ଅଗସ୍ତି ଶୁଣ ମନୁ ରାଜଦେବ
ଦ୍ୱାରକାକୁ ଆସିଥିଲେ ଘନେ ବାସୁଦେବ । ୩ ।
ସଞ୍ଜୟ ଶକୁନିଙ୍କ ସେ ରାଇ ଏକଠାବେ
ବୋଇଲେ ନିଚିନ୍ତ ଏବେ ହୋଇଲେ କଉରବେ । ୪ ।
ଆହେ ମନ୍ତ୍ରୀବର ଏବେ ଶୁଣ ଏକମନେ
ପାଣ୍ଡବେ ତ ନାଶଗଲେ ଜତୁ ନିକେତନେ । ୫ ।
ହସିଣ ଶକୁନି କହେ ଶ୍ରୀ ବାସୁଦେବଂକୁ
ଛୋଡ଼ୋର ଉକ୍ତିର ଭୟ କି ଜତୁ ଗୃହକୁ । ୬ ।
ଯାହାକୁ ତୁ ବାସୁଦେବ ରଖିବୁ ଯେ ଭବେ
ତାହାର କଉରବେ ଘାତ କି କରି ପାରିବେ । ୭ ।
ଜୟନ୍ତୀ ଶବରୀ ମଲା ପାଞ୍ଚପୁଅ ଘେନି
ଦୁଷ୍ଟ ପୁରୋଚନକୁ ଯେ ଖାଇଲା ବହ୍ନି । ୮ ।
ମହା ବିବର ଭିତରେ ଗଲେ ପାଞ୍ଚ ଭାଇ
ମୋତେ କି ପଚାରୁ ତୁ ଅନ୍ତର୍ଯାମୀ ହୋଇ । ୯ ।
ସଞ୍ଜୟ ବୋଇଲେ ପ୍ରଭୁ ମୋତେ କି ପଚାର
ପାଣ୍ଡବ ବନ୍ଧନେ କାହିଂ ପ୍ରଭୁ ଚକ୍ରଧର । ୧୦ ।
ଜୀବ ପରମକୁ ଛାଡ଼ି ରହି ପାରଇ କି
ଶିବ ଛାଡ଼ି ପାରନ୍ତି କି ଦେଖ ପାର୍ବତୀଂକି । ୧୧ ।
ବସ୍ତୁ କାହିଂ ଭକତଂକୁ ଛାଡ଼ିବେ ହେ ହରି
ଲୋକେ ଜାଣିବାକୁ ଦେବ ଗଲେ ସିନା ମରି । ୧୨ ।
ବାସୁଦେବ ବୋଇଲେ ହେ ସଞ୍ଜୟ ଶକୁନି
ଜାଣଇ ସର୍ବଗ୍ୟଂ ଅଟ ତୁମ୍ଭେ ମନ୍ତ୍ରୀ ବେନି । ୧୩ ।

ଯେହ୍ନେ କହି କଲେ ତାଂକୁ କୋଳ ସମ୍ଭାଷଣ
ଯେମନ୍ତେ ଏହା ନ ଜାଣେ ରାଜା ଦୁର୍ଯୋଧନ । ୧୪ ।
ଯେବେ ହେ ଶକୁନି ପିତୃ ବଇର ସାଧିବୁ
ତେବେ ପାଣ୍ଡବଂକ କଥା କାହିଂ ନ କହିବୁ । ୧୫ ।
ଯେବେ ଆମ୍ଭ ପ୍ରୀତି ବାଞ୍ଛା କରୁ ମନ୍ତ୍ରୀବର
ଦୁର୍ଯୋଧନ ନ ଜାଣିବ ଏ ସବୁ ବିଚାର । ୧୬ ।
ଆମ୍ଭ କଥା ଆନ କଲେ ହେବ ନର୍କ ପ୍ରାପ୍ତ
ନ କହିବ ବୋଇଲା ସେ ଗାନ୍ଧାରୀର ଭ୍ରାତ । ୧୭ ।
ଏକ୍ଷେ ବାସୁଦେବ ତୋ ବୋଲେ ଏହା ହୁଏ କରି
ଅନ୍ୟ କେ ଅଛି ତା ଆନ କରିବ ହେ ହରି । ୧୮ ।
ଯେମନ୍ତେ ମୋହୋର ପିତୃ କାର୍ଯ୍ୟ ହୁଏ ସାଧି
ସେ କଥା ଲଟିଲି ତୋତେ ପ୍ରଭୁ ଦୟାନିଧି । ୧୯ ।
ସଞ୍ଜୟ ବୋଇଲେ ପ୍ରଭୁ ଦୟା କଲେ ତୁହି
ମହା ପାତକୀ ଜନକୁ କପୋରୁ ନାହି । ୨୦ ।
ମୁହିଂ ତୋହୋର ସେବକ ଜନ୍ମେ ଜନ୍ମେ ପୁଣି
ମୋହ ପ୍ରତି ଦୟା ରଖିଥିବୁ ଚକ୍ରପାଣି । ୨୧ ।
ସଞ୍ଜୟକୁ ପଠିଆଇ ବିଦୁରକୁ ଆଣି
ଚାରି ଜଣେ ଭଜନ୍ତି ସେ କୃଷ୍ଣାଜନ୍ମ ଶୁଣି । ୨୨ ।
ବିଦୁର ବୋଇଲେ ଶୁଣ ଆହୋ ବାସୁଦେବ
ଏବେ କାହିଂ ରହିଛନ୍ତି ସେ ପଞ୍ଚ ପାଣ୍ଡବ । ୨୩ ।
ଓଡ୍ର ଦେଶେ ଶିବପୁରେ ବୋଇଲେ ସଞ୍ଜୟ
ବେନି ବରଷ ଲେଉଟିବ ପଞ୍ଚାଳେଶ ରାୟ । ୨୪ ।
ଚାରି ଜଣ ବସି ଏକ କଥା ବିଚାରିଲେ
କାହିଂ ନ କହିବା ଶିର ଛୁଆଂଛୁଇଂ ହେଲେ । ୨୫ ।
ନିୟମ ବାଣୀ ବୋଲନ୍ତେ ପ୍ରଭୁ ବାସୁଦେବ
ଏ ତିନିଜଣ ଉଠିଣ ଗଲେ ଯେଝା ଠାବ । ୨୬ ।
ରାତ୍ର ପ୍ରହରକ ଥାଉଂ ଦୁର୍ଯୋଧନ ଉଠି
ନିତ୍ୟକର୍ମ ସାରି ହୁଏ ସୂତ ମନ୍ତ୍ର ପାଠି । ୨୭ ।

ବେଳ ପ୍ରହରକ ଯାଏଁ ଶୁଣଇ ପୁରାଣ
ବେନ ପ୍ରହରେ ମୁଣୋହ୍ନ ଘରେ ବଜେ ପୁଣ । ୨୮ ।
ମୁଣୋହ୍ନ ସାର ତାମ୍ବୁଲ ଲଗି ହୁଏଁ ଯାଇଂ
ପ୍ରତିଦିନ ଯେହ୍ନମନ୍ତ କରେ ରାଜସାଇଂ । ୨୯ ।
ମନ୍ତ୍ରୀ ଶକୁନ ତାହାର ସନ୍ନିଧରେ ଥାଇ
ରାଜ୍ୟ ଭଲ ମନ୍ଦ ବୁଝେ ଦୂତ ପଠିଆଇ । ୩୦ ।
ଜୟ ତୁ ଜୟ ତୁ ଦେବ ମାୟାଧର ହରି
ଜୟ ତୁ ଜୟ ତୁ ଦେବ ବଇକୁଣ୍ଠ ବିହାରୀ । ୩୧ ।
ଯୁଗେ ଯୁଗେ ତୋ ଜନମ ଭକତଂକ ହିତେ
ସାରଳା ଦାସ ମୁଂ ଭୃତ୍ୟ ତବ ପାଦେ ନିତ୍ୟେ । ୩୨ ।

